# ବିସ୍ମୃତିର ଚିତ୍ର


ଭଗବତୀଚରଣ ବର୍ମା

ଅନୁବାଦକ

ଗୋଲୋକବିହାରୀ ଧଳ





ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନୂଆ ଦିଲ୍ଲୀ

First Edition 1971 (Saka 1893)
Reprinted 1983 (Saka 1905)



Rs. 16.00

*Original Title* : BHULE BISRE CHITRA *(Hindi)*
*Oriya Translation* : BISMRUTIRA CHITRA

Published by Director, National Book Trust, India, A-5 Green Park, New Delhi-110016 and printed by Jupiter Offset Press, B-10/3, Jhilmil Industrial Area, Delhi-110032

# ଆଲୋଚନାତ୍ମକ ଅଧ୍ୟୟନ ଉଦ୍ଦେଶ୍ୟରେ

ଊନବିଂଶ ଶତାବ୍ଦୀରେ ଫ୍ରାନ୍ସରେ ହେନରୀ ବାଲଜାକ୍ ନାମରେ ଜଣେ ଔପନ୍ୟାସିକ ଥିଲେ । ତାଙ୍କର ଗୋଟାଏ ବଡ଼ ଲଠି ଥିଲା । ସେଥିରେ ଲେଖାଥିଲା, 'ଏହି ଲଠି ସବୁ ଭାଙ୍ଗି ଭୁଜି ନଷ୍ଟ କରିଦିଏ ।' ବିଂଶ ଶତାବ୍ଦୀରେ ଜର୍ମାନୀର ଜଣେ ଔପନ୍ୟାସିକ ଫ୍ରେନ୍‌ଜ କାଫ୍‌କା ଯେତେବେଳେ ଏଇ କଥା ଶୁଣିଲେ, ସେ ତାଙ୍କର ଗୋଟିଏ ଶ୍ରେଷ୍ଠ ବାଡ଼ିଦେହରେ ଲେଖାଇଥିଲେ ଯେ ଏହି ବାଡ଼ିକୁ ଯେକୌଣସି ଜିନିଷ ଭାଙ୍ଗି ଦେଇପାରେ । ସମାଲୋଚକମାନେ କହନ୍ତି, ସେହି ଲଠି ଦୁଇଟିର ଅନ୍ୟ କିଛି ଅର୍ଥ ନୁହେଁ; ସେ ଦୁଇଟି ୟୁରୋପୀୟ ଉପନ୍ୟାସମାନଙ୍କର ବିକାଶ ପଦ୍ଧତିର ଦୁଇଟି ପ୍ରତୀକ ମାତ୍ର । ବାଲଜାକ୍‌ଙ୍କ ଉପନ୍ୟାସ ହେଉଛି ତାଙ୍କର ଲଠି । ତାହାର ସାହାଯ୍ୟରେ ସେ ନିଜର ସମସାମୟିକ ସମସ୍ତ ଅନ୍ୟାୟ, ଅସାଧୁତା ଓ ପ୍ରାଚୀନ ପରମ୍ପରା ବିରୁଦ୍ଧରେ ବିଦ୍ରୋହ କରିଥିଲେ । ପ୍ରକୃତରେ ତାଙ୍କ ଉପନ୍ୟାସର କଥାବସ୍ତୁ ଜାଗ୍ରତ ମଧ୍ୟମଶ୍ରେଣୀର ମନୋଭାବର ସାହିତ୍ୟିକ ପରିପ୍ରକାଶ ହୋଇଥିବାରୁ ପ୍ରାରମ୍ଭରୁ ଏହା ମନୁଷ୍ୟର ସବୁପ୍ରକାର ସାମାଜିକ ପରିସ୍ଥିତି, ଦ୍ୱନ୍ଦ୍ୱ ଓ ସମସ୍ୟା ପ୍ରତି ସଚେତ ହୋଇ ରହିଛି । ଏହି କଥା ସର୍ଭେଣ୍ଟିସ୍‌ଙ୍କ ଲେଖାରେ ମଧ୍ୟ ଦେଖାଯାଏ ଓ ସୌଭାଗ୍ୟବଶତଃ ହିନ୍ଦୀର ପ୍ରଥମ ଉପନ୍ୟାସ 'ପରୀକ୍ଷାଗୁରୁ' (ଲାଲ ଶ୍ରୀନିବାସ ଦାସ)ରେ ମଧ୍ୟ ଏହି ଜାଗୃତି ବା ସଚେତନତା ପରିଲକ୍ଷିତ ହୁଏ ।

କଥା ଓ କାହାଣୀ ଯେ କେବଳ ଚିତ୍ତବିନୋଦନ ପାଇଁ ନୁହେଁ; ଚିତ୍ତବିନୋଦନ ସହିତ ଉପଦେଶ ଦେବା ମଧ୍ୟ ତାର ଲକ୍ଷ୍ୟ, ଏହି କଥା ପୂର୍ବରୁ ଚାଲିଆସୁଛି । କିନ୍ତୁ ଆଧୁନିକ ଜୀବନର ଶକ୍ତି ଓ ସାମର୍ଥ୍ୟକୁ ସ୍ୱୀକାର କରି ନାନାପ୍ରକାର ସାମାଜିକ ସଂପର୍କ ଓ ସମସ୍ୟା ଠିକ୍‌ଭାବେ ହୃଦୟଙ୍ଗମପୂର୍ବକ ଜୀବନର ବାସ୍ତବ ଛବି ଆଙ୍କିବା ଆଧୁନିକ ଉପନ୍ୟାସରେ ହିଁ ସମ୍ଭବ ହୋଇପାରିଛି । ଉପନ୍ୟାସ ଅଧ୍ୟୟନରେ ମନୋରଞ୍ଜନ ସହିତ ଉପଦେଶ ତ ମିଳିଯାଏ; କିନ୍ତୁ ଏହି ଉପଦେଶ ସ୍ଥାନରେ ଏବେ ଯେଉଁ ସମସ୍ୟାବହୁଳତା ଦେଖାଦିଏ ସେଥିରୁ ଔପନ୍ୟାସିକର ସୂକ୍ଷ୍ମଦୃଷ୍ଟି, ଜାଗୃତି ଓ ବୌଦ୍ଧିକତାର ପରିଚୟ ମିଳେ । । ଉପନ୍ୟାସରେ ଆଜିକାଲି ଯେମିତି ଜୀବନ୍ତ ଚରିତ୍ର ଯୋଜନା କରାଯାଏ ଓ ବିଷୟବସ୍ତୁକୁ କେନ୍ଦ୍ର କରି ବିଶ୍ୱାସଯୋଗ୍ୟ ଘଟଣାବଳୀଦ୍ୱାରା ପାରିପାର୍ଶ୍ୱିକ ଅବସ୍ଥାକୁ ଯେପରି ଭାବରେ ଚିତ୍ରିତ କରାଯାଏ, ତାହା ପ୍ରାଚୀନ କଥା ଓ କାହାଣୀରେ ଆଦୌ

ନଥିଲା । ସେହି ଦୃଷ୍ଟିରୁ ବର୍ତ୍ତମାନର ଉପନ୍ୟାସ ପ୍ରାଚୀନ କାହାଣୀଠାରୁ ଭିନ୍ନ । ଆଜିର ଉପନ୍ୟାସର ପ୍ରଧାନ ପ୍ରଶ୍ନ ହେଉଛି—'ପୁଣି କଣ ହେଲା ?' 'କାହିଁକି ହେଲା ?' 'ବର୍ତ୍ତମାନ କ'ଣ ହେଉଛି ?' 'ପୁଣି କ'ଣ ହେବ ?' କହିବା ନିଷ୍ପ୍ରୟୋଜନ ଯେ ଏହି ସମସ୍ତ ପ୍ରଶ୍ନ ମଧ୍ୟରେ ଜୀବନର ଅନେକ ମୌଳିକ ପ୍ରଶ୍ନ ମଧ୍ୟ ଅନ୍ତର୍ଭୁକ୍ତ ।

ଯାହା ହେଉ, ହିନ୍ଦୀ ଉପନ୍ୟାସ ତାର ପ୍ରାରମ୍ଭରୁ ଆଧୁନିକତାର ଏହି ମୌଳିକ ଗୁଣଗୁଡ଼ିକ ସ୍ୱୀକାର କରିନେଇଛି । ଭାରତେନ୍ଦୁ ଓ ପ୍ରତାପନାରାୟଣ ସେମାନଙ୍କର ନାଟକ ଓ ପ୍ରବନ୍ଧ ସାହାଯ୍ୟରେ ପ୍ରାଚୀନ ପରମ୍ପରା, ଅନ୍ୟାୟ ଓ ଅସାଧୁତା ବିରୁଦ୍ଧରେ ଯେଉଁ ସ୍ୱର ଉତ୍ତୋଳନ କରିଥିଲେ, ଲାଲା ଶ୍ରୀନିବାସ ଦାସ ଓ ବାଲକୃଷ୍ଣ ଭଟ୍ଟ ସେମାନଙ୍କର ଉପନ୍ୟାସରେ ତାହାକୁ ଆହୁରି ତୀବ୍ର କରିଦେଇଥିଲେ । ସମସ୍ୟାକୁ ଠିକ୍ ଭାବରେ ବୁଝି, ତା ସହିତ ଲଢିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । କଥାଟା ଅବଶ୍ୟ ଟିକିଏ ଅଡୁଆ ଲାଗିପାରେ; କିନ୍ତୁ ପ୍ରକୃତ କଥା ହେଉଛି 'ଚନ୍ଦ୍ରକାନ୍ତା ସନ୍ତତି'ରେ ଯେଉଁ ଅତିରଂଜନ ଓ ବୈଚିତ୍ର୍ୟ ବିଦ୍ୟମାନ, ସେ ସବୁର ମୂଳରେ ଅଛି ମାନବିକ, ଲୌକିକ ତଥା ଯଥାର୍ଥବାଦୀ ଦୃଷ୍ଟି । ସେହି ଦୃଷ୍ଟିକୋଣକୁ ଅସ୍ତାୟମାନ ସାମନ୍ତବାଦ ଓ ଉଦୀୟମାନ ପୁଞ୍ଜିବାଦ ବର୍ଣ୍ଣନମାଧ୍ୟମରେ ପ୍ରତୀକ ବା 'ଫାଣ୍ଟାସି' ଭାଷାରେ ଉପସ୍ଥାପିତ କରାଯାଇଛି ।

ଭାରତେନ୍ଦୁ-ଯୁଗର ପ୍ରାରମ୍ଭିକ ଉପନ୍ୟାସକୁ ପ୍ରଶଂସା କଲାବେଳେ ଗୋଟିଏ କଥା ମନେରଖିବାକୁ ହେବ ଯେ ସେଥିରେ ଦୃଷ୍ଟିକୋଣ ଥିଲା ଖୁବ ସ୍ଥୂଳ । ସେଥିରେ ଚରିତ୍ର କିମ୍ବା ଘଟଣାର କୌଣସି ବ୍ୟବସ୍ଥିତ ରୂପ ନ ଥିଲା । ସମସ୍ୟାକୁ ଦୃଷ୍ଟିରେ ରଖି ସେହି ଅନୁସାରେ ଚରିତ୍ର ଓ ଘଟଣାବଳୀକୁ ଗଢ଼ି ନିଆଯାଉଥିଲା । ସେଥିରେ ସୂକ୍ଷ୍ମଦୃଷ୍ଟିର ଅଭାବ ଥିଲା; କିନ୍ତୁ ପ୍ରେମ୍‌ଚନ୍ଦ୍ ସେହି ଅଭାବକୁ ପୂରଣ କରି ଦେଇଥିଲେ । ତାଙ୍କ ଉପନ୍ୟାସରୁ ସମସ୍ୟା ଆପେ ଆପେ ଜନ୍ମଲାଭ କରୁଥିଲା ଓ ସେହି ସମସ୍ୟାମାନଙ୍କର ସମାଧାନ ପାଇଁ ତାଙ୍କର କୌଣସି ଉଦ୍ୟମ ନ ଥିଲା (ଯାହା ଉଦ୍ୟମ ଥିଲା ତାହା ଉପରଠାଉରିଆ ଓ ଆରୋପିତ, ତେଣୁ କଳାହୀନ) । କିନ୍ତୁ ଉପନ୍ୟାସର ଯଥାର୍ଥ ଚରିତ୍ର, ଘଟଣାବଳୀ ଓ ସବୋପରି ଉପଯୁକ୍ତ ଭାଷା ପାଇଁ ସେ ସର୍ବଦା ସଚେଷ୍ଟ ଥିଲେ । ଯଥାର୍ଥ ଗଭୀର ଦୃଷ୍ଟି, ବ୍ୟାପକ ମାନବିକ ସଂବେଦନା, କଳାକାରର ଆତ୍ମୀୟତା ଏବଂ ଭାଷାର ବିଶେଷ ସୃଜନାତ୍ମକ ପ୍ରୟୋଗ ପ୍ରେମଚନ୍ଦ୍ରଙ୍କର ବୈଶିଷ୍ଟ୍ୟ । ତାଙ୍କର ଉପନ୍ୟାସ ବ୍ୟକ୍ତିଗତ ସଂବେଦନା ଓ ସାମାଜିକ ଇତିହାସର କେବଳ ଏକ ମିଳନ ବିନ୍ଦୁ ନୁହେଁ, ମାତ୍ର ମିଳନର ଏକ ବିସ୍ତୃତ କ୍ଷେତ୍ର । ତାଙ୍କ ଉପନ୍ୟାସରେ ବ୍ୟକ୍ତି ବଡ଼ ନା ସମାଜ ବଡ଼—ସେ ବିଷୟରେ 'ହଁ' 'ନାହିଁ' କୌଣସି ସଠିକ ଉତ୍ତର ଦେବା ସମ୍ଭବ ନୁହେଁ । ଠିକ୍ ଯେଉଁ ବିନ୍ଦୁରେ ଗୋଟିଏ ଅନ୍ୟକୁ ଅତିକ୍ରମ କରେ, ସେଇଠି ତାଙ୍କ ଉପନ୍ୟାସ

ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରେ । ପ୍ରେମଚନ୍ଦ୍ରଙ୍କର ମନୋବିଜ୍ଞାନ ମଧ୍ୟ ସହଜ ଦୈନନ୍ଦିନ ବ୍ୟବହାର ଉପରେ ନିର୍ଭର କରେ । ତାଙ୍କ ପ୍ରାରମ୍ଭିକ ଉପନ୍ୟାସରେ ଏପରି ଏକପ୍ରକାର ଅପରାଜେୟ ସଂକଳ୍ପ ଓ ଅଦମ୍ୟ ବିଶ୍ୱାସର ସୂଚନା ମିଳେ, ଯାହାକୁ ସ୍ୱାଧୀନତା ଆନ୍ଦୋଳନର ପ୍ରଥମାବସ୍ଥାରେ ଆଶାବାଦ ଓ ବିଶ୍ୱାସର ପ୍ରତୀକରୂପେ ଗ୍ରହଣ କରାଯାଏ । କିନ୍ତୁ ୧୯୩୦ ପାଖାପାଖି ପହଞ୍ଚିଲାବେଳକୁ ରାଷ୍ଟ୍ରୀୟ ଆନ୍ଦୋଳନର ଅସଫଳତା ପ୍ରବୁଦ୍ଧ ଜନମାନସକୁ ଏପରି ଭାବରେ ପୀଡ଼ିତ କରିପକାଇଥିଲା ଯେ ଜଣେ ସଚ୍ଚୋଟ କଳାକାର ହିସାବରେ ପ୍ରେମ୍‌ଚନ୍ଦ୍ ତାହାକୁ ଖୁବ୍ ଦକ୍ଷତା ସହ ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ କରିପାରିଥିଲେ ।

୧୯୩୦ ବେଳକୁ ଦେଶର ରାଜନୀତି କ୍ଷେତ୍ରରେ ଯେଉଁ ପ୍ରକାର ପରାଜୟ, ବିଫଳତା ତଥା ନୈରାଶ୍ୟ ଦେଖାଦେଇଥିଲା ସେଥିରୁ ଏକ ନୂତନ ଶ୍ରେଣୀର ଲେଖକ ଜନ୍ମଲାଭ କରିଥିଲେ । ଊନବିଂଶ ଶତାବ୍ଦୀରେ ଯେଉଁ ମଧ୍ୟବିତ୍ତଶ୍ରେଣୀ ଜନ୍ମଲାଭ କରିଥିଲା, ତାହା କାଳକ୍ରମେ ନିଜର ସ୍ୱରୂପ ଓ ଭବିଷ୍ୟତ ବିଷୟରେ ସଚେତ ହୋଇ ଉଠିଥିଲା । ଏଣେ ଦେଶରେ ଶିକ୍ଷା, ବିଜ୍ଞାନ ଓ ବାଣିଜ୍ୟ-ବ୍ୟବସାୟର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ତେଣେ ବୌଦ୍ଧିକ ଚେତନା ଓ ବିଶେଷୀକରଣରେ ମଧ୍ୟ ଯଥେଷ୍ଟ ଅଭିବୃଦ୍ଧି ଘଟିଥିଲା । ମାର୍କସ୍, ଫ୍ରଏଡ୍ ଓ ଡାରଉଇନ୍ ମଧ୍ୟ ବାତାବରଣକୁ ଆହୁରି ସରଗରମ କରି ଦେଇଥିଲେ । ମନୁଷ୍ୟ ଯୁଗ-ଯୁଗ ଧରି ଯେଉଁ ଆଦର୍ଶ ନେଇ ଚାଲିଆସୁଥିଲା, ତାର ଭିତ୍ତିଭୂମିକୁ ସେମାନେ ଦୋହଲାଇ ଦେଇଥିଲେ । ଏହିପରି ଏକ ବୈଦ୍ୟୁତିକ ବାତାବରଣ ମଧ୍ୟରେ ବିଂଶ ଶତକର ନୂତନ ଶ୍ରେଣୀ ଗଢ଼ି ଉଠିଥିଲା । ଏକପକ୍ଷରେ ସେମାନଙ୍କ ଅନ୍ତରରେ ଯେପରି ବ୍ୟକ୍ତିବାଦୀ ଓ ସ୍ୱାଧୀନତାବାଦୀ ଦର୍ଶନ ସ୍ଥାନ ପାଇଥିଲା, ଅନ୍ୟପକ୍ଷରେ ସେମାନେ (ପ୍ରେମ କ୍ଷେତ୍ରରେ ହେଉ ବା ରାଜନୀତି କ୍ଷେତ୍ରରେ ହେଉ) ସବୁବେଳେ ଏକପ୍ରକାର ଅସଫଳତା ଅନୁଭବ କରୁଥିଲେ । ବିଗତର ନୂତନ ଆଲୋକରେ ନବୀନ ଲେଖକମାନେ ପାପ-ପୁଣ୍ୟ, ନୀତି-ଅନୀତି, ପ୍ରେମ ଓ କାମନା ପ୍ରଶ୍ନକୁ ଏକ ନୂତନ ଦୃଷ୍ଟିକୋଣରୁ ବିଗ୍ଭର କରୁଥିଲେ । ଏହି ଲେଖକମାନଙ୍କ ମଧ୍ୟରୁ କେତେକ ବ୍ୟାପକ ସମାଜରୁ ବିଚ୍ଛିନ୍ନ ବ୍ୟକ୍ତିର ମନର ଅତଳ ଗଭୀରତାକୁ ମାପିବା ପାଇଁ ଯେମିତି ଚେଷ୍ଟା କରୁଥିଲେ, ଆଉ କେତେକ ଆଶୁ ପରିବର୍ତ୍ତନଶୀଳ ତଥା ପରାଜୟ ଆଡ଼କୁ ଧାବମାନ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ଉପଭୋଗ କରିବାପାଇଁ ସେମିତି ଚେଷ୍ଟା କରୁଥିଲେ । ଜୀବନକୁ ଉପଭୋଗ କରିବାର ବ୍ୟାକୁଳତାରେ ଯେତେବେଳେ ପାପ-ପୁଣ୍ୟ ଓ ନୀତି-ଅନୀତିର ପ୍ରଶ୍ନ ସେମାନଙ୍କ ଆଗରେ ଦେଖାଦେଉଥିଲା, ସେତେବେଳେ ସେମାନେ ସବୁକିଛି ନଷ୍ଟ କରିଦେବା ଉଦ୍ଦେଶ୍ୟରେ ଏକ ଧ୍ୱଂସ ତଥା ସନ୍ଦେହବାଦୀ ଦର୍ଶନ ଗ୍ରହଣ

କରିବା ପାଇଁ ବାଧ୍ୟ ହେଉଥିଲେ ।

ଭଗବତୀଚରଣ ବର୍ମା ଏହି ଶତାବ୍ଦୀରେ ବାସ କରୁଥିବା ଲୋକମାନଙ୍କର ଜଣେ ଶ୍ରେଷ୍ଠ ପ୍ରତିନିଧି । ଭଗବତୀଚରଣ ସେହି ଯୁବକମାନଙ୍କର ପ୍ରତିନିଧି, ଯେଉଁମାନଙ୍କୁ ଜୀବନ ଏକପକ୍ଷରେ ତା'ର ଉଦ୍‌ବେଳ ଲହରୀରେ ଖେଳିବା ପାଇଁ ଆହ୍ୱାନ କରୁଛି ଓ ଅପର-ପକ୍ଷରେ ଯେଉଁମାନେ ଜୀବନର ବିଶାଳତାରେ ଅଭିଭୂତ ହୋଇ ନିଜର ବିନାଶ ନିଶ୍ଚିତ ଭାବରେ ଦେଖିପାରୁଛନ୍ତି । ଏହି ତରୁଣମାନଙ୍କର ନିଃସଙ୍ଗ ଆତ୍ମା କ୍ଷୁବ୍ଧ ହୋଇ ଅନୁଭବ କରୁଛି ଯେ ଦେଶ ଓ କାଳରେ ବିସ୍ତୃତ ଏହି ଉତ୍ତାଳ ଲହରୀ ତା ନିଜଠାରୁ ତେର୍ ବଡ଼ । ସାମାଜିକ ଜୀବନରେ ପରାସ୍ତ ବ୍ୟକ୍ତିର ବେଦନାର ମହିମା ଏ ଯୁଗର ସମସ୍ତ ସାହିତ୍ୟରେ କବିତାରୂପରେ ସ୍ଥାନ ପାଇଛି । ବଙ୍ଗଳାର ଶରଚ୍ଚନ୍ଦ୍ର, ହିନ୍ଦୀର ଜୈନେନ୍ଦ୍ର, ଇଲାଚନ୍ଦ୍ର ଯୋଶୀ କିମ୍ବା ଭଗବତୀଚରଣ ବର୍ମା କେହି ହେଲେ ସେହି ପ୍ରଭାବରୁ ରକ୍ଷା ପାଇ ପାରି-ନାହାନ୍ତି । କି ବଚ୍ଚନ, କି ଅଞ୍ଚଳ୍, କି ନରେନ୍ଦ୍ର ବର୍ମା ଏହା ହିଁ ସମସ୍ତଙ୍କର କବିତାର ଏକମାତ୍ର ପୃଷ୍ଠଭୂମି; କିନ୍ତୁ ଏତିକି ମନେରଖିବାକୁ ହେବ ଯେ ପରାଜୟର ଏହି ପରିବର୍ତ୍ତନ ମଧ୍ୟରେ ବିଦ୍ରୋହର ଏକ କ୍ଷୀଣ ସ୍ୱର ବରାବର ଶୁଣାଯାଉଛି, ଯଦିଓ ସେ ବିଦ୍ରୋହ ନିତାନ୍ତ ନିଷ୍ଫଳ ପରି ମନେହେଉଛି ।

ଏହି ପୃଷ୍ଠଭୂମିକୁ ଦୃଷ୍ଟିରେ ରଖି ଭଗବତୀଚରଣ ବର୍ମାଙ୍କର ଉପନ୍ୟାସ ଅଧ୍ୟୟନ କଲେ ତାଙ୍କ ଉପନ୍ୟାସଗୁଡ଼ିକର ଅର୍ଥ ଓ ଯୁକ୍ତିକତା ଅଧିକ ସ୍ପଷ୍ଟ ହୋଇଉଠେ । ତାଙ୍କର ତିନୋଟି ପ୍ରାଥମିକ ଉପନ୍ୟାସ 'ଚିତ୍ରଲେଖା', 'ତୀନ୍ ବର୍ଷ' ଓ 'ଟେଢ଼େ ମେଢ଼େ ରାସ୍ତେ'ର ଚରିତ୍ରଗୁଡ଼ିକ ବିଶିଷ୍ଟ ବ୍ୟକ୍ତିତ୍ୱରେ ମଣ୍ଡିତ ହୋଇ ମଧ୍ୟ କୌଣସି ନା କୌଣସି କ୍ଷେତ୍ରରେ ଅସଫଳ ପରି ମନେହୁଅନ୍ତି । ଚିତ୍ରଲେଖାରେ ଅତୀତର ପୃଷ୍ଠଭୂମିରେ ପାପ-ପୁଣ୍ୟର ଛବି ଅଙ୍କିତ ହୋଇଛି । 'ତୀନ୍ ବର୍ଷ' ଉପନ୍ୟାସରେ ବର୍ତ୍ତମାନ ସମାଜର ପ୍ରେମ, ବିବାହ ଓ କାମନାର ପ୍ରଶ୍ନ ଉଠିଛି ଓ 'ଟେଢ଼େ ମେଢ଼େ ରାସ୍ତେ'ରେ ସମସାମୟିକ ରାଜନୈତିକ ବିଶ୍ୱାସ ଉପରେ ସନ୍ଦେହର ପ୍ରଶ୍ନବାଚୀ ଦେଖାଦେଇଛି । କିନ୍ତୁ ସେ ସମସ୍ତ ଆଲୋଚନା ମଧ୍ୟରେ ଗୋଟିଏ ମାତ୍ର ସତ୍ୟ ବିବୃତ ଅଛି । ତାହା ହେଉଛି, 'ମନୁଷ୍ୟ ମାତ୍ରେ ପରିସ୍ଥିତିର ଦାସ । ସବୁଠି ଦେଖାଦେଉଛି ଯୁଗ-ଯୁଗ ଧରି ଚାଲିଆସିଥିବା ପରମ୍ପରା ପ୍ରତି କଠୋର ଆଘାତ । ଏ ଦୁନିଆରେ କେହି ପାପୀ ବା ପୁଣ୍ୟାତ୍ମା ନୁହେଁ, ବେଶ୍ୟା ବି କୁଳକନ୍ୟାଠାରୁ ଶ୍ରେୟସ୍କର ହୋଇପାରେ ଓ ସମସ୍ତ ରାଜନୈତିକ ବିଶ୍ୱାସ ମଧ୍ୟ ମିଥ୍ୟା ହୋଇପାରେ । ଏପ୍ରକାର ଦର୍ଶନ ସମସାମୟିକ ବ୍ୟକ୍ତିଙ୍କୁ ଶକ୍ତି ଯୋଗାଉଥିଲେ ମଧ୍ୟ ଏହାକୁ ଏକପ୍ରକାର କ୍ଷୟିଷ୍ଣୁ ଜୀବନଦର୍ଶନ କୁହାଯାଇପାରେ । ୧୯୫୭ ମସିହାରେ ପ୍ରକାଶିତ 'ଭୂଲେ ବିସ୍‌ରେ ଚିତ୍ର'ରେ ଜ୍ୱାଲାପ୍ରସାଦ ମଧ୍ୟ ଏହିପରି କିଛି ତାଙ୍କ ମନକୁ

ହାଲୁକା କରୁଥିଲେ । ସେ କହୁଥିଲେ, "ମନୁଷ୍ୟ ହାତରେ କିଛି ନାହିଁ, ବିଲ୍‌କୁଲ୍‌ କିଛି ନାହିଁ; ତେଣୁ ଚିନ୍ତାକରି ଲାଭ କ'ଣ ? ଯାହା ହେବାର ଥିଲା ତା ହୋଇଯାଇଛି । ତାକୁ କେହି ବନ୍ଦ କରିପାରିବେ ନାହିଁ ।"

କେତେକ ଦୃଷ୍ଟିରୁ ଭଗବତୀବାବୁ ତାଙ୍କର ସମସାମୟିକ ଔପନ୍ୟାସିକମାନଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନର ଅଧିକାରୀ ହୋଇପାରିଛନ୍ତି । ଜୈନେନ୍ଦ୍ର କିମ୍ବା ଇଲାଚନ୍ଦ୍ର ଯୋଶୀ ବ୍ୟକ୍ତିମନର ବିଶ୍ଳେଷଣରେ ବ୍ୟସ୍ତ ଥିବାବେଳେ ଭଗବତୀଚରଣ ସାମାଜିକ ଯାଥାର୍ଥ୍ୟ ବିଗ୍ରହରେ ଲାଗିରହିଥିଲେ । ତାଙ୍କ ଚିନ୍ତନର ପୃଷ୍ଠଭୂମି ପ୍ରେମ୍‌ଚନ୍ଦ୍‌ଙ୍କ ପରି ସୁଦୂର-ପ୍ରସାରୀ ନ ହେଲେ ମଧ୍ୟ ମଧ୍ୟମଶ୍ରେଣୀ ଲୋକମାନଙ୍କ ମଧ୍ୟରେ ଘଟଣାଓଟିରୀ ଓ ସେମାନଙ୍କର କ୍ରିୟା-ପ୍ରତିକ୍ରିୟା ନେଇ ନାନା ସମସ୍ୟାରେ ତାଙ୍କର ଉପନ୍ୟାସଗୁଡ଼ିକ ପୂର୍ଣ୍ଣ । ସେଗୁଡ଼ିକ ସାଧାରଣତଃ ପରିବାର-କେନ୍ଦ୍ରିତ । ଏହି ଦୃଷ୍ଟିରୁ ବିଚାର କଲେ ସେ ପ୍ରେମ୍‌ଚନ୍ଦ୍‌ଙ୍କ ପରମ୍ପରାର ନିକଟତର ମନେ ହୁଅନ୍ତି । ତାଛଡ଼ା ସମକାଳୀନ ଅନ୍ୟାନ୍ୟ ଔପନ୍ୟାସିକମାନଙ୍କ ଅପେକ୍ଷା ତାଙ୍କର କାହାଣୀ ରଚନାର ଢଙ୍ଗ ଅଧିକାଂଶରେ ପ୍ରେମ୍‌ଚନ୍ଦ୍‌ଙ୍କ ପରି ମନେହୁଏ । ଆଉ ଗୋଟିଏ ଦେଖିବାର କଥା ଯେ ଅନ୍ୟ ଔପନ୍ୟାସିକମାନେ ସେମାନଙ୍କ ରଚନାରେ ଦର୍ଶନ ଓ ଦୀର୍ଘ ଆଲୋଚନାକୁ ଯେମିତି ସ୍ଥାନ ଦିଅନ୍ତି, ବର୍ମା ସେପରି କରନ୍ତି ନାହିଁ । ବୋଧହୁଏ ସେ ଯେଉଁପ୍ରକାର ଦର୍ଶନ ଗ୍ରହଣ କରିଛନ୍ତି, ସେଥିରେ ତାଙ୍କର ଉପନ୍ୟାସ ସ୍ୱଭାବତଃ ଘଟଣାବହୁଳ ହୋଇପଡ଼ିଛି ।

ପ୍ରଥମେ କୁହାଯାଇଥିବା ତିନୋଟି ଉପନ୍ୟାସ ରଚନା ପରେ ଭଗବତୀବାବୁଙ୍କ ରଚନାକୌଶଳରେ କେତେକାଂଶରେ ଅଧୋଗତି ଦେଖାଦେଇଛି । ତାଙ୍କ ରଚିତ 'ଆଖିର ଦାଁବ' ଏକ ଦୁର୍ବଳ ଉପନ୍ୟାସ; କିନ୍ତୁ ପରେ 'ଭୂଲେ ବିସ୍‌ରେ ଚିତ୍ର' ଓ 'ସାମର୍ଥ୍ୟ ଔର ସୀମା' ଉପନ୍ୟାସରେ ତାଙ୍କର ଶକ୍ତି ଓ ରଚନାକୌଶଳ ବେଶ୍‌ ସ୍ପଷ୍ଟ ହୋଇଉଠିଛି । 'ଭୂଲେ ବିସ୍‌ରେ ଚିତ୍ର' ପାଇଁ ତ 'ସାହିତ୍ୟ ଏକାଡେମୀ' ଓ 'ହିନ୍ଦୁସ୍ତାନୀ ଏକାଡେମୀ'ରୁ ସର୍ବଶ୍ରେଷ୍ଠ ପୁରସ୍କାର ପାଇସାରିଛନ୍ତି ।

ମୂଳତଃ 'ଭୂଲେ ବିସ୍‌ରେ ଚିତ୍ର' ୭୦୦-୭୫୦ ପୃଷ୍ଠାର ଏକ ବିରାଟ ଉପନ୍ୟାସ । ଏହା ତାହାର ଏକ ସଂକ୍ଷିପ୍ତ ସଂସ୍କରଣ । ମୂଳକଥାକୁ ଅକ୍ଷୁଣ୍ଣ ରଖି ଏହାକୁ ସଂକ୍ଷିପ୍ତ କରାଯାଇଛି । ଯଦିଓ ସଂକ୍ଷିପ୍ତ କରିବା ଫଳରେ କେତେକ ସୁନ୍ଦର ଅଂଶ ଓ ଜୀବନର କେତେକ ବୈଚିତ୍ର୍ୟ କ୍ଷୁଣ୍ଣ ହୋଇଛି ବୋଲି କୁହାଯାଉଛି; ତଥାପି ଏ କଥା ସତ୍ୟ ଯେ ସଂକ୍ଷିପ୍ତି ଦ୍ୱାରା ଉପନ୍ୟାସଟି ଅଧିକ ସ୍ପଷ୍ଟ, ସୁଗଠିତ ଓ କଳାତ୍ମକ ହୋଇପାରିଛି ।

ଏଥିରେ ଗୋଟିଏ ପରିବାରର ଚାରିପୁରୁଷ ଦେଖାଇ ଦିଆଯାଇଛି ଓ ସମସାମୟିକ ପରିସ୍ଥିତିର ସଂଘର୍ଷରେ ସେମାନଙ୍କର ଅନେକ ଉତ୍‌ଥାନ ପତନ ଘଟିଛି । ସେହି ସମାଜ

ଓ ସେହି ପରିବାର ଏବେ ଲୁପ୍ତ ହୋଇ ଇତିହାସରେ ପରିଣତ ହୋଇଗଲେଣି । ଏପରି ଉପନ୍ୟାସକୁ ଏକପ୍ରକାର 'ପିରିଅଡ୍ ନଭେଲ୍' କୁହାଯାଇପାରେ । ବିଷୟର ଘଟଣାକାଳ ୧୮୮୦ଠାରୁ ୧୯୩୦ ମଧ୍ୟରେ ବିସ୍ତୃତ । ଏହି ପଚାଶ ବର୍ଷ ଭିତରେ ଘଟିତ ଭାରତୀୟ ରାଜନୈତିକ ଘଟଣାବଳୀ ଦୃଷ୍ଟିରୁ ବିଷୟବସ୍ତୁର ବିନ୍ୟାସ କରାଯାଇଛି । କଥାବସ୍ତୁର ଐତିହାସିକତା ରକ୍ଷା କରିବାପାଇଁ ବୋଧହୁଏ ବର୍ମାଜୀ ତାହାକୁ ୧୯୩୦ ମଧ୍ୟରେ ସୀମାବଦ୍ଧ ରଖିଛନ୍ତି; କାରଣ ତା ପରକାଳରେ ଯାହା ସବୁ ଘଟିଲା, ସେ ନିଜେ ସେଥିରେ ଭୁକ୍ତଭୋଗୀ ଥିଲେ । ମନେରଖିବା କଥା, ଯେ ବର୍ମାଜୀଙ୍କ ଏହି ରଚନା ପ୍ରାୟ ୧୯୩୦ ପାଖାପାଖି ଆରମ୍ଭ ହୋଇଥିଲା । ଏ କଥା ମଧ୍ୟ କୁହାଯାଇପାରେ ଯେ 'ନବଲ' ବର୍ମାଜୀଙ୍କ ପୁରୁଷର ପ୍ରକୃତ ପ୍ରତୀକ । ତାହାଙ୍କୁ ସଂଘର୍ଷ ଭୂମିରେ ଠିଆକରାଇଦେଇ ଉପନ୍ୟାସକାର ନିବୃତ୍ତ ହୋଇଯାଇଛନ୍ତି ଓ ନିଜର ନିଷ୍ପତ୍ତି ଦେବାପାଇଁ ସେ ଇଚ୍ଛା କରିନାହାନ୍ତି ।

ଏହି ଉପନ୍ୟାସର ଗୁଟିଏ ମୂଳକଥା ଅଛି : ଏକାନ୍ନବର୍ତ୍ତୀ ପରିବାରର ଅବସାନ, ମଧ୍ୟମଶ୍ରେଣୀର ଅଭ୍ୟୁତ୍ଥାନ, ପୁଞ୍ଜିବାଦଦ୍ୱାରା ସାମନ୍ତବାଦର ପରାଜୟ ଓ ରାଷ୍ଟ୍ରୀୟ ସ୍ୱାଧୀନତା ଆନ୍ଦୋଳନର ବିକାଶ । ଏହି ଗୁଟିଏ କଥା ନେଇ ସମଗ୍ର ଉପନ୍ୟାସଟି ଗଠିତ । ଏହି ଗୁଟିଏ କଥାର କ୍ରିୟା-ପ୍ରତିକ୍ରିୟା ନେଇ ଉପନ୍ୟାସଟିର ସମସ୍ତ ଅନ୍ତର୍ନିହିତ ଯୋଜନା । ପ୍ରଥମ ପୁରୁଷର ପ୍ରତୀକ ହେଉଛନ୍ତି ମୁନ୍‌ସି ଶିବଲାଲ, ସେ କଚେରୀ ବାହାରେ ବସି ନକ୍‌ସିଆ କାମ କରନ୍ତି; କିନ୍ତୁ ତାଙ୍କ ଇଂରେଜୀ ପାଠୁଆ ପୁଅ ଇଂରେଜ କଲେକ୍‌ଟରଙ୍କ ଦୟାରୁ ନାଏବ ତହସିଲଦାର ହୁଅନ୍ତି । ଇଏ ହେଲା ମଧ୍ୟମଶ୍ରେଣୀର ଉତ୍ଥାନର ପ୍ରଥମ ପ୍ରକ୍ରିୟା । ମୁନ୍‌ସି ଶିବଲାଲଙ୍କ ଏକାନ୍ନବର୍ତ୍ତୀ ପରିବାର ଉପରେ ଏହି ଘଟଣାର ପ୍ରଭାବ ପଡ଼େ । ଏକାନ୍ନବର୍ତ୍ତୀ ପରିବାରରୁ ଗୋଡ଼ କାଢ଼ି ପୁଅ ସଙ୍ଗେ ବୋହୂ ବାହାରକୁ ଯିବା ଏଇ ପ୍ରଥମ । ତାଛଡ଼ା ଶିବଲାଲଙ୍କ ଭାଇ ରାଧେଲାଲଙ୍କ ସବୁ ଚେଷ୍ଟା ସତ୍ତ୍ୱେ ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗିପଡ଼ିଲା । ଏହି ସମସ୍ୟା ପୁଣି ଭବିଷ୍ୟତରେ କାଳେ ଦେଖାଦେଇପାରେ ସେଥିପାଇଁ ଔପନ୍ୟାସିକ ଜ୍ୱାଲାପ୍ରସାଦ, ଗଙ୍ଗାପ୍ରସାଦ ଓ ନବଲ ପ୍ରତ୍ୟେକଙ୍କୁ ନିଜ ବାପମା'ଙ୍କର ଏକମାତ୍ର ପୁତ୍ରଭାବରେ ଦେଖାଇଛନ୍ତି ।

ଭୂମିକା ଭାଗରେ ଆମେ କହିସାରିଛୁ ଯେ ୧୯୩୦ ପାଖାପାଖି ପହଞ୍ଚିଲାବେଳକୁ ମଧ୍ୟବିତ୍ତ-ଶ୍ରେଣୀର ଲୋକେ ସଙ୍କଟର ସମ୍ମୁଖୀନ ହୋଇସାରିଥିଲେ । ଏହି ଲୋକମାନେ ପ୍ରଥମେ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ବାହୁଚ୍ଛାୟାତଳେ ଗଢ଼ିଉଠିଥିଲେ । କିନ୍ତୁ କାଳକ୍ରମେ ଆର୍ଥିକ ଅନଟନର ବଶବର୍ତ୍ତୀ ହୋଇ ସେମାନେ ମଧ୍ୟ ସାମ୍ରାଜ୍ୟବାଦରୁ ମୁକ୍ତିଲାଭ କରିବା ପାଇଁ ଚେଷ୍ଟିତ ହେଲେ । "ଭୁଲେ ବିସ୍‌ରେ ଚିତ୍ର'ରେ ଏହା ହିଁ ଚିତ୍ରିତ ହୋଇଛି । ଜ୍ୱାଲାପ୍ରସାଦ ଓ ଗଙ୍ଗାପ୍ରସାଦ ଏହିପରି ମଧ୍ୟବିତ୍ତ ତଥା ଚାକିରିଆକୁଳର ପ୍ରତୀକ । ଗଙ୍ଗାପ୍ରସାଦ

ସେ କଲେକ୍ଟର ହୋଇଗଲେ, ତାହା ମଧ୍ୟବିତ୍ତଶ୍ରେଣୀର ଚରମ ଉନ୍ନତିର ନିଦର୍ଶନ । କିନ୍ତୁ ତାଙ୍କର ହଠାତ୍ ମୃତ୍ୟୁ ହୋଇଯିବା ଫଳରେ ନବଲ ପୁଣି ଜେଜେବାପାଙ୍କ ଅବସ୍ଥାକୁ ଫେରି ଆସିପାରୁ ନାହିଁ । ଫଳରେ ତାର ଆତ୍ମା କାହାର ଦୟା ସ୍ୱୀକାର କରିବାକୁ ରାଜି ହେଉନାହିଁ; ବରଂ ଜୀବନର ଜୁଆରରେ ବହିଯିବାପାଇଁ ସେ ପୂର୍ଣ୍ଣପ୍ରାଣରେ ସତ୍ୟାଗ୍ରହ-ସଂଗ୍ରାମ ଭିତରକୁ ଡେଇଁପଡ଼ୁଛି । ବାସ୍ତବରେ ଚତୁର୍ଥ ପୁରୁଷରେ ନବଲଠାରେ ହିଁ ଏହି ଶ୍ରେଣୀର ଲୋକମାନଙ୍କର ଚରିତ୍ର ଓ ବୁଦ୍ଧି ନିର୍ଦ୍ଦେଶ ସ୍ପଷ୍ଟଭାବରେ ରୂପଗ୍ରହଣ କରିଛି । ଏହି ସମସ୍ତଙ୍କୁ ମିଳାଇ ଗୋଟିଏ ପରିବାରର ଚାରି ପୁରୁଷ ମାଧ୍ୟମରେ ଉପନ୍ୟାସଟି ସଫଳତା ଲାଭ କରିଛି ।

ଉପନ୍ୟାସର କଥାବସ୍ତୁର ପ୍ରଥମ ଭାଗରେ ଆଉ ଏକ କଥା ସ୍ପଷ୍ଟ ଦେଖାଯାଏ; ଯଥା—ସାମନ୍ତବାଦ ବନାମ ପୁଞ୍ଜିବାଦ । ଘାଟମପୁର ତହସିଲରେ ନାଏବ ତହସିଲଦାର ପହଞ୍ଚିଲମାତ୍ରେ ଠାକୁର ଗଜରାଜସିଂହ, ଠାକୁର ବରଜୋରସିଂହ ଏବଂ ଲାଲା ପ୍ରଭୁ-ଦୟାଳଙ୍କ ମଧ୍ୟରେ ସଂଘର୍ଷ ଦେଖାଯାଏ । ମାମୁଲି ବଣିଥିଲା ପ୍ରଭୁଦୟାଳ ଧୀରେ ଧୀରେ କୁଳାଭିମାନ ଓ ପୁରୁଣା ସାମନ୍ତବାଦୀ ଅଭିମାନରେ ମସ୍ତ ହୋଇ ଠାକୁର ଗଜରାଜସିଂହ ଓ ବରଜୋରସିଂହଙ୍କୁ ଅନ୍ୟମାନଙ୍କ ସାମନାରେ ନୀଚ ପ୍ରମାଣିତ କରିବାପାଇଁ ଚେଷ୍ଟା କରନ୍ତି । ନିଜ କାମ ହାସଲ କରିବା କୌଶଳ ତାଙ୍କୁ ବେଶ୍ ଜଣା । ସେ ଜାଣନ୍ତି ଯେ ସରକାରୀ ଚାକିରିଆ ଲୋକଙ୍କୁ ହାତରେ ରଖିବା ନିତାନ୍ତ ଦରକାର । ତେଣୁ ସରକାରୀ ଚାକିରିର ପ୍ରତୀକ ଜ୍ୱାଲାପ୍ରସାଦ ନ୍ୟାୟ ଓ ଆଇନ ନାମରେ ଅନିଚ୍ଛାସତ୍ତ୍ୱେ ତାଙ୍କୁ ସହାୟତା କରନ୍ତି । ଏହିପରି ସରକାରୀ ଚାକିରିଆ ଓ ପୁଞ୍ଜିବାଦୀଙ୍କର ସଙ୍ଗଠନରେ ସାମନ୍ତବାଦର ଐତିହାସିକ ପରାଜୟକୁ ଚିତ୍ରିତ କରିବାପାଇଁ ଲେଖକ ଚେଷ୍ଟା କରିଛନ୍ତି । ଏହି ପୁଞ୍ଜିବାଦ ଅସହଯୋଗ ଆନ୍ଦୋଳନକୁ ସାହାଯ୍ୟ କରେ; କାରଣ ଏହି ଅସହଯୋଗ ଆନ୍ଦୋଳନ ସାହାଯ୍ୟରେ ସେ ବିଦେଶୀ ପୁଞ୍ଜିବାଦ ବିରୁଦ୍ଧରେ ନିଜର ଆସନ ଦୃଢ଼ କରିବାକୁ ଚେଷ୍ଟା କରେ । କିନ୍ତୁ ନିଜର ସ୍ୱାର୍ଥ ହାସଲ ହୋଇଯିବା ପରେ ସେ ପୁଣି ମୁହଁମୋଡ଼ି ଚାଲିଯାଏ । ଏହି ପୁଞ୍ଜିବାଦ ବିଦେଶୀ ସାମ୍ରାଜ୍ୟବାଦକୁ ସାହାଯ୍ୟ କରି ସେହି ସାହାଯ୍ୟ ବଦଳରେ ସାର୍ ଉପାଧି ଲାଭ କରି ସମାଜରେ ଆଭିଜାତ୍ୟପୂର୍ଣ୍ଣ ଉଚ୍ଚ ଆସନ ଦାବି କରେ । ପରର ସମ୍ପଦକୁ ଅସାଧୁ ଭାବରେ ହଜମ କରିବାପାଇଁ ସେ ତିଳେମାତ୍ର କୁଣ୍ଠାବୋଧ କରେ ନାହିଁ; ଏପରିକି ଅର୍ଥପାଇଁ ମୃତ୍ୟୁଶଯ୍ୟାରେ ପଡ଼ିଥିବା ମା' ପ୍ରତି ସେ କଟୁବାକ୍ୟ ପ୍ରୟୋଗ କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ଜ୍ଞାନପ୍ରକାଶ ଯେଉଁ ଟିପ୍ପଣୀ ଦେଇଥିଲେ ତାହା ପୁଞ୍ଜିବାଦର ସ୍ୱରୂପର ଏକ ପ୍ରକୃତ ବ୍ୟାଖ୍ୟା । ସେ କହିଥିଲେ, "କିନ୍ତୁ ଗଙ୍ଗା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହି ପୁଞ୍ଜିପତି ଖୁବ୍ ଲାଭ

ଉଠାଉଛି ଓ ସରକାରଙ୍କଠାରୁ ସୁବିଧା ପାଇବାପାଇଁ ସେହି ଲାଭରୁ ସରକାରଙ୍କୁ ଅଳ୍ପ କିଛି ଦେଇଦେଉଛି । ସେହି ଲାଭରୁ ସେ କିଛି ଅଂଶ କଂଗ୍ରେସକୁ ମଧ୍ୟ ଦେଉଛି; କାରଣ ସ୍ୱଦେଶୀ ଆନ୍ଦୋଳନ ଜୋରସୋରରେ ଚାଲିଲେ ନିଜର ଜିନିଷ ସହଜରେ ବିକ୍ରି ହୋଇ ପାରିବ । ଏହି ଲାଭରୁ କିଛି ଅଂଶ ଜଏଣ୍ଟ ମାଜିଷ୍ଟ୍ରେଟ ଗଙ୍ଗାପ୍ରସାଦଙ୍କୁ ଦେଇଦେଲେ ଲକ୍ଷ୍ମୀଚାନ୍ଦ ଯାହା ଚୋରି, ଡକେଇତି ଓ ବେଇମାନି ଇତ୍ୟାଦି କରିବେ, ସରକାରୀ ଅଫିସରମାନେ ତାହା ଦେଖି ନ ଦେଖିଲାପରି ଆଖି ବନ୍ଦ କରି ରହିଯିବେ । ପଇସା ଏ ଯୁଗରେ ସବୁଠାରୁ ବେଶୀ ଦରକାର ।"

ଅର୍ଥ-ବ୍ୟବସ୍ଥା କଥା ବିଚାର କଲେ ଆପେ ଆପେ ରାଜନୀତିର ପ୍ରଶ୍ନ ଉଠେ । ଉପନ୍ୟାସର ଦ୍ୱିତୀୟ ଭାଗରେ ରାଜନୈତିକ ପରିସ୍ଥିତିର ଚିତ୍ରଣ ପ୍ରଧାନତା ଲାଭ କରିଛି । ଏହି ଖଣ୍ଡର ପୂର୍ବ ଅଧ୍ୟାୟରେ ବିଦେଶୀ ଶାସନ, ତା'ର ପ୍ରଭାବ, ସାମ୍ପ୍ରଦାୟିକତା ଓ ଜାତୀୟତା ଆଦି ବିଷୟରେ ବିଶେଷ ଆଲୋଚନା ହୋଇସାରିଛି । ପୁଣି ରାଉଲାଟ୍ ଆକ୍ଟ, ଅସହଯୋଗ ଆନ୍ଦୋଳନ, ଚୌରୀଚୌରା କାଣ୍ଡ, ସାମ୍ପ୍ରଦାୟିକ ଝଗଡ଼ା, ହରତାଳ, ଦାଣ୍ଡୀଯାତ୍ରା ଓ ଲବଣ ସତ୍ୟାଗ୍ରହ ଆଦି ସବୁକଥା ଦେଖାଇ ଦିଆଯାଇଛି । ଏହି ରାଜନୈତିକ କଥାବସ୍ତୁରେ ହିଁ ଉପନ୍ୟାସର ସମାପ୍ତି ଘଟିଛି ।

ପ୍ରସ୍ତୁତ ଉପନ୍ୟାସରେ ଯେଉଁ ଯେଉଁ ବିଷୟ ଚର୍ଚ୍ଚା କରାଯାଇଛି, ସେଗୁଡ଼ିକ ପରସ୍ପରଠାରୁ ଭିନ୍ନ ନୁହନ୍ତି; ବରଂ ଗୋଟିଏ ଅନ୍ୟ ଉପରେ ବରାବର ଆଶ୍ରୟ କରି ରହିଛି, ଗୋଟିଏ ଅନ୍ୟଠାରୁ ଉତ୍ପନ୍ନ ହୋଇଛି । ପ୍ରକୃତରେ ବିଭିନ୍ନ ବିଭାଗର ମୂଳକଥାକୁ ବିଚାର କଲେ ଦେଖାଯିବ ଯେ ପୁରୁଣା ଦୁନିଆରେ ମୂଲ୍ୟବୋଧ ଓ ବିଶ୍ୱାସକୁ ହଟାଇଦେଇ ତାହାର ସ୍ଥାନରେ ନବାଗତ ଦୁନିଆର ମୂଲ୍ୟବୋଧକୁ ଦେଖାଇବା ଏହି ଉପନ୍ୟାସର ମୂଳକଥା । ସାମନ୍ତବାଦୀ କୁଳୀନତା ଓ ଆଭିଜାତ୍ୟର ମୂଲ୍ୟବୋଧ ବିରୁଦ୍ଧରେ ପୁଞ୍ଜିବାଦକୁ ସମର୍ଥନ କରି ଜ୍ୱାଲାପ୍ରସାଦ କହନ୍ତି, "ବାପା, ଇଏ ବର୍ତ୍ତମାନ ନୂଆ ଦୁନିଆ । ଏଥିରେ ନିଜେ କ'ଣ କିଏ ବଢ଼େଇ କାମ କରୁଛି । ସେ ତ କାଠର କାରଖାନା ଖୋଲିବ; ସେଥିରେ ଶହ ଶହ ବଢ଼େଇ ଆସି କାମ କରିବେ । ମେସିନ୍ ସାହାଯ୍ୟରେ କାମ ହେବ ଓ ବଢ଼ିଆ ବଢ଼ିଆ ଜିନିଷ ତିଆରି ହେବ । ଲକ୍ଷ ଲକ୍ଷ ଟଙ୍କାର କାମ ହେବ । ନୂଆ ଦୁନିଆର ରୂପ ନୂଆ ହେବ ।" ମୁନ୍‌ସି ଶିବଲାଲ ତ ଏଥିରୁ କିଛି ବୁଝି ପାରୁ ନଥିଲେ; କିନ୍ତୁ ନିଜ ପୁଅ ଯେତେବେଳେ କହୁଛି ଓ ସେ ଯେତେବେଳେ ଜଣେ ନବଯୁଗର ଯୁବକ, ତା କଥା ନ ମାନିବାକୁ ତାଙ୍କର ଚାରା ନ ଥିଲା । ପୁଞ୍ଜିପତି ଲକ୍ଷ୍ମୀଚାନ୍ଦ ଓ ମଧ୍ୟବିତ୍ତ ଚାକିରିଆ ଜ୍ୱାଲାପ୍ରସାଦ ନୂତନ ଯୁଗର ଲୋକ । ଏହିପ୍ରକାର ନୂତନତା ମଧ୍ୟବିତ୍ତ ପରିବାର ଭିତରେ ପ୍ରବେଶ କରିବାପାଇଁ ଆରମ୍ଭ କରିଥିଲା—"ଶିବଲାଲ୍ ଭାବିଲେ, ଶକ୍ତି

ଓ କ୍ଷମତା ନିଜର ସ୍ଥାନ ବଦଳାଇ ଦେଇଛନ୍ତି, ସେମାନେ ଗୋଟିଏ ଜାଗାରୁ ଯାଇ ଆଉ ଗୋଟିଏ ଜାଗାରେ ରହିଲେଣି । ପରମ୍ପରା ମଧ୍ୟ ଭାଙ୍ଗି ପଡ଼ିଗଲାଣି ।''

କିନ୍ତୁ ଜ୍ୱାଲାପ୍ରସାଦଙ୍କର ଦୁନିଆ ବି ବଦଳିଯାଉଛି, ସେ ବି ପଛରେ ପଡ଼ିଯାଉଛନ୍ତି । ଡେପୁଟୀ କଲେକ୍‌ଟର ସୋମେଶ୍ୱର ଦତ୍ତ ଗଙ୍ଗାପ୍ରସାଦଙ୍କ ବିଷୟରେ କହନ୍ତି, "ଦେଖନ୍ତୁ ମୀର୍‌ସାହେବ, ସେ ଯେ ଜଣେ ଖୁବ୍‌ ହୃଦୟବାନ ସାହସୀ ଲୋକ, ଏ କଥା ଆପଣଙ୍କୁ ନିଶ୍ଚୟ ସ୍ୱୀକାର କରିବାକୁ ହେବ ।'' ସେ ନୂତନ ଯୁଗର ଲୋକ, ଏହି ନୂଆ ଦୁନିଆରେ ସେ ନିଶ୍ଚୟ ଆଗେଇଯିବେ । ନୂତନ ଯୁଗର ଲୋକଙ୍କର ଲକ୍ଷଣ ହେଉଛି ସେମାନେ ଖୁବ୍‌ ସାହସୀ, ସେମାନେ କେବେ ଖୁସାମଦ କରନ୍ତି ନାହିଁ । ସେମାନେ ଇଂରେଜ ଲୋକମାନଙ୍କ ସହିତ ବି ନିଜର ସମାନସ୍କନ୍ଧ ପରି ବ୍ୟବହାର କରନ୍ତି; ସେମାନଙ୍କର ଭିତର ବାହାର ସମାନ । ମଧ୍ୟବିତ୍ତ ଲୋକେ ବର୍ତ୍ତମାନ ଏତେ ଶକ୍ତିଶାଳୀ ହୋଇଉଠିଛନ୍ତି ଯେ ସେମାନେ ନିଜ ଆତ୍ମବିଶ୍ୱାସ ନେଇ ନିଶ୍ଚୟ ଆଗେଇଯିବେ । କିନ୍ତୁ ନିଜର ସୁଖ-ସୁବିଧା ଓ ଚାକିରି-ବାକିରିର ପ୍ରଶ୍ନ ଉଠିଲେ ସେମାନେ ଆତ୍ମବିଶ୍ୱାସ ହରାଇ ବସୁଛନ୍ତି, ଭିତରର ଭୟରେ ସେମାନଙ୍କର ଆତ୍ମବିଶ୍ୱାସ ଭାଙ୍ଗି ପଡ଼ୁଛି ! ଅସହଯୋଗ ଆନ୍ଦୋଳନ ପ୍ରତି ମମତା ଥିଲେ ମଧ୍ୟ ଅପମାନିତ ଗଙ୍ଗାପ୍ରସାଦ ଚାକିରି ଛାଡ଼ିବାକୁ ନାରାଜ । ଏପ୍ରକାର ସାହସ ତାଙ୍କର ପରପୁରୁଷରେ ଦେଖା ଦେବାପାଇଁ ବାକି ରହିଥିଲା । ରୋଗାକ୍ରାନ୍ତ ପିତାଙ୍କର ସେବାରେ ବ୍ୟସ୍ତ, ଭୁବାଲିଯାତ୍ରା ପାଇଁ ପ୍ରସ୍ତୁତ ପୁଅ ନବଲକୁ ଗଙ୍ଗାପ୍ରସାଦ ଦେଖି ଭାବୁଥିଲେ—ଆତ୍ମବିଶ୍ୱାସରେ ବଳୀୟାନ ତାଙ୍କର ସମର୍ଥ ପୁଅ ନବଲ ପ୍ରକୃତରେ ଆଗାମୀ ଯୁଗର ପ୍ରତୀକ । ନବୀନ ଯୁଗର ଏହି ପ୍ରତୀକ ନାରୀ ସ୍ୱାଧୀନତାରେ ବିଶ୍ୱାସ କରନ୍ତି ଓ ସ୍ତ୍ରୀଲୋକମାନଙ୍କର ଚାକିରି କରିବା ପ୍ରଶ୍ନକୁ ନୂତନ ଯୁଗର ଲୋକେ ଉଚିତ ଦୃଷ୍ଟିରେ ଦେଖିପାରିବେ ବୋଲି ସେ ବିଶ୍ୱାସ କରନ୍ତି । ସେ ଓକିଲାତି କରିବାପାଇଁ ଅନିଚ୍ଛୁକ; କାରଣ ଓକିଲାତି ପାଇଁ ଯେଉଁ ଜାଲିଜୁଆଚୋରି, ଖଚ, ମିଛ ଓ ଖୁସାମଦ ଇତ୍ୟାଦି ଦରକାର ସେସବୁ ତାଙ୍କ ହାତରେ ହେବ ନାହିଁ । ସେ କହନ୍ତି, "ମୁଁ ହତାଶ ହୋଇ ଜେଲ୍‌ ଯାଉନାହିଁ; ବରଂ ମୁଁ ଯେଉଁ ମାର୍ଗ ସ୍ୱୀକାର କରିଛି, ତା'ର ଫଳ ଯନ୍ତ୍ରଣା ଛଡ଼ା ଆଉ କିଛି ହୋଇପାରେନା—ତା'ର ଫଳ କେବଳ ସଂଘର୍ଷ; ସଂଘର୍ଷ ଛଡ଼ା ଆଉ କିଛି ନୁହେଁ । ସେହି ସଂଘର୍ଷ ହିଁ ମୋର ଅନ୍ତରର ଆହ୍ୱାନ ।'' ଅବଶ୍ୟ ସେ ଜାଣିଛନ୍ତି ଯେ ସେ ଯେଉଁ ନବୀନ ଯୁଗ ନିର୍ମାଣ କରିବାକୁ ଯାଉଛନ୍ତି, ସେଥିପାଇଁ ତାଙ୍କୁ ବହୁତ ମୂଲ୍ୟ ଦେବାକୁ ପଡ଼ୁଛି—"ଯେତେ ପୁରୁଣା କଥା, ସେସବୁକୁ ବଡ଼ ନିଷ୍ଠୁରତା ସହିତ ଭାଙ୍ଗିବାକୁ ପଡ଼ୁଛି ।''

ଦୁନିଆ ଯେ କେତେ ଶୀଘ୍ର ବଦଳୁଛି, ତାର ଆଉ ଅଧିକ ଦୃଷ୍ଟାନ୍ତ କ'ଣ ହୋଇ

ପାରନ୍ତି ? ଉପନ୍ୟାସର ଆରମ୍ଭରେ ଯେଉଁ ଜ୍ୱାଲାପ୍ରସାଦଙ୍କୁ ନୂତନ ଯୁଗର ଲୋକ ବୋଲି କୁହାଯାଇଛି, ମାତ୍ର ପଚ୍ଚିଶ ବର୍ଷପରେ ସେହି ଜ୍ୱାଲାପ୍ରସାଦ ନୂଆ ଦୁନିଆ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇ କହୁଛନ୍ତି, "ଭିକ୍ଷୁ, ଏସବୁ କ'ଣ ଘଟୁଛି ଓ କାହିଁକି ଘଟୁଛି କିଛି ଜଣାପଡ଼ୁନାହିଁ ।" ନାନାପ୍ରକାର ଛବି ଆପେ ତିଆରି ହୋଇଯାଉଛି, ପୁଣି ଆପେ ଆପେ ଲିଭିଯାଉଛି ! କଥା କ'ଣ ?" ତା'ପରେ ଲେଖକଙ୍କର ଏହିପରି ଟିପ୍ପଣୀରେ ଲେଖା ଶେଷ ହୋଇଛି ।

"ଦୁଇ ଜଣ ବୃଦ୍ଧ—ଯେଉଁମାନେ ଭିନ୍ନ ଭିନ୍ନ ଯୁଗ ଓ ଜୀବନର ବହୁ ଉତ୍‌ଥାନ ପତନ ଦେଖିଥିଲେ, ଯାହାଙ୍କର ବହୁତ ଅନୁଭୂତି ଥିଲା, ସେମାନେ ସବୁ ଦେଖି ହତାଶ ଓ ନିର୍ବାକ୍ ହୋଇ ପଡ଼ିଲେ । ଅନ୍ୟପକ୍ଷରେ ହଜାର ହଜାର ଲକ୍ଷ ଲକ୍ଷ ଲୋକ ଜୀବନର ନୂତନ ଗତିରେ ଅନୁପ୍ରାଣିତ ହୋଇ ନବୀନ ଉତ୍ସାହରେ ନୂତନ ସଂସାର ଗଢ଼ିବାପାଇଁ ଆଗେଇ ଯାଉଥିଲେ ।"

ବସ୍ତୁତ ଦେଶକାଳ ଉପରେ ନିର୍ଦ୍ଧାରିତ ଏହି ଉପନ୍ୟାସର ଗଠନକଳା ମଧ୍ୟ ବୈଶିଷ୍ଟ୍ୟପୂର୍ଣ୍ଣ । ଏ ବିଷୟରେ ସର୍ବପ୍ରଥମ ଆମର ଦୃଷ୍ଟି ଆକର୍ଷଣ କରେ ବିଷୟବସ୍ତୁର ବର୍ଣ୍ଣନା-ଶୈଳୀ । ଲେଖକ ଜୀବନର ଯେଉଁ ପ୍ରକ୍ରିୟା ବର୍ଣ୍ଣନା କରିବାକୁ ଚାହାନ୍ତି, ସେଥିପ୍ରତି ତାଙ୍କର ବିଷୟଗତ ନିରପେକ୍ଷତା ଥିବା ଦରକାର । ତେଣୁ ସେ ଜୀବନକାହାଣୀକୁ ଏକ ନିରପେକ୍ଷ ଦ୍ରଷ୍ଟାଭାବରେ ହିଁ କହିଛନ୍ତି । ସେହି ଭାବରେ ଦୀର୍ଘ ଦେଶକାଳର କଥା କହିବା ତାଙ୍କ ପକ୍ଷରେ ସମ୍ଭବ ହୋଇଛି; କିନ୍ତୁ ଏହି ନିରପେକ୍ଷତା ସତ୍ତ୍ୱେ ତାଙ୍କର ନାଟକୀୟ ଯୋଜନା ଫଳରେ ରଚନା ଅଧିକ ରସଯୁକ୍ତ ହୋଇପାରିଛି । ମଝିରେ ମଝିରେ ତାଜା ସଂବାଦ ଦେଇ ତାଙ୍କର ନାଟକୀୟତାକୁ ସେ ଅକ୍ଷୁଣ୍ଣ ରଖିପାରିଛନ୍ତି । ନିରପେକ୍ଷ ଦ୍ରଷ୍ଟାରୂପେ ଐତିହାସିକ ଶୈଳୀରେ ଘଟଣା ବର୍ଣ୍ଣନା କରିବା ଫଳରେ ଯେକୌଣସି ସ୍ଥାନରେ ନିଜେ ପ୍ରବେଶ କରି କଥାକୁ ଆଗେଇ ନେବାପାଇଁ, ଚରିତ୍ର ଏବଂ ଘଟଣା ବିଷୟରେ ଟିପ୍ପଣୀ ଦେଇ କଥାକୁ ସ୍ପଷ୍ଟ କରିବାପାଇଁ ଲେଖକଙ୍କର ସୁବିଧା ହୋଇଛି । କିନ୍ତୁ ଏସବୁ ସୁବିଧା ସତ୍ତ୍ୱେ କଥାବସ୍ତୁର ଗଠନଶୈଳୀରେ କିଛି ଦୁର୍ବଳତା ମଧ୍ୟ ରହିଯାଇଛି । ଆକସ୍ମିକ ଘଟଣା ସୃଷ୍ଟି କରି କଥାକୁ ବଢ଼ାଇବାର ଚେଷ୍ଟା ଏହି ଦୁର୍ବଳତା ମଧ୍ୟରେ ଅନ୍ୟତମ । ବୃନ୍ଦୁ ଓ ଜଗୁ ପହିଲିମାନଙ୍କର କଥାର ବିଷୟବସ୍ତୁ ସହିତ କିଛି ସଂପର୍କ ଥାଇପାରେ; ମାତ୍ର ବିଶନଲାଲର ସମସ୍ତ କଥାର ମୂଳ ବିଷୟବସ୍ତୁ ସହିତ କୌଣସି ସଂପର୍କ ଥିଲାପରି ମନେହୁଏନାହିଁ କିମ୍ବା ସେଥିରେ ବିଷୟର କୌଣସି ସାର୍ଥକତା ବଢ଼ିନାହିଁ; ବରଂ ଗଙ୍ଗାପ୍ରସାଦଙ୍କର ଆକସ୍ମିକ ରୋଗ ଓ ମୃତ୍ୟୁ କଥା ଉଠାଇ ଲେଖକ ବୋଧହୁଏ ଶୀଘ୍ର ଏହି ଚରିତ୍ରକୁ ବିଦାୟ କରିବାକୁ

ଗୃହାନ୍ତି । ଅଥଚ ଗଙ୍ଗାପ୍ରସାଦଙ୍କ ଚରିତ୍ରରେ ଆଉ ଯାହାସବୁ ଦେଖାଯିବାର କଥା, ଲେଖକ ସେସବୁ ଦେଖାଇ ପାରିଛନ୍ତି ବୋଲି ମନେହୁଏନାହିଁ । ବରଜୋରସିଂହଙ୍କ ଆତ୍ମହତ୍ୟା ବିଷୟରେ ମଧ୍ୟ ଠିକ୍ ଏହି କଥା କୁହାଯାଇପାରେ; କିନ୍ତୁ ଏସବୁ ଅଭାବ ସତ୍ତ୍ୱେ କଥାବସ୍ତୁକୁ ସୁଗଠିତ କରି ରଖିବା ବିଷୟରେ ଲେଖକ ତାଙ୍କ ଶକ୍ତିର ପରିଚୟ ଦେଇଛନ୍ତି । ଚାରି ପୁରୁଷର ଲୋକଙ୍କୁ ଏକ ସୂତ୍ରରେ ବାନ୍ଧିରଖିବାକୁ ହେଲେ କୌଣସି ଗୋଟିଏ ଚରିତ୍ରକୁ କେନ୍ଦ୍ରସ୍ଥ କରି ରଖିବାର ଆବଶ୍ୟକତା ଥିଲା । ତେଣୁ ବର୍ମାଜୀ ଏହି ଆବଶ୍ୟକତା ପାଇଁ ଜ୍ୱାଲାପ୍ରସାଦଙ୍କୁ ବାଛିଥିଲେ । ସେ ତାଙ୍କର ପିତା ଶିବଲାଲଙ୍କ ପ୍ରକୃତିକୁ ବଂଶ-ପରଂପରାକ୍ରମେ ପାଇଥିଲେ ଓ ସେହି ସୂତ୍ରରେ ଗୋଟିଏ ଏକାନ୍ନବର୍ତ୍ତୀ ପରିବାର ତାଙ୍କୁ ମିଳିଥିଲା । ନିଜର ପୁତ୍ର ଗଙ୍ଗାପ୍ରସାଦ ହେଲେ ତୃତୀୟ ପୁରୁଷ । ସେ ଜ୍ୱାଲାପ୍ରସାଦଙ୍କର ନିଜ ସ୍ୱରୂପର ବିକାଶ ହୋଇଥିବାରୁ ଜ୍ୱାଲାପ୍ରସାଦଙ୍କୁ ସେହି ପୁରୁଷର ମୂଲ୍ୟବୋଧ ବେଶ ଜଣାଥିଲା । ନବଲ ଚତୁର୍ଥ ପୁରୁଷର ପ୍ରତୀକ; ତେଣୁ ଜ୍ୱାଲାପ୍ରସାଦଙ୍କ ପାଇଁ ସେ ଥିଲା ସଂପୂର୍ଣ୍ଣ ଅବୋଧ । ଏହିପରି ମୂଳରୁ ଶେଷ ପର୍ଯ୍ୟନ୍ତ ଜ୍ୱାଲାପ୍ରସାଦ ଉପନ୍ୟାସର ମେରୁଦଣ୍ଡ ପରି ରହିଛନ୍ତି । ଯଦିଓ ସେ ଉପନ୍ୟାସର ପ୍ରଧାନ ଚରିତ୍ର ନୁହନ୍ତି, ତଥାପି ନିଜ ଭାବରେ ସଂପୃକ୍ତ ଜଣେ ବିଶାଳ ଦ୍ରଷ୍ଟାଭାବରେ ସେ ଉପସ୍ଥିତ । ଏହି ଦୃଷ୍ଟିରୁ ଲେଖକ ଜ୍ୱାଲାପ୍ରସାଦଙ୍କ ଚରିତ୍ରର ସବୁପ୍ରକାର ସମ୍ଭାବନା ଓ ଶକ୍ତିକୁ ଖୁବ୍ ଦକ୍ଷତାର ସହିତ ପ୍ରୟୋଗ କରିପାରିଛନ୍ତି ।

ଚରିତ୍ରମାନଙ୍କର ଶକ୍ତି ବିଷୟରେ କହିଲାବେଳେ ବରାବର ଦେଖାଯାଏ ଯେ ଲେଖକ ଚରିତ୍ରମାନଙ୍କର ଗଭୀରତା ଓ ସମ୍ପୂର୍ଣ୍ଣତା ଫୁଟାଇବାରେ ସଫଳ ହୋଇପାରି ନାହାନ୍ତି । ବୋଧହୁଏ ସୁବିସ୍ତୃତ ଦେଶକାଳ ମଧ୍ୟରେ ବିକ୍ଷିପ୍ତ ସାମାଜିକ ଜୀବନର ଚିତ୍ର ଦେଖାଇବା ପାଇଁ ଚେଷ୍ଟା କରିବା ଫଳରେ ଏପରି ଘଟିଛି । ନଚେତ୍ ତାଙ୍କର 'ଚିତ୍ରଲେଖା', 'ତିନ୍ ବର୍ଷ' ଓ 'ଟେଢ଼େ ମେଢ଼େ ରାସ୍ତେ' ଉପନ୍ୟାସମାନଙ୍କରେ ସେ ଚରିତ୍ରଚିତ୍ରଣ ଶକ୍ତି ବେଶ୍ ଦେଖାଇ ପାରିଛନ୍ତି । 'ଟେଢ଼େ ମେଢ଼େ ରାସ୍ତେ'ର ପ୍ରଧାନ ନାୟକ ପଣ୍ଡିତ ରାମନାଥ ଉପନ୍ୟାସଗତ-ନାୟକ-ପରମ୍ପରାରେ ଅବିସ୍ମରଣୀୟ ହୋଇ ରହିଛନ୍ତି; କିନ୍ତୁ ଏହି ଉପନ୍ୟାସରେ ପ୍ରତ୍ୟେକ ଚରିତ୍ର ଗୋଟିଏ ଗୋଟିଏ ଶ୍ରେଣୀର ପ୍ରତୀକ ବା 'ଟାଇପ୍' ଭାବରେ ଚିତ୍ରିତ ହୋଇଛନ୍ତି । ସେମାନଙ୍କର ବ୍ୟକ୍ତିଚରିତ୍ର ଏପରି ଭାବରେ ଲୋପ ହୋଇଯାଇଛି ଯେ ସେମାନଙ୍କର ପାରସ୍ପରିକ ସମ୍ପର୍କରେ କୌଣସି ଘନିଷ୍ଠତା ନାହିଁ । ବୈଧ ଅବୈଧ ପ୍ରଣୟ ହେଉ କିମ୍ବା ବାତ୍ସଲ୍ୟ ସମ୍ବନ୍ଧ ହେଉ, କୌଣସି କ୍ଷେତ୍ରରେ ଏପରି ଗଭୀର ଚିନ୍ତାଶୀଳତା ପ୍ରକାଶ ପାଇପାରିନାହିଁ—ଯାହା ସମସ୍ତ ତର୍କ-ବିତର୍କ, କାର୍ଯ୍ୟକାରଣ ଓ ପରମ୍ପରାକୁ ଭେଦ କରି ବ୍ୟକ୍ତିଚରିତ୍ରକୁ ବିଶିଷ୍ଟ ରୂପ ଦେଇପାରିଥାନ୍ତା । ଗୋଟିଏ

ଗୋଟିଏ ପୁରୁଷର କଥା କହିବାକୁ ଯାଇ ଏହି ଉପନ୍ୟାସରେ ପାଶ୍ଚାତ୍ୟ ସମ୍ବନ୍ଧ ବିଷୟରେ ବିଶେଷ କିଛି ନାହିଁ । କି ପଦାଧିକାରୀ, କି ପୁଞ୍ଜିପତି, କି ରାଜନୈତିକ ନେତା କାହାରି ବିଷୟରେ ଏଥିରେ ପୂର୍ଣ୍ଣରୂପେ କିଛି କୁହାଯାଇନାହିଁ; ଯାହା କେବଳ ସୂଚନା ମାତ୍ର ଦିଆଯାଇଛି । ତୁନକ୍ସା ଓ ଭିକ୍ଷୁ ପରି ଚରିତ୍ର ଯେତିକି ପରିପୁଷ୍ଟ, ସେତିକି ମାନବିକ ହୋଇପାରିଛନ୍ତି; କିନ୍ତୁ ଉପନ୍ୟାସ କଥା ମଧ୍ୟରେ ସେମାନଙ୍କର ବିଶେଷ ବିକାଶ ହୋଇପାରିନାହିଁ । ବୋଧହୁଏ ଲେଖକଙ୍କ ଯୋଜନା ମଧ୍ୟରେ ସେମାନଙ୍କ ପାଇଁ ବିଶେଷ ସ୍ଥାନ ନଥିଲା ।

ଚରିତ୍ରମାନଙ୍କର ବର୍ଗଗତ ପ୍ରତିନିଧିତ୍ୱ କଥା ବିଚାର କଲେ ଦେଖାଯିବ ଯେ ବର୍ମାଜୀ ପ୍ରେମଚନ୍ଦ୍‌ଙ୍କ ଭୂମିକାର ଖୁବ୍ ନିକଟବର୍ତ୍ତୀ । ମୁନ୍‌ସି ଶିବଲାଲ, ପଣ୍ଡ୍ୟା, ନବସନ୍ଧା ପ୍ରଭୃତି କାୟସ୍ଥକୁଳର ପ୍ରତିନିଧିମାନେ ନାନାପ୍ରକାର ଜାଲ୍ ବେଇମାନି ଇତ୍ୟାଦି କରି ନିଜର ସ୍ୱାର୍ଥସାଧନ କରିବାପାଇଁ ଚେଷ୍ଟିତ । ଯେତେବେଳେ ନିଜ ପୁଅ ମଧ୍ୟ ବାପର ଏପ୍ରକାର କାର୍ଯ୍ୟକଳାପ ସ୍ୱୀକାର କରେ ନାହିଁ, ସେତେବେଳେ ବାପ ବାଧ୍ୟ ହୋଇ ଆତ୍ମହତ୍ୟା କରେ । ମୁନ୍‌ସି ରାଧେଲାଲ ମଧ୍ୟ ଶିବଲାଲଙ୍କର ପରିପୂରକ । ଯେଉଁ ମଧ୍ୟବିତ୍ତ ଲୋକେ ଚାକିରି କ୍ଷେତ୍ରରେ ନିଜର ଯୋଗ୍ୟତା, ସାଧୁତା ତଥା ନିୟମାନୁବର୍ତ୍ତିତା ଦ୍ୱାରା ଉପରକୁ ଉଠନ୍ତି, ଜ୍ୱାଲାପ୍ରସାଦ ସେହିମାନଙ୍କର ପ୍ରକୃତ ପ୍ରତିନିଧି । ଗଙ୍ଗାପ୍ରସାଦ ଜ୍ୱାଲାପ୍ରସାଦଙ୍କର ବିକଶିତ ରୂପ ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ତାଙ୍କୁ କେବେ ନିଜର ପରିସ୍ଥିତି ନିକଟରେ ମୁଣ୍ଡ ନୁଆଇଁବାକୁ ପଡ଼ିନାହିଁ; ବରଂ ତାଙ୍କ ପରିସ୍ଥିତି ତାଙ୍କ ଉନ୍ନତିରେ ସାହାଯ୍ୟ କରିଛି ଓ ସେ ଜୀବନର ଏକ ଅପେକ୍ଷାକୃତ ସମତଳ ରାସ୍ତାରେ ଆଗେଇ ଯାଇଛନ୍ତି । ସେଇଥିପାଇଁ ସେ ବ୍ୟସନବିଳାସ ଆଡ଼କୁ ସହଜରେ ଗତିକରି ଶେଷରେ ନଷ୍ଟ ହୋଇଯାଇଛନ୍ତି । ନବଲ ସେହି ପୁରୁଷର ପ୍ରତିନିଧି; ଯେଉଁମାନଙ୍କର ପ୍ରାଣର ଆହ୍ୱାନ କେବଳ ସଂଘର୍ଷ—ଏକପ୍ରକାର ରୂପସ୍ୱାନ, ଲକ୍ଷ୍ୟସ୍ୱାନ ସଂଘର୍ଷ । ଅନ୍ୟ ଚରିତ୍ରମାନଙ୍କ ମଧ୍ୟରେ ଗଜରାଜସିଂହ, ବରଜୋରସିଂହ ଓ ସରୋହନର ରାଜା ସମସ୍ତେ ଯେମିତି ଏକ ଅସ୍ତାୟମାନ ସାମନ୍ତବର୍ଗର ପ୍ରତୀକ । ପ୍ରଭୁଦୟାଲ ଓ ଲକ୍ଷ୍ମୀଚନ୍ଦ ସେହିପରି ଉଦୀୟମାନ ପୁଞ୍ଜିବାଦର ପ୍ରତୀକ । ଜ୍ଞାନପ୍ରକାଶ ଯେମିତି ରାଜନୈତିକ ଚେତନାର, ବିଦ୍ୟା ସେହିପରି ବିଦ୍ରୋହିଣୀ ନାରୀର ପ୍ରତିନିଧି । ମୀର୍ ସାହେବ ଏକପକ୍ଷରେ ଲେଖକଙ୍କର ନିଜ ବିବେକର ଓ ଅପରପକ୍ଷରେ ପ୍ରାଚୀନ ଧାର୍ମିକତା ଓ ନିର୍ଭୀକତାର ସୂଚକ ରୂପରେ ଦଣ୍ଡାୟମାନ । କିନ୍ତୁ ସେ ନୂତନ ଯୁଗପାଇଁ ଉପଯୁକ୍ତ ହୋଇ ନଥିବାରୁ ଲେଖକ ଖୁବ୍ ଶୀଘ୍ର ତାଙ୍କୁ କଥାମଞ୍ଚରୁ ହଟାଇ ନେଇଛନ୍ତି । ଚରିତ୍ରଚିତ୍ରଣ ବିଷୟରେ ଏ କଥା ମନେ ରଖିବାକୁ ହେବ ଯେ ଲେଖକ ଯେପରି ଘଟଣାବହୁଳ କଥାବସ୍ତୁର ଅବତାରଣା କରିଛନ୍ତି,

ସେଥିରେ ବର୍ଗଗତ ଚରିତ୍ର ସୃଷ୍ଟିର ସମ୍ଭାବନା ଅଧିକ ।

ଚରିତ୍ର ଓ ଘଟଣାପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିବାରେ ଲେଖକ ନିଜ ଶକ୍ତିର ନିଃସନ୍ଦେହ ପରିଚୟ ଦେଇଛନ୍ତି । ଜ୍ୱାଲାପ୍ରସାଦଙ୍କ ନାଏବ ତହସିଲଦାରୀ ହେଉ, ଅଲ୍ଲାମା-ବହଣୀ ଓ ଜଟିଲାନନ୍ଦଙ୍କ ଶାସ୍ତ୍ରାର୍ଥ ହେଉ, ନବଲର ଜେଲଯାତ୍ରାର ପୃଷ୍ଠଭୂମି ହେଉ କିମ୍ବା ଶୋଭାଯାତ୍ରାର ସ୍ଲୋଗାନ ହେଉ ପ୍ରତ୍ୟେକଙ୍କୁ ଉପଯୁକ୍ତ ସ୍ଥାନରେ ଉପସ୍ଥାପିତ କରି ଲେଖକ ଚରିତ୍ର ଓ ବିଷୟବସ୍ତୁ ଉଭୟଙ୍କୁ ପରିପୁଷ୍ଟ କରିଛନ୍ତି । ଏ କଥା ମଧ୍ୟ ମନେ-ରଖିବାକୁ ହେବ ଯେ ଲେଖକ ପରିସ୍ଥିତି ପ୍ରତି ଅଯଥା ମୋହ ଦେଖାଇ ନାହାନ୍ତି । ପାଠକଙ୍କୁ ଅନ୍ୟତ୍ର କାହିଁ ଅଟକାଇ ରଖିବାଭଳି ଚେଷ୍ଟାର ଆଭାସ ପର୍ଯ୍ୟନ୍ତ ଲେଖକ କେଉଁଠାରେ ହେଲେ ଦେଇନାହାନ୍ତି । ବାତାବରଣ-ବିନ୍ୟାସ କ୍ଷେତ୍ରରେ ଏହା ଏକ ବିଶେଷ ସଫଳତା ବୋଲି କହିବାକୁ ହେବ ।

ପ୍ରେମଚନ୍ଦଙ୍କ ଭାଷାରେ ଯେଉଁ ସହଜ ସରଳତା ଦେଖାଯାଏ, ତା'ର ସୂଚନା ଆମକୁ ଏଠାରେ ମିଳେ । ଅଧିକ ଅଳଙ୍କାରପୂର୍ଣ୍ଣ କିମ୍ବା ବିଶେଷ ଭାବୁକତାପୂର୍ଣ୍ଣ ଭାଷାକୁ ଗ୍ରହଣ ନକରି ଲେଖକ ଯେଉଁ ସହଜ ଶୈଳୀ ସ୍ୱୀକାର କରିଛନ୍ତି, ତା' ଫଳରେ ଉପନ୍ୟାସ ଅଧିକ ରୁଚିକର ଓ ସାର୍ଥକ ହୋଇପାରିଛି । ପ୍ରକୃତରେ ବିଗତ ଅର୍ଦ୍ଧ-ଶତାବ୍ଦୀର ଅତୀତ କଥାକୁ ସ୍ମରଣ କରି 'ଭୁଲେ ବିସ୍‌ରେ ଚିହ୍ନ'କୁ ଯେପରି ଭାବରେ ଚିତ୍ରଣ କରାଯାଇଛି, ତାହା ସ୍ୱକୀୟ ସୌନ୍ଦର୍ଯ୍ୟରେ ଆମ୍ଭମାନଙ୍କୁ ଆକୃଷ୍ଟ କରୁଛି । ରଚିତ ଉପନ୍ୟାସ ସ୍ୱାଧୀନତା ପରି ହିନ୍ଦୀ ସାହିତ୍ୟର ଏକ ସଫଳ ସୃଷ୍ଟି । ଏହା ଯେପରି ପ୍ରେରଣାଦାୟକ, ସେହିପରି ଜ୍ଞାନବର୍ଦ୍ଧକ ଅଟେ ।

**ଦେବୀଶଙ୍କର ଅବସ୍ଥୀ**

## ଏକ

ମୁନ୍‌ସି ଶିବଲାଲ ଦରଖାସ୍ତଟାକୁ ହାତରେ ଧରି ଠାକୁରଙ୍କୁ କହିଲେ, "ଏଇ ନିଅ, ତମ ଦରଖାସ୍ତ ଲେଖା ହୋଇଗଲା । ମେକୂଲାଲକୁ ଏଥିରେ ସିଧା ପାଞ୍ଚ ବର୍ଷ ଜେଲ ହୋଇଯିବ ।"

ଦରଖାସ୍ତଟା ଦେଖି ଠାକୁର ଭୂପସିଂହ ଆନନ୍ଦରେ ଉଚ୍ଛୁଳି ପଡ଼ି କହିଲା, "ଧନ୍ୟ ତମେ ମୁନ୍‌ସି, କେଡ଼େ ବଢ଼ିଆ ଲେଖିଛ !" ଏତିକି କହି ମୁନ୍‌ସିଙ୍କୁ ଦେବାପାଇଁ ସେ ଆଠଣିଟାଏ ବାହାର କଲା ।

ମୁନ୍‌ସି ଶିବଲାଲ ମୁହଁ ବୁଲେଇ ଦେଇ କହିଲେ, "ଦେଖ, ଟଙ୍କାକରୁ ପଇସାଟିଏ କମ୍ ହେଲେ ମୁଁ ନେବି ନାହିଁ । ଆଉ କେଉଁ ଓକିଲ ମୁକ୍ତାର ହାତରେ ପଡ଼ିଥିଲେ ସିଧା ଦୁଇଟଙ୍କା ନେଇଥାନ୍ତା; ତା'ଛଡ଼ା ତମ ମକଦ୍ଦମାକୁ ବି ବଗାଡ଼ି ଦେଇଥାନ୍ତା !"

ଯାହା ହେଉ ବହୁତ ଧକଡ଼ ଚକଡ଼ ପରେ ଭୂପସିଂହ ଶିବଲାଲଙ୍କୁ ଆଉ ଚାରଣିଟାଏ ଦେଲା । ଶିବଲାଲ ପଇସା ପାଇ ଠାକୁରଙ୍କୁ ଦରଖାସ୍ତଟା ଧରାଇ ଦେଇ କହିଲେ, "ଦେଖ ଠାକୁର, ଏ ଦରଖାସ୍ତ କଚେରୀରେ ପଡ଼ା ହେବ । ତମେ ସିଧା କଲେକ୍‌ଟରଙ୍କ କଚେରୀକୁ ଚାଲିଯା । ସେଠି ପେସ୍କାରଙ୍କ ହାତରେ ଦରଖାସ୍ତଟା ଦେଇ-ଦେବ । ମନେରଖିଥା, ତାଙ୍କୁ ପଇସା ଚାରଣା ଯେମିତି ହେଲେ ଦେବ ।"

ମୁନ୍‌ସି ଶିବଲାଲ ଜଣେ ମଧ୍ୟମକାଠର ଲୋକ, ବେଶୀ-ବଡ଼ କିମ୍ବା ସାନ ନୁହଁନ୍ତି, ଦେଖିବାକୁ ଖୁବ୍ ପତଳା । ବୟସ ପ୍ରାୟ ପଚାଶ ହେବ । ମୁହଁରେ କଳା ଧଳା ମିଶା ଛୋଟ ଛୋଟ ଦାଢ଼ି । ଅବଶ୍ୟ ଠାକୁରାଣୀ-ଚିହ୍ନଗୁଡ଼ା ନ ଥିଲେ ମୁହଁଟି ସୁନ୍ଦର ଦିଶୁଥାନ୍ତା । ସେଇ ଠାକୁରାଣୀ ଯୋଗୁ ବି ଗୋରା ଚେହେରାଟା ତାଙ୍କର ଶ୍ୟାମଳ ଦେଖାଯାଉଥିଲା । ଭୂପସିଂହକୁ ବିଦାୟ ଦେଇ ଶିବଲାଲ ବଟୁଆ କାଢ଼ି ପାନ ଭାଙ୍ଗି-ବସିଲେ ଓ ପାଟି କରି ଘସିଟେକୁ ଡାକ ପକାଇଲେ ।

ଫତେପୁର ଜିଲ୍ଲା କଚେରୀ ହତାରେ ଗୋଟିଏ ବଡ଼ ବରଗଛ ଥିଲା । ସେହି ଗଛ-ମୂଳେ ଗୋଟାଏ ପାଣିଘଡ଼ା ରଖି ଘସିଟେ ଲୋକଙ୍କୁ ପାଣି ପିଇବାକୁ ଦେଉଥିଲା । ଶିବଲାଲ ଡାକିଲାବେଳକୁ ସେ ଘୁମାଉଥିଲା । ଡାକ ଶୁଣି ହଠାତ୍ ଚମକି ପଡ଼ି ଆଖି ମଳୁ ମଳୁ ଉତ୍ତର ଦେଲା, "କ'ଣ ମୁନ୍‌ସି, ମୋତେ ଡାକୁଥିଲେ କି ?"

"ହଁ, ହଁ, ଟିକେ ଏଣିକି ଆ ।"

ଘସିଟେ ଜାତରେ କେଉଟ । ମୁନ୍‌ସିଙ୍କ ଘର ପାଖରେ ତା'ର ଘର । ତା'ର ସ୍ତ୍ରୀ ମୁନ୍‌ସିଙ୍କ ଘରେ କାମଦାମ କରୁଥିଲା ଓ ଘସିଟେ ନିଜେ କଚେରୀରେ ପାଣି ଦେଉଥିଲା । ଘସିଟେ ଆସିବାରୁ ମୁନ୍‌ସି ତା ଆଡ଼କୁ ଗ୍ୱରଣିଟାଏ ଫିଙ୍ଗି ଦେଇ କହିଲେ, "ଘରକୁ ଗଲାବେଳେ ଟାଙ୍ଗି ଗ୍ୱରଣୀର ନେଇଯାଇଥିବୁ ।"

ଘସିଟେ ଆଶ୍ଚର୍ଯ୍ୟ ହୋଇ ମୁନ୍‌ସିଙ୍କ ମୁହଁକୁ ଗ୍ୱହିଁ କହିଲା, "ରାମ ରାମ, ମୁନ୍‌ସି, ତମକୁ ଏତେ ଟିକେ ଲଜ ନାହିଁ ? ଏଇ ଦୁଇ ଗ୍ୱରି ଦିନ ହେଲା ମାଳା ଧରି ଆଜିଠାରୁ ପିଆ ଆରମ୍ଭ କଲଣି ?"

ମୁନ୍‌ସି ଟିକିଏ ଚୁପ୍ ରହିଯାଇ ପୁଣି କହିଲେ, "ଠିକ୍ କହିଲୁ । ଆଜି ଜାଣି ତୋର ଜାତାପଟ ହୋଇଗଲା । ତେବେ ଘରେ ବୋତଲରେ ଗଙ୍ଗାଜଳ ଅଛି, ଦୁଇ ଗ୍ୱରି ଟୋପା ସେଥିରୁ ମିଶାଇ ଦେଲେ ସବୁ ଠିକ୍ ହୋଇଯିବ । ଗଙ୍ଗାଜଳରେ ତ ସବୁ ପବିତ୍ର ହୋଇଯାଏ ।"

ଘସିଟେ ହସିଦେଇ କହିଲା, "ହଉ, ତମ କଥା ଏବେ ମୁଁ ବୁଝିଗଲି ।" ତାପରେ ଗ୍ୱରଣିଟା ଉଠାଇ ନେଇ ସେ ବରଗଛମୂଳକୁ ଫେରିଗଲା । ସେଠି ପାଣି ପିଇବା-ପାଇଁ ଦୁଇ ଗ୍ୱରିଜଣ ଯୁଟିଯାଇଥିଲେ ।

ମୁନ୍‌ସି ପାନ ଖାଇ ଦେଇ ମକଦମୀ ଖୋଜାରେ ଲଗିଗଲେ, କାଲେ କେହି ଲୋକ ଯୁଟି ଯିବେ । ହଠାତ୍ ଦେଖିଲେ କଲେକ୍‌ଟରଙ୍କ ଚପ୍ରାସୀ ଚନ୍ଦନ ସିଂହ ତାଙ୍କ ଆଡ଼କୁ ଧାଇଁଛି । ତାଙ୍କୁ ଦେଖି ଚନ୍ଦନ ସିଂହ କହିଲା, "ମୁନ୍‌ସିଜୀ, ମୁଁ କେତେବେଳୁ ଆପଣଙ୍କୁ ଖୋଜୁଛି । ସାହେବ କାହିଁକି ଆପଣଙ୍କୁ ଡାକୁଛନ୍ତି ।"

ସାହେବଙ୍କ ନାଁ ଶୁଣି ଶିବଲାଲ ଟିକିଏ ଶଙ୍କିଗଲେ । ଭାବିଲେ ଭୂପସିଂହ ଦରଖାସ୍ତରେ ସେ ଯେଉଁ ଗ୍ୱଲାକି କରିଛନ୍ତି ତାକୁ ଦେଖି ସାହେବ ବିଗିଡ଼ି ନାହାନ୍ତି ତ ? କିନ୍ତୁ ଚନ୍ଦନ ସିଂହ ତାଙ୍କୁ ସାହସ ଦେଇ କହିଲା, "ଡରିବାର କିଛି ନାହିଁ । ସାହେବ ତ ହସି ହସି ପେସ୍କାରବାବୁଙ୍କୁ କ'ଣ କହୁଥିଲେ । ତମ ଉପରେ ସେ ଆଦୌ ବିଗିଡ଼ି ନାହାନ୍ତି ।"

ମୁନ୍‌ସି ଶିବଲାଲ ଟିକିଏ ଗାଲୁ ମାରି କହିଲେ, "ହଁ, ବିଗିଡ଼ିଲେ ଏବେ କ'ଣ କରିବେ, ଆମେ ତ ହକ୍ କାମ କରି ପେଟ ପୋଷୁଛୁ, ଈଶ୍ୱରଙ୍କ ନାଁ ନେଇ ଦିନ କାଟୁଛୁ ।"

କଲେକ୍‌ଟର ସାହେବ ତାଙ୍କ କଚେରୀରେ ବସିଥାନ୍ତି । ପେସ୍କାର ସେ ଦିନର କାଗଜପତ୍ର ତାଙ୍କୁ ଶୁଣାଉଥାନ୍ତି ଓ ସାହେବ ଅର୍ଡ଼ର ଲେଖୁଥାନ୍ତି । ଶିବଲାଲଙ୍କୁ ଦେଖିଲା ମାତ୍ରେ ହାକିମ ପଗ୍ୱରିଲେ, "କ'ଣ ମୁନ୍‌ସି, ତମେ ତ ବଡ଼ ଗ୍ୱଲାକ୍ ଲୋକ ।"

ମୁନ୍‌ସି ଉତ୍ତର ଦେଲେ, "ହଜୁରଙ୍କ ଦୟା ! ଏହି ଅଧମର ହଜୁରଙ୍କ ନିକଟରେ ଯଦି କିଛି ଭୁଲଭଟକା ହୋଇଯାଇଥାଏ ତେବେ..."

ଠାକୁର ଭୁପ ସିଂହର ଦର୍ଖାସ୍ତଟା ବାହାର କରିବା ପାଇଁ ପେସ୍କାରକୁ ଆଦେଶ ଦେଇ ଶିବଲାଲଙ୍କୁ କଲେକ୍‌ଟର ପଚାରିଲେ, "ତୁମେ ଲେଖିଛ ଠାକୁରକୁ ବଣିଆ ମାରିଲା; କିନ୍ତୁ ବଣିଆକୁ ଷଣ୍ଢ ଗଡ଼େଇ ଦେଲା । ବେଶ୍ ମଜା କଥା ତ ! ତୁମେ କଣ ଭାବୁଛ ଆମେ ଏ କଥା ବିଶ୍ୱାସ କରିଯିବୁ ? ମୁଁ ତ ପୁଲିସକୁ ଇନ୍‌କ୍ୱାରି ପାଇଁ ଦେଇ ଦେଲିଣି, ତେବେ ତୁମେ ଅସଲ ସତ କଥାଟା କଣ କହ ?"

ଶିବଲାଲ ଟିକିଏ ଗଳା ସଫା କରି ନେଇ କହିଲେ, "ହଜୁର, ଜୀବନ ରଖିଲେ ସତ କଥା କହିବି ।"

ସେଦିନ ଯୋଗକୁ ହାକିମଙ୍କର ମିଜାଜ୍ ଭଲ ଥିଲା । ସେ କହିଲେ, "ଆଚ୍ଛା, ତୁମକୁ କ୍ଷମା ଦେଲି । କିନ୍ତୁ ତୁମେ ସବୁ କଥା ସତ କହ; ମିଛ ଯେମିତି ପଦେ ନ କହ ।"

"ଆଜ୍ଞା, ସେ ମେକୁଲାଲଟା ମହା ପାଜି । କେତେ କେତେ ଗରିବ ଚାଷୀଙ୍କୁ ସେ ଉଚ୍ଛନ୍ନ କରି ଦେଇ ସାରିଲାଣି । ତାଠାରୁ କରଜ ଖାଇ କେହି କେବେ ମୁକୁଳି ନାହିଁ ।"

"ଓଃ, ଏବେ ବୁଝିଲି । ସେଇ ବଣିଆଟା ତା ହେଲେ ମହାଜନ ମେକୁଲାଲ । ସେଟା ତ ନିଶ୍ଚୟ ପାଜି ହୋଇଥିବ । ହଁ, ତା'ପରେ କ'ଣ ହେଲା ?"

"ସେହି କଥା କହୁଛି ହଜୁର ! ଠାକୁର ଭୁପସିଂହ ବିଚରା ବଡ଼ ସାଦାସିଧା ଲୋକ, କିଛି ଜାଣେ ନାହିଁ । ଦୁର୍ଯୋଗକୁ ସେ ମେକୁଲାଲ ହାତରେ ପଡ଼ିଗଲା । ଆଜିକୁ ଅସଲ ମୂଳର ତିନି ଗୁଣ ନେଇ ସାରିଲାଣି, ତଥାପି ତା କରଜ ଭରଣା ହେଉ ନାହିଁ । ସେଇଥିପାଇଁ ତା' ମନରେ ଟିକିଏ ରାଗ ହୋଇ ଯାଇଥିବ ନିଶ୍ଚୟ । ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?"

କଲେକ୍‌ଟର ପୁଣି ପଚାରିଲେ, "ତାହେଲେ ଏ ଦର୍ଖାସ୍ତଟା ମିଛ ?"

"ହଜୁର, ମିଛ କି ସତ ସିନା ସାକ୍ଷୀ କହିବେ । ମୁଁ ହଜୁରଙ୍କୁ ସବୁକଥା ମୋ ମାଲିକ ହିସାବରେ କହି ଦେଇଛି; ଅଦାଲତର ହାକିମ ହିସାବରେ ତ କହିନାହିଁ । ହଜୁର, ପାଜିଙ୍କ ସଙ୍ଗେ ପାଜି କାରବାର ନ କଲେ ସେମାନଙ୍କୁ କ'ଣ ପାରିହେବ ?"

କଲେକ୍‌ଟର ହସି ଦେଇ କହିଲେ, "ତୁମେ ତ ମୁନ୍‌ସି କମ୍ ପାଜି ନୁହଁ, ହେଲେ ତୁମକୁ ମୁଁ ଭଲପାଏ । ହଁ, ତୁମେ ତୁମ ପୁଅ ଜ୍ୱାଲାପ୍ରସାଦ କଥା କହୁଥିଲ ନା ?"

"ହଜୁର ଗରିବଙ୍କ ବାପମା । ପୁଅକୁ କାନଗୋଇ କିମ୍ବା ନାଜର ଚାକିରି ଖଣ୍ଡେ ହୁକୁମ ହେଲେ, ଗରିବର ବହୁତ ଉପକାର ହେବ ।"

ଏଥର କଲେକ୍ଟରର ବହୁତ ଜୋର୍‌ରେ ହସି ହସି କହିଲେ, "ବୁଝିଲ ମୁନ୍‌ସି, ତମର କିଛି କହିବା ଦରକାର ନାହିଁ । ତମେ କହିବା ଆଗରୁ ତମ ପୁଅକୁ ମୁଁ ନାଏବ ତହସିଲଦାର କରିଦେଇଛି ।"

ଏ କଥା ଶୁଣି ମୁନ୍‌ସି ନିଜ କାନକୁ ବିଶ୍ୱାସ କରି ପାରିଲେ ନାହିଁ; ଆଖି ତରାଟି ରହିଗଲେ । କଲେକ୍ଟରଙ୍କ ଆଡ଼କୁ ଅନାଇ କହିଲେ, "କଣ ହୁକୁମ ହେଲେ ହଜୁର, ଜ୍ୱାଲପ୍ରସାଦକୁ ନାଏବ ତହସିଲଦାର କରିଦେଲେ ! ହଜୁର୍, ମୁଁ ଠିକ୍ ହୋସ୍‌ରେ ରହି ଶୁଣୁଛି ତ ?"

ସରକାରୀ ଅର୍ଡ଼ରଟାକୁ ଶିବଲାଲଙ୍କ ହାତକୁ ବଢ଼ାଇ ଦେଇ କଲେକ୍ଟର କହିଲେ, "ଏଇ ଦେଖ ଅର୍ଡ଼ର, ପନ୍ଦରଦିନ ଭିତରେ ଜ୍ୱାଲପ୍ରସାଦ କାନପୁର ଜିଲା ଘାଟମ-ପୁର ତହସିଲ୍‌ରେ ଯାଇ ଜଏନ୍ କରିବା ଦରକାର । ସେ ଶୀଘ୍ର ଆସି ମୋ ସଙ୍ଗେ ଦେଖା କଲେ ସବୁକଥା ମୁଁ ତାକୁ ବୁଝାଇଦେବି ।"

ମୁନ୍‌ସି ଶିବଲାଲ ହଠାତ୍ ତେଇଁପଡ଼ି କଲେକ୍ଟରଙ୍କ ପାଦ ଛୁଇଁ ଜୁହାର କରି କହିଲେ, "ହଜୁର, ପୁରୁଷାନୁକ୍ରମେ ଆମେ ହଜୁରଙ୍କ କଲ୍ୟାଣ କରୁଥିବୁ ।" ତା ପରେ ଉଠିପଡ଼ି ପେସ୍କାର ସାହେବଙ୍କୁ ମଧ୍ୟ ସେ ଏକ ଲମ୍ବା ସଲାମ ପକାଇଲେ ।

ମୁନ୍‌ସି ଶିବଲାଲଙ୍କ ପୁଅ ଜ୍ୱାଲପ୍ରସାଦ ନାଏବ ତହସିଲଦାର ହେବା କଥା ବିଜୁଳି ପରି ମୁହୂର୍ତ୍ତିକରେ ଫତେପୁର ସହରଯାକ ଖେଳିଗଲା । ମୁନ୍‌ସି ନିଜେ ଆସି ଏ ଖବର ଦେବା ପୂର୍ବରୁ ଖବର ଆସି ଗାଁରେ ପହଞ୍ଚିଯାଇଥିଲା । ମୁନ୍‌ସିଙ୍କ ସାନଭାଇ ରାଧେଲାଲଙ୍କୁ ଗାଁ ଲୋକେ ଘେରି ବସିଥାନ୍ତି ଓ ସେ ନିଜେ କହିଚାଲିଥାନ୍ତି. "ଆମ ଘର କଥା ତ ତମେ ଜାଣିଥିବ । ବିଦ୍ରୋହ ପୂର୍ବରୁ ଆମ ବଂଶର ଚାଲିଚଳନ ତମେ ନିଶ୍ଚୟ ଦେଖିଥିବ । ଇତିହାସରେ ଲେଖାଅଛି, ଆମରି ଖାନଦାନୀ ଉପରେ ନିର୍ଭର କରି ନବାବ-ମାନେ ପୂର୍ବେ ଚାଲୁଥିଲେ । କଲେକ୍ଟର ସାହେବ ସବୁ ଜାଣିଗଲା ପରେ କେହି କିଛି ନ କହୁଣୁ ଜ୍ୱାଲପ୍ରସାଦକୁ ସେ ନାଏବ ତହସିଲଦାର କାମରେ ରଖିଦେଲେଣି ।"

ପଡ଼ିଶା ଲୋକେ ତ ରାଧେଲାଲଙ୍କ ଧନପୁରୁଷ ଖାନଦାନୀ କଥା ବେଶ୍ ଜାଣିଥିଲେ । ରାଧେଲାଲଙ୍କ ଜେଜେବାପା କୁନ୍ଦନଲାଲ୍ ଫତେପୁରକୁ ପ୍ରଥମେ ପଟୁଆରି ଭାବରେ ଆସିଥିଲେ । ନାନାପ୍ରକାର ଜାଲ, ଜୁଆଚୋରି ଓ ବେଇମାନୀ ଯୋଗୁ ତାଙ୍କର ଖୁବ୍ ବଦ୍‌ନାମ ଥିଲା । ସେ ଗୋଟିଏ ବଡ଼ ପକାଘର କରିଥିଲେ ଓ ନଗଦ ହଜାର ହଜାର ଟଙ୍କା ଗଣିପାରୁଥିଲେ । ସେ ଗୋଟାଏ ଜମିଦାରୀ କିଣିବାପାଇଁ ଯୋଗାଡ଼ କରୁଥିଲା-ବେଳେ ହଠାତ୍ ଠାକୁର ଝୁମର୍ ସିଂହଙ୍କ ସହିତ ତାଙ୍କର ଝଗଡ଼ା ହେଲା । ଝୁମର୍ ସିଂହ ତ ଖାଲି ଜମିଦାର ନ ଥିଲେ, ଜଣେ ବଡ଼ ଡକାୟତ ବି ଥିଲେ । ହଠାତ୍ ଦିନେ କୁନ୍ଦନଲାଲଙ୍କ

ଘରେ ଡକାୟତମାନେ ପଶି ତାଙ୍କର ଗହଣାଗାଣ୍ଠି ସବୁ ନେଇଗଲେ ଓ କୁନ୍ଦନଲାଲଙ୍କ ପିଟି ତାଙ୍କ ହାତଗୋଡ଼ ସବୁ ଭାଙ୍ଗିଦେଲେ । ଗଲାବେଳେ ଡାକୁମାନେ କହିଗଲେ ଯେ କଥାକୁ ବେଶି ପ୍ରଘଟ କଲେ ଘରର ସମସ୍ତଙ୍କୁ ମାରିଦିଆଯିବ । କୁନ୍ଦନଲାଲଙ୍କ ସମ୍ପତ୍ତିରୁ ତାଙ୍କ କୋଠା ଖଣ୍ଡକ କେବଳ ତାଙ୍କ ପୁଅ ବନବାସୀଙ୍କୁ ମିଳିଥିଲା । ବନବାସୀ ବାପ-ମା'ଙ୍କର ଏକମାତ୍ର ପୁଅ । ସେ ପାଠ ନ ପଢ଼ି ବାରବୁଲା ପାଲଟିଗଲେ । ତଥାପି ତାଙ୍କ ଜୀବନଟା ଅଏସରେ କଟିଗଲା; କିନ୍ତୁ ସେଥିପାଇଁ ପଇସା କେଉଁଠୁ ଆସୁଥିଲା କେହି ଜାଣନ୍ତି ନାହିଁ । ତାଙ୍କର ଦୁଇପୁଅ ହେଲେ ମୁନ୍‌ସି ଶିବଲାଲ ଓ ମୁନ୍‌ସି ରାଧେଲାଲ । ଶିବଲାଲ ନବୀସ କାମ କରନ୍ତି ଓ ରାଧେଲାଲ ଲୋକଙ୍କ ଭିତରେ ମକଦ୍ଦମା ଲଗାଇ ଓକିଲମାନଙ୍କ ପାଖରେ ଦଲାଲି କରନ୍ତି ।

ରାଧେଲାଲଙ୍କର ବଢ଼ାଚଢ଼ା କଥାରେ ଜବାବ ଦେବା କିମ୍ବା ତାଙ୍କ ମିଛ କଥାକୁ କାଟିବା ପାଇଁ ସାଇପଡ଼ିଶାରେ କାହାରି ସାହସ ନ ଥିଲା । ପ୍ରାୟ ସବୁ ଲୋକେ ତାଙ୍କୁ ଭୟଙ୍କର ଡରୁଥିଲେ । କାହାକୁ କାହା ସଙ୍ଗରେ କେତେବେଳେ ଲଗାଇ ଦେବେ କେହି ଜାଣୁ ନଥିଲେ । ଶିବଲାଲ ଅଫିସ ପହଞ୍ଚିବା ମାତ୍ରେ ସାଇପଡ଼ିଶା ଏକସ୍ୱରରେ ଅଭିନନ୍ଦନ ଜଣାଇ କହିଲେ, "ମୁନ୍‌ସି ଶିବଲାଲଙ୍କର ଜୟ ହେଉ ! କହନ୍ତୁ ଆଜ୍ଞା, ଭୋଜଭାତ କେବେ ମିଳିବ ?"

ମୁନ୍‌ସି ଶିବଲାଲ ହସି ହସି କହିଲେ, "ଆରେ ଭାଇ, ତମମାନଙ୍କ ଆଶୀର୍ବାଦରୁ ଭଗବାନ ମୋ ଗୁହାରି ଶୁଣିଲେ । ଏଇ ଦି ଚାରି ଦିନ ଭିତରେ ସତ୍ୟନାରାୟଣ ମେଲା ପାଇଁ ଯୋଗାଡ଼ କରୁଛୁ । ଜ୍ୱାଳାପ୍ରସାଦ ଆସିଗଲା ପରେ ପୁଣି ଭୋଜଭାତ କରିବା ।"

ସାଇପଡ଼ିଶାଙ୍କୁ ବିଦାକରି ମୁନ୍‌ସି ଶିବଲାଲ ଘର ଭିତରେ ଯାଇ ଲୁଗା ବଦଳାଉଛନ୍ତି, ଛୁନକୀ ଆସି ପହଞ୍ଚିଲା । ଛୁନକୀର ବୟସ ପ୍ରାୟ ତିରିଶ, ଦେହ ଗୋଲ୍‌ଗାଲ୍, ସୁନ୍ଦର ଚେହେରା, ରଙ୍ଗ ସାବନ, ମୁହଁରେ ସବୁବେଳେ ହସ ଲାଗିରହିଥାଏ । ଘସିଟେର ସେ ଦ୍ୱିତୀୟ ସ୍ତ୍ରୀ । ତାର ପ୍ରଥମ ସ୍ତ୍ରୀ ରାଧିଆ ଚାରିବର୍ଷ ହେଲା ସଂସାର ଛାଡ଼ି ଚାଲିଯାଇଥିଲା । ସେତେବେଳକୁ ତାର ଏକମାତ୍ର ପୁଅ ଭିକ୍ଷୁକୁ ମାତ୍ର ଆଠବର୍ଷ ହୋଇଥିଲା । ଏବେ ଛୁନକୀର କିଛି ପିଲାପିଲି ନଥିଲା କିମ୍ବା ଆଉ ହେବାର ଆଶା ବି ନଥିଲା । ଘସିଟେର ବୟସ ବି ଷାଠିଏ ପୂରିଯାଇଥିଲା ।

ମୁରକିହସା ଦେଇ ଛୁନକୀ କହିଲା, "ଏଥର ରୁପାର ହାର ଗଢ଼ାଇ ଦେବ, ପୁଅ ତ ନାଏବ ତହସିଲଦାର ହେଲା ।"

ଶିବଲାଲ ଜବାବ ଦେଲେ, "ଆଚ୍ଛା ହଉ, ସୁନାହାର ପାଇଁ କାଲି ବଣିଆକୁ କହିଦେବା । ହଁ, ବୋହୂ ବର୍ତ୍ତମାନ କ'ଣ କରୁଛନ୍ତି ?"

ମୁନ୍‌ସି ଶିବଲାଲ୍ ଏବେ ଏକାକୀ । ଗତ ଆଠବର୍ଷ ହେଲା ତାଙ୍କ ସ୍ତ୍ରୀ ମରିଯାଇଥିଲେ । ସେତେବେଳେ ଜ୍ୱାଲାପ୍ରସାଦକୁ ମୋଟେ ଚଉଦବର୍ଷ ହୋଇଥିଲା । କିନ୍ତୁ ଦୁଇବର୍ଷ ଆଗରୁ ତାର ବିଭାଘର ସରିଯାଇଥିଲା । ସାଇପଡ଼ିଶା, ବନ୍ଧୁବାନ୍ଧବ ଯେ ଯେତେ କୁହାବୋଲା କଲେ ବି ଶିବଲାଲ ଆଉ ବିଭା ହେଲେ ନାହିଁ । ସେ କହିଲେ, ଘରେ ପୁଅ ବୋହୂ, ସାନଭାଇ ଓ ତା ପିଲାପିଲି ଥାଉଁ ଥାଉଁ ଆଉ ପୁଣି ବାହା ହେବ କ'ଣ ? ଏଣିକି ତ ବୁଢ଼ା ହେଲିଣି, ରାମ ନାମ ଜପିବା କଥା ।

ଛମାସ ହେଲା ଜ୍ୱାଲାପ୍ରସାଦର ବୋହୂ ଯମୁନା ପୁଆଣୀ ହୋଇ ଘରକୁ ଆସିଥିଲା । ଯମୁନାକୁ ସେତେବେଳକୁ ମାତ୍ର ଷୋଳବର୍ଷ । ସେ ଖାଲି ଘରର ବୋହୂ ସିନା; କିନ୍ତୁ ଘରର ଅସଲ ମାଲିକାଣୀ ଥିଲେ ରାଧେଲାଲଙ୍କର ସ୍ତ୍ରୀ ।

ଛୁନକୀ ଟିକିଏ ଗମ୍ଭୀର ହୋଇ ବଗିଡ଼ିଲା ପରି କହିଲା, "ବୋହୂ ରୋଷାଇ କରୁଛନ୍ତି । ସାନ ସା'ନ୍ତାଣୀ ତାଙ୍କୁ ଖାଲି ହଇରାଣ କରୁଛନ୍ତି । ଯେତେ ହେଲେ ପିଲା ବୋହୂଟା । ଦିନରାତି ଖାଲି ଖଟାଉଛନ୍ତି । ମୁଁ ପଚାରୁଛି, ତମେ ସାନ ସା'ନ୍ତାଣୀଙ୍କୁ ମନା କରୁନାହଁ କାହିଁକି ?"

ମୁନ୍‌ସି ଶିବଲାଲ ଛୁନକୀର କଥାକୁ ଆଡ଼େଇ ଦେଇ କହିଲେ, "ସାନ ସା'ନ୍ତାଣୀ କ'ଣ ପରଲୋକ ହୋଇଛନ୍ତି ? ସେ ତ ଘରର ମାଲିକ, ତାଙ୍କୁ ଯାହା ଭଲ ଦିଶିବ ସେ ତାହା କରିବେ ।"

ଛୁନକୀର ମନ ଟିକିଏ ମରିଗଲା । କହିଲା, "ହଁ ହଁ, ସବୁ ଜାଣିଲି । ବୋହୂ ତେଣେ ରୁଟି ବେଲୁଥିବେ । ଯାଏଁ ତାଙ୍କ କାମ ଟିକିଏ କରିଦିଏ ।"

ଜ୍ୱାଲାପ୍ରସାଦ ଫତେପୁରରେ ଯେତେ ଦିନ ରହିଲେ, ବଡ଼ ଧୂମ୍‌ଧାମ୍‌ରେ ତାଙ୍କର ସମୟ କଟିଲା । ଶିବଲାଲ ନିଜେ ତାଙ୍କୁ ସଙ୍ଗରେ ନେଇ ଫତେପୁରର ବଡ଼ ବଡ଼ ହାକିମଙ୍କ ପାଖରେ ମୁଣ୍ଡି ଆମରେଇ ଆଣିଲେ । ଫତେପୁରର ବଡ଼ ବଡ଼ କାୟସ୍ଥ ଓ ସାଇପଡ଼ିଶା ଲୋକେ ବହୁତ ଭୋଜି ମଉଜ କଲେ । ଶିବଲାଲ ବି ନିଜେ ମୁକ୍ତହସ୍ତରେ ଖର୍ଚ୍ଚ କଲେ । ଜ୍ୱାଲାପ୍ରସାଦଙ୍କର ଘାଟମପୁର ଯିବାକୁ ମାତ୍ର ଦୁଇଦିନ ବାକୀ ଥିଲା, ଛୁନକୀ ଯମୁନାକୁ ପଚାରିଲା, "ଶୁଣିଲି ତମ ଘରୁ କୁଆଡ଼େ ଖବର ଆସିଛି ଜ୍ୱାଲା ସଙ୍ଗରେ ତମକୁ ଘାଟମପୁର ପଠାଇଦେବା ପାଇଁ; କିନ୍ତୁ ତମ ଯିବା ପାଇଁ କିଛି ଯୋଗାଡ଼ ତ କାହିଁ ନାହିଁ ? ତମେ ଜ୍ୱାଲାକୁ କହୁନା ?"

ଯମୁନା ଉଦାସ ଭାବରେ ଉତ୍ତର ଦେଲା, "କଣ କହିବି ଖୁଡ଼ୀ, ମୁଁ ତାଙ୍କୁ ବହୁତ କହିଲିଣି, କିନ୍ତୁ ସେ ତ କିଛି ଶୁଣୁନାହାନ୍ତି । କହୁଛନ୍ତି ବାପା ଯାହା କରିବେ ।"

ଛୁନକୀ କହିଲା, "ଜ୍ୱାଲା ତେବେ କ'ଣ ଏକା ଯାଉଛି ? କାହିଁ ସାନ ସା'ନ୍ତାଣୀଙ୍କର

ତ କିଛି ଯୋଗାଡ଼ ନାହିଁ ।''

''କେଜାଣି ଏକା ଏକା ଯାଉଥିବେ ଅବା, ମୋତେ ତ କାହିଁ କିଛି କହୁନାହାନ୍ତି । ତା ଛଡ଼ା କହିବାକୁ ବି ବେଳ କାହିଁ ? ଦିନରାତି ତ ଭୋଜିଭାତରେ ଲାଗିଛନ୍ତି ।''

ଛୁନକା ପୁଣି କ'ଣ ଟିକିଏ ଚିନ୍ତା କଲା ପରି କହିଲା, ''ଆଚ୍ଛା ଟିକିଏ ରହ, ମୁଁ ଯାଇ ମୁନ୍‌ସିଙ୍କ ସଙ୍ଗେ କଥାବାର୍ତ୍ତା କରି ଆସେ । କାଲି ସଙ୍ଗରେ ତମର ଯିବା ନିତାନ୍ତ ଦରକାର, ନୋହିଲେ ତା ଭଲମନ୍ଦ ବୁଝିବ କିଏ ?''

ଛୁନକା କଥା ଶୁଣି ଯମୁନା ଟିକିଏ ଶଙ୍କିଗଲା ଓ ତାର ହାତ ଧରିପକାଇ କହିଲା, ''ଛୁନକା ଖୁଡ଼ୀ, ତୁମକୁ ବହୁତ କରି କହୁଛି, ତମେ ଏତେବେଳେ ଆଉ ସେ କଥା ଉଠାନା । ବର୍ତ୍ତମାନ କହିଲେ ବାପା ଭାବିବେ ମୁଁ ଏସବୁ କରୁଛି । ତାହେଲେ ଇଏ ତ ମୋତେ ଆଉ ଛାଡ଼ିବେ ନାହିଁ ତମେ ଜାଣ ।''

ଛୁନକା ହାତ ଛଡ଼ାଇ ନେଇ କହିଲା, ''ବୋହୂରାଣୀ, ତମେ ଏତେ ଡରିଲେ କ'ଣ କାମ ହେବ ? ତମେ ପଠାଇଛ ବୋଲି କଣ ମୁଁ ଯାଇ ତାଙ୍କୁ କହିବି ? ତମେ ଚୁପ୍ ହୋଇ ବସ । ତୁମକୁ ଯେମିତି ହେଲେ ମୁଁ ପଠାଇବା ପାଇଁ ଯୋଗାଡ଼ କରି-ଦେବି ?'' ଏତିକି କହି ଯମୁନାର ଉତ୍ତରକୁ ଅପେକ୍ଷା ନ କରି ଛୁନକା ଚାଲିଗଲା ।

ମୁନ୍‌ସି ଶିବଲାଲ ଗାଧୋଇସାରି ପୂଜାରେ ବସିବାକୁ ବାହାରିଛନ୍ତି, ଛୁନକା ଯାଇ ପହଞ୍ଚିଗଲା । ମୁନ୍‌ସି ତାକୁ ଦେଖି କିଛି ପଚାରିବା ପରି ଚାହିଁବାରୁ ସେ କହିଲା, ''ତମ ସଙ୍ଗେ ଟିକିଏ ଜରୁରୀ କାମ ଥିଲା ।''

ଶିବଲାଲ ଟିକିଏ ବିରକ୍ତ ହୋଇ କହିଲେ, ''କଥାଟା କ'ଣ ମୋ ପୂଜା ସରିବା-ଯାଏ ରହି ପାରିବ ନାହିଁ ?''

''ମଲା, ରହି ପାରନ୍ତା ଯଦି ମୁଁ କହନ୍ତି କାହିଁକି ? ତମ ପୂଜା କ'ଣ ମୁଁ କେବେ ଆଉ ବନ୍ଦ କରିଥିଲି ?''

ଶିବଲାଲ ଟିକିଏ ଥମିଯାଇ କହିଲେ, ''ହଉ, ଯାହା କହୁଛୁ ଶୀଘ୍ର କହ, ମୋର ଆଜି ଅନେକ କାମ ଅଛି । କାଲିର ଯିବାପାଇଁ ସବୁ ଯୋଗାଡ଼ କରିବାକୁ ହେବ ।''

ଛୁନକା ଟିକିଏ ଅଭିମାନ କଲାପରି କହିଲା, ''ତମ ଘର ଚାଲିଣିରେ ମୋର କିଛି କହିବାର ନାହିଁ କିମ୍ବା ମୋର କିଛି ଓଜର ଆପତ୍ତି ନାହିଁ । ମୁଁ ଖାଲି ପଚାରୁଛି କାଲି କ'ଣ ଏକା ଏକା ଯାଉଛ ?''

''ହଁ, ରାମୁବୋହୂର କ'ଣ ପିଲାପିଲି ହେବ । ତେଣୁ ସାନବୋହୂଙ୍କ ଯିବା ମୁଁ ବନ୍ଦ କରିଦେଲି । ନୋହିଲେ ସେ ତ ଯିବାପାଇଁ ତିଆରି ହୋଇ ବସିଥିଲେ ।'

''ତାହେଲେ କାଲିର ଖାଇବା ପିଇବା କଥା କିଏ ବୁଝିବ ?''

"ହଁ, ସେଥିପାଇଁ ସେ ଗୋଟାଏ ପୂଜାରୀ ରଖିନେବ । ବଡ଼ ଅଫିସରଙ୍କୁ କ'ଣ ଚାକର ଅଭାବ ? ମୁଁ ଜ୍ୱାଲକୁ ସବୁ ବୁଝାଇ ଦେଇଛି ।"

ଛୁନକା ମୁହଁ ଫୁଲାଇ କହିଲା, "ଧନ୍ୟରେ ତମ ଅକଲ ! ଚାକର ଧରି କଏ କେଉଁଠି ଘର କଲଣି ନା ଜ୍ୱାଲ କରିବ ? ବିଦେଶରେ ରହିବ, ହାକିମ କ୍ଷମତା, ସେଥିରେ ପୁଣି ଯୁବା ବୟସ ।"

ମୁନସି ଶିବଲାଲ ଖୁବ୍ ବିଗିଡ଼ି ଯାଇ କହିଲେ, "ଯା ଯା, କ'ଣ ଗୁଡ଼ାଏ ଏଣ୍ଡୁ-ତେଣ୍ଡୁ ବାଜେ କଥା ବକୁଛୁ ?" ତା'ପରେ ସେ ଆଖି ବୁଜି କିଛି ସମୟ ରହିଗଲେ । ବିରକ୍ତ ହେଲେ ସତ; କିନ୍ତୁ ଶେଷ କଥାଟା ଶୁଣି ମନ ତାଙ୍କର ଟିକିଏ ଶଙ୍କିଗଲା । କଥାଟା ଯଦିଓ ଖୁବ୍ ସ୍ୱାଭାବିକ, ତଥାପି ଆଗରୁ ସେ କଥା ତାଙ୍କୁ ଦିଶି ନ ଥିଲା ।

ଛୁନକା ଏବେ ଶିବଲାଲଙ୍କର ମନକଥାଟା ଜାଣିପାରି ଭାବିଲା, ତା କାଣ୍ଡ ଠିକ୍ ଜାଗାରେ ବାଜିଛି । ତା'ପରେ ନିଜ କଥାକୁ ଟିକିଏ ଆଗକୁ ବଢ଼ାଇ କହିଲା, "ନା, ମୁଁ ସେ କଥା କହୁନାହିଁ ଯେ, ଜ୍ୱାଲ ପରି ପୁଅ ପ୍ରକୃତରେ ମିଳିବ ନାହିଁ । ଯେମିତି ସାଦାସିଧା ସେମିତି ଭୋଳା । ମୁଁ କ'ଣ କହୁଛି କି, ଚାକିରିର କି ଗରଜ ପଡ଼ିଛି ଯେ ସେ ଯୁଆ କଥା ବୁଝିବ । ତମେ ନିଜେ ଭାବି ଦେଖ, ତା ଦେହପା ଯେମିତି ଭଲ ରହିବ ସେମିତି କର ।"

ଶିବଲାଲ ବର୍ତ୍ତମାନ ଆଖି ଖୋଲି ଭାବିଲେ, ପ୍ରକୃତରେ ଏ ସମସ୍ୟାର ସମାଧାନ ତାଙ୍କ ନିଜର ଦାୟିତ୍ୱ । ଛୁନକା ଆଡ଼କୁ କିଛି ସମୟ ଚାହିଁ ପଚାରିଲେ, "ଆଚ୍ଛା, ତୋର ଏଥିରେ ମତ କଣ ?"

ଛୁନକା ଟିକିଏ ଫୁଲିଯାଇ କହିଲା, "ତମ ଆଗେ ତ କଥା କହିବାକୁ ଡର ମାଡ଼ୁଛି, ମୋ କଥା ନ ଧରିବ ଯଦି କହିବ । ହେଲେ ମୋ କଥା ତମକୁ ମାନିବାକୁ ପଡ଼ିବ ।"

"ଆରେ କହିନା ଆଗ, ମାନିବା କଥା ହୋଇଥିଲେ ସିନା ମାନିବ ।"

"ତେବେ ମୋର ଇଚ୍ଛା ଜ୍ୱାଲ ସଙ୍ଗରେ ତା ବୋହୂକୁ ପଠାଇଦିଅ ।"

"ହଁ, ମୁନସି ରାମସହାୟ ଠିକ୍ ସେୟା ଲେଖିଥିଲେ । ତେବେ ବୋହୂକୁ କେମିତି ପଠାଇବା ? ସେ ଏକା ଏକା ସେଠି କେମିତି ଚଳିବ ?"

ଛୁନକା ଜବାବ ଦେଲା, "ଜ୍ୱାଲ ତ ଅଛି, ପୁଣି ଏକା କଣ ?"

"ହଁ, ସେ କଥା ଠିକ୍ ଯେ, ବୋହୂକୁ ସେଠି ସାହାଯ୍ୟ କରିବା ପାଇଁ କେହି ଜଣେ ସଙ୍ଗରେ ଗଲେ ସିନା !"

"ତା ହେଲେ ମୁଁ କହୁଛି ଶୁଣ । ଜ୍ୱାଲ ଯେତେବେଳେ ଜଣେ ହାକିମ ହୋଇ

ଯାଉଛୁ, ତା' ସଙ୍ଗରେ ଜଣେ ଚାକର ଯିବା ଦରକାର । ତମେ ଚାହିଁଲେ ଆମେ ଭିକ୍ଷୁକୁ ପଠାଇଦେବା ।''

ଭିକ୍ଷୁ ପ୍ରସ୍ତାବ ଶୁଣି ଶିବଲାଲ ଭାରି ଖୁସି ହୋଇଗଲେ । ଭାବିଲେ, ପୁଅ ଯେତେବେଳେ ନାଏବ ତହସିଲଦାର ହୋଇ ଯାଉଛୁ, ଅନ୍ତତଃ ବାହାରକୁ ଦେଖାଇବା ପାଇଁ ନଜର ଗୋଟାଏ ଚାକର ରହିବା ଦରକାର । ଭିକ୍ଷୁ ତ ସହଜେ ଘରର ପିଲ, ଘର ଭିତରେ ରହି ବଢ଼ିଛି । ଭିକ୍ଷୁ ପାଖରେ ଥିଲେ ବୋହୂର କିଛି ଅସୁବିଧା ହେବ ନାହିଁ, ନିଶ୍ଚୟ କଥା ।

''ଆଚ୍ଛା, ସେଇଆ ଠିକ୍ ହେଲ । ଜ୍ୱାଲ-ସ୍ତ୍ରୀକୁ କହିଦେ ସେ ତା ଜନ୍ମପତ୍ର ଠିକ୍ କରୁ । ପଅର ଦିନ ଦି-ପହରେ ଏଠୁ ଯିବାକୁ ହେବ । ମୁଁ ସାନବୋହୂକୁ ବି କହି ଦେଉଛି । ଆଉ ଦେଖ, ଯିବାପାଇଁ ଭିକ୍ଷୁକୁ ମଧ୍ୟ ଠିକ୍‌ଠାକ୍ କରିଦେ ।''

## ଦୁଇ

ଜ୍ୱାଲପ୍ରସାଦ ସଙ୍ଗେ ଭିକ୍ଷୁକୁ ପଠାଇବା ପାଇଁ ଘସିଟେକୁ ରାଜି କରାଇବା ଛୁନକା ପକ୍ଷରେ ଆଦୌ କଷ୍ଟକର ହେଲନାହିଁ ।

ଘସିଟେ ଜାଣିଥିଲ, ରାଜାମହାରାଜାମାନଙ୍କର ଯେତିକି କ୍ଷମତା, ନାଏବ ତହସିଲ-ଦାରଙ୍କର ମଧ୍ୟ ସେତିକି କ୍ଷମତା । ତା ଛଡ଼ା ଭିକ୍ଷୁ ତ ଶିବଲାଲଙ୍କ ପରିବାରରେ ଘର ପିଲଙ୍କ ପରି ଚଳେ; ତେଣୁ ଛୁନକା କଥାରେ ଘସିଟେ ବଡ଼ ଖୁସିରେ ରାଜି ହୋଇଗଲ । ଭିକ୍ଷୁ ଯେତେବେଳେ ତା' ବାପ ମୁହଁରୁ ଶୁଣିଲ ଯେ ସେ ଜ୍ୱାଲପ୍ରସାଦ ସଙ୍ଗେ ଘାଟମପୁର ଯିବ, ସେତେବେଳେ ତାର ଆନନ୍ଦର ସୀମା ରହିଲ ନାହିଁ । ନୂଆ ଜାଗାକୁ ଯିବ, ସେଥିରେ ପୁଣି ନିଜ ହାତରେ ପଇସା ରୋଜଗାର କରିବ ଭାବି ସେ ଏତେ ଖୁସି ହୋଇଗଲ ଯେ ବାପମା'ଙ୍କୁ ଛାଡ଼ି ଯିବାପାଇଁ ତା' ମନରେ ଆଦୌ ଦୁଃଖ ନ ଥିଲ ।

ଯମୁନା ଓ ଜ୍ୱାଲପ୍ରସାଦଙ୍କ ସଙ୍ଗରେ ଘାଟମପୁରରେ ପହଞ୍ଚିଗଲ ପରେ ଭିକ୍ଷୁକୁ ଗୋଟାଏ ନୂଆ ହାକିମ ପଦ ମିଳିଗଲ ପରି ଲଗିଲ । ପ୍ରକୃତରେ ସେହି ହେଲ ଘରର ମାଲିକ । ସରକାରୀ କାମରେ ଜ୍ୱାଲପ୍ରସାଦଙ୍କୁ ଫୁରୁସତ୍ ନଥାଏ । ଯମୁନା ତ ଘରେ ହାକିମଙ୍କ ସ୍ତ୍ରୀ ହିସାବରେ ପଲଙ୍କରେ ଶୋଇ ଶାସନ ଚଳାଇଥାଏ; ପର୍ଦ୍ଦା ଭିତରୁ ବାହାରକୁ ଆସିବାକୁ ପଡ଼େ ନାହିଁ । ଭଣ୍ଡାର ଘର ଓ ପରିବାରର ଖର୍ଚ୍ଚପତ୍ର ସବୁ ଭିକ୍ଷୁ

ହାତରେ ଆଏ । ଜ୍ୱାଲାପ୍ରସାଦ ଓ ଯମୁନା ଭିତରେ ଭିକ୍ଷୁ ଏକପ୍ରକାର ଯୋଗସୂତ୍ର ପାଲଟି ଯାଇଥାଏ ।

ଶୀତଦିନ, ଭିକ୍ଷୁ ବାହାର ବାରଣ୍ଡାରେ ବସି ଚଳମ ଟାଣୁଥାଏ । ଜ୍ୱାଲାପ୍ରସାଦ ଟୁର୍‌ରେ ବାହାରିଯାଇଥାନ୍ତି ଓ ଯମୁନା ଜମିଦାରଙ୍କ ସ୍ତ୍ରୀଙ୍କ ପାଖକୁ ବୁଲି ଯାଇଥାଏ । ତେଣୁ ଭିକ୍ଷୁ ଏକପ୍ରକାର ଘରର ମାଲିକ ହୋଇ ବସିଥାଏ । ମନ ତାର ଆନନ୍ଦ ଓ ଆତ୍ମ-ସନ୍ତୋଷରେ ଭରିଯାଇଥାଏ । ଭିକ୍ଷୁ ଏମିତି ବସିଛି ହଠାତ୍ ତାର ସୁଖସ୍ୱପ୍ନଧାରା ଚହଲିଗଲା । ଦେଖିଲା ଶିବପୁରର ଲମ୍ବରଦାର ତା ଆଗରେ ଛିଡ଼ା ହୋଇ ପଚାରୁଛନ୍ତି, "ହଇରେ, ନାଏବ ତହସିଲଦାର ସାହେବ ଘରେ ନାହାନ୍ତି କି ?"

ଭିକ୍ଷୁ ଉଠପଡ଼ି ଜବାବ ଦେଲା, "ନାହିଁ, ସେ ନାହାନ୍ତି, ଟୁର୍‌ରେ ଯାଇଛନ୍ତି, କାଲି ଆସିବେ ।"

ଲମ୍ବରଦାର ଏକା ଏକା ଆସି ନ ଥିଲେ; ତାଙ୍କ ସଙ୍ଗରେ ଜଣେ ବୋହିଆ ଗୋଟାଏ ବୋଝ ଧରି ଆସିଥିଲା । ଲମ୍ବରଦାର କହିଲେ, "ନାଏବ ତହସିଲଦାର ସାହେବଙ୍କୁ କହିଦେବୁ ଶିବପୁରର ଲମ୍ବରଦାର ଆସିଥିଲେ । ଦୁଇ ଚାରି ଦିନରେ ପୁଣି ଆସିବେ । ଆଚ୍ଛା, ବୋହୂରାଣୀଙ୍କ ପାଖକୁ ଏହି ଜିନଷତକ ଟିକିଏ ନେଇ ଯା ।" ତାପରେ ସେ ବୋହିଆ ମୁଣ୍ଡରୁ ବୋଝ ଉତ୍ତାରି ଦେଇ ଭିକ୍ଷୁ ସାମନାରେ ରଖିଦେଲେ ।

ବୋଝକୁ ଦେଖି ଭିକ୍ଷୁର ଭାରି ଲୋଭ ହେଲା; କିନ୍ତୁ ସେ ପୁଣି ଟିକିଏ ଅଟକି ଯାଇ କହିଲା, "ଘରେ ବର୍ତ୍ତମାନ ବୋହୂଠାକୁରାଣୀ ନାହାନ୍ତି, ତାଛଡ଼ା ସାହେବଙ୍କ କଡ଼ା ହୁକୁମ କେହି କିଛି ଜିନିଷ ଆଣିଲେ ସାହେବଙ୍କୁ ନ କହି ନ ଦେଖାଇ ଆମେ ରଖିବୁ ନାହିଁ ।"

"ଆରେ ମୁଁ ତ ଏ ଜିନିଷ ସାହେବଙ୍କ ପାଇଁ ଆଣିନାହିଁ । ମୋ ସ୍ତ୍ରୀ ପଠାଇଛନ୍ତି ସାହେବଙ୍କ ସ୍ତ୍ରୀଙ୍କ ପାଇଁ ହୋଲିଯାତ୍ରା ସକାଶେ । ଆଜି ଶିବପୁର ଯିବାପାଇଁ ତାଙ୍କୁ ନିମନ୍ତ୍ରଣ କରିଛନ୍ତି ମଧ୍ୟ ।" ଏତିକି କହି ପ୍ରଭୁଦୟାଲ ଟଙ୍କାଟିଏ କାଢ଼ି ଭିକ୍ଷୁ ଆଡ଼କୁ ବଢ଼ାଇଦେଇ କହିଲେ, "ଏହି ତୋ ବକ୍‌ସିସ୍ ନେ ।"

ଟଙ୍କାଟି ନେଇ ଭିକ୍ଷୁ ବଡ଼ ସଙ୍କଟରେ ପଡ଼ିଗଲା । ସେ ବୋଝକୁ ଘର ଭିତରକୁ ନେବ କି ନାହିଁ ଠିକ୍ କରି ପାରିଲା ନାହିଁ । ଅବଶ୍ୟ ଟଙ୍କାଟିଏ ପାଇବା ପରେ ତା କଥାର ଢଙ୍ଗ ବଦଳିଗଲା । ଭାବିଲା, ଶାସ୍ତ୍ରରେ ଅଛି ହାତକୁ ଆସୁଥିବା ଧନ ଫେରାଇ ଦେବା ଉଚିତ ନୁହେଁ । ତା'ପରେ କହିଲା, "ଆଚ୍ଛା ଲମ୍ବରଦାର ସାହେବ, ଏ ବକ୍‌ସିସ୍ କଥା ସାହେବଙ୍କୁ କହିବେ ନାହିଁ, ସେ ଶୁଣିଲେ ଭାରି ବିଗିଡ଼ିବେ ।"

ଲମ୍ବରଦାର ପ୍ରଭୁଦୟାଲ ଚାଲିଯିବା ପରେ ଭିକ୍ଷୁ ଯେତେବେଳେ ବୋଝକୁ

ଖୋଲି ଦେଖିଲା, ଚମକି ପଡ଼ିଲା । କେତେ ପ୍ରକାର ମେଓ୍ୱା, ପେସ୍ତା, ବାଦାମ, କାଜୁ, ଅଙ୍ଗୁର ଓ ଗୋଟାଏ ଥାନ ମଖମଲ ଓ ଗୋଟାଏ ଥାନ ଜରିଲଗା ସିଲ୍କ । ଗୋଟାଏ ରୁପା ଥାଳି ଓ ତା' ଉପରେ ରେଶମ ରୁମାଲରେ ବନ୍ଧା ହୋଇଛି ଶହେ ଟଙ୍କା । ଭକ୍ଷୁ ସବୁ ଜିନିଷକୁ ସୁନ୍ଦର ସଜାଡ଼ି ଦେଇ ଭଣ୍ଡାର ଘରେ ରଖିଦେଲା । ତା'ପରେ ପୁଣି ବାହାରକୁ ଯାଇ ଚିଲମ ଟାଣିଲା; କିନ୍ତୁ ତା' ମନଟା କାହିଁକି ଭଲ ଲାଗିଲା ନାହିଁ । ଭାବିଲା ଜିନିଷ ରଖିଦେଇ ସେ ଭୁଲ କରିଛି ବୋଧହୁଏ ।

ସନ୍ଧ୍ୟାବେଳକୁ ଯମୁନା ଫେରିଆସିବା ପରେ ଭକ୍ଷୁ ସବୁ ଜିନିଷ ତା ଆଗରେ ରଖି ଦେଇ କହିଲା, "ବୋହୂଠାକୁରାଣୀ ! ଦେଖ, ଶିବପୁରର ଲମ୍ବରଦାରଙ୍କ ସ୍ତ୍ରୀ ତମପାଇଁ ଏହି ସବୁ ପଠାଇଛନ୍ତି । ଲମ୍ବରଦାର ପ୍ରଭୁଦୟାଲ ନିଜେ ଧରିକରି ଆସିଥିଲେ । ତାଙ୍କ ସ୍ତ୍ରୀ ହୋଲିପାଇଁ ତମକୁ ନିମନ୍ତ୍ରଣ କରିଛନ୍ତି । ମୁଁ ତ ପ୍ରଥମେ ଭାବିଥିଲି ଭାଇଙ୍କୁ ନ କହି ମୁଁ ରଖିବି ନାହିଁ । ଲମ୍ବରଦାରଙ୍କୁ ମଧ୍ୟ ସେହି କଥା କହିଦେଇଥିଲି । କିନ୍ତୁ ସେ ମୋତେ ଆଦୌ ଶୁଣିଲେ ନାହିଁ; କହିଲେ ତମପାଇଁ ତାଙ୍କ ସ୍ତ୍ରୀ ପଠାଇଛନ୍ତି । ତେଣୁ ମୁଁ ଆଉ କିଛି ନ କହି ଚୁପ୍ ହୋଇ ରହିଲି ।"

ଯମୁନା ବୋଝ ଫିଟାଇ ଯେତେବେଳେ ମଖମଲ ଓ ଜରିଲଗା ଥାନ ଦେଖିଲା, ସେତେବେଳେ ତାର ଆଖି ଝଲସିଗଲା । ଦୁଇ ଥାନଯାକ ଲୁଗା ଫିଟାଇ ଏପାଖ ସେପାଖ ବହୁତ ଦେଖିଲା । ଆନନ୍ଦରେ ମୁହଁ ତାର ହସିଉଠିଲା । ତା'ପରେ ରୁପା ଥାଳିର ରେଶମ ରୁମାଲରେ ଯେଉଁ ଟଙ୍କା ଥିଲା, ତା' ଉପରେ ତାର ନଜର ପଡ଼ିଲା । ଟଙ୍କା ଦେଖି ତାର ମନ ଟିକିଏ ମଉଳିପଡ଼ିଲା । କହିଲା, "ଭକ୍ଷୁ ଫଳ ଆଉ ଲୁଗାପଟା ତ ଠିକ୍; କିନ୍ତୁ ଏ ଟଙ୍କା ପଠାଇଛନ୍ତି କାହିଁକି ?"

"ମୁଁ କ'ଣ ଜାଣିଛି, ତେବେ ମୁଁ ଭାବୁଛି ଲମ୍ବରଦାରଙ୍କ ସ୍ତ୍ରୀ ଭାବିଥିବେ, କାଳେ ଗହଣା ପଠାଇଲେ ତମର ପସନ୍ଦ ହେବ କି ନାହିଁ; କିନ୍ତୁ ଟଙ୍କା ଦେଲେ ନିଜ ଇଚ୍ଛା ଅନୁସାରେ ତମେ ଗଢ଼େଇ ନେବ ।"

କିନ୍ତୁ ଭକ୍ଷୁ କଥାରେ ଯମୁନାର ମନ ପୂରା ମାନିଲା ନାହିଁ, ତେବେ ଆଉ କରିବାର କିଛି ବାଟ ନ ଥିଲା । ଭୁଲ ହେଉ କି ଠିକ୍ ହେଉ, ଜ୍ୱାଲାପ୍ରସାଦ ଫେରିଲେ ଯାଇ ଯାହା ହେବ । ତାପରେ ବୋଝକୁ ଭଣ୍ଡାର ଘରେ ରଖିଦେଇ କବାଟ କିଳିଦେବାପାଇଁ ସେ ଭକ୍ଷୁକୁ କହିଲା । ଜ୍ୱାଲାପ୍ରସାଦ ଫେରିଲେ ଯାହା ହେବ କରିବେ ।

ତହିଁ ଆରଦିନ ଜ୍ୱାଲାପ୍ରସାଦ ଟୁର୍‌ରୁ ଫେରିଲା ପରେ ଯମୁନା ଭକ୍ଷୁ ହାତରେ ଜିନିଷ ଅଣାଇ ତାଙ୍କ ସାମନାରେ ରଖିଦେଲା । ଜିନିଷ ଆଣିଲାବେଳେ ଭକ୍ଷୁ ରୁପା ଥାଳି ଓ ଟଙ୍କାକୁ କାଢ଼ି ରଖିଦେଇ ଆସିଲା । ଜ୍ୱାଲାପ୍ରସାଦ ଜିନିଷ ଦେଖି ଖୁବ୍ ପ୍ରସନ୍ନ ହୋଇ

ଯମୁନାକୁ କହିଲେ, "ମୁଁ ସେଦିନ ରାଜପୁରରୁ ଫେରିଲା ପରେ ତମପାଇଁ ଗୋଟାଏ ମଖମଲ ଘାଘରା କରିଦେବା ପାଇଁ ତମେ ମୋତେ କହିଥିଲ । ତମ ମନୋବାଞ୍ଛା ଏବେ ପୂରିଲା; ଦୁଇଟା ଘାଘରା କରାଇଦେବା, ଗୋଟାଏ ମଖମଲର ଓ ଆଉ ଗୋଟିଏ ଜରିଲଗା ସିଲ୍‌କର ।"

ଭିକ୍ଷୁ ଯେତେବେଳେ ଦେଖିଲା ଯେ ଜ୍ୱାଲାପ୍ରସାଦ ଭାର ଦେଖି ଖୁସି ହେଲେ ସେତେବେଳେ ସେ ବାକୀ ଥିବା ରୁପା ଥାଳି ଓ ଟଙ୍କା ନେଇ ଆସି ତାଙ୍କ ପାଖରେ ରଖିଦେଲା । ଜ୍ୱାଲାପ୍ରସାଦ ଚମକି ପଡ଼ି ପଚାରିଲେ, "ଏ ଥାଳି ଆଉ ଏ ଟଙ୍କା କ'ଣ ?"

"ଏସବୁ ଭାର ସଙ୍ଗରେ ଆସିଥିଲା ଯେ ମୁଁ କାଢ଼ି ରଖିଦେଇଥିଲି ।"

ଜ୍ୱାଲାପ୍ରସାଦ ବହୁତ ପାଟି କରି କହିଲେ, "ତା ହେଲେ ତ ଇଏ ଭାର ନୁହେଁ, ଲାଞ୍ଚ ! କଥାଟା ଏବେ ବୁଝିଲି । ତୁ ତା' ହେଲେ ପ୍ରଭୁଦୟାଲଠାରୁ ଏସବୁ ରଖିଲୁ କାହିଁକି ?"

ଏତେବେଳକୁ ଭିକ୍ଷୁର ପକ୍ଷ ସବଳ ହୋଇଯାଇଥିଲା । ସେ କହିଲା, "ମଖମଲ ଓ ଜରି ସିଲ୍‌କ ପ୍ରଭୃତି ଲୁଗା ଓ ମେଓ୍ୱା ଆଦି ଫଳ ଯଦି ଭାର ହେଲା, ରୁପା ଥାଳିରେ ଥିବା ଟଙ୍କା ତାହେଲେ ଉପହାର ହେବ ନାହିଁ କାହିଁକି ? କେବଳ ଫରକ ହେଉଛି ଗହଣା ଜାଗାରେ ସେ ରୁପା ପଠାଇଛନ୍ତି, ବୋଧହୁଏ ତାଙ୍କ ମନଇଚ୍ଛା ଗହଣା ଗଢ଼ାଇନେବେ ।"

ଭିକ୍ଷୁର ଏହି ଅକାଟ୍ୟ କଥାକୁ ଜ୍ୱାଲାପ୍ରସାଦ ଆଉ କାଟି ପାରିଲେ ନାହିଁ । କହିଲେ, "ହଁ, ଠିକ୍ କହୁଛୁ ଯେ କିନ୍ତୁ···ଛାଡ଼, ଯାଉ । ଆଚ୍ଛା, ପ୍ରଭୁଦୟାଲ କିଛି କାମ କରିଦେବା ପାଇଁ କହିଯାଇନାହିଁ ତ ?"

ଭିକ୍ଷୁ ମନେ ମନେ ଟିକିଏ ଫୁଲିଯାଇ କହିଲା, "ନାହିଁ ମ, କାମ ବତେଇବେ କିଏ ? ମୁଁ ତ କହିଲି ତମେ ରାଗିଯିବ, ବୋଧହୁଏ ନାହାନ୍ତି, ମୁଁ ରଖିବି ନାହିଁ । କିନ୍ତୁ ସେ ଯେତେବେଳେ କହିଲେ ତାଙ୍କ ସ୍ତ୍ରୀ ପଠାଇଛନ୍ତି, ମୁଁ ଆଉ କ'ଣ କରିଥାନ୍ତି କହିଲ ?"

ଜ୍ୱାଲାପ୍ରସାଦ ଯମୁନାକୁ କହିଲେ, "ତମେ ଦରଜି ଡକାଇ ଘାଘରା କରିନିଅ, କାନପୁରରୁ ମୁଁ ରେଶମ ଫିତା ମଗାଇ ଦେଉଛି । ବଣିଆକୁ ଡକାଇ ଯାହା ଗଢ଼ାଇବା କଥା ଗଢ଼ାଇ ନିଅ ।"

ଯଦିଓ ଲାଲା ପ୍ରଭୁଦୟାଲ ସେମିତି ଖୁବ୍ ବଡ଼ ଜମିଦାର ନଥିଲେ ତେବେ ତାଙ୍କର ମାନମର୍ଯ୍ୟାଦା ଖୁବ୍ ଭଲ ଥିଲା । ସେ ବରାବର ଜମିଦାରୀ କରୁଥିଲେ । ଜାତିରେ ସେ ବଣିଆ । ତାଙ୍କ ବାପାଙ୍କର ଗୋଟାଏ ଡାଲି ଚାଉଳ ଗୋଦାମ ଥିଲା । ପ୍ରଭୁଦୟାଲ

ନଜେ ଟଙ୍କାପଇସା କରଜ ଦେଉଥିଲେ । ଲୋକେ କହନ୍ତି, ପ୍ରଭୁଦୟାଳଙ୍କଠାରୁ ଯେ କରଜ ନଏ ସେ କେବଳ ନଜ ଜୀବନରେ ନୁହେଁ, ପୁରୁଷ ପୁରୁଷ ଧରି ମଧ୍ୟ କରଜ ସୁଝି ପାରେନାହିଁ । ତଥାପି ତାଙ୍କ ପ୍ରତି କାହାର ଘୃଣା କମ୍ବା ବରକ୍ତ ନଥିଲା । ତାଙ୍କ ବୈଠକଖାନା ଫାଟକ ପାଖରେ ଏକ ରାଧାକୃଷ୍ଣ ମନ୍ଦର ଥିଲା । ସାତ ଆଠ ବର୍ଷ ପୂର୍ବେ ସେ ମନ୍ଦର ସେ ନଜେ ତୋଳାଇଥିଲେ । ସବୁ ଦନ ସନ୍ଧ୍ୟା-ସକାଳେ ମନ୍ଦରରେ ଭୋଗ ଓ ଆଳତ ହେଉଥିଲା । ପ୍ରାୟ ପ୍ରତଦନ ସେଠି ରାମାୟଣ ମହାଭାରତ ପାରାୟଣ ହେଉଥିଲା ଓ ତାହା ଶୁଣିବା ପାଇଁ ବହୁ ଦୂରଦୂରାନ୍ତରରୁ ଲୋକେ ଆସୁଥିଲେ । ବଡ଼ ବଡ଼ ଅଫିସରଙ୍କ ପାଇଁ ତାଙ୍କ ଘରେ ବରାବର ଭୋଜ ମଉଜ ହେଉଥିଲା ।

ଘାଟମପୁର ଆସିଲା ପରେ ଜ୍ୱାଲାପ୍ରସାଦ ପ୍ରଭୁଦୟାଳଙ୍କ ବଷୟରେ ଅନେକ କଥା ଶୁଣିଥିଲେ ଓ ତାଙ୍କ ସଙ୍ଗରେ ଅନେକ ଥର ଦେଖାସାକ୍ଷାତ୍ ବ ହୋଇଥିଲା; କନ୍ତୁ ସେମାନଙ୍କ ଭିତରେ କୌଣସି ନକଟ ସମ୍ପର୍କ ନଥିଲା । ଘାଟମପୁର ଆସିବା ପରେ ଜନ୍ମାଷ୍ଟମୀ ଦନ ପ୍ରଭୁଦୟାଳଙ୍କ ସ୍ତ୍ରୀ କେଦେଇ ଶିବପୁରୀ ମନ୍ଦରର ସାଜସଜ୍ଜା ଦେଖିବା ପାଇଁ ନଜେ ଆସି ଯମୁନାକୁ ଡାକ ନେଇଥିଲେ । ଯମୁନା ସେଠି ଦୁଇ ଦନ ରହିଯିବା ଫଳରେ ଦୁହିଙ୍କ ଭିତରେ ଖୁବ ଘନଷ୍ଠ ସମ୍ପର୍କ ହୋଇଯାଇଥିଲା । ବଦାୟ ବେଳରେ ପ୍ରଭୁଦୟାଳ ଜ୍ୱାଲାପ୍ରସାଦଙ୍କୁ କେତେକ ଉପହାର ଦେବାପାଇଁ ଚାହିଁଥିଲେ; କନ୍ତୁ ଜ୍ୱାଲାପ୍ରସାଦ ତାହା ନେବା ପାଇଁ ମନାକରଦେଇଥିଲେ ।

ଯମୁନା ସେହି ଦନ ଦରଜକୁ ଡକାଇ ମଖମଲ ଓ ଜରିଲଗା ଘାଘରା ବରଦ ଦେଲା ଓ ବଣିଆକୁ ଡକାଇ ପାଞ୍ଚତୋଳା ଓଜନର କଙ୍କଣ ଗଢ଼ିଦେବାପାଇଁ କହିଲା । ଦୁଇ ତନ ମାସ ଭିତରେ ଘାଟମପୁର ଜମିଦାର ଗଜରାଜ ସିଂହଙ୍କ ଝିଅ ବାହାଘର ହେବାର ଥିଲା । ସେଇଥିପାଇଁ ଯମୁନା ଏତେ ତରତରରେ ଜନଷ ବରାଦ ଦେଲା । ଜମିଦାର ଗଜରାଜ ସିଂହଙ୍କର ଖୁବ୍ ନାଁ ଥିଲା ଓ ତାଙ୍କ ଝିଅର ଅବଧର ଏକ ଜମିଦାରଙ୍କ ପୁଅ ସଙ୍ଗେ ବଭା ହେବାର ଥିଲା । ବରଯାତ୍ରୀ ପ୍ରାୟ ହଜାରେ ଜଣ ଆସିବେ ବୋଲି ଶୁଣା-ଯାଉଥିଲା । ଯାହାଙ୍କ ଘରକୁ ଏତେ ବରଯାତ୍ରୀ ଆସିବେ, ତାଙ୍କ ଘରକୁ ନଶ୍ଚୟ ଅନେକ ବନ୍ଧୁ ବାନ୍ଧବ ମାସେ ଦୁଇମାସ ପୂର୍ବରୁ ଆସିବେ ।

ଜ୍ୱାଲାପ୍ରସାଦଙ୍କଠାରୁ ଗଜରାଜ ସିଂହ ବୟସରେ ତେର୍ ବଡ଼ ହେଲେ ବ ଦୁହିଙ୍କ ଭିତରେ ଖୁବ୍ ଘନଷ୍ଠ ସଂପର୍କ ଥିଲା । କାରଣ ଜ୍ୱାଲାପ୍ରସାଦଙ୍କ ମାମୁ ରାମସହାୟ ଓ ଗଜରାଜ ସିଂହଙ୍କ ପରବାର ଭିତରେ ଖୁବ୍ ଭଲ ଭାବ ଥିଲା । ତେଣୁ ଗଜରାଜ ସିଂହ ଜ୍ୱାଲାପ୍ରସାଦଙ୍କୁ ଜଣେ ଅଫିସର ଭାବରେ ଖାତର ନ କର ନଜର ଜଣେ ସମାନସ୍କନ୍ଧ ବନ୍ଧୁ ଭାବରେ ଖାତର କରୁଥିଲେ ।

ଠାକୁର ଗଜରାଜ ସିଂହଙ୍କ ସ୍ତ୍ରୀ ରାଣୀ ଦେବକୁଅଁର ମଧ୍ୟ ଯମୁନାଠାରୁ ବୟସରେ ଢେର୍ ବଡ଼ । ଯମୁନା ପ୍ରତି ସେ ବୟସ୍କା ସ୍ତ୍ରୀଙ୍କ ପରି ବ୍ୟବହାର କରୁଥିଲେ । ଝିଅ ବାହାଘରରେ ବନ୍ଧୁବାନ୍ଧବ ଚର୍ଚ୍ଚା କାମ ସେ ପୂରାପୂରି ଯମୁନା ହାତରେ ଛାଡ଼ି ଦେଇଥିଲେ । ବଡ଼ଲୋକଙ୍କ ପାଖରେ ଚଳିବାକୁ ହେଲେ ନିଜକୁ ବି ବଡ଼ କରିବାକୁ ହେବ; କିନ୍ତୁ ବଡ଼ଙ୍କ ସଙ୍ଗେ ସମାନ ହେବାପାଇଁ ଯମୁନାର ଚକମକ ଲୁଗାପଟା କିମ୍ବା ଦାମିକା ଗହଣାଗାଣ୍ଠି କିଛି ନ ଥିଲା । କିଛି ଗହଣା ତ ସେ ତାର ଯାଇଁ ମହାରାଣୀଙ୍କ-ଠାରୁ ମାଗି ଆଣିଥିଲା; କିନ୍ତୁ ଲୁଗାପଟାର କିଛି ବ୍ୟବସ୍ଥା କରିପାରି ନଥିଲା । ସେଥିଲାଗି ଦୁ'ଖଣ୍ଡ ଭଲ ଦାମିକା ଲୁଗା କିଣିବା ପାଇଁ ସେ ଖୁବ ବ୍ୟସ୍ତ ହେଉଥିଲା ଓ ତା'ଠାରୁ ତାଗିଦା ଶୁଣି ଶୁଣି ଜ୍ୱାଲାପ୍ରସାଦ ନାକେଦମ୍ ହୋଇଯାଇଥିଲେ । ଦାମିକା ଲୁଗା ପାଇଁ ତ ଟଙ୍କା ଦରକାର । ଜ୍ୱାଲାପ୍ରସାଦଙ୍କ ପାଖରେ ଆଉ ସବୁ ଥିଲେ ବି ପଇସା ଆଦୌ ନଥିଲା । ଦରମାର ଏକ-ଚତୁର୍ଥାଂଶ ବାପାଙ୍କ ପାଖକୁ ପଠାଇ ଦେଇ ବାକି ଟଙ୍କାରେ ସେ ଘରଖର୍ଚ୍ଚ ଚଳାଇ ନେଉଥିଲେ । ଉପୁରି ଟଙ୍କା ତାଙ୍କୁ ମିଳିପାରନ୍ତା; କିନ୍ତୁ ସେଥିରେ ତାଙ୍କର ଆଦୌ ବିଶ୍ୱାସ ନଥିଲା ।

ବର୍ତ୍ତମାନ ପ୍ରଭୁଦୟାଲଠାରୁ ଉପହାର ପାଇ ଜ୍ୱାଲାପ୍ରସାଦଙ୍କର ଗୋଟାଏ ବଡ଼ ସମସ୍ୟା ସମାଧାନ ହୋଇଗଲା । ଏତେ ସହଜରେ ସମସ୍ୟା ସମାଧାନ ହୋଇଯିବ ବୋଲି ସେ କେବେ କଳ୍ପନା କରି ନ ଥିଲେ । ଏହି ସମାଧାନରେ ଆନନ୍ଦ ମଧ୍ୟରେ ବାସ୍ତବତାର ବିଷମୟ ରୂପକୁ ସେ ଭୁଲିଯାଇଥିଲେ । କିନ୍ତୁ ଏହି ଘଟଣାର ତିନିମାସ ପରେ ସେ ତାର ଏକ କ୍ଷୀଣ ଆଭାସ ପାଇଲେ, ଯେଉଁ ଦିନ ଗଜରାଜ ସିଂହଙ୍କ ବାହାଘରକୁ ଯିବା ପାଇଁ ପ୍ରଭୁଦୟାଲଙ୍କ ସ୍ତ୍ରୀ ଜେଦେଇ ଏକ ସକାଳରେ ଆସି ତାଙ୍କ ଦୁଆରେ ପହଞ୍ଚିଲେ ।

ପ୍ରଭୁଦୟାଲ ଗଜରାଜ ସିଂହଙ୍କ ବାହାଘରକୁ ଯିବାପାଇଁ ନିମନ୍ତ୍ରଣ ପାଇଥିଲେ । ଯମୁନା ଯେତେବେଳେ ବାହାଘରକୁ ଯିବାପାଇଁ ସଜବାଜ ହେଉଥିଲା, ପ୍ରଭୁଦୟାଲଙ୍କ ସ୍ତ୍ରୀ ଜେଦେଇ ଠିକ୍ ସେତିକିବେଳେ ଆସି ତାଙ୍କ ଘରେ ପହଞ୍ଚିଲେ ।

ଜେଦେଇ ଯମୁନା ସଙ୍ଗରେ ଜ୍ୱାଲାପ୍ରସାଦଙ୍କ ଘରେ ରହିବ ବୋଲି ପ୍ରଭୁଦୟାଲ ଯେତେବେଳେ କହିଲେ, ଯମୁନା ସେତେବେଳେ ଖୁବ ଖୁସି ହେଲା ସତ; କିନ୍ତୁ ଜ୍ୱାଲାପ୍ରସାଦଙ୍କ ମନରେ ଏକପ୍ରକାର ଖଟକା ଲାଗିଲା । ହେଲେ ପ୍ରଭୁଦୟାଲଙ୍କର କଥାକୁ ଏଡ଼ିଦେବା ପାଇଁ ଜ୍ୱାଲାପ୍ରସାଦଙ୍କର ଏବେ ଆଉ ଉପାୟ ନଥିଲା; ତେଣୁ ଉପର ମନରେ ସେମାନଙ୍କୁ ସ୍ୱାଗତ କରିବାପାଇଁ ସେ ବାଧ୍ୟ ହେଲେ ।

ସେହିଦିନ ସକାଳେ ଗଜରାଜ ସିଂହଙ୍କ ଘରକୁ ବରଯାତ୍ରୀ ଆସିଥିଲେ । ଲୋକେ କହନ୍ତି, ବରଯାତ୍ରୀରେ ପ୍ରାୟ ବାରଶହ ପର୍ଯ୍ୟନ୍ତ ଲୋକ ଥିଲେ । ଏମିତି ବାହାଘର

ବରଯାତ୍ରୀ ଘାଟମପୁରକୁ କେବେ ଆସିବାର କେହି ଦେଖି ନଥିଲେ । ବରଯାତ୍ରୀଙ୍କୁ ଛାଡ଼ିଦେଲେ ଏଗାର ଘର ହାତୀ, ଏକାବନ ଘର ଓଟ, ଶହେ ଘୋଡ଼ା, ତିନିଶହ ଗାଡ଼ିରେ ଛଅଶହ ବଳଦ ବି ଆସିଥିଲେ ଓ ସେମାନଙ୍କ କଥା ବୁଝାସୁଝା କରିବା ପାଇଁ ପ୍ରାୟ ଆଠଶହ ଜଣ ଚାକର ଆସିଥିଲେ । ବରଯାତ୍ରୀ ରହିବା ପାଇଁ ଗଜରାଜ ସିଂହଙ୍କର ପଶ୍ଚିମ ବଗା ଆମ୍ବତୋଟା ଭିତରେ ଦୂରଦୂରାନ୍ତରରୁ ଆଣି ଅନେକ ତମ୍ବୁ ପକାଇ ଦିଆଯାଇଥିଲା ।

ଢଙ୍କପୁର ଜମିଦାର ଚନ୍ଦ୍ରଭୂଷଣ ସିଂହଙ୍କ ପୁଅ ଇନ୍ଦ୍ରଭୂଷଣ ସିଂହଙ୍କ ସହିତ ଗଜରାଜ ସିଂହଙ୍କ ଝିଅର ଯେଉଁ ବାହାଘର ହେଲା, ସେଥିରେ ଗଜରାଜ ସିଂହଙ୍କୁ ବହୁତ ଟଙ୍କାପଇସା ଖର୍ଚ୍ଚ କରିବାକୁ ପଡ଼ିଲା । ଯାନ-ଯୌତୁକର ତ ଠିକଣା ନଥିଲା, ସେଥିରେ ପୁଣି ସେ ରାଜା-ମହାରାଜାଙ୍କ ପରି ଯେଉଁ ଆଡ଼ମ୍ବର କଲେ ସେଥିପାଇଁ ତାଙ୍କୁ ବହୁତ ଟଙ୍କାପଇସା କରଜ କରିବାକୁ ପଡ଼ିଲା । ପ୍ରଭୁଦୟାଳଙ୍କ ପାଖରେ ପାଞ୍ଚଖଣ୍ଡ ଗାଁ ବନ୍ଧା ପକାଇ ଏହି ଟଙ୍କା ସେ ତାଙ୍କଠାରୁ କରଜ ଆଣିଥିଲେ ।

ଲମ୍ବରଦାରଣୀ ଜେଦେଇ ଯମୁନା ସଙ୍ଗରେ ଦଶଟା ବେଳକୁ ଗଜରାଜ ସିଂହଙ୍କ ଘରକୁ ଚାଲିଗଲେ । ତା'ପରେ ଦୁଇପ୍ରହର ବେଳକୁ ପ୍ରଭୁଦୟାଳ ଓ ଜ୍ୱାଳାପ୍ରସାଦ ଯାଇ ପହଞ୍ଚିଲେ । ସେମାନେ ପହଞ୍ଚିଲାବେଳକୁ ଗଜରାଜ ସିଂହ ତାଙ୍କ ଅଫିସ ଘରେ ବସିଥିଲେ ଓ ତାଙ୍କ ଚାରିପାଖେ ବନ୍ଧୁବାନ୍ଧବ ଓ ଅନ୍ୟ ଜମିଦାରମାନେ ଘେରି ରହି ବରଯାତ୍ରୀ-ମାନଙ୍କର ଭଲମନ୍ଦ ବ୍ୟବସ୍ଥା କରୁଥିଲେ । ବହୁତ ବରଯାତ୍ରୀ ଆସିବେ ଜାଣି ସେ ଖୁବ୍ ଭଲ ବ୍ୟବସ୍ଥା କରିଥିଲେ; କିନ୍ତୁ ଏତେ ଲୋକ ଆସିବେ ବୋଲି ସେ କେବେ କଳ୍ପନା କରି ନଥିଲେ । ସେ ଯାହା ବ୍ୟବସ୍ଥା କରିଥିଲେ ତାହା ଏତେ ଲୋକଙ୍କୁ ଅଣ୍ଟିବ ନାହିଁ ଦେଖି ବିଚାରି ବଡ଼ ବିପଦରେ ପଡ଼ିଲେ । ତେଣୁ ଅଧିକ ଜିନିଷପତ୍ର ପାଇଁ ଲୋକଙ୍କୁ ଏଣେତେଣେ ପଠାଇ ସେମାନଙ୍କର ଫେରିବା ବାଟକୁ ଅନାଇ ବସିଥିଲେ ।

ଜ୍ୱାଳାପ୍ରସାଦଙ୍କୁ ଦେଖିଲା ମାତ୍ରେ ଗଜରାଜ ସିଂହ କହିଲେ, "ନାଏବ ସାହେବ, ଶୁଣିଲେଣି ଟି ! ଏମାନେ ବରଯାତ୍ରୀ ନେଇକରି ଆସିଛନ୍ତି ନା ଡକାୟତି କରିବା ପାଇଁ ଆସିଛନ୍ତି । ଏମାନଙ୍କର ବ୍ୟବସ୍ଥା କରିବା ପାଇଁ ମୁଁ ଆପଣଙ୍କର ଦୁଇଜଣ କାନଗୋଇଙ୍କୁ ପଠାଇ ଦେଇଛି । ଆପଣଙ୍କୁ ଆଗରୁ କହି ପାରି ନ ଥିଲି, ବର୍ତ୍ତମାନ କହୁଛି, ଆପଣଙ୍କ ନାଁରେ ଆପଣଙ୍କର ଦୁଇଚାରିଜଣ ପଟ୍ଟୱାରୀଙ୍କୁ ମଧ୍ୟ ମୁଁ ଡକାଇ ଆଣିଛି ।"

ଜ୍ୱାଳାପ୍ରସାଦ ହସି ହସି କହିଲେ, "ଆଜ୍ଞା, ସେମାନେ କ'ଣ ଆପଣଙ୍କ ଲୋକ ନୁହନ୍ତି, ମୁଁ ତ ନିଜେ ସେବା କରିବା ପାଇଁ ହାଜର ଅଛି । ବଡ଼ଲୋକଙ୍କର ବଡ଼ କଥା ।"

ଗଜରାଜ ସିଂହ ହସି ଦେଇ କହିଲେ, "ବଡ଼ଲୋକ କହି ଆଉ ଲଜ୍ଜା ଦିଅନ୍ତୁ ନାହିଁ,

ନାଏବ ସାହେବ !" ତାପରେ ସେ ପ୍ରଭୁଦୟାଲଙ୍କୁ ଚାହିଁ କହିଲେ, "ବସନ୍ତୁ ପ୍ରଭୁଦୟାଲ ! କେତେବେଳେ ଆପଣ ଆସିଲେ ?"

ପ୍ରଭୁଦୟାଲ କହିଲେ, "ଆମେ ସକାଳୁ ଆସିଲୁଣି । ମୋ ସଙ୍ଗରେ ମୋ ସ୍ତ୍ରୀ ବି ଆସୁଥିଲେ । ବାଟରେ କିନ୍ତୁ ତହସିଲଦାରଣୀ ତାଙ୍କୁ ଜବରଦସ୍ତ ତାଙ୍କ ଘରେ ରଖାଇ ନେଲେ । ଅବଶ୍ୟ ସେମାନେ ଆମ ଆଗରୁ ଏଠାକୁ ଆସିଗଲେଣି । ସେମାନଙ୍କ ଭିତରେ ଏବେ ବହୁତ ଘନିଷ୍ଠତା ହୋଇଗଲାଣି । ତହସିଲଦାରଣୀଙ୍କ ସ୍ନେହ ମମତା କଥା କ'ଣ କହିବି । ଜ୍ୱାଲାପ୍ରସାଦ ସାହେବ ଯେମିତି ସାଦାସିଧା, ଯେମିତି ସ୍ନେହୀ; ତାଙ୍କ ସ୍ତ୍ରୀ ବି ଠିକ୍ ସେମିତି । ଭଗବାନ ଗୋଟାଏ ବଢ଼ିଆ ଯୋଡ଼ି ଯୁଟାଇଛନ୍ତି ।"

ଠାକୁର ଗଜରାଜ ସିଂହ ହସି ହସି କହିଲେ, "ହଁ ଯାହା କହିଲେ ସେଥିରେ କଣ ସନ୍ଦେହ ଅଛି । ଆମ ଘର ଯାହା, ନାଏବ ତହସିଲଦାରଙ୍କ ଘର ସେଆ, ସେଥିରେ କ'ଣ ଗୋଟାଏ ପର-ଆପଣା ଅଛି । ଭଲ କଲେ, ତାଙ୍କ ଘରେ ରହିଲେ । ଏଠି ତ ଦେଖୁଛନ୍ତି କେତେ ଧୂମଧାମ୍ ଗଣ୍ଡଗୋଳ । ଝିଅ ବାହାଘର ପ୍ରକୃତରେ ବଡ଼ ହଇରାଣ କାମ । ଦେଖୁଛନ୍ତି ତ ନିଶ୍ୱାସ ମାରିବାକୁ ଦଣ୍ଡେ ଫୁରୁସତ୍ ନାହିଁ । ମୁଁ ତ ଆଗରୁ ଯଜ୍ଞପୁର ରାଜାସାହେବଙ୍କୁ ସଫା ମନାକରି ଦେଇଥିଲି ଏତେ ଲୋକ ଆଣିବେ ନାହିଁ । କିନ୍ତୁ କଥା ତ ଅଛି, ରଜାମନ ! ବଡ଼ ଜିଦ୍‌ଖୋର ଲୋକ ସେ, ବାରଣହି ଲୋକ ଧରି ଆସି ପହଞ୍ଚିଛନ୍ତି । ଆହୁରି ମଜା କଥା ହେଉଛି, ଏତେ ଲୋକଙ୍କର ଖାଇବା ପିଇବା ଜିନିଷପତ୍ର ଧରି ଆସିଛନ୍ତି, ସତେ ଯେମିତି କେଉଁଠି ରାଜ୍ୟଜୟ କରିବା ପାଇଁ ଯାଉଛନ୍ତି । ବୁଝିଲ ପ୍ରଭୁଦୟାଲ, ଏସବୁ ଦେଖି ମୋତେ ଭାରି ରାଗ ଲାଗିଲା । ମୁଁ ସଫା ସଫା କହିଦେଲି ଏଥିରେ ସେ ଯେମିତି ହଇରାଣ, ମୋର ବି ସେମିତି ଅପମାନ । କିନ୍ତୁ ଦେଖନ୍ତୁ ଜ୍ୱାଲାବାବୁ ! ବିଚରା ଏଡ଼େ ସାଦାସିଧା, ଏଡ଼େ ଭଲଲୋକ ଯେ ମୋ କଥା ଶୁଣି ବି କାନ୍ଦ କାନ୍ଦ ହୋଇଗଲେ ଓ ମୋ କାନ୍ଧରେ ହାତ ପକାଇ କହିଲେ, "ଭାଇ ଗଜରାଜ, ମୋତେ କ୍ଷମା କର । ତମେ ଏତେ ଖରାପ ଭାବିବ ବୋଲି ମୋର ଆଦୌ ଧାରଣା ନଥିଲା ।"

ଗଜରାଜ ସିଂହଙ୍କ ଶଳା ବରଜୋର ସିଂହ ସେଇଠି ଥିଲେ, ସେ କହିଲେ, "ବୁଝିଲେ ଭିଣୋଇ ସାହେବ ! ରାଜା ତ ମଣିଷ ନୁହନ୍ତି, ଜଣେ ଦେବତା । ତାଙ୍କ ପରି ଜଣେ ସମ୍ବନ୍ଧ ପାଇ ତମେ ଧନ୍ୟ ହୋଇଛ ।"

ଏ କଥା ଶୁଣି ଗଜରାଜ ସିଂହଙ୍କ ଛାତି କୁଣ୍ଢେ । ଆଉ ଲୋକ କ'ଣ ଭାବୁଛନ୍ତି ଦେଖିବା ପାଇଁ ସେ ଚାରିଆଡ଼କୁ ଆଖି ବୁଲେଇ ଦେଖିଲେ, ପ୍ରଭୁଦୟାଲ ମୁରକି ମୁରକି ହସୁଛନ୍ତି । ମନେହେଲା ସେ ହସରେ ଯେମିତି ପରିହାସ ପୂରିରହିଛି । ଏବେ ମୋଟେ ପାଞ୍ଚ ମାସ ତଳେ ଗଜରାଜ ପ୍ରଭୁଦୟାଲଙ୍କ ପାଖରେ ପାଞ୍ଚଖଣ୍ଡ ଗାଁ ବନ୍ଧା ପକାଇ ଟଙ୍କା କରଜ ନେଇଥିଲେ ।

ଠାକୁର ଗଜରାଜ ସିଂହ ଜଣେ ବଡ଼ ଜମିଦାର । ଜମିଦାରୀରୁ ତାଙ୍କୁ ବର୍ଷକୁ ପ୍ରାୟ କୋଡ଼ିଏ ହଜାର ଟଙ୍କା ଲାଭ ମିଳୁଥିଲା; କିନ୍ତୁ ତାଙ୍କର ଖର୍ଚ୍ଚ ଖୁବ୍ ବହୁତ ଥିଲା । ସେ ଏପରି ବିଳାସରେ ରହୁଥିଲେ ଯେ ପଇସାଟିଏ ବି ବଞ୍ଚୁ ନଥିଲା । ପଇସା ଖର୍ଚ୍ଚ ନ କରିବାକୁ ସେ ଏକପ୍ରକାର ଦୁର୍ଗୁଣ ବୋଲି ଭାବୁଥିଲେ । ତାଙ୍କର ଧାରଣା, ବ୍ୟୟ କରିବା ପାଇଁ ଭଗବାନ ଆୟ ଦେଇଛନ୍ତି । ସେଇଥିପାଇଁ ସେ ପ୍ରଭୁଦୟାଲଙ୍କୁ ଟିକିଏ ଶ୍ରେଷ୍ଠ ନଜରରେ ଦେଖୁଥିଲେ । ସେ ଜାଣିଥିଲେ ଆଗେ ପ୍ରଭୁଦୟାଲଙ୍କ ବାପାଙ୍କର ଗୋଟିଏ ଶ୍ରେଷ୍ଠ ଦୋକାନ ଥିଲା; କିନ୍ତୁ କୋଡ଼ିଏ ବର୍ଷ ଭିତରେ ସେ ଲକ୍ଷେ ଟଙ୍କାର କାରବାର କଲେଣି । ସାରା ଘାଟମପୁର ଇଲାକାରେ ପ୍ରଭୁଦୟାଲଙ୍କ ପରି ନଗଦ ଏତେ ଟଙ୍କା ଗଣିଦେବା ଲୋକ ଆଉ କେହି ନଥିଲେ ।

ଗଜରାଜ ନିଜ କଥାକୁ ସ୍ପଷ୍ଟ କରିବା ପାଇଁ ପ୍ରଭୁଦୟାଲଙ୍କୁ ପଚାରିଲେ, "କ'ଣ ପ୍ରଭୁଦୟାଲ, ଏ ବରଯାତ୍ରୀଙ୍କ କଥା ତମ ମନକୁ କ'ଣ ଆସୁଛି ?"

ପ୍ରଭୁଦୟାଲ ଟିକିଏ ହସିଦେଇ କହିଲେ, "ବରଯାତ୍ରୀ କଥା ଆମେ କ'ଣ କହିବା, ସେ ତ ରଜା ଜମିଦାରଙ୍କ କଥା, ଲମ୍ବାଚୌଡ଼ା କାରବାର ।" ତାପରେ ସେ ଟିକିଏ ଅଟକିଯାଇ ପୁଣି କହିଲେ, "ଶୁଣୁଛ, ଯଜ୍ଞପୁର ରାଜାସାହେବ ତାଙ୍କ ଜମିଦାରୀରୁ ବର୍ଷକୁ ତିନିଲକ୍ଷ ଟଙ୍କା ଲାଭ ପା'ନ୍ତି ।"

ପ୍ରଭୁଦୟାଲ ଯଜ୍ଞପୁର ରାଜାଙ୍କ ରୋଜଗାର ବିଷୟରେ ଯାହା କହିଲେ, ସେଠି ବସିଥିବା କୌଣସି ଲୋକ ତାର ଭିତର ମରମ ବୁଝିପାରି ନ ଥିଲେ, ବୁଝିଥିଲେ କେବଳ ଜ୍ୱାଲାପ୍ରସାଦ । ପ୍ରଭୁଦୟାଲଙ୍କ କଥାରେ ଗଜରାଜ ସିଂହ ବଡ଼ ଖୁସି ହୋଇ କହିଲେ, "ରୋଜଗାର ଯାହା ହେଉ, ତାଙ୍କର ଖର୍ଚ୍ଚ ଖୁବ୍ ବେଶି । ତାଙ୍କର ପଇସା ପାଣିପରି ବୋହିଯାଏ । ଗୋଟାଏ କୋଠା ମସୁରୀରେ, ଗୋଟାଏ ଆଲହାବାଦରେ, ପୁଣି ବର୍ଷରେ ଛମାସ କଲିକତାରେ ରହଣି ।"

ଏ କଥା ଶୁଣି ବରଜୋର ସିଂହ ତାଙ୍କ ଭଣୋଇଙ୍କ କଥାର ଟିପ୍ପଣୀ କରି କହିଲେ, "ସେ ତ କିଛି ବଣିଆ ମହାଜନ ନୁହନ୍ତି, ରଜାମହାରାଜା ଘର କଥା ।"

ପ୍ରଭୁଦୟାଲ ପୂର୍ବପରି ହସହସ ମୁହଁରେ କହିଲେ, "ଠିକ୍ କହିଲ ବରଜୋର ସିଂହ । ଆମେ ତ ବଣିଆମାନେ, ତମ ରଜାଲୋକଙ୍କର ପ୍ରଜା । ଆମେ ତମ ସଙ୍ଗେ କେମିତି ସମାନ ହେବୁ ?"

ଠାକୁର ବରଜୋର ସିଂହଙ୍କ ବାପା ଜଣେ ବଡ଼ ଜମିଦାର ଥିଲେ; କିନ୍ତୁ ଏବେ କାଳଚକ୍ରରେ ସବୁ ଓଲଟି ଯାଇଥିଲା । ଗୋଟିଏ ଶ୍ରେଷ୍ଠ ଗାଁ ଛଡ଼ା ତାଙ୍କ ପାଖରେ ଆଉ କିଛି ନଥିଲା । ସେହି ଗାଁର ଅଧିକାଂଶ ଜମି ବି ଦାଲିଚର ହୋଇ ପଡ଼ିଥିଲା । ସାରା ଗାଁରୁ

ତାଙ୍କୁ ବର୍ଷରେ ମୋଟେ ଅଢ଼େଇ ଶହ ଟଙ୍କା ଲାଭ ମିଳୁଥିଲା । ତଥାପି ତ ସେ ଜମିଦାର ବୋଲାଉଥିଲେ ! ଘାଟମପୁରଠାରୁ ପାଞ୍ଚ ମାଇଲ ଦୂରରେ ତାଙ୍କ ନିଜ ଗାଁ ଚୂନୌଠାରେ ତାଙ୍କର ଗୋଟାଏ ବଡ଼ ଘର ଥିଲା । ଏବେ ବି ସେହି ଘର ଆଗରେ ତାଙ୍କ ବାପାଙ୍କ ହାତୀ ଝୁଲୁଥିଲା । ପଇସା ଅଭାବରୁ ସେହି ବଡ଼ ଘର ମରାମତି ହୋଇପାରୁ ନଥିଲା; ଏଠୁସେଠୁ ଚୂନ ଖସି ପଡ଼ୁଥିଲା । ବରଜୋର ସିଂହଙ୍କ ହାତରେ ମାତ୍ର ଶହେ ବିଘା ହାତଗୃଷ ଥିଲା । ଜମିଟା ଯମୁନାକୂଳରେ ହୋଇଥିବାରୁ ସେଥିରୁ ଭଲ ଆମଦାନି ହେଉଥିଲା ଓ ସେଇ ଥିଲା ତାଙ୍କର ଏକମାତ୍ର ସମ୍ବଳ । କିନ୍ତୁ ପୁଅର ବାଲ ପକାଇବାରେ ସେ ଏତେ ଲମ୍ବା ଖର୍ଚ୍ଚ କରିଦେଲେ ଯେ ସେଥିରେ ସେ ଉଚ୍ଛନ୍ନ ହୋଇଗଲେ । ପାଞ୍ଚବର୍ଷ ପୂର୍ବେ ସେହି ଜମିକୁ ସେ ପ୍ରଭୁଦୟାଲ ପାଖରେ ବନ୍ଧା ପକାଇଥିଲେ । ଜମି ବନ୍ଧା ଦେଇ ସେ ମାତ୍ର ହଜାରେ ଟଙ୍କା ନେଇଥିଲେ; କିନ୍ତୁ ସୁଧ ଉପରେ ସୁଧ ଚଢ଼ି ତାହା ଏବେ ଦୁଇ ହଜାରରେ ପହଞ୍ଚି ଯାଇଥିଲା । ଗତବର୍ଷ ପ୍ରଭୁଦୟାଲ ଏହି ଟଙ୍କା ବିଷୟରେ ବରଜୋର ସିଂହଙ୍କୁ କଡ଼ା ତାଗିଦ ଦେବା ଫଳରେ ଉଭୟଙ୍କ ଭିତରେ ଥରେ ଅଧେ ବଚସା ହୋଇ ଯାଇଥିଲା । ତିନିମାସ ପୂର୍ବେ ଦୁହିଙ୍କ ଭିତରେ ଏମିତି କଡ଼ାକଡ଼ି ହୋଇଯାଇଥିଲା ଯେ ପ୍ରଭୁଦୟାଲ ମକଦ୍ଦମା ଦାଏର କରିବାପାଇଁ ଧମକ ଦେଇଥିଲେ ।

ବର୍ତ୍ତମାନ ବରଜୋର ସିଂହଙ୍କର ବ୍ୟଙ୍ଗ କଥାକୁ ପ୍ରଭୁଦୟାଲ ଯେମିତି ସାଧାରଣ ପରିହାସ ଭାବରେ ଗ୍ରହଣ କରିଥିଲେ, ପୂର୍ବେ ମଧ୍ୟ ସେମିତି ତାଙ୍କ କଥାକୁ ଅତି ମାମୁଲି ଭାବରେ ସ୍ୱୀକାର କରିଥିଲେ । କିନ୍ତୁ ଏଥର କାହିଁକି ତାଙ୍କ ମନ ଭାରି ଚିଡ଼ିଯାଇଥିଲା । ଜ୍ୱାଲାପ୍ରସାଦଙ୍କ ସଙ୍ଗେ ବାହାଘରରୁ ଫେରିଲାବେଳେ ତାଙ୍କ ମୁହଁ ଟିକିଏ ଗମ୍ଭୀର ଦେଖା-ଯାଉଥିଲା । ଜ୍ୱାଲାପ୍ରସାଦ ପଚାରିଲେ, "କ'ଣ ପ୍ରଭୁଦୟାଲ ବାବୁ, ହଠାତ୍ କାହିଁକି ତମେ ଏତେ ଗମ୍ଭୀର ହୋଇ ପଡ଼ିଲ ?"

ପ୍ରଭୁଦୟାଲ ଜବାବ ଦେଲେ, "ଦେଖିଲୁ ତହସିଲଦାର ବାବୁ, କ'ଣ ଭାବୁଥିଲି କି, ମିଥ୍ୟା ଅଭିମାନରେ ମଣିଷ କାହିଁକି ଏତେ ଅନ୍ଧ ହୋଇ ନିଜର ଭଲ ମନ୍ଦ ବି ଭୁଲିଯାଏ ?"

ଜ୍ୱାଲାପ୍ରସାଦ ମାମୁଲି ଭାବରେ କହିଲେ, "ହଁ, ମୁଁ ବି ସେୟା ଭାବୁଥିଲି, ଗଜରାଜ ସିଂହ କାହିଁକି ନିଜର ଶକ୍ତି ବାହାରେ ତାଙ୍କ ଝିଅ ବାହାଘରକୁ ଏତେ ଆଡ଼ାଚୌଡ଼ା କରୁଥିଲେ ?"

"ନାହିଁ ଜ୍ୱାଲାବାବୁ, ମୁଁ ଗଜରାଜ ସିଂହଙ୍କ କଥା ଭାବୁନାହିଁ, ମୁଁ ଭାବୁଛି ବରଜୋର ସିଂହଙ୍କ କଥା । ଆପଣ ତ ଦେଖିଥିବେ ବୁଲେଇ ବଙ୍କେଇ ମୋ ବିଷୟରେ ସେ କେମିତି ଅପମାନଜନକ କଥା କହୁଥିଲେ । ମୁଁ ଆଶ୍ଚର୍ଯ୍ୟ ହେଉଛି, ମୋ ବିଷୟରେ ସେ ଏମିତି

କାହିଁକି କହୁଛନ୍ତି ? ମୁଁ ତ ଚାହିଁଲେ ମୁହୂର୍ତ୍ତିକରେ ତାଙ୍କର ସର୍ବନାଶ କରିଦେବି । ତାଙ୍କର ଶହେ ବିଘା ଜମି ମୋ ପାଖରେ ବନ୍ଧା ପଡ଼ିଛି, ପୁଣି କରଜ ଦୁଇ ହଜାର ଟଙ୍କା ପୂରିଗଲାଣି । ଆଜିକୁ ପାଞ୍ଚବର୍ଷ ହୋଇଗଲାଣି, କରଜ ସେମିତି ବଢ଼ି ଚାଲିଛି । ମୁଁ ଏବେ କେତେ ଦିନ ଅପେକ୍ଷା କରିବି ? ମୁଁ ନିଶ୍ଚୟ ତାଙ୍କ ନାଁରେ ମକଦ୍ଦମା କରିବି ଓ ଏହି ଅକାରଣ ଅପମାନର ପ୍ରତିଶୋଧ ନେବି । ଆପଣ ତ ସାକ୍ଷୀ ଅଛନ୍ତି । ଆପଣ ଜାଣନ୍ତି ମୋର ଏଥିରେ କିଛି ଦୋଷ ନାହିଁ ।''

ଜ୍ୱାଳାପ୍ରସାଦ ବରଜୋର ସିଂହଙ୍କୁ ଖୁବ୍ ଭଲ ଭାବରେ ଜାଣିଥିଲେ । ବରଜୋର ସିଂହ ଯେମିତି ଭଲ, ସେମିତି ମେଳାପି । ଅନ୍ୟର ଦୁଃଖରେ ତାଙ୍କର ଭାରି ଦୁଃଖ; କିନ୍ତୁ ଟିକିଏ ଜିଦଖୋର ଓ ଉଦ୍ଧତ । ଜ୍ୱାଳାପ୍ରସାଦଙ୍କର ତାଙ୍କ ପ୍ରତି କିଛି ସହାନୁଭୂତି ଥିଲା । ସେଥିପାଇଁ ସେ ଟିକିଏ ଚିନ୍ତିତ ହୋଇପଡ଼ି ପଚାରିଲେ, ''କ'ଣ ଦୁଇହଜାର ଟଙ୍କା କରଜ ? ଏତେ ବଡ଼ କଥା ଜାଣି ଆଜି ମୁଁ ଶୁଣିଲି । ସେହି ଶହେ ବିଘା ହାତଗୃଷ ତାଙ୍କର ମୋଟ ଜମି । ତାଙ୍କ ଗାଁରୁ ତ ସେ କିଛି ପା'ନ୍ତି ନାହିଁ ।''

ପ୍ରଭୁଦୟାଲ ହସି ଦେଇ କହିଲେ, ''ମୋର ତ ଭାରି ଇଚ୍ଛା ତାଙ୍କ ନାଁରେ କେମିତି ମକଦ୍ଦମା ନ ହେଉ; କିନ୍ତୁ ମୁଁ କ'ଣ କରିବି, ସେ ତ ମୋତେ ବାଧ କରୁଛନ୍ତି । କିଛି ଅଳପ ଟଙ୍କାର କଥା ତ ନୁହେଁ, ହଜାର ଟଙ୍କାର କଥା । ତାଛଡ଼ା ଯେ ଯାହା କରିବ, ସେ ତା' ଭୋଗିବ; ସେଥିରେ ଅନ୍ୟ କାହାର ହାତ ଅଛି !''

ଜ୍ୱାଳାପ୍ରସାଦ ଏଥିରେ କିଛି ଉତ୍ତର ଦେଇ ନ ପାରି ଚୁପ୍ ରହିଲେ । ତାଛଡ଼ା ପ୍ରଭୁଦୟାଲ ଜଣେ ଏମିତି ଲୋକ ଯେ ତାଙ୍କ କଥାବାର୍ତ୍ତା ଚାଲିଚଳନରେ କେହି କେବେ ଅସନ୍ତୁଷ୍ଟ ହୋଇନାହିଁ; କିନ୍ତୁ କେଜାଣି କାହିଁକି ତାଙ୍କ ବିରୁଦ୍ଧରେ ଜ୍ୱାଳା-ପ୍ରସାଦଙ୍କ ମନରେ ଏକପ୍ରକାର ଅଶ୍ରଦ୍ଧା ବଢ଼ି ଚାଲିଥିଲା ।

ବାହାଘରରୁ ଫେରିଲାବେଳେ ପ୍ରଭୁଦୟାଲ ଓ ଜେଦେଇ ତିନିଦିନ ଜ୍ୱାଳାପ୍ରସାଦଙ୍କ ଘରେ ରହିଲେ । ସେହି ତିନିଦିନ ଭିତରେ ଜେଦେଇ ଓ ଯମୁନାଙ୍କ ମଝିରେ ଘନିଷ୍ଠତା ଅନେକ ବଢ଼ିଗଲା । ଖାଲି ସେତିକି ନୁହେଁ, ଜେଦେଇ ଜ୍ୱାଳାପ୍ରସାଦଙ୍କ ସହିତ ବି ଅଧିକ ସଂପର୍କ କରିନେଲେ; କିନ୍ତୁ ପ୍ରଭୁଦୟାଲଙ୍କ ପ୍ରତି ଜ୍ୱାଳାପ୍ରସାଦଙ୍କ ମନରେ ଏକ ପ୍ରକାର ଗ୍ଲାନି ରହିଗଲା ।

## ତିନି

**ମୀ**ର୍ ଖସାବନ୍ତ ହୁସେନ୍‌ଙ୍କୁ ସାଙ୍ଗସାଥୀମାନେ ମୀର୍ ସାହେବ ବୋଲି ଡାକୁଥିଲେ । ମୀର୍ ସାହେବଙ୍କର ଜଣେ ସାଧୁ ଫକୀରଙ୍କ ପରି ଚେହେରା; ଖୁବ୍ ଡେଙ୍ଗା, ଲମ୍ବା ବେକ, ଦେଖିବାକୁ ବେଶ୍ ସୁନ୍ଦର । ମୁହଁରେ ଛୋଟ ଛୋଟ ନିଶକୁ ଖୁବ୍ ଛୋଟ ଛୋଟ ଦାଢ଼ୀ; ଚେହେରା ଗମ୍ଭୀର । ତାଙ୍କ ଚେହେରାରେ ଏମିତି ଗୋଟାଏ କିଛି ଥିଲି ଯାହା ଦେଖି ଲୋକେ ଆପେ ଆପେ ତାଙ୍କୁ ସମ୍ମାନ କରୁଥିଲେ ।

ମୀର୍ ସାହେବ ଘାଟମପୁରର ତହସିଲଦାର ଥିଲେ ସତ; କିନ୍ତୁ ସବୁ କାମ ସେ ଜ୍ୱାଲାପ୍ରସାଦଙ୍କ ଉପରେ ଛାଡ଼ି ଦେଇଥିଲେ । ତାଙ୍କର ବୟସ ପ୍ରାୟ ପଚାଶ । ନ୍ୟାୟ-ଧର୍ମ ପ୍ରତି ଭାରି ଖାତିର । ଅଧିକାଂଶ ସମୟ ସେ ଈଶ୍ୱରଚିନ୍ତାରେ କଟାଉଥିଲେ, ବାକୀ ସମୟ ପଶାଖେଳରେ କଟିଯାଉଥିଲି । ପନ୍ଦର ବର୍ଷ ପୂର୍ବେ ତାଙ୍କର ଏକମାତ୍ର ପୁଅର ପରଲୋକ ହୋଇଯିବା ପରେ ସଂସାରରୁ ତାଙ୍କ ମନ ଚାଲିପଡ଼ିଥିଲି । ଗତ ପାଞ୍ଚବର୍ଷ ତଳେ ତାଙ୍କ ସ୍ତ୍ରୀ ମରିଗଲା ପରେ ସେ ଏକପ୍ରକାର ସନ୍ନ୍ୟାସୀ ପାଲଟି ଯାଇଥିଲେ କହିଲେ ଚଳେ । ଜ୍ୱାଲାପ୍ରସାଦ ତାଙ୍କ ଘରକୁ ଯାଇ ତାଙ୍କ ସଙ୍ଗରେ ବରାବର ପରାମର୍ଶ କରୁଥିଲେ ଓ ସରକାରୀ କାଗଜପତ୍ର ତାଙ୍କଠୁ ଦସ୍ତଖତ କରାଇ ନେଉଥିଲେ ।

ପ୍ରତିବର୍ଷ ଖରାଦିନେ ମୀର୍ ସାହେବ ଲକ୍ଷ୍ନୌ ଯାଇ ତାଙ୍କ ନିଜ ଘରେ ରହନ୍ତି । ଏ ବର୍ଷ ମଧ୍ୟ ଲକ୍ଷ୍ନୌରେ ଦୁଇମାସ ଖରା ମଟାଇ ଯେତେବେଳେ ସେ ଫେରିଆସିଲେ ଜ୍ୱାଲାପ୍ରସାଦ ସରକାରୀ କାଗଜପତ୍ର ନେଇ ତାଙ୍କ ଘରେ ହାଜର ହେଲେ ।

ଜ୍ୱାଲାପ୍ରସାଦଙ୍କୁ ବସିବାକୁ କହି ମୀର୍ ସାହେବ ପଚାରିଲେ, "କଣ ଜ୍ୱାଲାବାବୁ, ଭଲ ଅଛନ୍ତି ତ ? ଦେଖୁଛି କାମ ତ ବେଶ୍ ଭଲ ଚାଲିଛି । କାହାର କିଛି ଓଜର ଆପତ୍ତି ନାହିଁ । ଶୁଣିଲି, ଗଜରାଜ ସିଂହଙ୍କ ଝିଅ ବାହାଘର ଖୁବ୍ ଆଡ଼ମ୍ବରରେ ହୋଇଗଲା । କ'ଣ ବହୁତ ବରଯାତ୍ରୀ ଆସିଥିଲେ ?"

"ଆଜ୍ଞା, ମୁଁ ତ ଜୀବନରେ କେବେ ହେଲେ ଏତେ ବରଯାତ୍ରୀ ଦେଖି ନ ଥିଲି । ଆପଣ ଯାଇ ପାରିଲେ ନାହିଁ ବୋଲି ଗଜରାଜ ସିଂହ ଭାରି ଦୁଃଖ କରୁଥିଲେ ।"

"କ'ଣ କହିବି, ମୁଁ ନିଜେ ବି ସେଥିପାଇଁ ଭାରି ଦୁଃଖିତ । କିନ୍ତୁ ସମୟେ ତ ଜାଣନ୍ତି,

ବର୍ଷରେ ଦୁଇମାସ ମୁଁ ଲକ୍ଷ୍ନୌରେ ରହେ, ସେଥିରେ କେବେ ବ୍ୟତକ୍ରମ ହୁଏ ନାହିଁ । ଆଚ୍ଛା, କରଜ କରି ଏମିତି ବଡ଼ ବଖରାଘର କରିବା କ'ଣ ଦରକାର ! ଗୋଟାଏ ବାହାଘର ପାଇଁ କୋଡ଼ିଏ ହଜାର ଟଙ୍କା କରଜ । ତମର ଗଜରାଜ ସିଂହଙ୍କ ସହିତ ଖୁବ୍ ମିଳାମିଶା, ବନ୍ଧୁତା ଅଛି । ତମେ ତାଙ୍କୁ ମନା କଲ ନାହିଁ କାହିଁକି ?"

"ହଜୁର, ମୋତେ ତ ତାଙ୍କ କରଜ କଥା ଆଦୌ ଜଣା ନ ଥିଲା । ଯେଉଁ ଦିନ ତାଙ୍କ ବନ୍ଧକ ରେଜଷ୍ଟ୍ରି ହେଲା ସେହିଦିନ ମୁଁ ଜାଣିଲି । ଆଗରୁ ଜାଣିଥିଲେ ତାଙ୍କୁ ମୁଁ ମନାକରି ଦେଇଥାନ୍ତି—ଯଦିଓ ମୋ କଥା ସେ ରଖିଥାନ୍ତେ କି ନାହିଁ ସନ୍ଦେହ । ଆପଣ ତ ଜାଣନ୍ତି, ସେ କେମିତି ଜିଦ୍‌ଖୋର ଲୋକ ।"

"ହଁ, ସତରେ ସେ ଖୁବ୍ ଭଲ, ଖୁବ୍ ଭଦ୍ର, କିନ୍ତୁ ଭାରି ଜିଦ୍‌ଖୋର । ହଁ, ଆହୁରି ଶୁଣିଲି ଲମ୍ବରଦାର ପ୍ରଭୁଦୟାଲଙ୍କଠାରୁ ମଧ୍ୟ ସେ କରଜ ନେଇଛନ୍ତି ।"

"ହଁ, ଆପଣ ଯାହା ଶୁଣିଛନ୍ତି ଠିକ୍ । ଗଜରାଜ ସିଂହ ପାଞ୍ଚଟା ଗାଁ ବନ୍ଧକ ରଖି କରଜ ନେଇଛନ୍ତି ।"

ମୀର୍ ସାହେବ ହସିଦେଇ କହିଲେ, "ତାହେଲେ ସେଇ ପାଞ୍ଚଟା ଗାଁ ତ ପ୍ରଭୁଦୟାଲ ପାଇଯିବ । ଭାଇ, ଧନ୍ୟ ତା ବୁଦ୍ଧିକୁ । ମୋରି ଦେଖାରେ ସେ ଏତେ ବଡ଼ଲୋକ ହୋଇଗଲା । ଆଚ୍ଛା, ମୁଁ ଶୁଣିଲି ଏଥର କୁଆଡ଼େ ପ୍ରଭୁଦୟାଲ ତମ ଘରଟି ରହିଥିଲା ?" ଏତିକି କହି ମୀର୍ ସାହେବ ଏକ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଜ୍ୱାଲାପ୍ରସାଦଙ୍କ ଆଡ଼କୁ ଅନାଇ ରହିଲେ ।

ମୀର୍ ସାହେବଙ୍କ ଗୁହାଣୀର ଅର୍ଥ ବୁଝିବାପାଇଁ ଜ୍ୱାଲାପ୍ରସାଦଙ୍କୁ ବେଶି ସମୟ ଲାଗିଲା ନାହିଁ । ସେ କହିଲେ, "ହଁ ଆଜ୍ଞା, ମୋ ଘରେ ସେ ରହିଥିଲେ ସତ ହେଲେ ମୁଁ ତାଙ୍କୁ ସେଥିପାଇଁ ନିମନ୍ତ୍ରଣ କରି ନଥିଲି । ସେ ଆପେ ଆପେ ଆସି ଆମ ଉପରେ ପଡ଼ି ରହିଲେ । ମୁଁ ଆଉ ନାହିଁ କରିଥାନ୍ତି କେମିତି ?"

ମୀର୍ ସାହେବ ଟିକିଏ ଗମ୍ଭୀର ହୋଇ କହିଲେ, "ବୁଝିଲି, ବଡ଼ବଡ଼େ ଠିକ୍ କହିଛନ୍ତି, ପାପ ତ ଆସି ଉପରେ ପଡ଼ିବ; ହେଲେ ତାକୁ ଦୂରରେ ରଖିଲେ ଯାଇ ମଙ୍ଗଳ । ଟଙ୍କାପଇସା ତ ସମସ୍ତଙ୍କୁ ଭଲଲାଗେ, ହେଲେ ଟଙ୍କାପଇସାର ଦେବତା ମଣିଷ-ଭିତରର ଅସଲ ଦେବତାକୁ ଖାଇଯାଏ । ଦୂରକୁ ଯିବା ଦରକାର ନାହିଁ, ଏହି ପ୍ରଭୁଦୟାଲ କଥା ଦେଖୁନା ! ସେ ମନ୍ଦିର ତୋଳିଛି, ମଦ ମାଂସ ବି ଛୁଏଁ ନାହିଁ; କିନ୍ତୁ ତାର ସବୁଠୁ ବଡ଼ ଜିନିଷ ଧନ । ତମର ଧାରଣା କ'ଣ ?"

ଜ୍ୱାଲାପ୍ରସାଦ କହିଲେ, "ଆପଣ ବିଲ୍‌କୁଲ୍ ଠିକ୍ କହୁଛନ୍ତି, ଲୋକଟା ବହୁତ ତଳକୁ ଖସିଯାଇଛି ।"

"ହଁ, ବଦ୍‌ମାସଟା ନିଜେ ତଳକୁ ଯାଇଥିଲେ କିଛି ଚିନ୍ତା ନଥିଲା; କିନ୍ତୁ ତା ସଙ୍ଗେ ଯେ ସାଥୀ ହୁଏ ସେ ବି ତଳକୁ ଚାଲିଯାଏ । ସେଇଥିପାଇଁ ତମକୁ ଆଗରୁ କହିଦେବା ଦରକାର ପଡ଼ିଲା । ଯେଉଁମାନେ ଧନଦେବତାଙ୍କୁ ପୂଜା କରନ୍ତି, ସେମାନଙ୍କର ଗୋଟାଏ ଧର୍ମ ଅଛି ! ସେମାନଙ୍କର ଧର୍ମ ହେଉଛି ନିଜକୁ ବିସ୍ତାର କରି ଅନ୍ୟମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଇବା । ଧନଦେବତାର ପୂଜାରୀମାନେ ପ୍ରକୃତରେ ଭାରି ଭୟଙ୍କର; କାରଣ ସେମାନେ ଅନ୍ୟର ଧର୍ମକୁ ବଦଳାଇବା ପାଇଁ ବହୁତ ଚେଷ୍ଟା କରନ୍ତି ।" ଏହି କଥା କହୁ କହୁ ମୀର୍ ସାହେବ ବହୁତ ହସିଲେ ।

ଜ୍ୱାଲାପ୍ରସାଦ ମୀର୍ ସାହେବଙ୍କ ଘରୁ ଫେରି ଦେଖିଲେ ଠାକୁର ଗଜରାଜ ସିଂହ ତାଙ୍କୁ ଅପେକ୍ଷା କରି ତାଙ୍କ ବୈଠକଖାନାରେ ବସିଛନ୍ତି ଓ ତାଙ୍କ ଚେହେରା ଟିକିଏ ଅସ୍ୱାଭାବିକ ଭାବରେ ଗମ୍ଭୀର ଦେଖାଯାଉଛି ।

ଜ୍ୱାଲାପ୍ରସାଦ ଲୁଗାପଟା ବଦଳାଇଦେଇ ଗଜରାଜ ସିଂହଙ୍କ ପାଖରେ ଆସି ବସି ପଡ଼ିଲେ ।

ତାଙ୍କର ଗମ୍ଭୀରତା ଦୂର କରିବାପାଇଁ ଜ୍ୱାଲାପ୍ରସାଦ ଆରମ୍ଭ କଲେ, "ଠାକୁର ସାହେବ, ଏ ବର୍ଷ ତ ବର୍ଷା ଠିକ୍ ସମୟରେ ଚାଲିଛି । ଦେଖୁଛନ୍ତି କେମିତି ସୁନ୍ଦର ମେଘ ଉଠାଇଛି ।"

ତେବେ ସୁଦ୍ଧା ତାଙ୍କ ମୁଖର ଗମ୍ଭୀରତାରେ କିଛି ପରିବର୍ତ୍ତନ ଦେଖାଗଲା ନାହିଁ । କହିଲେ, "ହଁ ମେଘ ତ ଉଠିଛି, ହେଲେ ମେଘ ସୁନ୍ଦର ବୋଲି ଯାହା କହିଲେ ସେଥିରେ ମୋର ସନ୍ଦେହ ଅଛି ।" ଏତିକି କହୁ କହୁ ତାଙ୍କ ମୁହଁରେ ଏକ ବ୍ୟଙ୍ଗଭରା ହସର ଛଟା ଖେଳିଗଲା ।

ଏହା ଦେଖି ଜ୍ୱାଲାପ୍ରସାଦ ଚୁପ୍ ପଡ଼ିଗଲେ । ସେ ସ୍ପଷ୍ଟ ଜାଣିପାରିଲେ ଗଜରାଜ ସିଂହ କୌଣସି ବିଷୟରେ ଖୁବ୍ ଉତ୍ତେଜିତ ହୋଇ ପଡ଼ିଛନ୍ତି । କିନ୍ତୁ ଉତ୍ତେଜନାର କାରଣ କ'ଣ ସେ କିଛି ଠିକ୍ କରି ପାରିଲେ ନାହିଁ; ବରଂ କିଛି ନ କହି ଗଜରାଜ ସିଂହଙ୍କ କଥାକୁ ଅପେକ୍ଷା କରି ରହିଲେ ।

ଗଜରାଜ ତ କଥାବାର୍ତ୍ତା କରିବାପାଇଁ ଆସିଥିଲେ । ତେଣୁ କହିଲେ, "ହଁ, ମେଘ ତ ଉଠାଇଛି, ବର୍ଷିବ ନିଶ୍ଚୟ, ହେଲେ କେମିତି ବର୍ଷା ହେବ ସେ କଥା କହିବା ମୋ ପକ୍ଷେ ସମ୍ଭବ ନୁହେଁ ଜ୍ୱାଲାବାବୁ !"

ଏଥର ଜ୍ୱାଲାପ୍ରସାଦଙ୍କର ହସିବାର ପାଳି ପଡ଼ିଲା । ସେ କହିଲେ, "ଆପଣଙ୍କ କଥାରୁ ତ କିଛି ବୁଝା ପଡ଼ୁନାହିଁ । କହନ୍ତୁ ଏବେ କିଛି ବିଶେଷ ଘଟଣା ଘଟିଛି କି ?"

"ହଁ, କିଛି ବିଶେଷ ଘଟଣା ଘଟି ନଥିଲେ ମୁଁ କ'ଣ ଏତେବେଳେ ଘରୁ ବାହାରି-

ଆନ୍ତି । ନିଶ୍ଚୟ କିଛି ବିଶେଷ ଘଟଣା ଘଟିଛି, ନୋହିଲେ ଗଜରାଜ ସିଂହ କ'ଣ ଅଗାଧୁଆ ଅପାଧୁଆ ପୂଜାପୂଜି ନକରି ଏ ଦ୍ୱିପହର ବେଳରେ ଆସିଆନ୍ତା । ଖାଲି ଘଟଣା ନୁହେଁ, ଖୁବ୍ ଗୁରୁତର ଘଟଣା ଘଟିଛି ।'' ଏତିକି କହି ଗଜରାଜ ଟିକିଏ ଶୁଖିଲା ହସ ହସିଦେଲେ ।

ଜ୍ୱାଲାପ୍ରସାଦ ମୀର୍ ସାହେବଙ୍କ ପାଖରୁ ଫେରିଲାବେଳୁ ଖୁବ କ୍ଳାନ୍ତ ଅନୁଭବ କରୁଥିଲେ । ଏପରି ଅବସ୍ଥାରେ ଗଜରାଜ ସିଂହଙ୍କ କଥାର ଢଙ୍ଗଚାଙ୍ଗ ତାଙ୍କୁ ଭଲ ଲାଗୁନଥିଲା । ସ୍ୱା ଭିତରେ ମେଘବରଷା ଆରମ୍ଭ ହୋଇ ଯାଇଥିଲା । ପୂବେଇ ପବନ ସାଙ୍ଗରେ ବଡ଼ ବଡ଼ ଟୋପା ପଡ଼ି ଏକପ୍ରକାର ବର୍ଷା-ସଙ୍ଗୀତ ସୃଷ୍ଟି ହୋଇ ଯାଇଥିଲା । ଜ୍ୱାଲାପ୍ରସାଦ କିଛି ସମୟ ମେଘବର୍ଷା ଆଡ଼କୁ ଚାହିଁ ଶେଷରେ କହିଲେ, ''ଠାକୁର ସାହେବ, ଆପଣଙ୍କ ମନରେ ବହୁତ କିଛି ଅଛି, କ'ଣ କହିବେ କହୁ ନାହାନ୍ତି ?''

ଗଜରାଜ ସିଂହ ଟିକିଏ ଗଳା ସଫା କରି କହିଲେ, ''ବୁଝିଲେ ନାଏବ ସାହେବ, ବଣିଆ ଏବେ ରାଜା ହେବାକୁ ବସିଛି ।''

ଜ୍ୱାଲାପ୍ରସାଦ ଟିପ୍‌ପଣୀ ଦେଇ କହିଲେ, ''ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଆଜି ତ ଆଉ ବାହୁବଳର କିଛି ମୂଲ୍ୟ ନାହିଁ, ମୂଲ୍ୟ ଅଛି କେବଳ ପଇସାର । ଇଂରେଜ ଲୋକଗୁଡ଼ା ଏବେ କ'ଣ, ବଣିଆନା ! ବ୍ୟବସାୟ କରିବାପାଇଁ ସାତସମୁଦ୍ର ପାରହୋଇ ଆସିଥିଲେ; ଏବେ କିନ୍ତୁ ସେମାନେ ସାରା ହିନ୍ଦୁସ୍ଥାନର ରାଜା ।''

ଗଜରାଜ ସିଂହ ଟିକିଏ ଚମକିଉଠି କହିଲେ, ''ଇଂରେଜମାନେ ବଣିଆ ବୋଲି ଆପଣଙ୍କୁ କିଏ କହିଲା ? ଇଂରେଜମାନେ କେଡ଼େ ବିଦ୍ୱାନ୍, ଆମ ପଣ୍ଡିତ ବ୍ରାହ୍ମଣମାନେ କ'ଣ ସେମାନଙ୍କ ସହିତ ସମାନ ହେବେ ? ସେମାନେ ମାରିଜାଣନ୍ତି, ମରି ବି ଜାଣନ୍ତି, ସେଇଥିପାଇଁ ସେମାନେ ରାଜା । ସେମାନଙ୍କ ରାଜ୍ୟରେ ବାଘଛେଳି ଏବେ ଏକାଠି ପାଣି ପିଉଛନ୍ତି । ଆମ କ୍ଷତ୍ରିୟମାନେ କ'ଣ ସେମାନଙ୍କ ସହିତ ସମାନ ହୋଇ ପାରିବେ; ମୋଟେ ନୁହେଁ । ଛାଡ଼ନ୍ତୁ ଜ୍ୱାଲାସାହେବ, ମୁଁ ଆଉ ଗୋଟାଏ କଥା କହୁଛି । ଆପଣ ତ ଶୁଣିଥିବେ ପ୍ରଭୁଦୟାଲ ବରଜୋର ସିଂହ ନାଁରେ ମକଦ୍ଦମା କରିଛି । ବରଜୋରର ହାତଗୃହ ଜମିଯାକ ସବୁ ବନ୍ଧା ପଡ଼ିଛି ।''

ଗତ ଦୁଇମାସ ତଳେ ଯାହା ଘଟିଥିଲା, ଏବେ ତାହା ଜ୍ୱାଲାପ୍ରସାଦଙ୍କର ମନେପଡ଼ିଗଲା । ସେତେବେଳେ ଜ୍ୱାଲାପ୍ରସାଦ ଭାବିଥିଲେ ପ୍ରଭୁଦୟାଲ ବୋଧହୁଏ ସାମୟିକ ବିରକ୍ତିରେ ସେମିତି କହୁଥିଲେ । କିନ୍ତୁ ଏବେ ବୁଝିଲେ, ପ୍ରକୃତରେ ଘଟଣା ତାହା ନୁହେଁ, ଏବେ ସେ ପ୍ରତିଶୋଧ ନେବାପାଇଁ କାମ ଆରମ୍ଭ କରିଦେଇଛି । ଜ୍ୱାଲାପ୍ରସାଦ କ୍ଷୀଣ ସ୍ୱରରେ କହିଲେ, ''ବରଜୋର ସିଂହଙ୍କ ଉପରେ ପ୍ରଭୁଦୟାଲଙ୍କର ବୋଧହୁଏ ଦୁଇହଜାର ଟଙ୍କା ହେବ ।''

ଗଜରାଜ ସିଂହ ଏକଥା ଶୁଣି କହିଲେ, "ତାହାହେଲେ ମୁଁ ଯାହା ଭାବିଥିଲି ତାହା ଭୁଲ ନୁହେଁ । ମୋର ଧାରଣା ଆପଣ ଏକଥା ଜାଣିଥିବେ, ପ୍ରଭୁଦୟାଲ ନିଶ୍ଚୟ ଆପଣଙ୍କୁ ଏକଥା କହିଥିବ । କିନ୍ତୁ ନାଏବ ସାହେବ, ବରଜୋର ମୋଟେ ହଜାରେ ଟଙ୍କା ନେଇଥିଲା, ତା' କହିବା ଅନୁସାରେ ସ୍ୱା ଭିତରେ ପ୍ରଭୁଦୟାଲକୁ ସେ ବାରଶହ ଟଙ୍କା ଦେଇସାରିଲାଣି ।"

ଜ୍ୱାଲାପ୍ରସାଦ କହିଲେ, "କରଜ ତ ଗୋଟାଏ ବଡ଼ ବିପଦ, ତା'ଛଡ଼ା ବଦ୍‌ନାମ ଥିବା ସୁଧଖୋର ଲୋକଠାରୁ କରଜ ନେବା ଅଧିକ ଏକ ବିପଦ । ଏଇ କରଜ ପାଇଁ ବହୁ ଲୋକଙ୍କର ସତ୍ୟାନାଶ ହୋଇଛି, ତେବେ କ'ଣ କରିବା କହନ୍ତୁ ?"

"ମୋ ମନରେ ତ ଠିକ୍ ସେଇ ପ୍ରଶ୍ନ । ସେହି ପ୍ରଶ୍ନର ଉତ୍ତର ପାଇବା ପାଇଁ ମୁଁ ଆପଣଙ୍କ ପାଖକୁ ଆସିଛି ।" ଗଜରାଜ ସିଂହ ଟିକିଏ ଚିନ୍ତିତ ହେଲାପରି କହିଲେ, "ବରଜୋର ପାଖରେ ବର୍ତ୍ତମାନ କିଛି ପଇସାପତ୍ର ନାହିଁ । ମୋର ତ ଝିଅ ବାହାଘର ଟଙ୍କା ପଇସା ଏବେ ବି ସୁଝିନାହିଁ । ତଥାପି ପାଞ୍ଚଶହ ଟଙ୍କା ଯୋଗାଡ଼ କରିଛି । ପ୍ରଭୁଦୟାଲ ଆପଣଙ୍କୁ ବହୁତ ଖାତିର କରେ, ଆପଣ ଟିକିଏ ଆପଣଙ୍କ ଆଡ଼ୁ ବୁଝାସୁଝା କରିଦିଅନ୍ତୁ, ନୋହିଲେ ବହୁତ ........." ଏତିକି କହୁ କହୁ ଗଜରାଜ ସିଂହ ରହିଗଲେ ।

ଜ୍ୱାଲାପ୍ରସାଦ ଅସ୍ପଷ୍ଟ କଣ୍ଠରେ କହିଲେ, "ନୋହିଲେ ତ...... ! ହଁ, ଏ ବିଷୟରେ ନିଶ୍ଚୟ କିଛି କରିବା ଉଚିତ । ମୋର ଧାରଣା ବରଜୋର ସିଂହଠାରୁ ଅପମାନ ପାଇ ପ୍ରଭୁଦୟାଲ ଏ ବାଟ ଧରିଛି । ଆପଣଙ୍କ ଝିଅ ବାହାଘର ବେଳେ ବରଜୋର ସିଂହ ଯାହା କହିଥିଲେ ଆପଣଙ୍କର ବୋଧହୁଏ ମନେନାହିଁ । ସେଦିନ ବରଜୋର ସିଂହ ଅକାରଣରେ ପ୍ରଭୁଦୟାଲକୁ ଅପମାନିତ କରିଥିଲେ; ତେବେ ଏତେ ଲୋକଙ୍କ ଆଗରେ ତାକୁ ଅପମାନ ଦେବା କ'ଣ ଦରକାର ଥିଲା ?"

ଗଜରାଜ ସିଂହ ଟିକିଏ ଚିନ୍ତା କଲାପରି କହିଲେ, "କାହିଁ, ମୋର ତ କିଛି ମନେପଡ଼ୁନାହିଁ । ପ୍ରଭୁଦୟାଲ ତ ଆପଣଙ୍କ ଘରେ ରହିଥିଲା । ସେମାନଙ୍କ ଭିତରେ ତ କୌଣସି କଥାବାର୍ତ୍ତା ହୋଇନଥିଲା ।"

ଜ୍ୱାଲାପ୍ରସାଦ ଟିକିଏ ଶୁଖିଲା ହସ ହସିଦେଇ କହିଲେ, "ହଁ, ସେମିତି ଅବଶ୍ୟ କିଛି କଡ଼ାକଡ଼ି କଥାବାର୍ତ୍ତା ହୋଇନଥିଲା, ଯାହାକି ଅନ୍ୟ ଲୋକଙ୍କର ମନେରହିବ । ପ୍ରଭୁଦୟାଲ ସେତେବେଳେ କିଛି ନ କହି ଅପମାନକୁ ଚୁପ୍‌ଚାପ୍ ସମ୍ଭାଳି ନେଇଥିଲେ । ବରଜୋର ସେତେବେଳେ କହିଥିଲେ ଯେ ଆପଣଙ୍କ ସମୃଦ୍ଧ ରାଜବଂଶର ଲୋକ, କୌଣସି ବଣିଆ ନୁହନ୍ତି—ସେହି କଥାଟା ସେତେବେଳେ ପ୍ରଭୁଦୟାଲଙ୍କୁ ଲକ୍ଷ୍ୟକରି କହିଥିଲେ ।"

ଏ କଥା ଶୁଣି ଗଜରାଜଙ୍କ ମୁହଁରେ ଟିକିଏ ହସ ଦେଖାଗଲା । ସେ କହିଲେ, "ହଁ ମୋର ଟିକିଏ ଟିକିଏ ମନେପଡ଼ୁଛି । କିନ୍ତୁ ବରଜୋର ତ ଏମିତ କିଛି ଭୁଲ କଥା କହି ନଥିଲା । ପ୍ରଭୁଦୟାଲ କେଡ଼େ ନୀଚ ଆପଣମାନେ ସମସ୍ତେ ଜାଣନ୍ତି । ବରଜୋର ସତ କଥାଟାକୁ କେବଳ ପାଟିରେ କହିଦେଲା । ସତ କଥାଟାକୁ କ'ଣ କେବେ ଖରାପ ବୋଲି ଧରାଯାଏ ?"

ଜ୍ୱାଲାପ୍ରସାଦ ଜବାବ ଦେଲେ, "କିନ୍ତୁ ଠାକୁର ସାହେବ, ଶାସ୍ତ୍ରରେ ଅଛି, ଅପ୍ରିୟ ସତ୍ୟ କହିବା ଉଚିତ ନୁହେଁ ।"

"ହଁ, ଶାସ୍ତ୍ରରେ ଯାହା ଲେଖାହୋଇଛି ତା ଠିକ୍, ହେଲେ ଯାହା ହୋଇଗଲାଣି ସେ ତ ଗଲାଣି । ଧନୁରୁ ତୀର ଖସିଗଲେ ଓ ପାଟିରୁ କଥା ଖସିଗଲେ ସେ କ'ଣ ଆଉ ଫେରେ କି ?" ଏତିକି କହୁ କହୁ ତାଙ୍କ ମୁହଁରୁ ହସ ଲିଭିଗଲା । ସେ ପୁଣି କହିଲେ, "ମକଦ୍ଦମା ବିଷୟରେ ସମନ୍ ପାଇ ବର୍ତ୍ତମାନ ବରଜୋର ମୁଣ୍ଡରେ ଭୂତ ପଶିଯାଇଛି । ଘରବାଡ଼ି କାମ ଛାଡ଼ି କଚେରୀ ଦଉଡ଼ିବାକୁ କାହାକୁ ଭଲ ଲାଗେ ? ଆଜି ସକାଳୁ ସେ ପ୍ରଭୁଦୟାଲ ପାଖକୁ ଦଉଡ଼ିଲାଣି । ମୁଁ ତାକୁ ଯିବାପାଇଁ ମନା କଲି; କିନ୍ତୁ ମନା କଲେ ମାନୁଛି କିଏ ? ସକାଳ ସାତଟାରୁ ସେ ଶିବପୁର ଗଲାଣି; କିନ୍ତୁ ଏପର୍ଯ୍ୟନ୍ତ ଫେରିନାହିଁ । ମୋଟେ ତିନି ମାଇଲ ବାଟ, ଏତେବେଳ ଯାଏ କାହିଁକି ଫେରୁନାହିଁ କିଛି ଜଣା ପଡ଼ୁନାହିଁ ।"

ଜ୍ୱାଲାପ୍ରସାଦ କହିଲେ, "ଏଥିରେ ବ୍ୟସ୍ତ ହେବାର କ'ଣ ଅଛି ? ହୁଏତ ବର୍ତ୍ତମାନ ଫେରୁଥିବେ । ତାହିଁକି ଆଜି ଭାରି ବର୍ଷା ହୋଇଛି । ବେଶୀ କିଛି ଡେରି ତ ହୋଇନାହିଁ ।"

ତା'ପରେ ଦୁହେଁଯାକ ବାହାର ମେଘ ବର୍ଷାକୁ ଚାହିଁ କିଛିକାଳ ଚୁପ୍ ପଡ଼ିଗଲେ । ଦୁହିଙ୍କ ମନରେ ଅସ୍ପଷ୍ଟ ଭାବରେ କେତେକ ଭାବନା ଖେଳିଯାଉଥିଲା । ହଠାତ୍ ଗଜରାଜ ସିଂହଙ୍କ ପାଟିରୁ ବାହାରିପଡ଼ିଲା, "ଏଇ ବୋଧହୁଏ ବରଜୋର ହାତୀରେ ଆସୁଛି ।"

ଜ୍ୱାଲାପ୍ରସାଦ ଦେଖିଲେ ଶିବପୁର ଆଡ଼ୁ ହାତୀ ଆସୁଛି ଓ ବରଜୋର ସଢ଼ଭିଜା ହୋଇ ହାତୀ ଉପରେ ବସି ରହିଛି, ମାଲିକଙ୍କୁ ମାରୁଛି ଓ ଅଣ୍ଟାରେ ନିଜ ବଂଶର ତରବାରି ଝୁଲୁଛି । ହାତୀ ଠିକ୍ ଗଜରାଜ ସିଂହଙ୍କ ଘର ଆଡ଼କୁ ମୋଡ଼ିଲା ବେଳକୁ ସେ ପାଟିକରି ଡାକପକାଇଲେ, "ବରଜୋର, ଏ ବରଜୋର, ଆସ ଆସ, ମୁଁ ଏଇଠି ଅଛି ।"

ବରଜୋର ସିଂହ ଡାକ ଶୁଣି ହାତୀକୁ ଜ୍ୱାଲାପ୍ରସାଦଙ୍କ ଘର ଆଡ଼କୁ ମୁହାଁଇଦେଲା । ହାତୀରୁ ଓହ୍ଲାଇ ପଡ଼ି ସଢ଼ଭିଜା ହୋଇ ବୈଠକଖାନା ବାହାରେ ଠିଆ ହୋଇ କହିଲା, "ନାହିଁ, ସେ ହାତୀ ନେବା ପାଇଁ ମନାକଲା । ତାର ଜମି ଦରକାର ଓ ମୋର

ଶହେ ବିଘା ଜମି ।'' ଏତିକ କହି ବରଜୋର ପାଗଳଙ୍କ ପରି ହସିଲା ।

ବରଜୋର ସିଂହର କରୁଣ କଣ୍ଠରେ ଓ ପାଗଳ ହସରେ କେତେ ନିରାଶା, କେତେ ପ୍ରାଣପୀଡ଼ା ଭରିରହିଥିଲା ତାହା ଜ୍ୱାଲାପ୍ରସାଦ ବେଶ୍ ଅନୁଭବ କରିଥିଲେ । ସେ ପଚାରିଲେ, ''କରଜ ଟଙ୍କା ପାଇଁ ପ୍ରଭୁଦୟାଲଙ୍କୁ କ'ଣ ହାତୀଟା ଦେଇଦେବା ପାଇଁ ଯାଇଥିଲ ?''

''ହଁ ନାଏବ ସାହେବ, ଜମିକୁ ରକ୍ଷା କରିବା ପାଇଁ ଏହି ହାତୀକୁ ଆଜି ଛାଡ଼ିବା ଲାଗି ଯାଇଥିଲି । କିନ୍ତୁ ସେ କହିଲା ହାତୀ ବାନ୍ଧିବା ସିନା ସହଜ; କିନ୍ତୁ ତାକୁ ପାଳିବା କଷ୍ଟ । ସେ ବଣିଆ କେବେ କ'ଣ୍ ହାତୀ ରଖିପାରିବ ? ସେଇଥିପାଇଁ ମୁଁ ଫେରି ଆସିଲି ।'' ତା'ପରେ ସେ ଖୁବ୍ ଜୋରରେ ହସି ହସି କହିଲା, ''ବୁଝିଲି ଭେଣୋଇ ସାହେବ, ତା' କଥା ଶୁଣି ମୁଁ ସମ୍ଭାଳି ପାରିଲି ନାହିଁ । ତା' କୁଅରେ ଛେପ ପକାଇ ଦେଇ କହିଲି, ବଣିଆ କେଉଁକାଳେ ହାତୀ ରଖିଲେଣି; ହାତୀ ରଖନ୍ତି ସିନା ଆମ ରଜାରାଜୁଡ଼ା ଲୋକେ ।''

ଏ କଥା ଶୁଣି ଜ୍ୱାଲାପ୍ରସାଦ ଗଜରାଜ ସିଂହକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁବାରୁ ଗଜରାଜ ସଙ୍ଗେ ସଙ୍ଗେ ସବୁ କଥା ବୁଝିଗଲେ । ସେ କହିଲେ, ''ବରଜୋର, ତମର ଗାଳିଗୁଲଜ କରିବା କ'ଣ ଦରକାର ଥିଲା ? ଏହି ଗାଳିଗୁଲଜ ପାଇଁ ତ ସେ ତମ ନାଁରେ ନାଲିସ୍ ଦାଏର କରିଛି । ମୁଁ ଆଉ ନାଏବ ସାହେବ ଦୁହେଁ ଭାବୁଛୁ ତମେ ଯଦି ଗାଳି ପାଇଁ ପ୍ରଭୁଦୟାଲଠାରୁ କ୍ଷମା ମାଗି ନିଅନ୍ତ, ତା'ହେଲେ ସବୁ ମାମଲା ତୁଟିଯାଆନ୍ତା ।''

''କ'ଣ—କ୍ଷମା ମାଗିବି—ପୁଣି ସେ ବଣିଆଠାରୁ ? କ'ଣ ନାଏବ ସାହେବ, ଆପଣ ପୁଣି ମୋତେ ଏ ପରାମର୍ଶ ଦେଉଛନ୍ତି ?'' ତା'ପରେ ଏକ ଦୀର୍ଘଶ୍ୱାସ ପକାଇ, ସେ ପୁଣି କହି ଚାଲିଲା, ''ହଁ ନାଏବ ସାହେବ, ଆଜି କାଳ ବଦଳିଗଲା, ନୋହିଲେ ଏହି ପ୍ରଭୁଦୟାଲକୁ ମୁଁ ରାତାରାତି ଉଠାଇ ଦେଇଥାନ୍ତି ।'' ପୁଣି ହଠାତ୍ କଥାର ସୁଅ ବଦଳାଇ ସେ କହିଲା, ''ଛାଡ଼ନ୍ତୁ, ଆପଣ ଆଉ ଭେଣୋଇ ସାହେବ ଏ ବିଷୟରେ ବୃଥାରେ ଚିନ୍ତା କରନ୍ତୁ ନାହିଁ । ଇଏ ତ ଆମର ଆପଣା ଆପଣା ଭିତର କଥା । ମୁଁ ପ୍ରଭୁଦୟାଲ ସାଙ୍ଗରେ ଆପୋଷ ମିଳାମିଶା କରିନେବି; ଅନ୍ୟ କେହି ହାତଦେବା ଦରକାର ନାହିଁ ।'' ଏ କଥା କହୁ କହୁ ତାର ହାତ ସିଧା ଯାଇ ତରବାରି ମୁଠାରେ ପଡ଼ିଗଲା ।

ବରଜୋର ସିଂହ ହାତୀ ଉପରକୁ ଉଠିଯିବାରୁ ଗଜରାଜ ସିଂହ କହିଲେ, ''ଆଚ୍ଛା, ତା'ହେଲେ ଜ୍ୱାଲାବାବୁ, ମୁଁ ବି ଆସୁଛି । ଆଜି ତ ବର୍ଷା ବନ୍ଦ ହେଲା ପରି ଦିଶୁନାହିଁ;

ମୋର ବି ଗାଧୋଇବା ଓ ପୂଜା କରିବା ସମୟ ହୋଇଗଲାଣି । ଘରେ ପହଞ୍ଚି ପହଞ୍ଚି ଏହି ପହିଲି ବର୍ଷାରେ ମୋର ଗାଧୁଆ ହୋଇଯିବ । କିନ୍ତୁ ଯେତେ ଶୀଘ୍ର ସମ୍ଭବ ପ୍ରଭୁଦୟାଳ ସଙ୍ଗେ କଥାବାର୍ତ୍ତା କରି ଆପଣ ଏ ମାମଲାଟା ତୁଟାଇଦିଅନ୍ତୁ । ବରଜୋର ସିଂହ ତ ହାତ ବାକବା ପାଇଁ ତିଆର ଅଛି; ମୁଁ ବି ଅଳ୍ପ ଯାହା କିଛି ଯୋଗାଡ଼ କରିଦେବି ।”

ପ୍ରଭୁଦୟାଳଙ୍କ ବିଷୟରେ ଜ୍ୱାଲାପ୍ରସାଦ ଏତେ ବେଳକୁ ଅନେକ କଥା ଜାଣିପାରିଥିଲେ । ତାଙ୍କର ଇଚ୍ଛା ଥାଉ ବା ନଥାଉ ଜେଦେଇଙ୍କ ଯୋଗୁ ତାଙ୍କ ଦୁଇ ପରିବାର ଭିତରେ ଏକପ୍ରକାର ଘନିଷ୍ଠତା ହୋଇଯାଇଥିଲା । ଜେଦେଇ ଜଣେ ପ୍ରସନ୍ନବଦନା ମେଳାପୀ ସ୍ୱଭାବର ସ୍ତ୍ରୀ । ତାଙ୍କୁ ସମସ୍ତେ ଲମ୍ବରଦାରଣୀ ବୋଲି ଜାଣନ୍ତି । ସେ ଜ୍ୱାଲାପ୍ରସାଦଙ୍କୁ ଦିଅର ବୋଲି ଡାକିବାରୁ ସେ ବାଧହୋଇ ତାଙ୍କୁ ଭାଉଜ ବୋଲି ଡାକୁଥିଲେ । ଜେଦେଇ ତାଙ୍କ ସ୍ୱାମୀଙ୍କର ଠିକ୍ ଓଲଟା; ହାତ ଯେମିତି ଖୋଲା, ଲୋକମାନଙ୍କ ପ୍ରତି ମାୟା ମମତା ବି ସେମିତି, ମନୁଷ୍ୟର ଅନେକ ଭଲ ଗୁଣ ତାଙ୍କଠାରେ ଥିଲା ।

ଜେଦେଇ ଓ ଯମୁନାଙ୍କ ଭିତରେ ବୟସ ତଫାତ୍ ଖୁବ୍ ବେଶୀ ହୋଇଥିଲେ ମଧ୍ୟ ସେମାନଙ୍କ ବ୍ୟବହାରରେ ସେମିତି କିଛି ତଫାତ୍ ଜଣା ପଡ଼ୁନଥିଲା । ଜେଦେଇଙ୍କୁ ପଇଁତିରିଶ ଓ ଯମୁନାଙ୍କୁ ଉଣେଇଶ, ତଥାପି ଜେଦେଇ ଯମୁନାଙ୍କୁ ନିଜର ସାଙ୍ଗସାଥୀପରି ଦେଖୁଥିଲେ । ତାଙ୍କର ବି ପିଲାପିଲି ବେଶୀ ନଥିଲେ; ଗୋଟିଏ ବୋଲି ପୁଅ ଲକ୍ଷ୍ମୀଚନ୍ଦ । ଅଳ୍ପ ପିଲାର ମା' ହୋଇଥିବାରୁ ବୋଧହୁଏ ସେ ନିଜକୁ ଅଳ୍ପବୟସ୍କା ମନେକରୁଥିଲେ ।

ଲକ୍ଷ୍ମୀଚନ୍ଦ ବାପମା'ଙ୍କର ଏକମାତ୍ର ପୁଅ ହୋଇଥିବାରୁ ଯେମିତି ଅଭିମାନୀ, ସେମିତି ଉଦ୍ଧତ ହୋଇଥିଲା । ବାପର ସବୁଯାକ ଗୁଣ ତା'ଠି ଥିଲା କହିଲେ ଚଳେ । ଷୋଳବର୍ଷ ବୟସରେ ବି ସେ ଏତେ ଉଦ୍ଦଣ୍ଡ ହୋଇଥିଲା ଯେ ଆଖପାଖ ଲୋକେ ତାକୁ ବହୁତ ଡରୁଥିଲେ । ବଣିଆ ଘରର ପୁଅ ହେଲେ ବି ଦୁଇଟା କାରଣରୁ ସେ ଉଦ୍ଧତ ହୋଇପଡ଼ିଥିଲା । ଏକରେ ବାପ ଜଣେ ବଡ଼ ଜମିଦାର ହୋଇଥିବାରୁ ଲୋକଙ୍କ ଉପରେ ତାଙ୍କର କ୍ଷମତା ଥିଲା । ତା'ଛଡ଼ା ସେ ଲକ୍ଷ୍ନୌ ସହରରେ ମାମୁଘରେ ରହି ଇଂରେଜୀ ପଢ଼ୁଥିବାରୁ ସହରୀ ଲୋକ ହିସାବରେ ତାର ସାହସ ଖୁବ୍ ବଢ଼ିଯାଇଥିଲା ।

ସେଦିନ ଜ୍ୱାଲାପ୍ରସାଦ ଖାଇସାରି ଶିବପୁରୀ ଚାଲିଗଲେ । ପ୍ରଭୁଦୟାଳଙ୍କ ଫାଟକ ପାଖରେ ପହଞ୍ଚି ସେଠି ମନ୍ଦିରରେ ଥିବା ରାଧାକୃଷ୍ଣଙ୍କୁ ଦର୍ଶନ କରି ହତାଭିତରକୁ ପଶିଲେ । ପାହାଚରେ କିଛି ବାଟ ଉଠିଗଲେ ପ୍ରଭୁଦୟାଳଙ୍କର ବୈଠକଖାନା । ସେହି ବୈଠକଖାନା ବାରଣ୍ଡାରେ ଗୋଟାଏ ତକ୍ତା ପଡିଥିଲା । ପ୍ରଭୁଦୟାଲ ସେତେବେଳେ

ଗୋଟାଏ ତକିଆ ଉପରେ ଭର୍‌ ଦେଇ ଅଧା ଶୁଆ ଅଧା ବସିବା ଅବସ୍ଥାରେ ବିଶ୍ରାମ କରୁଥାନ୍ତି । ତାଙ୍କ ସାମନାରେ ଟିକିଏ ଗ୍ଦନ୍ତି ଥାନା ଅଫିସର ଅମଜଦ ଅଲ୍ଲୀ ଗୋଟାଏ ଆରାମ ଚୌକିରେ ବସିଥାନ୍ତି । ସାମନାରେ ଥିବା ରୁପା ଗ୍ଲାସରେ ମଦ ଢାଳି ଉପରକୁ ଗ୍ଲାସ ଗ୍ଲାସ ଗ୍ଲାସ ପିଇବାରେ ସେ ଲାଗିଥାନ୍ତି । ତାଙ୍କ ହାତ ଅନାୟାସରେ ଗ୍ଲାସକୁ ମୁହଁ ପାଖକୁ ନେଇ ଫେରାଇ ଆଣୁଥାଏ ଓ ମଦ ଭର୍ତ୍ତିକରି ପୁଣି ମୁହଁ ପାଖକୁ ନେଇ ଯାଉଥାଏ । ଏହି ସମୟରେ ଲକ୍ଷ୍ମୀଚନ୍ଦ ଡାକ ପକାଇ କହିଲା, "ବାପା, କାକାସାହେବ ଆସିଲେଣି ।"

ଲକ୍ଷ୍ମୀଚନ୍ଦର ଡାକରେ ପ୍ରଭୁଦୟାଳ ଆଖି ବୁଲାଇବାମାତ୍ରେ ଜ୍ୱାଲାପ୍ରସାଦଙ୍କୁ ଦେଖି ଠିଆ ହୋଇପଡ଼ିଲେ । ନଥିପତ୍ର ଓ ପଟ୍ୱାରୀଙ୍କ କାଗଜପତ୍ର ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲା । ପଟ୍ୱାରୀ ସୀତଲପ୍ରସାଦ ହାତଯୋଡ଼ି ଆଡ଼େଇହୋଇ ବୁଲିଗଲା; କିନ୍ତୁ ଥାନା ହାକିମ ଅମଜଦ୍ ଅଲ୍ଲୀ ନିଜ ଜାଗାରେ ବସି କହିଲେ, "ଖୁବ୍ ଭଲ ବେଳରେ ପହଞ୍ଚିଲେ ନାଏବ ସାହେବ ! ପ୍ରଭୁଦୟାଳଜୀ, ଆଉ ଗ୍ଲାସେ ମଗାନ୍ତୁ । କି ସୁନ୍ଦର ପାଗ, ଦିନଯାକ ପିଅ—ଯେତେ ପିଉଥା—ଖୁବ୍ ପିଇକରି ଗଡ଼; ପିଅ ଯେମିତି ଚେତା ନରହୁ ।" ଏମିତି ନାନା ପ୍ରଳାପ କରି ସେ ଖୁବ୍ ହସିଲେ ।

କିନ୍ତୁ ଜ୍ୱାଲାପ୍ରସାଦଙ୍କ ମନରେ ବର୍ଷାକାଳର କୌଣସି ଉତ୍ସାହ ନଥିଲା । ସେ ଟିକିଏ କଠୋର ସ୍ୱରରେ କହିଲେ, "ଥାନା ସାହେବ, ଆପଣ ତ ଜାଣିଥିବେ ମୋର ପିଇବାର ଅଭ୍ୟାସ ନାହିଁ । ତା'ଛଡ଼ା ଦିନ ଦୁଇପହରେ କିଏ ପିଏ ? ଏ ପାଖରେ ମୁଁ ଯେ ଘାଟମପୁରରୁ ଏତେ ବାଟ ଚାଲିକରି ଆସିଲି; ମୋର ଗୋଟାଏ ବଡ଼ କାମ ଅଛି । ମୁଁ ପିଇବା ପାଇଁ ଆସିନାହିଁ । ତା'ପରେ ସେ ପଟ୍ୱାରୀ ସୀତଲପ୍ରସାଦକୁ ଚାହିଁ ପଚାରିଲେ, "କିଓ ସୀତଲପ୍ରସାଦ, ତମେ ଏତେବେଳେ ନିଜ ଇଲାକାରେ ନରହି ଏଠିକି ଆସିଛ କେମିତି ?"

"ଆଜ୍ଞା, ଲମ୍ବରଦାରଙ୍କ ଡକରାରେ ଏଠିକି ଆସିଥିଲି । ସେ ତ ଆପଣଙ୍କର ବନ୍ଧୁ; ତାଙ୍କ ଆଦେଶ ଅବମାନନା କରିବାର ଶକ୍ତି ଆମର କାହିଁ ?" ସୀତଲପ୍ରସାଦ ଯେମିତି ଚଡ଼ା ଢଙ୍ଗରେ ଜବାବ ଦେଲା, ସେଥିରେ ଜ୍ୱାଲାପ୍ରସାଦଙ୍କୁ ଟିକିଏ ଖରାପ ଲାଗିଲା । ତଥାପି ସେ ଜାଣିଲେ ଯେ ଲୋକଟା ମିଛ କହୁନାହିଁ । ଅମଜଦ୍ ଅଲ୍ଲୀଙ୍କୁ ମଦ ପିଇବାର ଦେଖୁ ଦେଖୁ ତାଙ୍କ ନିଜ କଥା ତାଙ୍କର ମନେ ପଡ଼ିଗଲା । ସୀତଲପ୍ରସାଦ ଓ ଲଚ୍ଛୀରାମକୁ ଡାକି ସେ କହିଲେ, "ଆଚ୍ଛା, ତମେ ବର୍ତ୍ତମାନ ଟିକିଏ ବାହାରକୁ ଯା', ପ୍ରଭୁଦୟାଳଙ୍କ ସଙ୍ଗରେ ମୋର ଟିକିଏ ଜରୁରୀ କାମ ଅଛି, କଥାବାର୍ତ୍ତା ସରିଲେ ମୁଁ ତୁମକୁ ଡାକିଦେବି ।"

ସୀତଲପ୍ରସାଦ ଓ ଲଚ୍ଛିରାମ ସେଠୁ ବାହାରିଗଲେ; କିନ୍ତୁ ଅମଜଦ୍ ଅଲ୍ଲୀ ଖୁବ୍ ଜୋରରେ ହସି ହସି କହିଲେ, "କିନ୍ତୁ ମୁଁ ଏ ବୋତଲ ଶେଷ ନ କଲାଯାଏ ଏଠୁ ଉଠିବ ନାହିଁ । ମୁଁ ବର୍ତ୍ତମାନ ଏମିତି ଅବସ୍ଥାରେ ଅଛି ଯେ ଆପଣମାନଙ୍କ କଥା ମୋତେ ଶୁଭୁନାହିଁ, କିମ୍ବା ଶୁଭିଲେ ବି ମୁଁ କିଛି ବୁଝିପାରୁନାହିଁ । ଆପଣମାନେ ଖୁସିରେ ମୋ ଆଗରେ କଥାବାର୍ତ୍ତା କରିପାରନ୍ତି ।"

ଏତେବେଳକୁ ଜ୍ୱାଲାପ୍ରସାଦଙ୍କ ମନର ବିରକ୍ତି ଅନେକ କମିଯାଇଥିଲା । ସେ ହସି ହସି କହିଲେ, "ମୁଁ ଆପଣଙ୍କ କଥା କହୁନାହିଁ ଥାନା ସାହେବ ! ଆପଣ ଯଦି ଆମ କଥାରେ ଯୋଗଦେବାର କଷ୍ଟ କରନ୍ତି ତେବେ ମୁଁ ବହୁତ ଖୁସି ହେବି । ଘଟଣା ଏତେ ଜଟିଳ ଯେ ତାକୁ ସରଳ କରିବାପାଇଁ ଆପଣଙ୍କର ମତାମତ ବହୁତ ଦରକାର ।"

"ସେଥିପାଇଁ ସେବକ ହାଜର ଅଛି," କହି ଅମଜଦ ଅଲ୍ଲୀ ନିଜ ଚଉକୀଟାକୁ ଜ୍ୱାଲାପ୍ରସାଦଙ୍କ ପାଖକୁ ଟାଣିନେଲେ । ଜ୍ୱାଲାପ୍ରସାଦ ପ୍ରଭୁଦୟାଲଙ୍କ ପାଖରେ ତାଙ୍କ ଖଟ ଉପରେ ବସିଗଲେ । କିଛି ସମୟ ନୀରବ ରହିବା ପରେ ସେ କହିଲେ, "ଆଚ୍ଛା ପ୍ରଭୁଦୟାଲ ସାହେବ, ବରଜୋର ସିଂହ ମକଦ୍ଦମା ତ ବର୍ତ୍ତମାନ ବଡ଼ ଭୟଙ୍କର ରୂପ ଧରିଲାଣି ।"

ପ୍ରଭୁଦୟାଲ ମୃଦୁକ ହସି କହିଲେ, "ଏ କଥା ବି ଆପଣଙ୍କ ପାଖରେ ପହଞ୍ଚି ଗଲାଣି । ସେଇଥିପାଇଁ ଥାନା ସାହେବ ଅମଜଦ ଅଲ୍ଲୀଙ୍କୁ ବି ମୁଁ ଏତେ କଷ୍ଟ ଦେଲିଣି । ଭାବିଥିଲି ପୁଣି ସମୟ ଦେଖି ଆପଣଙ୍କ ସଙ୍ଗେ ଯାଇ କଥାବାର୍ତ୍ତା କରିବି । ଆଜି ସକାଳେ ସେ ଆସି ମୋତେ ଧମକ ଦେଇ ଯାଇଛି । ମୋତେ ତ ପୁଣି ନିଜର ପ୍ରାଣରକ୍ଷା କରିବା ପାଇଁ କିଛି କରିବାକୁ ହେବ । ଇଂରେଜ ସରକାରଙ୍କର ହୁକୁମ ଅଛି, ପୁଲିସ ଅଛନ୍ତି, ଫଉଜ ବି ତ ଅଛନ୍ତି ।"

"କିନ୍ତୁ—କିନ୍ତୁ" ମାତ୍ର ଏତିକି କହି ଜ୍ୱାଲାପ୍ରସାଦ ଅଟକିଗଲେ । ସେ ନିଜ କଥାଟା ପ୍ରଭୁଦୟାଲଙ୍କୁ କେମିତି ଭାବରେ କହିବେ କିଛି ବୁଝିପାରିଲେ ନାହିଁ । ସେ ଜାଣିଥିଲେ ବରଜୋର ସିଂହ ଯେମିତି ଅପରାଧୀ ସେମିତି ଆଇନ ଅମାନ୍ୟକାରୀ ଅତ୍ୟାଚାରୀ ମଧ୍ୟ । ପ୍ରଭୁଦୟାଲଙ୍କୁ ତା' ହାତରୁ ରକ୍ଷା କରିବା ଦରକାର । ପ୍ରଭୁଦୟାଲ ସେତେବେଳେ ଯେମିତି ଢଙ୍ଗରେ ଚିନ୍ତିତ ହୋଇ ବସିଥିଲେ, ଦେଖିଲେ ଯେକୌଣସି ଲୋକର ଦୟା ଆସିବ ।

ଅମଜଦ ଅଲ୍ଲୀ ପଚାରିଲେ, "ଆପଣ କଥା କହୁ କହୁ ଏମିତି ଅଟକି ଗଲେ କାହିଁକି ନାଏବ ସାହେବ ?"

"ଅମଜଦ୍ ଅଲ୍ଲୀ ସାହେବ, ମୁଁ ପ୍ରଭୁଦୟାଲଙ୍କୁ କହିବାକୁ ଆସିଥିଲି ଯେ ବରଜୋର

ସିଂହଙ୍କର ମାତ୍ର ଶହେ ବିଘା ଜମି । ସେହି ତାଙ୍କର ଏକମାତ୍ର ଜୀବିକା; ଏକମାତ୍ର ଆଶ୍ରୟ । ସେ ଜମିଟା ଯେପରି ତାଙ୍କ ହାତରୁ ନ ଯାଏ ସେଥିପାଇଁ କଣ କିଛି ଉପାୟ ନାହିଁ ?" ଜ୍ୱାଲପ୍ରସାଦ ପ୍ରଭୁଦୟାଲଙ୍କୁ ଗୁହିଁ ଏହି ପ୍ରଶ୍ନ ପଗୁରିଲେ ।

ପ୍ରଭୁଦୟାଲ ଜବାବ ଦେଲେ, "ନାଏବ ସାହେବ, ଟଙ୍କା ଫେରସ୍ତ ପାଇବା ଆଶାରେ କରଜ ଦିଆଯାଏ । କରଜ ତ କିଛି ଦାନ ଦକ୍ଷିଣା ନୁହେଁ । ଆପଣ ମୋ ଟଙ୍କା ଫେରସ୍ତ ପାଇବାର ଗୋଟାଏ କିଛି ଉପାୟ ବତାନ୍ତୁ । ସେ ଆଜି ସକାଳେ ଆସିଥିଲା ହାତିଟା ମୋତେ ଦେବାପାଇଁ । ସେ ଠିକ୍ କହିଛି, ରଜାଲୋକ ସିନା ହାତି ରଖନ୍ତି; ବଣିଆ କ'ଣ କେବେ ହାତି ରଖନ୍ତି ? ମୁଁ ଆପଣଙ୍କୁ ପଗୁରୁଛି, ନିଜର ବଡ଼ପଣ ଦେଖାଇ ମୋତେ ଗାଳି ଦେଲାବେଳେ ସେ ନିଜେ ଯେ ଭିକାରୀ, କାଙ୍ଗାଳ, ଏ କଥା ସେ ଭୁଲିଯାଏ କାହିଁକି ? ଯେ ଯେମିତି କରେ ସେ ସେମିତି ଫଳ ପାଏ, ଏ ତ ବିଧିର ବିଧାନ ।"

ଜ୍ୱାଲପ୍ରସାଦ କରୁଣ କଣ୍ଠରେ କହିଲେ, "ପ୍ରଭୁଦୟାଲଜୀ, ଆପଣ ଟିକିଏ ବିଗ୍ରୁର କରନ୍ତୁ, ନଚେତ୍ ବିଗ୍ରୁରା ସତ୍ୟାନାଶ ହୋଇଯିବ ।"

ପ୍ରଭୁଦୟାଲ ହସିଦେଇ କହିଲେ, "ଦେଖନ୍ତୁ ନାଏବ ସାହେବ, ମୁଁ ଯଦି ଅନ୍ୟର ସତ୍ୟାନାଶ କଥା ବିଗ୍ରୁର କରିବାକୁ ବସିବି, ତାହେଲେ ଟଙ୍କା ପଇସା ବ୍ୟବସାୟ ମୋତେ ବନ୍ଦ କରିଦେବାକୁ ହେବ । ଜଣେ ନଷ୍ଟ ହେଲେ ସିନା ଆଉ ଜଣେ ପୁଷ୍ଟ ହେବ । ଯେ ନିର୍ବୋଧ, ଅଯୋଗ୍ୟ, ଅସଂଯତ ତାର ସର୍ବନାଶ ସୁନିଶ୍ଚିତ । ଏପରି ଲୋକର ସର୍ବନାଶକୁ କିଏ ବା କେମିତି ରକ୍ଷା କରିପାରିବ ? ଏସବୁ କଥା ଛାଡ଼ନ୍ତୁ । ବିଧିର ବିଧାନ ଅତି ବିଚିତ୍ର । ତାହା ସେହିପରି ବିଚିତ୍ର ଢଙ୍ଗରେ ଗୁଲିବ । ଏ ଦୁନିଆରେ ଯେ ସମର୍ଥ, ସେହି କେବଳ ବଞ୍ଚି ରହିବ ।"

ପ୍ରଭୁଦୟାଲଙ୍କର ଏହି ପରିହାସପୂର୍ଣ୍ଣ ଉକ୍ତି ଶୁଣି ଜ୍ୱାଲପ୍ରସାଦ ଟିକିଏ ତେଜି ଉଠିଲେ । ମାତ୍ର ତାଙ୍କ ମନର ତେଜ ତାଙ୍କ ମନ ଭିତରେହିଁ ଗୁପିହୋଇ ରହିଗଲା । ସେ ପୁଣି ଥରେ କହିଲେ, "ଦେଖନ୍ତୁ ପ୍ରଭୁଦୟାଲଜୀ, ମଣିଷ ଦେଖି ଲୋକ କାରବାର କରେ । ମୋର ଧାରଣା ବରଜୋର ସିଂହ ଯାହା କହିଗଲା, ସେଟା ଖାଲି ମିଛ ଧମକ ନୁହେଁ । ମୁଁ ଯଦି ପ୍ରକୃତରେ ମଣିଷ ଚିହ୍ନିଥାଏ, ମୋର ବିଶ୍ୱାସ, ସେ ଯାହା କହିଛି ତା ନିଶ୍ଚୟ କରିବ । ଥାନେଦାର ସାହେବ, ଆପଣ କ'ଣ କହୁଛନ୍ତି ? ଆପଣ ତ ପୁଲିସ, ପ୍ରତିଦିନ ନାନାପ୍ରକାର ଲୋକ ଦେଖୁଛନ୍ତି, ମୁଁ ଯାହା କହୁଛି ତା ଠିକ୍ ନା ଭୁଲ୍ ?"

ଅମଜଦ୍ ଅଲ୍ଲୀ ଏଥର ଟିକିଏ ଗମ୍ଭୀର ହୋଇ କହିଲେ, "ଆପଣ ସମ୍ପୂର୍ଣ୍ଣ ଠିକ୍ କହୁଛନ୍ତି ନାଏବ ସାହେବ ! ମୁଁ ଜାଣେ ବରଜୋର ସିଂହ ବଡ଼ ଜିଦିବାଦୀ ଲୋକ । ଯେଉଁମାନେ ଜିଦିବାଦୀ ସେମାନେ ଯାହା କହନ୍ତି, ପ୍ରାୟ ତାହା କରନ୍ତି । ଅନ୍ୟାୟ କେବେ

ତାଙ୍କୁ ଛୁଇଁ ପାରେ ନାହିଁ । ପ୍ରଭୁଦୟାଲଙ୍କ ପ୍ରତ ଯେମିତ କୌଣସି ଆଞ୍ଚ ନ ଆସେ ମୁଁ ତାହା ବରାବର ଦେଖିବ; କନ୍ତୁ ତାଙ୍କୁ ନଜକୁ ତ ପୁଣି ସାବଧାନ ରହବାକୁ ହେବ । ମୁଁ ସିନା ବରଜୋର ସିଂହଙ୍କୁ ହାଜତରେ ବନ୍ଦ କରଦେବ; କନ୍ତୁ ତାଙ୍କ ଭେଣୋଇ ଗଜରାଜ ସିଂହଙ୍କର ପୋଲସ, କଲେକ୍ଟରର ସମସ୍ତେ ଚହ୍ନା !"

ଜ୍ୱାଲପ୍ରସାଦ ଆହୁର ଆଶ୍ଚର୍ଯ୍ୟ ହୋଇଗଲେ ଯେତେବେଳେ ପ୍ରଭୁଦୟାଲ ତାଙ୍କ ତକିଆ ତଳୁ ରଭଲଭର ଆଣି ନଜ ସାମନାରେ ଥୋଇଦେଇ କହଲେ, "ନାଏବ ସାହେବ, ମୁଁ ଠିକ୍ ଜାଣେ ଜମିଦାରୀ କଛ ହସଖେଳର କଥା ନୁହେଁ । ମରଣ ସଙ୍ଗେ ଖେଳବାକୁ ଯେ ଡରେ ନାହିଁ, ସେହି କେବଳ ବଞ୍ଚିପାରେ । ମୁଁ ସେ ପୁରୁଣାକାଳିଆ ଭୟଭୀତ କାପୁରୁଷ ବଣିଆ ନୁହେଁ । ମୁଁ ଯଦ ଆଜ ବରଜୋର ସିଂହର ଧମକରେ ଡରଗଲ, ତେବେ ତ କଥା ସରଗଲ । ତାହେଲେ ଗଜରାଜ ସିଂହଙ୍କର ଯେଉଁ ପାଞ୍ଚଖଣ୍ଡ ଗାଁ ମୋ ପାଖରେ ବନ୍ଧା ପଡ଼ଛ, ତାକୁ ଭବଷ୍ୟତରେ କେବେ କଣିନେବାର ଆଶା ମୋତେ ଛାଡ଼ଦେବାକୁ ପଡ଼ବ । ଆପଣ ମୋ ଚନ୍ତା ଆଦୌ କରନ୍ତୁ ନାହିଁ ନାଏବ-ସାହେବ । ଫୌଜଦାରୀରେ ମଧ୍ୟ ତା'ଠୁ ମୋର ବଳ ବେଶୀ ।"

ପ୍ରଭୁଦୟାଲଙ୍କର ଯେଉଁ ସ୍ୱରୂପ ଆଜ ଜ୍ୱାଲପ୍ରସାଦ ଦେଖିବାକୁ ପାଇଲେ, ସେ କେବେ ତାହା କଳ୍ପନା କର ନଥିଲେ । ତାଙ୍କର ମନେହେଲ ସତେ ଯେପର ଏକ ପ୍ରକାଣ୍ଡ ରାକ୍ଷସ ତାଙ୍କ ସାମନାରେ ବସିଛ; ଯାହାର କୌଣସି ଭୟ, ଭ୍ରାନ୍ତ କମ୍ବା ଭାବନା ନାହିଁ । ଆହୁର ମଧ୍ୟ ତାଙ୍କର ମନେହେଲ ସତେ ଯେମିତ ସେ ତାଙ୍କ ଆଗରେ ଅତ ନଗଣ୍ୟ, ଅତ କ୍ଷୁଦ୍ର, ସାମାନ୍ୟ ଗୋଟିଏ କୀଟ ମାତ୍ର । ଖାଲ ସେତକ ନୁହେଁ, ମନେ ହେଲ ସତେ ଯେମିତ ଅଗଣିତ ଲୋକ ତାଙ୍କର ପଦଲେହନ କରୁଛନ୍ତ ଓ ତାଙ୍କର ଆଜ୍ଞା ପାଳନ କରବାପାଇଁ ଅନାଇ ବସିଛନ୍ତ ।

ଜ୍ୱାଲପ୍ରସାଦ ଏଇ ଦୁଃସ୍ୱପ୍ନରେ ବ୍ୟସ୍ତ ହୋଇ ମୁଣ୍ଡରେ ହାତଦେଇ ବସି ଦେଖିଲେ ତାଙ୍କର ସବୁ ସ୍ୱପ୍ନ ଭାଙ୍ଗି ଯାଇଛ । ତାଙ୍କ ଆଗରେ ଜଣେ ଦୁର୍ବଳ ବୃଦ୍ଧ ବ୍ୟକ୍ତ ବସିଛନ୍ତ, କପାଳର ରେଖା ତାଙ୍କର କୁଞ୍ଚିତ ହୋଇଯାଇଛ । ରଭଲଭର ଉପରେ ତାଙ୍କର ହାତ କମ୍ପୁଛ; ଅଥଚ ବାର୍ଦ୍ଧକ୍ୟରେ ସେହି ଦୁର୍ବଳତା ସତ୍ତ୍ୱେ ତାଙ୍କର ଭୟଙ୍କର ମୁଖ ଉପରେ ରାକ୍ଷସର କଠୋର ସଙ୍କଳ୍ପ ଫୁଟିଉଠୁଛ ।

ଜ୍ୱାଲପ୍ରସାଦ ଉଠିପଡ଼ ଛିଡ଼ାହୋଇ କହଲେ, "ଦେଖନ୍ତୁ ପ୍ରଭୁଦୟାଲ, ମୋର ଆପଣଙ୍କ ପାଖରେ ଯାହାସବୁ ଋଣ ଥିଲ, ମୁଁ ବର୍ତ୍ତମାନ ତାହା ସୁଝିଦେଲ । ସେଥିପାଇଁ ମୋର ମନ ଏବେ ବହୁତ ହାଲୁକା ହୋଇଯାଇଛ । କନ୍ତୁ ଏ କଥା ନଶ୍ଚୟ ଯେ ମୁଁ ଆପଣଙ୍କ ମନର ଭାବ ବୁଝିପାର ନାହିଁ ଓ ସେଇଥିବୁ ମୁଁ ଅନୁମାନ କରୁଛ ଯେ ଆପଣ ବ

ମୋ ମନକଥା ବୁଝିପାରି ନାହାନ୍ତି । ଅବଶ୍ୟ ଆମମାନଙ୍କର ଦୃଷ୍ଟିକୋଣ ବହୁତ ଭିନ୍ନ । ଆଚ୍ଛା, ମୋତେ ଏଥର ଛୁଟି ଦିଅନ୍ତୁ; ମୁଁ ଆସୁଛି ।"

କିନ୍ତୁ ଠିକ୍ ଏତିକବେଳକୁ ଲକ୍ଷ୍ମୀଚାନ୍ଦ ଆସି କହିଲା, "ମା କହୁଛନ୍ତି ତମେ ତାଙ୍କ ହାତରୁ ମିଠେଇ ନଖାଇ ଫେରିଯାଇ ପାରିବନାହିଁ । ସେ ତମକୁ ଭିତରକୁ ଡାକୁଛନ୍ତି ।"

## ଚାରି

ପ୍ରଭୁଦୟାଲ ବରଜୋର ସିଂହ ନାଁରେ ଯେଉଁ ମକଦ୍ଦମା କରିଥିଲେ, ସେଥିରେ ସେ ଜିତିଗଲେ ଓ ଦୁଇହଜାର ଟଙ୍କା ପାଉଣା ବାବଦରେ ବରଜୋର ସିଂହଙ୍କର ହାତଗୃଷ୍ଟ ଶହେ ବିଘା ଜମି କୋରଖରେ ଉଠିଗଲା । ଯେଉଁ ଦିନ ସେ ଜମି ନିଲାମ ହେଲା ସେଦିନ ପ୍ରଭୁଦୟାଲଙ୍କ ଛଡ଼ା ଆଉ କେହି ନିଲାମ ଧରିବାକୁ ଗଲେ ନାହିଁ । ଯେତିକ ଟଙ୍କା ଡିଗ୍ରୀ ହୋଇଥିଲା ସେତିକ ଟଙ୍କାରେ ପ୍ରଭୁଦୟାଲ ସେ ଜମି କିଣିନେଲେ ।

ଅଦାଲତରେ ଜମି ଦାଖଲ ଖାରଜ କରି ପ୍ରଭୁଦୟାଲ ଘରକୁ ଫେରିଲାବେଳକୁ ସନ୍ଧ୍ୟା ହୋଇଯାଇଥିଲା । ଘାଟମପୁରିଠାରେ ତାଙ୍କର ବଳଦଗାଡ଼ି ଅପେକ୍ଷା କରିଥିଲା । ସେହି ଗାଡ଼ି ଧରି ସେ ଘରକୁ ବାହାରିଲେ ।

ଜାନୁଆରୀ ପ୍ରଥମ ସପ୍ତାହ, ଆକାଶରେ ଶୀତଦିନିଆ ମେଘ ଜମିରହିଥାଏ । ଲାଲା ପ୍ରଭୁଦୟାଲଙ୍କ ସଙ୍ଗରେ ତାଙ୍କର ଗୃକର ଲଛୁରାମ ଓ ପଣ୍ଡାରୀ ସୀତଲପ୍ରସାଦ ଥାନ୍ତି । ଘାଟମପୁରରୁ ଶିବପୁରୀ ଆଡ଼କୁ କଚ୍ଚା ରାସ୍ତାରେ ଗାଡ଼ି ଯେମିତି ଓହ୍ଲାଇଲା ପ୍ରଭୁଦୟାଲଙ୍କୁ ବରଜୋର ସିଂହଙ୍କର ଡାକ ଶୁଭିଲା "ଲାଲା ପ୍ରଭୁଦୟାଲ, ଟିକିଏ ରହ ।"

ଗାଡ଼ି ଅଟକିଲା, ପ୍ରଭୁଦୟାଲ ରିଭଲଭର କାଢ଼ି ତାକୁ ଜୋରରେ ଧରିଲେ, ସ୍ୱା ଭିତରେ ବରଜୋର ସିଂହ ଆସି ପହଞ୍ଚିଗଲେ । ତାଙ୍କ ହାତରେ କିଛି ହତିଆର ନଥିଲା; କିନ୍ତୁ ରାଗରେ ମୁହଁ ତମତମ ଦିଶୁଥିଲା । ପହଞ୍ଚିଲା ମାତ୍ରେ ସେ ପଚାରିଲେ "କଣ ଦାଖଲ ଖାରଜ ଶେଷ କରି ଆସିଲ ? ମରଣ ବୋଧହୁଏ ତମର ପାଖେଇଗଲାଣି ।"

ପ୍ରଭୁଦୟାଲ କଡ଼ା ସ୍ୱରରେ କହିଲେ, "କ'ଣ ଗୁଡ଼ାଏ ବକୁଛ, ଟିକିଏ ସାବଧାନ ହୋଇ କଥାବାର୍ତ୍ତା କର ।"

ପ୍ରଭୁଦୟାଲଙ୍କ ହାତରେ ରିଭଲଭର ଦେଖି ବରଜୋରଙ୍କୁ ହସ ଲାଗିଲା । ସେ କହିଲେ, "ଆଚ୍ଛା, ରିଭଲଭର ଧରି ବୁଲୁଛ ? କିନ୍ତୁ ଏ ରିଭଲଭର ବଣିଆଙ୍କ ହାତରେ

ସୁନ୍ଦର ଦିଶୁନାହିଁ ।" ଏତିକି କହି ବରଜୋର ବଡ଼ ନିର୍ଭୟରେ ତାଙ୍କ ହାତରୁ ରିଭଲଭର ଛଡ଼ାଇ ଆଣିଲେ । ପ୍ରଭୁଦୟାଳଙ୍କ ଚେହେରା କଳା ପଡ଼ିଗଲା; ସେ ଭୟରେ ଥରିଥରି ଉଠିଲେ । ସୀତଲପ୍ରସାଦ ଓ ଲଚ୍ଛୁରାମ ହାତଯୋଡ଼ି ଚୁପଚାପ ବସିଗଲେ । ବରଜୋର କହିଲେ, "ଦେଖ, ଡରିବାର କିଛି ନାହିଁ, ମୁଁ ତୁମକୁ କେବେ ମାରିବି ନାହିଁ । ମୁଁ କେବଳ ଏତିକି କହିବାକୁ ଚାହେଁ ଯେ ତମେ ବଞ୍ଚିଥିବାଯାକ ମୋ ଜମି ଉପରେ ହାତ ଦେଇ ପାରିବ ନାହିଁ ଓ ମରିବା ପରେ ତମର ଅଧିକାର ବୃଥା ହୋଇଯିବ । ତେଣୁ ମୋ ଜମିକୁ ନେବା ପାଇଁ ଅକାରଣ ବୋକାମି କର ନାହିଁ ।" ଏତିକି କହି ସେ ରିଭଲଭରକୁ ପ୍ରଭୁଦୟାଳଙ୍କ ଆଗରେ ରଖିଦେଇ ଘାଟମପୁର ଆଡ଼କୁ ଖୁବ୍ ଶୀଘ୍ର ଗତିରେ ଫେରିଗଲେ ।

ପ୍ରଭୁଦୟାଳ ବର୍ତ୍ତମାନ ଆଉ ଶିବପୁର ନଯାଇ ଜ୍ୱାଲାପ୍ରସାଦଙ୍କ ଘର ଆଡ଼କୁ ଗାଡ଼ି ମୁହାଁଇଲେ । ତାଙ୍କ ମନରେ ଭାରି ଭୟ ହୋଇଗଲା ।

ଏଣେ ଦୁଇ ତିନିଦିନ ହେଲା ଜ୍ୱାଲାପ୍ରସାଦଙ୍କର ଦେହ ଖରାପ, ଖୁବ୍ ଜୋର୍ ଥଣ୍ଡା ଧରିଥିଲା । ଯମୁନା ମୁନ୍‌ସି ରାମସହାୟଙ୍କ ଘରକୁ ଚାଲିଯାଇଥିଲେ । ତେଣୁ ଜ୍ୱାଲାପ୍ରସାଦ ଘରେ ଏକା ଥିଲେ । ଘର ଭିତରେ ସେ ରେଜେଇ ଘୋଡ଼େଇ ହୋଇ ଶୋଇଥିଲେ ଓ ଭିକ୍ଷୁ ବାହାର ବାରଣ୍ଡାରେ ନିଆଁ ପାଖରେ ବସି ଚିଲମ ଟାଣୁଥିଲା । ପ୍ରଭୁଦୟାଳଙ୍କୁ ଦେଖିଲା ମାତ୍ରେ ଉଠି ପଡ଼ି ସେ କହିଲା, "ବାବୁଙ୍କୁ ତ ଭାରି କାଶ ଆଉ ଜର, ଔଷଧ ଖାଇ ଶୋଇଛନ୍ତି । ଖୁବ୍ ଜରୁରୀ କାମ ଯଦି ଅଛି ତାହେଲେ ଉଠାଇବି ।"

ପ୍ରଭୁଦୟାଳ ବ୍ୟସ୍ତ ହୋଇ କହିଲେ, "ହଁ ଭାରି ଜରୁରୀ କାମ, ଟିକିଏ ଶୀଘ୍ର ଉଠାଇ ଦେ; କହି ଦେ ମୁଁ ଆସିଛି, ଜୀବନ ମରଣ କଥା ।"

ତା'ପରେ ଭିକ୍ଷୁ ଆଶ୍ଚର୍ଯ୍ୟ ହୋଇ କହିଲା, "ଆରେ ବାପ୍‌ରେ, ନିଜେ ମାଲିକ ଆସିଛନ୍ତି, ରହନ୍ତୁ ମୁଁ ବୈଠକଘର ଖୋଲିଦିଏ ।" ବୈଠକଘର ଖୋଲି ଦେଇ ଭିକ୍ଷୁ ସଙ୍ଗେ ସଙ୍ଗେ ଜ୍ୱାଲାପ୍ରସାଦଙ୍କୁ ଉଠାଇ ଦେବାପାଇଁ ଚାଲିଗଲା ।

ଜ୍ୱାଲାପ୍ରସାଦଙ୍କ ପାଖରୁ ଫେରି ଆସି ଭିକ୍ଷୁ କହିଲା, "ବାବୁ ଘର ଭିତରେ ଏକା ଅଛନ୍ତି । ଆପଣଙ୍କୁ ଭିତରକୁ ଡାକୁଛନ୍ତି । ଭାଉଜ ନାହାନ୍ତି, ରାଜପୁର ଚାଲିଯାଇଛନ୍ତି । ଆପଣ ମୋ ସଙ୍ଗରେ ଆସନ୍ତୁ ।"

ଜ୍ୱାଲାପ୍ରସାଦ ତକିଆ ଉପରେ ଆଉଜି ବସି ପ୍ରଭୁଦୟାଳଙ୍କୁ ଅପେକ୍ଷା କରିଥିଲେ । କହିଲେ, "ଆସନ୍ତୁ ପ୍ରଭୁଦୟାଲ ସାହେବ ! କ'ଣ କହିବି, ଦୁଇଦିନ ହେଲା ଟିକିଏ ଜୋରରେ ଥଣ୍ଡା ଧରିଯାଇଛି, ସାମାନ୍ୟ ଜର ବି ଅଛି । ସ୍ତ୍ରୀ ବି ବାହାରକୁ ଚାଲି ଯାଇଛନ୍ତି । ଶୋଇକରି ଟିକିଏ ବିଶ୍ରାମ ନେଉଛି । ବସନ୍ତୁ, ଆପଣ କାହିଁକି ଭାରି ବ୍ୟସ୍ତ ଜଣାପଡ଼ୁଛନ୍ତି । କ'ଣ କଥା କ'ଣ ?"

ସାମନା ଚଉକିରେ ବସି ପ୍ରଭୁଦୟାଲ କହିଲେ, "ନାଏବ ସାହେବ, ଆଜି ମୁଁ ବରଜୋର ସିଂହଙ୍କ ଜମି ଦାଖଲ ଖାରଜ କରି ଶିବପୁର ଫେରୁଥିଲି ।......"

ପ୍ରଭୁଦୟାଲଙ୍କ କଥା ନ ସରୁଣୁ ମଝିରେ ଜ୍ୱାଲାପ୍ରସାଦ ପଚାରିଲେ, "ଆପଣ କ'ଣ ବରଜୋରର ହାତଗୃହ ଜମି କିଣିନେଲେ କି ?"

"ଆପଣ କ'ଣ ଜାଣି ନାହାନ୍ତି ? ତାଙ୍କ ଉପରେ କେହି ସେ ଜମି ନିଲାମ ଧରିଲେ-ନାହିଁ । ତେଣୁ ବାଧ୍ୟ ହୋଇ ମୁଁ ନେଲି ।"

"ହୁଁ," ଜ୍ୱାଲାପ୍ରସାଦ ଟିକିଏ ଭାବିଲାପରି ରହିଗଲେ । ପୁଣି ଉଦାସ ଭାବରେ ପ୍ରଭୁଦୟାଲକୁ ଚାହିଁ କହିଲେ, "ମୁଁ ତ ଆଜିକାଲି ବହୁତ କାର୍ଯ୍ୟବ୍ୟସ୍ତ, ମୋତେ ଏସବୁ କିଛି ଜଣା ନଥିଲା । ତାଛଡ଼ା ଦେହ ବି ଭଲ ନାହିଁ ।" ପୁଣି ଏକ ଦୀର୍ଘଶ୍ୱାସ ନେଇ ସେ କହିଲେ, "ହଁ ତାହେଲେ ଆପଣ ସେ ଜମିକୁ କିଣିନେଇ ନିଜ ନାଁରେ ଦାଖଲ ଖାରଜ କରିନେଲେ ।"

"ହଁ ଆଜି ତ ଡେପୁଟୀ ସାହେବଙ୍କ କଚେରୀରେ ଦାଖଲ ଖାରଜ କରି କାନପୁରରୁ ଫେରୁଛି । ବରଜୋର ସିଂହଙ୍କର ପିଲାମାନେ ଆପତ୍ତି କରିଥିଲେ; କିନ୍ତୁ କଚେରୀ ଉପରକୁ କେହି ଯାଇ ନଥିଲେ ।" ଏତିକି କହୁ କହୁ ହଠାତ୍ ତାଙ୍କ କଥା ଧିମେଇ ଗଲା । ସତେ ଯେମିତି ସେ ଭୟରେ ଶଙ୍କିଗଲେ । କହିଲେ, "ବୁଝିଲେ ନାଏବ ସାହେବ, ମୋ ଗାଡ଼ି ଯେମିତି ଶିବପୁର ଆଡ଼କୁ ମୁହାଁଇଗଲା ବରଜୋର ସିଂହ ଆସି ଗାଡ଼ିକୁ ରୋକିଲା । ତା' ଚେହେରା କେମିତି ଗୋଟାଏ ପାଗଳପରି ଦେଖାଯାଉଥିଲା, ମୋତେ ମାରିଦେବ ବୋଲି ଧମକ ଦେଇ ଚାଲିଗଲା ।"

ଏ କଥା ଶୁଣି ପ୍ରଭୁଦୟାଲଙ୍କ ପ୍ରତି ଜ୍ୱାଲାପ୍ରସାଦଙ୍କ ମନରେ ଭୟଙ୍କର ଗ୍ଲାନି ଭରିଯାଇଥିଲା । ସେ ଟିକିଏ ବିରକ୍ତ ହୋଇ କହିଲେ, "ପ୍ରଭୁଦୟାଲ, ଏ ଧମକ ତ ଆଜି ନୂଆ ନୁହେଁ; ଆପଣ ତ ଆଗରୁ ଜାଣନ୍ତି । ଆପଣ ଯେଉଁ ଦିନ ତାଙ୍କ ନାଁରେ ନାଲିସ ଦାଏର କଲେ, ସେହିଦିନୁ ସେ ପାଗଳ ହେଲେଣି । ତେଣୁ ତାଙ୍କ ଧମକ ମୋତେ କିଛି ନୂଆ ଲାଗୁନାହିଁ । କିନ୍ତୁ ଆପଣଙ୍କ ପାଖରେ ତ ସବୁବେଳେ ଶଭଲଭର ଅଛି । ଥାନାବାବୁ ଅମଜଦ୍ ଅଲି ଆପଣଙ୍କୁ ରକ୍ଷା କରିବାର ଦାୟିତ୍ୱ ନେଇଛନ୍ତି । ତଥାପି ଆପଣଙ୍କର ଏତେ ଭୟ କ'ଣ ?"

ପ୍ରଭୁଦୟାଲ ଟିକିଏ ଏପାଖ ସେପାଖ ହୋଇ କହିଲେ, "ହଁ, ଆପଣ ଯାହା କହିଲେ ତାହା ଠିକ୍, ଡର ଲାଗିବା ଉଚିତ ନୁହେଁ; କିନ୍ତୁ କୌଣସି ଗୋଟାଏ ଅଶୁଭ ଘଟଣା ଘଟିଲାପରି ମୋର କାହିଁକି ଆଶଙ୍କା ହେଉଛି । କାଲି ମୋତେ ତାଙ୍କ ଜମି ଦଖଲ କରିବାକୁ ହେବ ।"

ଜ୍ୱାଲପ୍ରସାଦ ଟିକିଏ ଆନମନା ହୋଇ କହିଲେ, "ଆଇନ୍ ଅନୁସାରେ ତାଙ୍କ ଜମି ଦଖଲ କରିବା ଆପଣଙ୍କର ହକ; କିନ୍ତୁ ଏ ବର୍ଷର ଫସଲଟା ଯଦି ଆପଣ ନ କାଟନ୍ତେ ଭଲ ହୁଅନ୍ତା ।"

"ସେ ଜମି ମୋର । ଫସଲ ହେଉଛି ଜମିର, ତେଣୁ ସେ ଫସଲ ହେଉଛି ମୋର । ସେହି ଜମି ଦଖଲ କରିବାପାଇଁ ଆପଣ ମୋତେ ଟିକିଏ ସାହାଯ୍ୟ କରିବେ ବୋଲି ମୁଁ ଆପଣଙ୍କୁ କହିବାକୁ ଆସିଛି ।"

ଜ୍ୱାଲପ୍ରସାଦ ପ୍ରଥମେ ଚୁପ୍ ରହିଗଲେ, ତା'ପରେ ଖୁବ୍ ସାହସ ଧରି କହିଲେ, "କ୍ଷମା କରିବେ ପ୍ରଭୁଦୟାଲ, ମୁଁ ଏ ମାମଲାରେ ସାମିଲ ହେବାକୁ ଚାହେଁନାହିଁ । ମୁଁ ଜାଣେ ଆଇନ ଆପଣଙ୍କ ସପକ୍ଷରେ ଅଛି; କିନ୍ତୁ ନୈତିକତା ଆପଣଙ୍କ ପକ୍ଷରେ ନାହିଁ । ଆପଣ ତ ନିଜେ ଦେଖୁଛନ୍ତି, ମୋ' ଦେହ ଭଲ ନାହିଁ । ଏହି ବର୍ତ୍ତମାନ ଜର ବି ଅଛି ।"

ପ୍ରଭୁଦୟାଲ ଟିକିଏ ତମତମ ହୋଇ କହିଲେ, "ଆପଣ ଠିକ୍ କହିଲେ ନାଏବ ସାହେବ, ନୈତିକତା ମୋ ସପକ୍ଷରେ ନାହିଁ । କିନ୍ତୁ କେହି ଆସି ମୋତେ କହୁ ତ, ଏ ଦୁନିଆରେ କାହା ପାଖରେ ନୈତିକତା ଅଛି ? ମୁଁ ଆପଣଙ୍କୁ ନିଜର ଭାବି ଆପଣଙ୍କ ପାଖକୁ ଆସିଥିଲି ଓ ଆପଣଙ୍କଠାରୁ ସାହାଯ୍ୟ ଚାହିଁଥିଲି । କିନ୍ତୁ ଗଜରାଜ ସିଂହଙ୍କ ସହିତ ଆପଣଙ୍କର ଯେଉଁ ଘନିଷ୍ଠ ସଂପର୍କ ଅଛି ମୁଁ ବୋଧହୁଏ ତାହା ଭୁଲି ଯାଇଥିଲି । ଯେତେହେଲେ ବରକୋର ଗଜରାଜ ସିଂହଙ୍କ ଶଳା ନା ! ହଉ ଭଲ କଥା, ମୁଁ ଆଉ ଆପଣଙ୍କୁ କଷ୍ଟ ଦେବାକୁ ଚାହେଁନାହିଁ ।" ଏତିକି କହି ପ୍ରଭୁଦୟାଲ ମୁଣ୍ଡ ନୁଆଁଇ ଚୁପ୍‌ଚାପ୍ ଉଠି ଚାଲିଗଲେ ।

କିନ୍ତୁ ପ୍ରଭୁଦୟାଲ ଜ୍ୱାଲାପ୍ରସାଦଙ୍କ ମନରେ ଏକ ଅଶାନ୍ତି ସୃଷ୍ଟି କରି ଦେଇ ଚାଲିଗଲେ ।

ଜ୍ୱାଲପ୍ରସାଦ ଏସବୁ କଥା ଭୁଲିଯାଇ ଶୋଇବାପାଇଁ ଯେତେ ଚେଷ୍ଟାକଲେ ବି ନିଦ ହେଲା ନାହିଁ; ଦୁଇ ଘଣ୍ଟାକାଳ ଏକଡ଼ ସେକଡ଼ ହୋଇ ଶେଷରେ ଉଠି ବସିଲେ । ତାପରେ ଲୁଗାପଟା ବଦଳି ଭିକ୍ଷୁକୁ କହିଲେ, "ଭିକ୍ଷୁ, ମୁଁ ଗଜରାଜ ସିଂହଙ୍କ ଘରକୁ ଯାଉଛି, ଘଣ୍ଟାକ ଭିତରେ ଫେରି ଆସିବି ।"

ସେଦିନ ଗଜରାଜ ସିଂହଙ୍କ ଘରେ ବହୁତ ଲୋକ ଜମା ହୋଇଥିଲେ । ତାଙ୍କର ସମୁଦି ଚନ୍ଦ୍ରଭୂଷଣ ସିଂହ ଆସିଥିବାରୁ ତାଙ୍କର ଖାତିରରେ ନାଚତାମସା ଚାଲିଥିଲା ।

ସେହି ନାଚତାମସାରେ ଯୋଗଦେବାପାଇଁ ଓ ମଧ୍ୟାହ୍ନ ଭୋଜନ ପାଇଁ ଜ୍ୱାଲାପ୍ରସାଦଙ୍କୁ ନିମନ୍ତ୍ରଣ ମିଳିଥିଲା । କିନ୍ତୁ ସେତେବେଳେ ତାଙ୍କ ଦେହ ଖରାପ ଥିବାରୁ ସେ ଯାଇ ପାରିବେ ନାହିଁ ବୋଲି ଖବର ଦେଇଥିଲେ । କିନ୍ତୁ ଗଜରାଜ ସିଂହ ଯେତେବେଳେ ଦେଖିଲେ ଯେ ଜ୍ୱାଲପ୍ରସାଦ ଲୁଗାପଟା ଯୋଡ଼ାଇ ହୋଇ ଆସି ପହଞ୍ଚିଛନ୍ତି, ତାଙ୍କୁ ଭାରି ଆଶ୍ଚର୍ଯ୍ୟ

ଲାଗିଲା । ସେ ତାଙ୍କୁ ସ୍ୱାଗତ କରି ପଚାରିଲେ, "ଆସନ୍ତୁ ଆସନ୍ତୁ ଜ୍ୱାଲାବାବୁ, ଘରେ ବୋଧହୁଏ ଏକୁଟିଆ ଭଲ ଲାଗିଲା ନାହିଁ । ସର୍ଦ୍ଦି କ'ଣ ଗୋଟାଏ ରୋଗ ! ନିଅନ୍ତୁ ଟିକିଏ ଗରମ ହୋଇଯାନ୍ତୁ ।" ତା'ପରେ ସେ ଡାକ ପକାଇଲେ "ଆରେ ବରଜୋର, ନାଏବ ସାହେବଙ୍କ ପାଇଁ ଗୋଟାଏ ଗ୍ଲାସ ଆଣ ।"

ବରଜୋର ସିଂହ ରୁପା ଗ୍ଲାସରେ ଗ୍ଲାସେ ମଦ ଜ୍ୱାଲାପ୍ରସାଦଙ୍କୁ ବଢ଼ାଇଦେଲେ ଓ ସେ ତାକୁ ଢକ ଢକ କରି ଏକା ନିଶ୍ୱାସରେ ପିଇଦେଇ ଗ୍ଲାସ ରଖିଦେଲେ । ଚାରି-ଆଡ଼କୁ ଚାହିଁ ଦେଖିଲେ ଘର ଭିତରେ ଅଳ୍ପ କେତେ ଜଣ ଲୋକ ଅଛନ୍ତି । ରାଜା ଚନ୍ଦ୍ରଭୂଷଣ ସିଂହ ଖଟ ଉପରେ ଗୋଟାଏ ତକିଆ ଧରି ଆଖିବୁଜି ଶୋଇଛନ୍ତି । ପ୍ରଥମେ ତାଙ୍କର ଧାରଣା ହେଲା ସେ ଶୋଇଛନ୍ତି ବୋଲି; କିନ୍ତୁ ପରେ ଦେଖିଲେ ଯେ ତାଙ୍କ ହାତ ବରାବର ଚାଲିଛି, ଗୋଟାଏଲେଖା ଗ୍ଲାସ ନେଇ ଓଠରେ ପହଞ୍ଚାଇ ଦେଉଛି, ପୁଣି ତଳେ ରଖି ଦେଉଛି । ତାଙ୍କ ପାଖରେ ବରଜୋର ସିଂହ ବସିଥିଲେ ଓ ତାଙ୍କର ଆଖି ଲାଲ ହୋଇ ନିଆଁପରି ଜଳୁଥିଲା । ସେ ଚନ୍ଦ୍ରଭୂଷଣ ସିଂହଙ୍କ ଗ୍ଲାସରେ ଯେତେ ଚଞ୍ଚଳ ମଦ ଭର୍ତ୍ତି କରୁଥିଲେ ତା'ଠୁ ଆହୁରି ଶୀଘ୍ର ନିଜ ଗ୍ଲାସ ପୂର୍ତ୍ତି କରୁଥିଲେ । ସେଠି ଆଉ ଦୁଇ ତିନିଜଣ ଲୋକ ଥିଲେ ଯାହାଙ୍କୁ ଜ୍ୱାଲାପ୍ରସାଦ କେବେ ଆଗରୁ ଦେଖି ନ ଥିଲେ । ସମ୍ଭବତଃ ସେମାନେ ଚନ୍ଦ୍ରଭୂଷଣଙ୍କ ସଙ୍ଗରେ ଆସିଥିଲେ ।

ସାମନାରେ ନାଚତାମସା ଚାଲିଥାଏ, କିନ୍ତୁ ଚନ୍ଦ୍ରଭୂଷଣ ସେଗୁଡ଼ା କିଛି ଦେଖୁ ନଥିଲେ । ଜ୍ୱାଲାପ୍ରସାଦ ବି ଦେଖିଲେ ସେଥିରେ ବିଶେଷ କିଛି ଆନନ୍ଦ କିମ୍ବା ଉତ୍ସାହ ନଥିଲା । କିଛି ସମୟ ଗୀତ ଶୁଣିଲା ପରେ ଜ୍ୱାଲାପ୍ରସାଦ ଗଜରାଜ ସିଂହଙ୍କ କାନ ପାଖରେ ଚୁପ୍‌କରି କହିଲେ, "ଆପଣଙ୍କ ପାଖରେ ଗୋଟାଏ ଜରୁରୀ କାମ ଥିବାରୁ ଆସିଥିଲି, ନଚେତ୍ ଏତେ ଦେହ ଖରାପରେ ଆସି ନଥାନ୍ତି ।"

ଗଜରାଜ ସିଂହ ପଚାରିଲେ, "ତେବେ ସେ ପାଖଘର ଭିତରକୁ ଯିବା କି ?"

"ନାହିଁ ଦରକାର ନାହିଁ । ଏଇଠି ଗୋଟାଏ କଣରେ ବସିଗଲେ ହେବ । କିନ୍ତୁ ବରଜୋରଙ୍କୁ ଟିକିଏ ଡାକାଇ ଦିଅନ୍ତୁ । ତାଙ୍କ ବିଷୟରେ କଥାବାର୍ତ୍ତା ଅଛି ।"

ଗଜରାଜ ସିଂହ ଟିକିଏ ଗମ୍ଭୀର ହୋଇ କହିଲେ, "ଜ୍ୱାଲାବାବୁ, ଯାହା ହେବାର ଥିଲା ତ ହୋଇଗଲା । ଭବିଷ୍ୟତରେ କ'ଣ ହେବ ତାହା କାହାରି ହାତକଥା ନୁହେଁ, କେହି ତାକୁ ବନ୍ଦ କରି ପାରିବେ ନାହିଁ । ଆପଣ ଯାହା କହିବେ ମୁଁ ଜାଣେ । ପ୍ରଭୁଦୟାଲ କାଲି ବରଜୋରର ଜମି ଦଖଲ କରିବ; ଏୟା ନା ଆଉ କ'ଣ କଥା ଅଛି ?"

ଜ୍ୱାଲାପ୍ରସାଦ ଚମକିପଡ଼ି ପଚାରିଲେ, "ଆପଣ ଏସବୁ କେମିତି ଜାଣିଲେ, ବଡ଼ ଆଶ୍ଚର୍ଯ୍ୟ କଥା ।"

"ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଯେ ପ୍ରଭୁଦୟାଲଙ୍କୁ ଜାଣେ ସେ ନିଶ୍ଚୟ କହିବ ଯେ ନିଜ ନାମରେ ଜମି ଦାଖଲ ଖାରଜ କରି ସାରିଲା ପରେ କେବେ ଚୁପ୍ ହୋଇ ବସି ରହିବ ନାହିଁ । କ୍ଷେତରେ ବର୍ତ୍ତମାନ ଫସଲ ଛିଡ଼ା ହୋଇଛି, ଏ ବର୍ଷ ବହୁତ ଆମଦାନୀର ଆଶା ଅଛି; ବିଘା ଦଶ ମହଣରୁ କମ୍ ହେବ ନାହିଁ । ଏମିତି ଫସଲ ପ୍ରଭୁଦୟାଲ କ'ଣ କେବେ ଛାଡ଼ି ପାରିବ ? କାଲି ସେ ନିଶ୍ଚୟ ବରଜୋରର ହାତ-ଜମିକୁ ଦଖଲ କରିବ ।"

"କିନ୍ତୁ ସେ କାଲି ଦଖଲ କରିବ ବୋଲି ଆପଣ କେମିତି ଜାଣିଲେ ?"

"ନାଏବ ସାହେବ, ସନ୍ଧ୍ୟାବେଳେ ସେ ଆପଣଙ୍କ ପାଖକୁ ଯାଇଥିଲା ନା ନାହିଁ ? ବୋଧହୁଏ ଆପଣଙ୍କ ପାଖରୁ ନିରାଶ ହେବାରୁ ଥାନାବାବୁ ଅମଜଦ ଅଲ୍ଲୀଙ୍କୁ ସାଙ୍ଗରେ ନେଇ ନିଜ ଗାଁକୁ ଗଲା । କାଲି ସେ ଦଳବଳ ଧରି ହାତଗୃହ ଜମି ଦଖଲ କରିବାକୁ ଆସିବ । ଦୁର୍ଭାଗ୍ୟର କଥା, ସରକାରୀ ଆଇନ, ସରକାରୀ ପୋଲିସ, ସରକାରୀ ବଳ ସବୁ ତାରି ସପକ୍ଷରେ ରହିବେ । କିନ୍ତୁ ସେ ଯଦି ବିନା ସରକାରୀ ସାହାଯ୍ୟରେ ଆସେ, ତାହେଲେ ଜମି କେମିତି ଦଖଲ କରାଯାଏ ଆମେ ତାକୁ ବୁଝାଇଦେବୁ ।"

ଜ୍ୱାଲାପ୍ରସାଦ ନିରାଶ ହେଲାପରି ପଚାରିଲେ, "ତା'ହେଲେ ପୁଣି କ'ଣ କରାଯିବ ?"

ଗଜରାଜ ସିଂହ ତୁଳସୀ ଦାସଙ୍କର ଗୋଟାଏ ଦୋହା ଉଚ୍ଚାରଣ କରି କହିଲେ, ଭଗବାନଙ୍କର ଯାହା ଇଚ୍ଛା ଥିବ । ଜ୍ୱାଲବାବୁ, ଆପଣ ବର୍ତ୍ତମାନ ଘରକୁ ଯାଇ ବିଶ୍ରାମ ନିଅନ୍ତୁ । ଆପଣଙ୍କର ଏମିତି ଜର ଅବସ୍ଥାରେ ଆମ କଥା ବୁଝିବା ପାଇଁ ଯେ ଧାଇଁ ଆସିଛନ୍ତି ସେଥିପାଇଁ ଆପଣଙ୍କୁ ଅନେକ ଧନ୍ୟବାଦ । ଆପଣ ତ ନିଜେ ଦେଖିଛନ୍ତି ? ଆପଣଙ୍କ କଥାରେ କିଛି କାମ ହେଲା ନାହିଁ । ବାସ୍ତବରେ ଯାହା ଘଟିବାର ଅଛି ତାକୁ ବଦଳାଇ ପାରିବ କିଏ ?"

ବରଜୋର ସିଂହ ନିଜ ଜାଗାରେ ବସି ପାଟିକରି ପଚାରିଲା, "ହେ, ସେଠି ଆପଣମାନେ ବସି କଣ ଫୁସ୍ ଫାସ୍ ହେଉଛନ୍ତି ? ଆମକୁ ଟିକିଏ କହନ୍ତୁ ।" ଠିକ୍ ଏହି ସମୟରେ ଚନ୍ଦ୍ରଭୂଷଣ ସିଂହ ମଧ୍ୟ ଉଠି ବସିପଡ଼ିଲେ ।

ଗଜରାଜ ସିଂହ ଜବାବ ଦେଲେ, "ନାହିଁ, କିଛି ନାହିଁ, ଲାଲ ପ୍ରଭୁଦୟାଲ କଥା ସେ କହୁଥିଲେ ।"

ବରଜୋର ସିଂହ ହସି ହସି କହିଲା, "ପ୍ରଭୁଦୟାଲ ବିଷୟରେ ଆପଣମାନଙ୍କର ଯାହା ଇଚ୍ଛା ଆପଣମାନେ କରନ୍ତୁ, ମୋତେ କିନ୍ତୁ ସେଥିରେ ପୂରାନ୍ତୁ ନାହିଁ । ପ୍ରଭୁଦୟାଲ ସାଙ୍ଗେ ବରଜୋର ସିଂହର ଯାହା କରିବାର କଥା ସେ ତାହା ଏକା ଏକା କରିବ ।"

ବରଜୋର ସିଂହର କଣ୍ଠରେ ଏପରି ଏକ ଆଭାସ ଥିଲା ଯାହା ଜ୍ୱାଲାପ୍ରସାଦଙ୍କୁ ଭଲ

ଲାଗିଲା ନାହିଁ । ସ୍ତ୍ରୀ ଭିତରେ ରାଜା ଚନ୍ଦ୍ରଭୂଷଣ ସିଂହ ପାଟିକରି କହିଲେ, "ବରଜୋର ମୋଟେ ଛାଡ଼ନା, ଆମେ ତମ ସାଙ୍ଗରେ ଅଛୁ । ରଜାପିଲାମାନେ ଆଜି ଏମିତି ଦୁର୍ବଳ ହୋଇ ନାହାନ୍ତି ଯେ କାପୁରୁଷପରି ଚୁପ୍‌ଚାପ ବସିରହିବେ । ବଣିଆର ପୁଣି ଏତେ ସାହସ ଯେ ସେ ଆମମାନଙ୍କୁ ଅପମାନ କରିବ ?"

ଏଥିରେ ଜ୍ୱାଲାପ୍ରସାଦ ବଡ଼ ମର୍ମାହତ ହେଲେ । ତାଙ୍କ ମନରେ ଏକପ୍ରକାର ଭୟ ଓ ଆଶଙ୍କା ଜାଗିଉଠିଲା । ସେ କାତର ଭାବରେ ଗଜରାଜ ସିଂହଙ୍କୁ କହିଲେ, "ଆଚ୍ଛା ମୋତେ ବର୍ତ୍ତମାନ ଛୁଟି ଦିଅନ୍ତୁ । ମୁଁ ଘରକୁ ଯାଇ ବିଶ୍ରାମ କରେ । ମୋ ମନରେ ଏକପ୍ରକାର ଚିନ୍ତା ହେବାରୁ ମୁଁ ଚାଲି ଆସିଥିଲି । ଏଣିକି ଭବିଷ୍ୟତରେ ଯାହା ହେବ ସେ ସବୁ ଆପଣମାନଙ୍କ ହାତରେ ।"

ଗଜରାଜ ସିଂହ ଜ୍ୱାଲାପ୍ରସାଦଙ୍କୁ ବିଦାୟ ଦେବାପାଇଁ ତାଙ୍କ ସାଙ୍ଗରେ କିଛି ବାଟ ଯାଉ ଯାଉ କହିଲେ, "ଆପଣ ନିଶ୍ଚିନ୍ତରେ ବିଶ୍ରାମ ନିଅନ୍ତୁ । ଏଗୁଡ଼ାକ ତ ଆମ କାମ, ଆମେ କୌଣସି ନା କୌଣସି ପ୍ରକାରେ କରିନେବୁ । ଆପଣଙ୍କୁ ଆମର ଏତିକି ନିବେଦନ ଯେ ଭବିଷ୍ୟତରେ ଆପଣ ଯେମିତି କିଛି ନ ଜାଣିଲା ପରି ଏ ମାମଲାରୁ ଦୂରରେ ରହନ୍ତି । ଆପଣ ଯେଉଁ କାମକୁ ଠିକ୍ ଭାବରେ କରି ପାରିବେ ନାହିଁ ତାହା ଯେମିତି ହେବ ଆପଣ ତାକୁ ଛାଡ଼ି ଦିଅନ୍ତୁ ।"

ଜ୍ୱାଲାପ୍ରସାଦ ଘରକୁ ଯାଇ ବିଛଣାରେ ଗଡ଼ିପଡ଼ିଲେ । ଦେହ ଯେମିତି କ୍ଲାନ୍ତ ହୋଇ ପଡ଼ିଥିଲା । ମନପ୍ରାଣ ଉଭୟ ମଧ୍ୟ ସେହିପରି ଥକିଯାଇଥିଲା ।

ସେ କେତେବେଳ ଯାଏ ଶୋଇଲେ କିଛି ଜାଣି ପାରିଲେ ନାହିଁ । ସେବକ ଲଚ୍ଛିରାମ ତାଙ୍କୁ ଉଠାଇଲାବେଳେ ସେ ଆଖି ମଳି ମଳି ଉଠି କାହିଁକି ଉଠାଇଲୁ ବୋଲି ପଚାରିଲେ । ଲଚ୍ଛିରାମ ବଡ଼ ବ୍ୟସ୍ତ ହୋଇ କହିଲା, "ଲମ୍ବରଦାରଙ୍କ ସ୍ତ୍ରୀ ଆପଣଙ୍କୁ ଡକାଇଛନ୍ତି । ଲମ୍ବରଦାର ଆଉ ନାହାନ୍ତି । କିଛି ସମୟ ଆଗେ ତାଙ୍କୁ ମାରି ଦିଆଯାଇଛି । ଥାନାବାବୁ ଅମଜଦ୍ ଅଲ୍ଲୀଙ୍କୁ ଶିବପୁରୀ ପଠାଇ ଦେଇ ଆମେ ଆପଣଙ୍କ ପାଖକୁ ଆସିଛୁ ।"

ଜ୍ୱାଲାପ୍ରସାଦ ଚମକି ଉଠିଲେ । ପଚାରିଲେ, "କ'ଣ ହେଲା, ପ୍ରଭୁଦୟାଲଙ୍କୁ କିଏ ମାରି-ଦେଇଛି, କିଏ ମାରିଲା ? କେମିତି ମାରିଲା ?"

"ଚାଲନ୍ତୁ, ସେଠି ଲମ୍ବରଦାରଙ୍କ ସ୍ତ୍ରୀଙ୍କଠାରୁ ଆପଣ ସବୁ ଜାଣି ପାରିବେ ! ଚାକରବାକର କହନ୍ତି, ରାତି ପ୍ରାୟ ଦଶ ଏଗାରଟା ବେଳକୁ ଲମ୍ବରଦାର ଥାନାବାବୁ ଅମଜଦ ଅଲ୍ଲୀଙ୍କୁ ଘର ଫାଟକ ପାଖରେ ଛାଡ଼ିଦେଇ ଫେରି ଯାଉଥିଲେ । ବାହାରଘର ଉପରକୁ ଉଠିଲା ବେଳକୁ ଖୁବ୍ ପାଟି କରି କହିଲେ, 'ରଖ ରଖ ମତେ ମାରି ପକାଇଲେ ।'

ତାଙ୍କ ଡାକ ଶୁଣି ଚାକରବାକର ସବୁ ଦୌଡ଼ିଲେ, ଦେଖିଲେ ଲମ୍ବରଦାର ମୁହଁମାଡ଼ି ପଡ଼ିଛନ୍ତି ଓ ତାଙ୍କ ପିଠିରୁ ରକ୍ତଧାର ଛୁଟିଛି । ଲମ୍ବରଦାରଙ୍କ ସ୍ତ୍ରୀ ଏହା ଦେଖି ବେହୋସ୍ ହୋଇ ପଡ଼ିଗଲେ । ସେତିକବେଳେ ଜଣେ ଚାକର ଆସି ଆମକୁ ଡାକିଲା । ଆମେ ବି ଦୌଡ଼ିକରି ଯାଇ ପହଞ୍ଚିଥିଲୁ । ଚେତା ହେବାରୁ ଲମ୍ବରଦାରଣୀ ଆପଣଙ୍କୁ ଆଉ ଥାନା ବାବୁଙ୍କୁ ଡାକିନେବା ପାଇଁ ପଠାଇଛନ୍ତି ।”

କିଛି ଗୋଟାଏ ଘଟିବ ବୋଲି ଜ୍ୱାଳାପ୍ରସାଦଙ୍କୁ ଆଗରୁ ଜଣାପଡ଼ୁଥିଲା । କିନ୍ତୁ ଏତେ ଚଞ୍ଚଳ ଏଡ଼େ କାଣ୍ଡ ଘଟିବବୋଲି ତାଙ୍କର ଧାରଣା ନ ଥିଲା, ସେ ଉଠିପଡ଼ି ଲୁଗାପଟା ପିନ୍ଧି ପକାଇଲେ । ପ୍ରଥମେ ତାଙ୍କର ଧାରଣା ହେଲା ସେ ଗଜରାଜ ସିଂହଙ୍କୁ ପ୍ରଭୁଦୟାଳଙ୍କ ହତ୍ୟା କଥା ଜଣାଇଦେବେ । କିନ୍ତୁ ପରେ ଭାବିଲେ ସେଥିରେ କିଛି ଲାଭ ନାହିଁ । କେଜାଣି କାହିଁକି ହଠାତ୍ ତାଙ୍କର ଧାରଣା ହେଲା ସତେ ଯେମିତି ଗଜରାଜ ସିଂହଙ୍କୁ ଏ କଥା ଜଣା ଅଛି । ଲଛିରାମ ଓ ଅନ୍ୟାନ୍ୟ ଚାକରଙ୍କ ସହିତ ଗୋଟାଏ ଘୋଡ଼ା ଗାଡ଼ିରେ ବସି ସେହି ମୁହୂର୍ତ୍ତରେ ଶିବପୁର ଚାଲିଗଲେ ।

ତହିଁଆରଦିନ ଦଶଟା ବେଳକୁ ପ୍ରଭୁଦୟାଳଙ୍କର ଅନ୍ତ୍ୟେଷ୍ଟି ଭୋଜନ ବ୍ୟବସ୍ଥା କରି ଜ୍ୱାଳାପ୍ରସାଦ ଯେତେବେଳେ ଘରକୁ ଫେରିଲେ ସେତେବେଳକୁ ତାଙ୍କୁ ଜ୍ୱର ଜର । ତିନିଦିନକାଳ ସେ ବେହୋସ ହୋଇ ବିଛଣାରେ ପଡ଼ିରହିଲେ । ଭିକ୍ଷୁ ରାଜପୁରକୁ ଲୋକ ପଠାଇ ମୁନସି ରାମସହାୟ ଓ ଯମୁନାକୁ ଜ୍ୱାଳାପ୍ରସାଦଙ୍କ ଦେହ ଖରାପ କଥା ଜଣାଇଦେଲା । ଯମୁନା ଆସିବା ଅବସ୍ଥାରେ ନ ଥିଲେ, ତେଣୁ ମୁନ୍‌ସି ରାମସହାୟ ଜ୍ୱାଳାପ୍ରସାଦଙ୍କୁ ଦେଖିବାପାଇଁ ନିଜେ ଆସିଲେ । ଚାରିଦିନପରେ ଜ୍ୱାଳାପ୍ରସାଦଙ୍କର ଜର ଛାଡ଼ିଲା । ତାଙ୍କ ଦେହ କାହିଁକି ଏତେ ଖରାପ ହେଲା ରାମସହାୟ ଘାଟମପୁରରେ ପହଞ୍ଚି ବୁଝି ପାରିଲେ ।

ସୁସ୍ଥ ହେବାପରେ ଜ୍ୱାଳାପ୍ରସାଦ ପ୍ରଭୁଦୟାଳଙ୍କ ହତ୍ୟାର ସବୁକଥା ରାମସହାୟଙ୍କୁ ଶୁଣାଇଲେ । ସବୁକଥା ଶୁଣିସାରି ରାମସହାୟ ଗମ୍ଭୀର ହୋଇ କହିଲେ, “ବାବା ଜ୍ୱାଳା, ସୌଭାଗ୍ୟର କଥା ଏ କେସ୍‌ରୁ ତମେ ଦୂରରେ ରହିଛ । ଦିନେ ନା ଦିନେ ପ୍ରଭୁଦୟାଳର ଏ ଅବସ୍ଥା ନିଶ୍ଚେ ହୋଇଥାନ୍ତା । ଅସାଧୁତା ଓ ଅତ୍ୟାଚାର ବେଶି ଦିନ ରହେନାହିଁ ।”

ଜ୍ୱାଳାପ୍ରସାଦ କ୍ଷୀଣ କଣ୍ଠରେ ପଚାରିଲେ, “କିନ୍ତୁ ତାହେଲେ ମାମୁ, ଏହି ଆଇନ ଓ ଏହି ବ୍ୟବସ୍ଥା ସବୁ କାହିଁକି ରହିଛି ?” ତା'ପରେ କ'ଣ ଗୋଟାଏ ମନେ ପଡ଼ିଲା ପରି ଜ୍ୱାଳାପ୍ରସାଦ ହଠାତ୍ ପଚାରିଲେ, “ଆଚ୍ଛା ମାମୁଁ, ବରଜୋର ସିଂହ ଗିରଫ ହୋଇଛନ୍ତି କି ନାହିଁ, ଆପଣ କିଛି ଜାଣନ୍ତି ?”

“ନାଁ, ବର୍‌ଜୋର ସିଂହ ତ ଗିରଫ ହୋଇନାହାନ୍ତି । କାରଣ ସେ ଏବେ

ଘାଟମପୁରରେ ନାହାନ୍ତି, ତାଙ୍କର ପିଲାପିଲି ସମସ୍ତେ ଗଜରାଜ ସିଂହଙ୍କ ଘରେ ଅଛନ୍ତି । ପ୍ରଭୁଦୟାଲଙ୍କ ହତ୍ୟାର ସପ୍ତାହେ ପୂର୍ବରୁ ସେମାନେ ସମସ୍ତେ ଚୁନୌଠା ଚାଲି-ଯାଇଥିଲେ । ଗଜରାଜ ସିଂହ କହନ୍ତି ଯେଉଁ ଦିନ ଏ ହତ୍ୟାକାଣ୍ଡ ହେଲା ସେଦିନ ସନ୍ଧ୍ୟାବେଳେ ସେ ରାଜା ଚନ୍ଦ୍ରଭୂଷଣ ସିଂହଙ୍କ ସହିତ କାନପୁର ଚାଲିଯାଇଥିଲେ ।''

ଜ୍ୱାଲାପ୍ରସାଦ ଉତ୍ତେଜିତ ହୋଇ କହିଲେ, ''ଏଗୁଡ଼ାକ ସବୁ ମିଛ, ଡାହା ମିଛ, ସେଦିନ ରାତିରେ ତ ଗଜରାଜ ସିଂହଙ୍କ ଘରଠାରେ ଯାତ୍ରା ହେଉଥିଲା । ମଉଜ୍ ମଜଲିସ୍ ଓ ମଦର କାରବାର ଚାଲିଥିଲା । ଏସବୁ ତ ମୁଁ ନିଜ ଆଖିରେ ଦେଖି ଆସିଛି । ମୁଁ ସେହି ଉତ୍ସବରେ ଯୋଗଦେଇ ରାତି ନଅଟାବେଳେ ତାଙ୍କ ଘରୁ ଫେରିଥିଲି ।''

ରାମସହାୟ କହିଲେ, ''ଗଜରାଜ ସିଂହ କହନ୍ତି ଯେ ତମେ ଯିବା ପରେ ପରେ ଉତ୍ସବ ବନ୍ଦ ହୋଇଗଲା । କାରଣ ବର୍ଷା ବନ୍ଦ ହେବାରୁ ସେ ଚାଲିଗଲେ, କେବଳ ବର୍ଷା ଯୋଗୁ ସେ ଅଟକି ରହିଥିଲେ ।'' ତା'ପରେ ସେ ଚୁପ୍ ଚୁପ୍ କରି କହିଲେ, ''ତୁମେ ଯେମିତି ଏ କେସ୍‌ରେ ନପଡ଼ । ସେଥିରୁ ତୁମକୁ ରକ୍ଷା କରିବା ପାଇଁ ଗଜରାଜ ସିଂହ ମୋତେ ଅନୁରୋଧ କରିଛନ୍ତି ।''

ଜ୍ୱାଲାପ୍ରସାଦ କିଛି ସମୟ ଚୁପ୍‌ରହି ପୁଣି କହିଲେ, ''ମାମୁଁ, ମୁଁ ଆପଣଙ୍କୁ ପଚାରୁଛି ଏହି କେସ୍‌ରେ ମୁଁ ଚୁପ୍ ରହିବା କ'ଣ ଉଚିତ ହେବ ? ମୁଁ ଚୁପ୍ ରହି ଜଣେ ହତ୍ୟାକାରୀକୁ ବଞ୍ଚାଇବାଦ୍ୱାରା ନ୍ୟାୟ ଓ ଆଇନକୁ ହତ୍ୟା କରିବାକୁ ହେବ । ଆପଣ ତ ଜାଣନ୍ତି, ଏହି ବ୍ରିଟିଶ୍ ସରକାର ନ୍ୟାୟ ଓ ଆଇନ୍ ଉପରେ ପ୍ରତିଷ୍ଠିତ ଏବଂ ଏହି ସରକାର ମୋ ଉପରେ ଏହି ଦାୟିତ୍ୱ ନ୍ୟସ୍ତକରି ମୋ କଥାରେ ବିଶ୍ୱାସ ରଖିଛନ୍ତି । ନ୍ୟାୟର ପଥରୋଧ କରି ମୁଁ କ'ଣ ଏହି ବ୍ରିଟିଶ ସରକାରଙ୍କ ପ୍ରତି ବିଶ୍ୱାସଘାତକତା କରିବି ?''

ଜ୍ୱାଲାପ୍ରସାଦଙ୍କର ଏହି ପ୍ରଶ୍ନ ପାଇଁ ମୁନସି ରାମସହାୟଙ୍କର କୌଣସି ଉତ୍ତର ନ ଥିଲା । ସେ କିଛି ସମୟ ଚୁପ୍‌ଚାପ୍ ଚାହାଁକରି ଶେଷରେ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ, ''ବାପା, ତମେ ଯାହା କହୁଛ ଠିକ୍ । ନ୍ୟାୟ ପଥରୁ ବିଚଳିତ ହେବା ଉଚିତ୍ ନୁହେଁ । ହେଲେ ଆଇନ ଦୃଷ୍ଟିରେ ବରଜୋର ଯେତେ ଦୋଷୀ ବୋଲି ଦେଖାପଡ଼ୁଛି ମୋ ଦୃଷ୍ଟିରେ ନୁହେଁ । ତଥାପି ଆଇନଅନୁସାରେ ତ ବରଜୋର ନିଷ୍ଠୁର ହତ୍ୟା କରିଛି । ପ୍ରଭୁଦୟାଲକୁ ଯେଉଁ ଦଣ୍ଡ ମିଳିଲା ସେଥିରେ ମୋର ଆଦୌ ଦୁଃଖ ନାହିଁ । କାରଣ ତା' ପାଇଁ ସେ ଦଣ୍ଡ ଠିକ୍ । ହେଲେ ପ୍ରଭୁଦୟାଲକୁ ମନଇଚ୍ଛା ଦଣ୍ଡ ଦେବା ପାଇଁ ବରଜୋର ସିଂହର କୌଣସି ଅଧିକାର ନାହିଁ । ଏପରି କ୍ଷେତ୍ରରେ ତମେ ଯାହା ଠିକ୍ ଭାବୁଛ କର, ମୁଁ ତୁମକୁ ବାରଣ କରିବାକୁ ଚାହେଁ ନାହିଁ ।''

ସେହିଦିନ ସନ୍ଧ୍ୟାବେଳେ ରାମସହାୟ ରାଜପୁର ଚାଲିଗଲେ ଓ ଗଲାବେଳେ

ଜ୍ୱାଲପ୍ରସାଦଙ୍କୁ କହିଦେଇ ଗଲେ, "ଦେଖ ବାପା, ଖୁବ୍ ହୁସିଆର୍‌ରେ ତମେ କାମ କରିବ ଓ ଖୁବ୍ ସାବଧାନରେ ଚଳୁଥିବ । ଅବଶ୍ୟ ତମେ ବଡ଼ ଅଫିସର, ତମକୁ ହାତ ଉଠାଇବାକୁ କାହାର ସାହସ ହେବ ନାହିଁ, ତଥାପି ସାବଧାନ ରହିବା ଦରକାର । ଶାସ୍ତ୍ରରେ ଅଛି ସାବଧାନ ରହିଲେ ବିପତ୍ତି ପଡ଼େନାହିଁ ।"

ଆଠଦିନ ପରେ ଜ୍ୱାଲପ୍ରସାଦ ମାଜିଷ୍ଟ୍ରେଟଙ୍କ ଆଗରେ ସାକ୍ଷୀ ଦେଲେ ଯାହା ଫଳରେ ବରଜୋର ସିଂହ ନାଁରେ ଗିରଫ ପରଓ୍ୱାନା ବାହାରିଗଲା ।

ପ୍ରଭୁଦୟାଲଙ୍କ ଶୁଦ୍ଧକ୍ରିୟା ତେର ଦିନରେ ହୋଇଗଲା କିନ୍ତୁ ଜ୍ୱାଲପ୍ରସାଦ; ସେହି ଶୁଦ୍ଧକ୍ରିୟାକୁ ଯାଇ ନ ଥିଲେ । ଶୁଦ୍ଧକ୍ରିୟାର ପନ୍ଦର ଦିନ ପରେ ଜେଦେଇ, ପୁଅ ଲକ୍ଷ୍ମୀଚନ୍ଦଙ୍କୁ ସାଙ୍ଗରେ ଧରି ଜ୍ୱାଲପ୍ରସାଦଙ୍କ ଘରେ ଯାଇଁ ପହଞ୍ଚିଲେ । ଶୁଦ୍ଧକ୍ରିୟାରେ ଜ୍ୱାଲପ୍ରସାଦଙ୍କର ଅନୁପସ୍ଥିତି ଅଭିଯୋଗ କରି ଜେଦେଇ କହିଲେ, "ଦିଅର, ଭାଗ୍ୟତ କେବଳ ଆମ ଉପରେ ରୋଷ ବହି ନାହିଁ, ତମେ ବି ଆମ ଉପରେ ରୋଷ ବହିଛ । ଶୁଦ୍ଧକ୍ରିୟା ଦିନ ମୁଁ ତମକୁ କେତେ ଅପେକ୍ଷା କରି ରହିଲି; କିନ୍ତୁ ତା ପରେ ବି ତମର ଦେଖା ମିଳିଲା ନାହିଁ । ଏବେ ଏହି ଅନାଥ ପିଲାକୁ ଧରି ତମରି ପାଖରେ ଶରଣ ପଶିବାକୁ ଆସିଛି ।"

ଜ୍ୱାଲପ୍ରସାଦ ଦେଖିଲେ ଜେଦେଇଙ୍କ ମୁହଁ କଳାପଡ଼ି ଯାଇଛି, ପୂର୍ବ ଚେହେରା ଆଉ ନାହିଁ । ବଡ଼ କରୁଣ କଣ୍ଠରେ ସେ କହିଲେ, "ଭାଉଜ, ତମେ ତ ଜାଣ ମୁଁ ବରଜୋର ବିରୁଦ୍ଧରେ ସାକ୍ଷୀ ଦେଇଛି ଓ ମୋର ସାକ୍ଷ୍ୟରେ ତା' ବିରୁଦ୍ଧରେ ଓ୍ୱାରେଣ୍ଟ ବାହାରିଛି । ଏପରି ଅବସ୍ଥାରେ ତମ ଘରକୁ ଯିବା ମୋର ଉଚିତ ନ ଥିଲା ।"

"ଠିକ୍ କହିଲ ଦିଅର, ତମେ ତ ଆମର ବଡ଼ ଆଶ୍ରା । ଥାନାବାବୁ ଅମଜଦ୍ ଅଲ୍ଲି ସ୍ୱାଙ୍କର ବଡ଼ ବନ୍ଧୁ ଥିଲେ; କିନ୍ତୁ ସେ ତ ଏ ମାମଲାକୁ ଏକ ପ୍ରକାର ଚପାଇ ଦେଇଥିଲେ ।" ଏହି କଥା କହୁ କହୁ ଜେଦେଇଙ୍କ ଆଖିରେ ଲୁହ ଭରିଗଲା । ସେ ପୁଣି କହିଲେ, "ଦେବରଜୀ, ଏବେ ଘାଟମପୁରରେ ଆମର ଆପଣାର ବୋଲି କେହି ନାହିଁ । ମୋ ବଡ଼-ଭାଇ କାନପୁରରୁ ଆସିଛନ୍ତି; ସେ କହୁଛନ୍ତି ଆମେ ଯାଇଁ କାନପୁରରେ ରହିବୁ । ଏଠି ରହିବା ଭଲ ନୁହେଁ । ସେଇକଥା ମୁଁ ତୁମକୁ ପଚାରିବାକୁ ଆସିଛି ।"

"ଏଥିରେ ମୁଁ କଣ କହିବି ଭାଉଜ, ତମେ ଯାହା ଠିକ୍ ଭାବିବ, କରିବ । କିନ୍ତୁ ମୁଁ ତୁମକୁ ଗୋଟିଏ କଥା କହି ଦେଇ ପାରେ । ଏହି ଶିବପୁରିରେ ତମପ୍ରତି କେହି ଅନ୍ୟାୟ ଅତ୍ୟାଚାର କରି ପାରିବ ନାହିଁ । ସରକାର ଅଛନ୍ତି ଓ ସରକାରଙ୍କର ଆଇନ୍ ବି ଅଛି । ସରକାର ଓ ତାଙ୍କ ଆଇନର ପ୍ରଭାବ ସମସ୍ତଙ୍କ ଉପରେ ଅଛି ।"

ଜେଦେଇ ଜ୍ୱାଲପ୍ରସାଦଙ୍କ ଆଡ଼କୁ ଗୋଟାଏ ଥଳୀ ବଢାଇ ଦେଇ କହିଲେ,

"ହଁଅର, ମୁଁ ଭାଇଙ୍କୁ କହି ଦେଇଛି ସେ ଲକ୍ଷ୍ମୀଚନ୍ଦ୍ରକୁ ନେଇଯାନ୍ତୁ । କାନପୁରରେ ସେ ତା' ପଢ଼ା କାମ ଶେଷ କରିବ, ମୁଁ ଏଠି ରହି ବାଡ଼ିବାଡ଼ି, ଘରଦ୍ୱାର ଦେଖିବି । ଏଠି ସ୍ୱାମୀଙ୍କର ଯେତେ ଯାହା ଅଛି, ତାକୁ ଆସ୍ତେ ଏକାଠି କରିବାକୁ ହେବ । ଦେବରଜୀ, ତମେ ଆମର ବହୁତ ଉପକାର କରିଛ, ଏଇ ଶହେଟା ସୁନା ମୋହର ତମପାଇଁ ମୁଁ ଆଣିଛି; ନିଅ ।"

ସେହି ଥଳୀକୁ ଫେରାଇ ଜ୍ୱାଲାପ୍ରସାଦ ମୁରୁକି ହସାଦେଇ କହିଲେ, "ଭାଉଜ, ମୁଁ ଯାହା କରିଛି, ସେ ସବୁ କର୍ତ୍ତବ୍ୟ ଅନୁରୋଧରେ କରିଛି । ନ୍ୟାୟ ଓ ମମତା ବିକା କିଣା ଜିନିଷ ନୁହେଁ । ଏହି ଟଙ୍କା ପଇସା ଜୀବନର ସବୁ ଦୁଃଖର ମୂଳ । ଦେଖ ଭାଉଜ, ତମେ ମୋତେ ଏ ପ୍ରଲୋଭନରେ ପକାଅ ନାହିଁ । ଆଉ ମୁଁ ବି କହୁଛି ତମକୁ, ତୁମେ ନିଜେ ଯେମିତି କୌଣସି ପ୍ରଲୋଭନରେ ନ ପଡ଼ ।"

ଜ୍ୱାଲାପ୍ରସାଦଙ୍କର ଏ ପ୍ରକାର ବ୍ୟବହାର ଦେଖି ଜେଦେଇ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେ ଯେଉଁ ପ୍ରକାର ପରମ୍ପରାରେ ଚଳି ଆସିଥିଲେ ସେଥିରେ ସବୁ ପ୍ରକାର ଜିନିଷର କିଣାବିକା ସମ୍ଭବ । ତେଣୁ ସେ କହିଲେ, "ହଁଅର, ତୁମେତ ଜଣେ ସାମାନ୍ୟ ମନୁଷ୍ୟ ନୁହଁ, ତୁମେ ଜଣେ ଦେବତା ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।" ଏତିକି କହି ଭକ୍ତି ଓ ଭାବାବେଗରେ ସେ ଜ୍ୱାଲାପ୍ରସାଦଙ୍କର ପାଦ ଛୁଇଁ ପକାଇଲେ ।

ସେ ଦିନ ଜ୍ୱାଲାପ୍ରସାଦଙ୍କର କାଗଜ ପତ୍ର ନେଇ ମୀର୍ ସାହେବଙ୍କ ପାଖକୁ ଯିବାର ଥିଲା । ସେ ଜେଦେଇଙ୍କୁ କହିଲେ, "ଭାଉଜ, ତମେ ଖାଇକରି ଯିବ ।" ପୁଣି ସେ ଭିକ୍ଷୁକୁ କହିଲେ, "ଲମ୍ବରଦାରଣୀ ଏଇଠି ଖାଇବେ । ତୁ ତାଙ୍କୁ ଏଠି ବସାଇ ତାଙ୍କ ସଙ୍ଗେ କଥାବାର୍ତ୍ତା କର । ମୁଁ ଟିକିଏ ତହସିଲଦାର ସାହେବଙ୍କ ପାଖରୁ ଆସୁଛି । ଘଣ୍ଟାଏ ଦେଢଘଣ୍ଟା ଭିତରେ ଫେରି ଆସିବି ।"

ଜ୍ୱାଲାପ୍ରସାଦ ମୀର ସାହେବଙ୍କ ଘରେ ପହଞ୍ଚିଲା ବେଳକୁ ଦେଖିଲେ ଗଜରାଜ ସିଂହ ମୀର୍ ସାହେବଙ୍କ ସଙ୍ଗେ କ'ଣ କଥାବାର୍ତ୍ତା କରୁଛନ୍ତି । ଜ୍ୱାଲାପ୍ରସାଦଙ୍କୁ ଦେଖିଲାମାତ୍ରେ ମୀର୍ ସାହେବ କହିଲେ, "ଆସ ଆସ, ତମେ ବହୁତ ଦିନ ବଞ୍ଚିବ । ତୁମର କଥା ତ ବର୍ତ୍ତମାନ ପଡ଼ିଥିଲା ।"

ଗଜରାଜ ସିଂହଙ୍କ ଚେହେରା ଖୁବ୍ ମଳିନ ପଡ଼ି ଯାଇଥିଲା । ସେ ମୁହଁକୁ ତଳକୁ କରି ବସିଥାନ୍ତି, ଜ୍ୱାଲାପ୍ରସାଦଙ୍କ ଆଡ଼କୁ ଆଦୌ ଅନାଉ ନଥାନ୍ତି । ଜ୍ୱାଲାପ୍ରସାଦ ବସିଯିବା ପରେ ମୀର୍ ସାହେବ କହିଲେ, "ଜ୍ୱାଲା ବାବୁ, ଗଜରାଜ ସିଂହ କହୁଛନ୍ତି ତୁମେ ବର୍ତ୍ତମାନ ବରଜୋର ସିଂହଙ୍କ ମୃତ୍ୟୁ ପାଇଁ ଦାୟୀ । ତମେ ଯଦି ତାଙ୍କ ବିରୁଦ୍ଧରେ ସାକ୍ଷୀ ଦେଇ ନଥାନ୍ତ ତାହେଲେ ତାଙ୍କ ନାଁରେ ଓ୍ୱାରେଣ୍ଟ ବାହାରି ନଥାନ୍ତା !"

ଜ୍ୱାଲାପ୍ରସାଦ ଧୀର କଣ୍ଠରେ କହିଲେ, "ହଜୁର୍, ମୁଁ ଯଦି ବରଜୋର ସିଂହ ବିରୁଦ୍ଧରେ ସାକ୍ଷୀ ଦେଇ ନଥାନ୍ତି, ତେବେ ତାଙ୍କ ନାଁରେ ଓ୍ୱାରଣ୍ଟ ବାହାର ନଥାନ୍ତା ସତ; କିନ୍ତୁ ଗୋଟାଏ ମର୍ଡ଼ର କେସ୍ ଛପିଯାଇଥାନ୍ତା । ସରକାରଙ୍କର ସେବକ ହୋଇ ମୁଁ ଆଇନ ଓ ନ୍ୟାୟର ଗଳାରୋଧ କରନ୍ତି କେମିତି ? ପୁଣି ଏବେ ହୋଇଛି ବା' କ'ଣ ? ମକଦ୍ଦମା ତ ଆହୁରି ଚାଲିବ ।"

ବର୍ତ୍ତମାନ ଗଜରାଜ ସିଂହ ଆଖି ଉଠାଇ ଜ୍ୱାଲାପ୍ରସାଦଙ୍କୁ ଚାହିଁଲେ । ଚେହେରା ଯେମିତି ନିଷ୍ପ୍ରଭ, ଉଦାସ, ଦୃଷ୍ଟି ସେମିତି ତରଳ । ସେ କହିଲେ, "ମୃତ୍ୟୁର ଉପରେ ଆଉ ମକଦ୍ଦମା ଚାଲିବ କ'ଣ ଜ୍ୱାଲାବାବୁ ? ବରଜୋର ସିଂହ ଆଉ ଏ ସଂସାରରେ ନାହାନ୍ତି, ସେ ନିଜ କାମପାଇଁ ନିଜକୁ ଦଣ୍ଡ ଦେଇସାରିଛନ୍ତି । ପଥଶ୍ରଦନ ଯଜ୍ଞପୁରରୁ ଫେରିଲାବେଳେ ସେ ଓ୍ୱାରଣ୍ଟ କଥା ଶୁଣି ବିଧନୂଠାରେ ଆତ୍ମହତ୍ୟା କରି ଦେଇଛନ୍ତି । କାଲି ମୁଁ ତାଙ୍କର ପିଲାପିଲିଙ୍କୁ ନେଇ ବିଧନୂ ଯାଇଥିଲି । ସେଠି ତାଙ୍କର ଶବସତ୍କାର କରିଦେଇ ରାତିରେ ଫେରିଆସିଲି ।" ତା'ପରେ ଗୋଟାଏ ଶୁଖିଲା ହସ ହସି ଗଜରାଜ ସିଂହ କହିଲେ, "ଛାଡ଼ନ୍ତୁ ସେ କଥା ତ ସରିଲାଣି । ବରଜୋର ସିଂହ ତ ଚାଲିଗଲା, ଆଉ ଏବେ କିଏ ତାର କ'ଣ କରି ପାରିବ ?" ଗଜରାଜ ସିଂହଙ୍କ ଆଖିରୁ ହଠାତ୍ ଲୁହ ଝରି-ପଡ଼ିଲା । ସେ କହିଲେ, "କିନ୍ତୁ ଜ୍ୱାଲାବାବୁ, ସବୁ ସତ୍ତ୍ୱେ ଏକଥା ନିଷ୍ଚୟ ସ୍ୱୀକାର କରିବାକୁ ହେବ ଯେ ବରଜୋର ସିଂହ ଜଣେ ଖୁବ୍ ଭଲଲୋକ ଯଦିଓ ସେ ନିତାନ୍ତ ହତଭାଗ୍ୟ । ଦୁନିଆରେ କାହାର କେବେ ସେ କ୍ଷତି କରିନାହିଁ । ଯେତେଦୂର ପାରିଛି ପ୍ରାଣ ଦେଇ ଲୋକଙ୍କୁ ସେ ସାହାଯ୍ୟ କରିଛି । କିନ୍ତୁ ଏସବୁର ଫଳ ହେଲା ଏଯା; ଜମି ଗଲା, ଜୀବନ ଗଲା, ପୁଅଝିଅ ଅନାଥ ହେଲେ ଓ ସ୍ତ୍ରୀ ବିଧବା ହେଲା । ତା' ସ୍ତ୍ରୀର ବାପଘର ବିଧନୂ, ଏବେ ସେଇଠି ବସି ସେ କାନ୍ଦୁଛି । ଦୁଇଟି ପୁଅ—ବୟସ ଜଣକୁ ବାର, ଜଣକୁ ଦଶ, ଝିଅକୁ ତେର ବର୍ଷ ହେବ । ଏବେ ତାରି ବାହାଘର ପାଇଁ ଚିନ୍ତା । ସେମାନେ କେମିତି ଚଳିବେ କିଏ ଜାଣେ ? ଭଗବାନ ଭରସା ।"

ମୀର୍ ସାହେବ ଜ୍ୱାଲାପ୍ରସାଦଙ୍କ ଆଡ଼କୁ ଚାହିଁ କହିଲେ, "ଶୁଣିଲ ତ, ତୁମ ନ୍ୟାୟ ଧର୍ମର ଫଳ କ'ଣ ଫଳିଲା ? କିନ୍ତୁ ଏପର୍ଯ୍ୟନ୍ତ ଗଜରାଜ ସିଂହଙ୍କୁ ମୁଁ ବୁଝାଉଥିଲି ଯେଉଁଠି ଏକପକ୍ଷରେ ନ୍ୟାୟ ଓ କର୍ତ୍ତବ୍ୟ, ଅନ୍ୟ ପକ୍ଷରେ ଦୟା ଓ ଧର୍ମ ଭିତରେ ଦ୍ୱନ୍ଦ୍ୱ ଉପସ୍ଥିତ ହୁଏ, ସେଠି ନ୍ୟାୟ ଓ କର୍ତ୍ତବ୍ୟକୁ ଗ୍ରହଣ କରିବାକୁ ହେବ । ତେଣୁ ଏପରି କ୍ଷେତ୍ରରେ ତମେ ଯାହା କରିଛ ତାହା ଠିକ୍ ।"

ବରଜୋର ସିଂହ ଯେ ଆତ୍ମହତ୍ୟା କରିବ ଏକଥା ଜ୍ୱାଲାପ୍ରସାଦ ଆଦୌ ଭାବି ନଥିଲେ କିମ୍ବା ସେ ଆଉ କ'ଣ କରିବସିବ ସେ କଥା ବି ସେ ଚିନ୍ତା କରି ନଥିଲେ । ସେ କେବଳ

ଭାବୁଥିଲେ ଦୋଷୀକୁ କେମିତି ଦଣ୍ଡ ହେବ । କିନ୍ତୁ ବରଜୋର ସିଂହଙ୍କ ଆତ୍ମହତ୍ୟା କଥା ଶୁଣି ତାଙ୍କ ମନ ଏକାବେଳକେ ଟଳିଗଲା । ସେ ଚୁପ୍‌ଚାପ୍ ବସି କିଛି କାଳ ଚିନ୍ତା କଲେ । ତାଙ୍କର ମନେ ହେଲା ବରଜୋର ସିଂହଙ୍କ ମୃତ୍ୟୁ ପାଇଁ ସେ ସମ୍ପୂର୍ଣ୍ଣ ଦାୟୀ । ହଠାତ୍ ସେ ମୁହଁ ଉଠାଇ ମୀର୍ ସାହେବଙ୍କୁ କହିଲେ, "ଆପଣ ଯଦି ଭୁଲ ନ ବୁଝିବେ, ତେବେ ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି ।"

"ହଁ, ହଁ, ଖୁସିରେ ପଚାରନ୍ତୁ, ଏଥିରେ ଭୁଲ ବୁଝିବାର କ'ଣ ଅଛି ?"

"ଆଚ୍ଛା ହଜୁର, ଆପଣ ଯଦି ମୋ' ପରିସ୍ଥିତିରେ ଥାଆନ୍ତେ, ତେବେ ଆପଣ କ'ଣ କରିଥାଆନ୍ତେ ?"

ଏ ପ୍ରଶ୍ନ ଶୁଣି ମୀର୍ ସାହେବଙ୍କ ମୁହଁରୁ ହସ ମରିଗଲା । ସେ କହିଲେ, "ଜ୍ୱାଲବାବୁ, ତମେ ତ ଗୋଟାଏ ବଡ଼ ମୁସ୍କିଲ ପ୍ରଶ୍ନ ପଚାରିଲ । ମୁଁ କ'ଣ କରିଥାନ୍ତି କହି ପାରିବି ନାହିଁ । ଖୁବ୍ ସମ୍ଭବ ତୁମେ ଯାହା କରିଛ ମୁଁ ତାହା କରିନଥାନ୍ତି । ହୋଇପାରେ ତମେ ଯାହା କରିଛ, ମୁଁ ଠିକ୍ ସେୟା କରିଥାନ୍ତି । ମୁଁ ଭାବୁଛି ତମେ ପ୍ରକୃତରେ ଗୋଟାଏ ଜଟିଳ ପ୍ରଶ୍ନ ପଚାରିଛ ।"

ଜ୍ୱାଲାପ୍ରସାଦ କହିଲେ, "ନାହିଁ ହଜୁର, ମୋର ବିଶ୍ୱାସ, ମୁଁ ଯାହା କରିଛି ଆପଣ କେବେ ତାହା କରି ନଥାଆନ୍ତେ । ମୋର ମାମୁଁ ରାମସହାୟ ମଧ୍ୟ ମୋତେ ଏହିପରି ପରାମର୍ଶ ଦେଇଥିଲେ । ମୋତେ ଏବେ ଲାଗୁଛି ମୁଁ ବୋଧହୁଏ ଭୁଲ୍ କରିଛି ।" ବର୍ତ୍ତମାନ ଜ୍ୱାଲାପ୍ରସାଦଙ୍କର କଣ୍ଠ ଆହୁରି କରୁଣ ହୋଇ ଉଠିଲା । ସେ କହିଲେ, "ମୁଁ ତ ଏପର୍ଯ୍ୟନ୍ତ ଧରିନେଇଥିଲି ଯେ ନ୍ୟାୟ ଓ ସତ୍ୟ ମଧ୍ୟରେ କୌଣସି ସୀମାରେଖା ନାହିଁ, ସେଠି ଆଉ ବିଚାର କରିବାର କୌଣସି ପ୍ରଶ୍ନ ନାହିଁ । କିନ୍ତୁ ଯାହା ଦେଖୁଛି ମୋର ସେ ଧାରଣା ଭୁଲ ।"

ଜ୍ୱାଲାପ୍ରସାଦଙ୍କର କରୁଣଭାବ ଦେଖି ମୀର୍ ସାହେବଙ୍କ ମନ ତରଳିଗଲା । ସେ କହିଲେ, "ନାହିଁ ଜ୍ୱାଲବାବୁ, ମୁଁ କୌଣସି ଭାବପ୍ରବଣ ଦୁର୍ବଳତାକୁ କେବେ ସମର୍ଥନ କରେ ନାହିଁ । ଯେଉଁମାନେ ଏହି ଦୁର୍ବଳତାର ଉପରକୁ ଉଠିପାରନ୍ତି, ସେମାନଙ୍କୁ ମୁଁ ବହୁତ ବଡ଼ ମନେ କରେ । ତଥାପି ମୋର ବିଶ୍ୱାସ ଏପରି ଉପରକୁ ଉଠିବା ଲୋକ ଖୁବ୍ କମ୍ ।" ତା'ପରେ ଏହି ଚର୍ଚ୍ଚା ବନ୍ଦ କରିଦେଇ ମୀର୍ ସାହେବ କହିଲେ, "ଛାଡ଼ ବନ୍ଧୁ, ଯାହା ହେବାର ଥିଲା ତ ହୋଇଗଲାଣି । ତାକୁ ତ କେହି ବଦଳ କରି ପାରି ନଥାନ୍ତା, ଆଉ ସେ ବିଷୟରେ ଚର୍ଚ୍ଚା କରି ଲାଭ କ'ଣ ? ହଉ, କାଗଜ ଆଣ, ଦସ୍ତଖତ କରିଦେବା ।"

ଜ୍ୱାଲାପ୍ରସାଦ ଘରକୁ ଫେରିବା ପରେ ଜେଦେଇ ପଚାରିଲେ "କ'ଣ ହଉଚି ସାହେବ,

ମୁହଁ କାହିଁକି ଏତେ ମଳିନ ପଡ଼ିଯାଇଛି ? କ'ଣ ହେଲା କି ? ଏଠୁ ଗଲାବେଳେତ ଏମିତି କିଛି ନଥିଲା ।"

ଜ୍ୱାଲାପ୍ରସାଦ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ଆଉଜ, ତହସିଲଦାରଙ୍କ ଘରଠି ଗଜରାଜ ସିଂହଙ୍କଠାରୁ ଶୁଣିଲି ପଅରଦିନ ରାତିରେ ବରଜୋର ସିଂହ ବାଧନୃଠାରେ ଆତ୍ମହତ୍ୟା କରି ଦେଇଛନ୍ତି ।"

ଜେଦେଇ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ବରଜୋର ସିଂହ ଆତ୍ମହତ୍ୟା କରିଛନ୍ତି !" ଟିକିଏ ରହିଯାଇ ପୁଣି କହିଲେ "ଗ୍ଲ ଗୁଡ଼ନ୍ତୁ, ନିଜ ଦୋଷପାଇଁ ନିଜ ହାତରେ ସେ ନିଜକୁ ଦଣ୍ଡ ଦେଇଛନ୍ତି । କିନ୍ତୁ ମୋର ଯାହା ଗଲା, ମୋତେ ତ ଆଉ କେବେ ତାହା ମିଳିବ ନାହିଁ ।"

ଜ୍ୱାଲାପ୍ରସାଦ ଜେଦେଇଙ୍କ ପ୍ରଶ୍ନର କିଛି ଉତ୍ତର ଦେଇ ପାରିଲେ ନାହିଁ । ସେଥିପାଇଁ ବୋଧହୁଏ ତାଙ୍କ ପାଖରେ କୌଣସି ଜବାବ ନଥିଲା । ଜ୍ୱାଲାପ୍ରସାଦ ସ୍ୱୀ ଭିତରେ ଏକ ଗମ୍ଭୀର ମାନସିକ ଚିନ୍ତାରେ ପଡ଼ିଯାଇଥିଲେ । ସେ ବରଜୋର ସିଂହଙ୍କ ସ୍ତ୍ରୀ ଓ ପିଲାଛୁଆଙ୍କ କଥା ଭାବୁଥିଲେ, ଜେଦେଇଙ୍କର ଯାହା ଗଲା ତାହା ସେତେ ବେଶୀ ନୁହେଁ । କାରଣ ତାଙ୍କ ପାଖରେ ଏବେ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ଅଛି । ସେ ଶହେ ସୁନା ମୋହର ବି ଗଣି ଦେଇପାରୁଛନ୍ତି । କିନ୍ତୁ ବରଜୋର ସିଂହଙ୍କ ସ୍ତ୍ରୀଙ୍କର କିଛି ନାହିଁ । ସେ ବର୍ତ୍ତମାନ ଭାଇଘରେ ଆଶ୍ରୟ ନେଇଛନ୍ତି । ପିଲାଛୁଆ ତାଙ୍କର ଅନାଥ ହୋଇ ପଡ଼ିଛନ୍ତି ।

## ପାଞ୍ଚ

ଜ୍ୱାଲାପ୍ରସାଦଙ୍କ ସ୍ତ୍ରୀଙ୍କର ଏବେ ପିଲା ହେବାର ଥିଲା । ସେ ସ୍ତ୍ରୀଙ୍କୁ ବାପା ଓ ଖୁଡ଼ୀଙ୍କ ପାଖକୁ ଫତେପୁର ନ ପଠାଇ ତାଙ୍କ ମାମୁଁ ଘରକୁ ରାଜପୁର ପଠାଇଦେଲେ । ମୁନସି ଶିବଲାଲଙ୍କର ଏଥିରେ କୌଣସି ଆପତ୍ତି ନଥିଲା; କିନ୍ତୁ ମୁନସି ରାଧେଲାଲ ଏକ କନ୍ଦଳ ସୃଷ୍ଟି କରି ବସିଲେ । ସେ ମୁନସି ଶିବଲାଲଙ୍କୁ କହିଲେ, "ବାପ କକାଙ୍କ ଘରେ କ'ଣ ବୋହୂର ପିଲା ଜନ୍ମ ହୋଇ ପାରିବ ନାହିଁ ? ଲୋକେ ଶୁଣିଲେ କ'ଣ କହିବେ ? ପୁଅ ଅଫିସର ହୋଇଗଲା ବୋଲି ବାପ, କକା, ଘରଦ୍ୱାର ସବୁ ଭୁଲିଯିବ — ସ୍ୱା'ର କୌଣସି ମାନେ ନାହିଁ ।"

ମୁନସି ଶିବଲାଲ କଥାକୁ ଟିକଏ ବୁଲେଇ ଦେଇ କହିଲେ, "ନାହିଁ ରାଧା, ସେମିତି କିଛି ନୁହେଁ । ଅସଲ କଥା ହେଉଛି ଘାଟମପୁରକୁ ରାଜପୁର ଖୁବ୍ ପାଖ । ତା'ଛଡ଼ା ମୁନସି ରାମସହାୟ ନିଜେ ଆସି ବୋହୂକୁ ନେଇ ଯାଇଛନ୍ତି । ସେଠି ସେବା କରିବା-ପାଇଁ ଶହ ଶହ ଚାକରବାକର ଅଛନ୍ତି । ଏଥିରେ ଆମର ଖରାପ ଭାବିବାର କ'ଣ ଅଛି ?"

"ଆଚ୍ଛା କଥା କହୁଛ ଭାଇ, ତା'ହେଲେ ଆମେ ଆଉ କ'ଣ ପାଇଁ ଅଛେ ?" ରାଧେଲାଲଙ୍କର ବଡ଼ପୁଅ ରାମଲାଲ କହିଲା, "ଆମେ ଯେମିତି ଭଲମନ୍ଦ ଦେଖି ପାରିବା, ସେବା-ଶୁଶ୍ରୂଷା କରି ପାରିବା, ଚାକରବାକର କ'ଣ ସେମିତି କରି ପାରିବେ ?"

ରାମଦୟାଲ କଥା ଶିବଲାଲଙ୍କୁ ଭଲ ଲାଗିଲା ନାହିଁ; କିନ୍ତୁ ରାଧେଲାଲ କଥାକୁ ଟିକଏ ସମ୍ଭାଳି ନେଇ କହିଲେ, "ନାହିଁ, ରାମୁ ଠିକ୍ କହୁଛି । ରାମୁ ମା' ତା ହେଲେ ଏଠି କ'ଣ ପାଇଁ ଅଛି ? ମୁଁ କହୁଛି, ଯାହା ତ ହେଲାଣି ହେଲାଣି, ପିଲା ଜନ୍ମ ହେବାପରେ ବୋହୂକୁ ଏଠିକୁ ଦି ଚାରି ମାସ ପାଇଁ ନେଇଆସ ।"

ଛୁନକାଁ ସେତିକବେଳକୁ ମୁନସି ଶିବଲାଲଙ୍କ ହୁକା ଲଗାଇ କରି ଆଣି ପାଖରେ ଠିଆହୋଇ କଥା ଶୁଣୁଥିଲା । ସେ କହିଲା, "ଠିକ୍ କଥା, ଅଜକୁ ଦୁଇବର୍ଷ ହେଲା ବୋହୂ ଗଲେଣି, ଦି'ଚାରି ମାସପାଇଁ ତାକୁ ଡାକି ଆଣୁନା ।" ପୁଣି କ'ଣ ଟିକଏ ଭାବିଲା ପରି ସେ କହିଲା, "ମୁଁ କହୁଛି, ତମେ କାହିଁକି ନିଜେ ଥରେ ଘାଟମପୁର ଚାଲିଯାଉନା ? ପୁଅ ପାଇଁ ସବୁ ମୋହ ମାୟା କ'ଣ ଭୁଲିଗଲ ? ସେଠିକି ନିଜେ ଯାଇ ବୋହୂକୁ ନେଇ ଆସ ।"

ମୁନସି ଶିବଲାଲ ଜୋର୍‌ରେ ହୁକା ଟାଣୁ ଟାଣୁ କହିଲେ, "ହଁ, ଠିକ୍ କହିଲୁ । ଅନେକ ଦିନୁ ଜ୍ୱାଇଁ ସଙ୍ଗେ ଦେଖା ହୋଇନି । ଆଚ୍ଛା, ଆସନ୍ତା ମାସରେ ଘାଟମପୁର ଓ ରାଜପୁର ଯିବି ।" ପୁଣି ସେ ଛୁନକାଁକୁ ପଚାରିଲେ, "ଆରେ ଘସିଟେ ଦେହ ଆଜି କେମିତି ଅଛି ?"

କଥାର ସୂଅ ବଦଳିଯିବାର ଦେଖି ରାଧେଲାଲ ଓ ରାମଲାଲ ସେଠୁ ଚାଲିଗଲେ ।

ସେମାନେ ଚାଲିଯିବାପରେ ଛୁନକାଁ ଆଖିରେ ଲୁହ ଛଳଛଳ କରି କହିଲା, "କ'ଣ କହିବି, ଏବେ ତ ସେ ଖଟିଆରୁ ଉଠି ପାରୁନାହିଁ । ଜର ଛନଛନ ହେଲା ବଢ଼ୁଛି । ଭଗବାନ ତାକୁ ଉଠାଇ ନେଲେ ଭଲ ହୁଅନ୍ତା । ଏମିତି ଜୀଇବା ଅପେକ୍ଷା ମରିବା ଭଲ । ତାକୁ ଦେଖିଲେ ଦେହ ସହୁ ନାହିଁ । ହଁ, କାଲି ତମରି କଥା ସେ ପଚାରୁଥିଲା ।"

"ଆଚ୍ଛା, ମୁଁ ଟିକଏ ଗୁଡ଼ାକରି ଯାଉଛି, ତୁ ଘରକୁ ଚାଲ, ମୁଁ ବୈଦ୍ୟଙ୍କୁ ସାଙ୍ଗରେ ନେଇ ଯାଉଛି ।"

"ପୋଡ଼ାଯାଉ ତମର ନାଆଁ ଲଗା ବଇଦ, ଦଶଥର ଔଷଧ ବଦଳାଇ ସାରିଲଣି । କିନ୍ତୁ ଦିନକୁ ଦିନ ବେମାର ବଢ଼ୁଛୁ । ପଅରିଦିନଠାରୁ ସେ ଔଷଧ ଛାଡ଼ିଦେଲଣି ।" ଏତିକି କହି ଛୁନକା ସେଠାରୁ ଚାଲିଗଲା ।

ଶିବଲାଲ କିଛି କାଳ ପର୍ଯ୍ୟନ୍ତ ରାତିର ଅନ୍ଧାରକୁ ଚାହିଁ ବସି ରହିଲେ । ତାପରେ କଷ୍ଟେମଷ୍ଟେ ଉଠିଲେ । ଏବେ କେତେ ଦିନ ହେଲା ତାଙ୍କ ଦେହ ବରାବର ଖରାପ ହୋଇ ଯାଉଥିଲା । ଘସିଟେ ଅନେକ ଦିନ ବେମାର ରହିବା ଫଳରେ ତାଙ୍କର ନିତ୍ୟକର୍ମ ଅନେକ ବଦଳି ଯାଇଥିଲା । ଏବେ ସନ୍ଧ୍ୟାବେଳେ ସେ ଏକୁଟିଆ ବସି ମଦ ପିଉଥିଲେ । ତେଣୁ ମଦର ମାତ୍ରା ଖୁବ୍ ବଢ଼ି ଯାଇଥିଲା ଓ ପିଇ ପିଇ ଅନେକ ସମୟରେ ସେ ବେହୋସ ହୋଇ ଯାଉଥିଲେ । ଏବେ ସେ ନିଜ ଭିତରେ ଏକପ୍ରକାର ଦୁର୍ବଳତା ଅନୁଭବ କରୁଥିଲେ । ଯଦିଓ ଛୁନକା ତାଙ୍କର ଖୁବ୍ ସେବା କରୁଥିଲା ତଥାପି ଘସିଟେ ବେମାର ପଡ଼ିବାରୁ ବେଶୀ ସମୟ ତାର ଘସିଟେର ସେବା-ଶୁଶ୍ରୂଷାରେ ଚାଲିଯାଉଥିଲା ।

ଘସିଟେର ଅପ୍ରତ୍ୟାଶିତ ମୃତ୍ୟୁ ଦେଖି ଶିବଲାଲଙ୍କୁ ଭାରି ଖରାପ ଲାଗିଲା । ଏ ପର୍ଯ୍ୟନ୍ତ ସେ କେବେ ଗଭୀର ଭାବରେ ମୃତ୍ୟୁକଥା ଭାବି ନଥିଲେ; କିନ୍ତୁ ଏବେ କାହିଁକି ମୃତ୍ୟୁ ପ୍ରତି ତାଙ୍କର ଭାରି ଭୟ ହୋଇଗଲା । ତାଙ୍କୁ ଲାଗିଲା ସତେ ଯେମିତି ଦିନକୁ ଦିନ ତାଙ୍କ ଦେହ ଶିଥିଳ ହୋଇଯାଉଛି । ସେହି ଭୟରୁ ରକ୍ଷା ପାଇବା ଲାଗି ସେ ଘାଟମପୁର ଯିବାପାଇଁ ବଡ଼ ବ୍ୟଗ୍ର ହୋଇପଡ଼ିଲେ ଓ ନିର୍ଦ୍ଦିଷ୍ଟ ଦିନକୁ ଅନାଇଁ ରହିଲେ ।

ଏଣେ ତ ଛୁନକା ଘସିଟେକୁ ହରାଇ ବସିଲା, ତେଣେ ପୁଣି ଶିବଲାଲଙ୍କ ଦେହ ଖରାପ ହେବାର ଦେଖି ସେ ଭାରି ଚିନ୍ତିତ ହୋଇ ପଡ଼ିଲା । ଘସିଟେର ଶୁଦ୍ଧକ୍ରିୟା ଇତ୍ୟାଦି ଖୁବ୍ ଭଲରେ କରିସାରି ଏଣିକି ସେ ଶିବଲାଲଙ୍କ ଘରେ ରହିଲା । ଦିନେ ସେ ଶିବଲାଲଙ୍କୁ ପଚାରିଲା, "କ'ଣ ହେଲା, ତମେ ଜିଲା ଘରକୁ କେବେ ଯାଉଛ ? ବୋହୂର ତ ପିଲାପିଲି ହୋଇ ସାରିବଣି । ଏବେ ତ ସେ ଘାଟମପୁର ଆସି ସାରିବେଣି ।"

"ହଁ, ଚିଠି ଆସିଛି—ଆଉ ସପ୍ତାହକ ମଧ୍ୟରେ ବୋହୂ ରାଜପୁରରୁ ଘାଟମପୁର ଆସିଯିବ । ଭାବୁଛି ଏହି ସୋମବାର ବା ମଙ୍ଗଳବାରକୁ ମୁଁ ଏଠୁ ଚାଲିଯିବି ।"

"ମୁଁ କହୁଛି ତମେ ଶୀଘ୍ର ବାହାର । ମୋ କଥା ଯଦି ମନକୁ ପାଏ ତେବେ ମୋତେ ବି ସଙ୍ଗରେ ନେଇଚାଲ ।"

ମୁନସି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁ କାହିଁକି ଘାଟମପୁର ଯିବୁ ?"

"ଏଠି ରହି ମୁଁ କ'ଣ କରିବି ? ସେ ତ ସରଗପୁରକୁ ଚାଲିଗଲା, ତମେ ତ ଘାଟମପୁର ଯାଉଛ । ମୁଁ କହୁଛି ତମର ଆଉ ଘାଟମପୁରରୁ ଫେରିବା ଉଚିତ ନୁହେଁ, ସେଇଠି ପୁଅ ପାଖେ ରହିବା ଭଲ । ସେଇଥିପାଇଁ ମୁଁ ତମ ସାଙ୍ଗରେ ଯିବାକୁ ଚାହୁଁଛି, ମୁଁ ଭାବୁଛି ମୋର

ଦୁଇଟି ପୁଅ, ଜ୍ୱାଲ ଆଉ ଭକ୍ତ, ତାଙ୍କର ଆଗ୍ରାରେ ରହିବ, ଏଠି ମୋର କିଏ ଅଛି ?''

ମୁନସି ଶିବଲାଲ ଭାବିଲେ ଛୁନକା ଯାହା କହୁଛି ଠିକ୍ । ତେଣୁ ସେ ତାକୁ କହିଲେ, ''ହଉ, ତା'ହେଲେ ତୁ ବାହାର, ଏହି ସୋମବାରଦିନ ଆମେ ଯିବା ।''

ଶିବଲାଲଙ୍କ ସଙ୍ଗେ ଛୁନକା ଯିବା କଥା ଶୁଣି ରାଧେଲାଲଙ୍କୁ ଟିକିଏ ଅଡୁଆ ଲାଗିଲା । ତା'ହେଲେ କ'ଣ ଶିବଲାଲ ପୁଅ ପାଖରେ ସବୁଦିନ ରହିବାପାଇଁ ଯାଉଛନ୍ତି, ମନେ ମନେ ଏଇ ପ୍ରଶ୍ନର ଉତ୍ତର ସେ ଖୋଜି ବୁଲିଲେ । ଏ ବିଷୟରେ ରାଧେଲାଲଙ୍କ ପରିବାରରେ ମଧ୍ୟ ଟିକିଏ ଝଡ଼ବଡ଼ ଆରମ୍ଭ ହୋଇଗଲା । ଶନିବାରଦିନ ସନ୍ଧ୍ୟାବେଳେ ଟିକିଏ ସୁବିଧା ପାଇ ରାଧେଲାଲ ଶିବଲାଲଙ୍କୁ ପଚାରିଲେ ''ଭାଇ, ତମେ ତ ଛୁନକାକୁ ସାଙ୍ଗରେ ନେଇଗଲେ ଘରକାମ ବହୁତ ଅସୁବିଧା ହୋଇଯିବ । ମାସେ ଦିମାସେ ତ ଘାଟମପୁରରେ ରହି ବୋହୂକୁ ନେଇ ଚାଲି ଆସିବ, ଛୁନକାକୁବୃଥାରେ କାହିଁକି ନେବ ?''

ମୁନସି ଶିବଲାଲ ଟିକିଏ ବିରକ୍ତ ହୋଇ କହିଲେ, ''କାହିଁକି, ଘରକାମରେ କ'ଣ ଅସୁବିଧା ହେବ ? ଘରେ ସାନ ବୋହୂ ଅଛନ୍ତି, ରାମୁର ସ୍ତ୍ରୀ ବି ଅଛି । ମୁଁ ଛୁନକାକୁ ନେବାକୁ ଚାହୁଁଛି; କାରଣ ସେ ନ ଗଲେ ମୋ କଥା ସେଠି କିଏ ବୁଝାସୁଝା କରିବ ?''

''କାହିଁକି, ସେଠିତ ଜ୍ୱାଲ ବୋହୂ ଅଛନ୍ତି । ତମେ ମାସେ ଦି ମାସ ରହି ବୋହୂକୁ ସାଙ୍ଗରେ ନେଇ ଚାଲି ଆସିବ । ଏତିକି ଦିନ କ'ଣ ସେ ତମର ସେବା କରି ପାରିବେ ନାହିଁ ?''

ବୋହୂକୁ ନେଇ ମାସେ ଦୁଇମାସ ଭିତରେ ଫେରିବା କଥା ରାଧେଲାଲ ଦୁଇଥର କହିବାରୁ ଶିବଲାଲ ଟିକିଏ ବିଗିଡ଼ିଗଲେ, କହିଲେ, ''ଜ୍ୱାଲର ବୋହୂ ଜଣେ ବଡ଼ ଅଫିସରର ସ୍ତ୍ରୀ, ସେଥିରେ ପୁଣି ତା କୋଳରେ ପିଲା । ଅନ୍ୟ ଲୋକର ସେବା କରିବା ପାଇଁ ଭଗବାନ କ'ଣ ତାକୁ ତହସିଲଦାରର ସ୍ତ୍ରୀ କରିଛନ୍ତି ! ନାହିଁ ରାଧେ, ତା' ହାତରେ ମୁଁ କାମ କରାଇବି ନାହିଁ । ଏବେ ଜ୍ୱାଲ ଉଚ୍ଚ ଆସନକୁ ଚାଲିଗଲାଣି, ତାର ଓ ତା' ସ୍ତ୍ରୀର ମାନମର୍ଯ୍ୟାଦା ବହୁତ ବଢ଼ିଗଲାଣି । ମୁଁ ଅସି ବୁଢ଼ା ହେଲିଣି । ମାସେ ଦୁଇମାସ ପାଇଁ ସିନା ଯାଉଛି । ଘାଟମପୁରରେ ମନ ଲାଗିଗଲେ ବର୍ଷେ ଛମାସ ରହିଯିବି । ଦେଖ ପହଞ୍ଚି ଯାହା ଠିକ୍ କରିବି । ନିଜ ପୁଅ ତ, କିଛି ପରଲୋକ ନୁହେଁ ।''

ବର୍ତ୍ତମାନ ରାଧେଲାଲ ବେଶ୍ ବୁଝିପାରିଲେ ଯେ ଶିବଲାଲଙ୍କର ଆଉ ଫତେପୁର ଫେରିବାର ଇଚ୍ଛା ନାହିଁ । ରାଧେଲାଲଙ୍କର ବଡ଼ ପରିବାର, ବହୁତ ଖର୍ଚ୍ଚ; ଚାରିପୁଅ ରାମଲାଲ, ଶ୍ୟାମଲାଲ, କିଶନଲାଲ ଓ ବିଶନଲାଲ । ରାମଲାଲ ଓ ଶ୍ୟାମଲାଲ ପାଠ ଛାଡ଼ି ସାରିଥିଲେ; କିନ୍ତୁ କିଶନଲାଲ ଓ ବିଶନଲାଲ ପଢ଼ୁଥିଲେ । ରାମଲାଲ ବାହା ହୋଇ

ସାରିଥିଲା । ଉର୍ଦ୍ଧ୍ୱ ମଧ୍ୟମା ପାଶ୍ କରି ପଟ୍ୱାରୀ ଚାକିରୀ ଖୋଜୁଥିଲା । ଶ୍ୟାମଲାଲ୍ ତିନିବର୍ଷ ହେଲ ଉର୍ଦ୍ଧ୍ୱ ମଧ୍ୟମା ଫେଲ୍ ହୋଇ ଏଣେତେଣେ ବୁଲୁଥିଲା । ମୁନ୍‌ସି ଶିବଲାଲ କିଛି ପଇସା ବଞ୍ଚାଇ ଦଶବିଘା ଜମି କିଣି ପକାଇଥିଲେ ଓ ସେହି ଜମି ଚଷିବା ପାଇଁ ଶ୍ୟାମଲାଲଙ୍କୁ ଲଗାଇ ଦେଇଥିଲେ । କିନ୍ତୁ ଶ୍ୟାମଲାଲ ହାତରେ କିଛି କାମ ହେଉ ନଥିଲା । ଜମିରେ ଯେତିକି ଖର୍ଚ୍ଚ ହେଉଥିଲା, ବଡ଼ କଷ୍ଟରେ ପ୍ରାୟ ସେତିକି ମିଳି ଯାଉଥିଲା ।

ରାଧେଲାଲ ଟିକିଏ ମୁହଁ ତଳକୁ କରି କହିଲେ, "ଭାଇ, ତମେ ତ ଘରର ଅବସ୍ଥା ଦେଖୁଛ । ତମେ ଏଠୁ ଚାଲିଗଲା ପରେ ଜ୍ୱାଲା ମାସକୁ ମାସ ଯେଉଁ ଟଙ୍କା ପଠାଉଥିଲା, ତାହା ବନ୍ଦ କରିଦେବ ନାହିଁ ତ ?"

ଶିବଲାଲ ମୁରୁକିହସା ଦେଇ କହିଲେ, "ନାହିଁ, ରାଧେ ତୁ ନିଶ୍ଚିନ୍ତ ରହ । ମୁଁ ମାସକୁ ମାସ ଦଶଟଙ୍କା ଲେଖା ନିଶ୍ଚୟ ତା ପାଖକୁ ପଠାଇଦେବି । ଆଉ କେବେ କିଛି ଦରକାର ପଡ଼ିଲେ ମୋତେ ଲେଖିବୁ, ଯାହା ସୁବିଧା ହେବ ମୁଁ ପଠାଇଦେବି । ହଁ, ଶାମୁକୁ କହିବୁ ଯଦି ପଟ୍ୱାରୀ କାମ ନ ମିଳେ ତେବେ ଜିଲା ସ୍କୁଲରେ ଶିକ୍ଷକ ଚାକିରୀ କରିନେବ । ଏ ବିଷୟରେ ମୁଁ ମୌଲବୀ ସଲାମତ୍‌ଉଲ୍ଲାଙ୍କ ସହିତ କଥାବାର୍ତ୍ତା କରିଛି । ଶ୍ୟାମକୁ ଭଲ କରି ବୁଝାଇ ଦେବୁ ସେ ଯେମିତି ଟିକିଏ ମନ ଦେଇ କାମ କରିବ । ଆମ ଜମି ପାଖରେ ପଞ୍ଚୁଆ ଗଉଡ଼ର ପାଞ୍ଚ ବିଘା ଜମି ବିକ୍ରୀ ହେବାର ଅଛି । ତା' ସଙ୍ଗରେ କଥାବାର୍ତ୍ତା କରି ସେ ଜମିଟା କିଣିନିଅ, ଟଙ୍କା ପଇସା ଆପେ ଯୋଗାଡ଼ ହୋଇଯିବ । ଯଦି ଶାମୁର ବାହାଘର କେଉଁଠି ଜୁଟେ, ତାହେଲେ ଏହି ବର୍ଷଦିନେ କରିଦିଅ । ମନେ ହେଉଛି ବାହାଘର ପରେ ତା'ର ପ୍ରକୃତି ବଦଳି ଯାଇପାରେ ।"

ଶିବଲାଲଙ୍କର ଆଶ୍ୱାସନା ଶୁଣି ରାଧେଲାଲଙ୍କ ମନ ଟିକିଏ ହାଲୁକା ହୋଇଗଲା । ଏଣିକି ପରିବାର ଚଳାଚଳରେ ଅନେକ ପରିବର୍ତ୍ତନ ଘଟିବ, ଏ କଥା ସେ ସ୍ପଷ୍ଟ ବୁଝି ପାରିଥିଲେ । ପୁଅମାନଙ୍କର ଦୁର୍ବୁଦ୍ଧି ଓ ଅଯୋଗ୍ୟତା ଯୋଗୁ ତାଙ୍କ ମନରେ ଯେତିକି ରାଗ ହେଉଥିଲା, ଜ୍ୱାଲାପ୍ରସାଦ ଓ ତାର ସ୍ତ୍ରୀର ସୌଭାଗ୍ୟ ଦେଖି ତାଠୁ ଅଧିକ ହିଂସା ହେଉଥିଲା । ଶିବଲାଲଙ୍କୁ ଆଉ କୌଣସି କିଛି କହିବା ଭଲ ନୁହେଁ ବୋଲି ସେ ଜାଣିଥିଲେ । ବଡ଼ଭାଇଙ୍କ ପ୍ରତି ତାଙ୍କ ମନରେ ଘୃଣା ଆସିଯାଇଥିଲା ସତ; କିନ୍ତୁ ସେହି ଘୃଣା ମନର ଭସ୍ମ ତଳେ ଲୁଚି ରହିଥିଲା ।

ଘାଟମପୁରରେ ପହଞ୍ଚି ଶିବଲାଲଙ୍କର ମନେ ହେଲା ସତେ ଯେମିତି ସେ ସ୍ୱର୍ଗରେ ପହଞ୍ଚିଗଲେ । ଜ୍ୱାଲାପ୍ରସାଦଙ୍କର ନାଁ ସିନା ନାଏବ ତହସିଲଦାର, ନଚେତ୍ ସେଠି ତାଙ୍କର, ଯାହା ଖାତିର, ଯାହା ହାକିମି, ଯେଉଁ ଆଡ଼ା ଚଉଡ଼ା ତାହା ଯେକୌଣସି

ତହସିଲଦାର ସଙ୍ଗେ ସମାନ । ନାଏବ ତହସିଲଦାରଙ୍କ ବାପ ବୋଲି ଶିବଲାଲଙ୍କୁ ସେଠିକାର ଲୋକମାନେ ଯେମିତି ଖାତିର କରୁଥିଲେ ତାଙ୍କ କଥା ବି ସେମିତି ମାନୁଥିଲେ । ଲୋକେ ତାଙ୍କ ସହିତ ପରାମର୍ଶ କରିବା ପାଇଁ ଆସୁଥିଲେ ଓ ତାଙ୍କ ପରାମର୍ଶକୁ ଖୁବ୍ ମୂଲ୍ୟବାନ ମନେ କରୁଥିଲେ । ଘର ତ ସବୁବେଳେ ପୂରିରହିଥାଏ; କେତେବେଳେ କୌଣସି ଜିନଷର ଅଭାବ ନଥାଏ । ଶିବଲାଲ ଅଧିକାଂଶ ସମୟ ପଶା ଖେଳିବା ପାଇଁ ମୀର୍ ସାହେବଙ୍କ ଘରକୁ ଚାଲି ଯାଉଥିଲେ । ମୀର୍ ସାହେବଙ୍କ ସଙ୍ଗେ ତାଙ୍କର ବନ୍ଧୁତା ଖୁବ୍ ଘନିଷ୍ଠ ହୋଇଯାଇଥିଲା ।

ଶିବଲାଲଙ୍କର ଏଠି ଏକ ନୂତନ ଅନୁଭୂତି ହେଲା । ତାଙ୍କ ମନରେ ସାମାନ୍ୟ ଦୁଃଖ ହେବା ସଙ୍ଗେ ସଙ୍ଗେ ଆତ୍ମସନ୍ତୋଷ ଓ ଅଭିମାନ ମଧ୍ୟ ହେଲା । ଜ୍ୱାଲାପ୍ରସାଦ ନିଜ କାମରେ ଖୁବ୍ ସାଧୁ ସଚ୍ଚୋଟ ଥିଲେ । ଅବଶ୍ୟ ଶିବଲାଲଙ୍କର ନିଜ ଚରିତ୍ର ଭଲ ନଥିଲେ ବି ଅନ୍ୟର ଭଲ ଚରିତ୍ର ପ୍ରତି ତାଙ୍କର ଯେ ଆଦର ନଥିଲା ତା' ନୁହେଁ । ନୂତନ ପରିସ୍ଥିତି ଓ ପରିବର୍ତ୍ତିତ ଜଳବାୟୁରେ ତାଙ୍କର ଭାଙ୍ଗି ପଡ଼ୁଥିବା ସ୍ୱାସ୍ଥ୍ୟ ଏବେ ଅନେକ ଭଲ ହୋଇ ଯାଇଥିଲା । ଧନ-ଜନ ଉଭୟ ବଢ଼ୁଥିବାର ଦେଖି ଏକପ୍ରକାର ନୂତନ ଜୀବନର ଉଲ୍ଲାସ ସେ ଅନୁଭବ କରୁଥିଲେ ।

ବର୍ତ୍ତମାନ ଶୀତ ଶେଷ ହୋଇଯାଇଥିଲା ଓ ଫସଲ ପାଚି ଆସୁଥିଲା । ଦୁଇ ପ୍ରହର ସମୟ । ଶିବଲାଲ ବୈଠକଖାନାରେ ବସି ହୁକା ଟାଣୁଥିଲେ; ବାହାରୁ କିଏ ଜଣେ ଡାକିଲେ, "ଜ୍ୱାଲାବାବୁ !"

ମୁନ୍‌ସି ଶିବଲାଲ ବାହାରକୁ ଚାହିଁ ଦେଖିଲେ କିଏ ଜଣେ ବାହାରେ ଛିଡ଼ା ହୋଇଛନ୍ତି । ଗଜରାଜ ସିଂହଙ୍କୁ ସେ ପ୍ରକୃତରେ ଚିହ୍ନି ପାରିଲେ ନାହିଁ । କାରଣ ସ୍ୱାଧୀନତରେ ସେ କେବେ ଏଠାକୁ ଆସି ନଥିଲେ । ବରଜୋର ସିଂହ ବିଷୟରେ ଜ୍ୱାଲାପ୍ରସାଦ ଓ ଗଜରାଜ ସିଂହଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ଘଟିଯାଇଥିଲା ତାହା ଏବେ ମଧ୍ୟ ଦୂର ହୋଇ ନଥିଲା । କିନ୍ତୁ ଶିବଲାଲ ତାଙ୍କ ନିଜ ଅନୁଭୂତିରେ ବେଶ୍ ଜାଣି ପାରିଥିଲେ ଯେ ବାହାରେ ଯେ ଠିଆ ହୋଇଥିଲେ ସେ ଜଣେ କେହି ମାମୁଲି ଲୋକ ନୁହନ୍ତି । ତେଣୁ ସେ କହିଲେ, "ଆସନ୍ତୁ, ବସନ୍ତୁ, ଜ୍ୱାଲା ତ ଟୁର୍‌ରେ ଚାଲିଯାଇଛି, କାଲି ସନ୍ଧ୍ୟାରେ ଫେରିବା କଥା । ଆପଣ ଯାହା କହିବେ, ମୁଁ ତାକୁ କହିଦେବି ।"

"ଆପଣ ଟିକିଏ କହିଦେବେ ଠାକୁର ଗଜରାଜ ସିଂହ ଏକ ଜରୁରୀ କାମରେ ଆସିଥିଲେ । ସେ ପୁଣି ପଅର ଦିନ ସନ୍ଧ୍ୟାବେଳେ ଆସିବେ । ଏତିକି କହିଦେଲେ ହେବ ।" ଠିକ୍ ଏତିକି କହି ଗଜରାଜ ସିଂହ ଫେରିଯିବା ପାଇଁ ବୁଲିପଡ଼ିଲେ; କିନ୍ତୁ କେଜାଣି କାହିଁକି ତାଙ୍କ ପାଦ ଆପେ ଆପେ ରହିଗଲା । ପୁଣି ବୁଲିପଡ଼ି ଶିବଲାଲଙ୍କୁ ସେ

ପଚାରିଲେ, "ଆପଣଙ୍କୁ ତ ଆଗରୁ କେବେ ଦେଖି ନାହିଁ । ଆପଣ ଜ୍ୱାଲା ବାବୁଙ୍କର ବାପା ହେବେ କି ?"

ମୁନସି ଶିବଲାଲ ହସି ଦେଇ କହିଲେ, "ଆଜ୍ଞା, ଆପଣ ଠିକ୍ ଧରିଛନ୍ତି, ମୁଁ ଜ୍ୱାଲା ପ୍ରସାଦଙ୍କ ବାପା । ଯଦି କିଛି ଜରୁରୀ କଥା ଥାଏ, କହିଲେ ମୁଁ ତାଙ୍କୁ କହିଦେବି ।"

"ଆପଣଙ୍କୁ ଅକାରଣ କାହିଁକି କଷ୍ଟ ଦେବି । ମୁଁ ନିଜେ ଆସି ତାଙ୍କ ସଙ୍ଗେ ଦେଖା କରିବି ।" ତା'ପରେ ପୁଣି ଟିକିଏ ରହିଯାଇ ସେ କହିଲେ, "ହଉ, ଆପଣ ତ ଜଣେ ଅନୁଭବୀ ଲୋକ; ଆପଣଙ୍କୁ ସବୁ କଥା କହିଦେଲେ କିଛି କ୍ଷତି ନାହିଁ । ମୁଁ ବର୍ତ୍ତମାନ ବଡ଼ ଧର୍ମସଙ୍କଟରେ ପଡ଼ିଯାଇଛି, ହୁଏତ ଆପଣ କୌଣସି ରାସ୍ତା ଦେଖାଇ ଦେଇ ପାରିବେ ।"

ଗଜରାଜ ସିଂହଙ୍କଠାରୁ ପୂରା କାହାଣୀ ଶୁଣି ବରଜୋରଙ୍କ ପରିବାର ପ୍ରତି ଶିବଲାଲଙ୍କର ମନରେ ଭାରି ଦୟା ଆସିଲା । ସେ କହିଲେ, "ଆପଣ ବିଶ୍ୱାସ ରଖନ୍ତୁ ଠାକୁର ସାହେବ, ମୁଁ ଜ୍ୱାଲାକୁ ସବୁକଥା ବୁଝାଇ ଦେବି । ଆଉ ମୁଁ ଆପଣଙ୍କୁ ଏ କଥା ମଧ୍ୟ କହୁଛି ଯେ ଜ୍ୱାଲା ହାତରେ ଯାହା କିଛି ହେବାର କଥା, ତାହା ସେ ନିଶ୍ଚୟ କରିବ । ଏ ବିଷୟରେ ଆପଣ ମୋ ଉପରେ ପୂରା ଭରସା ରଖନ୍ତୁ ।"

ତହିଁ ଆରଦିନ ଜ୍ୱାଲାପ୍ରସାଦ ଟୁର୍‌ରୁ ଫେରିଲା ପରେ ଶିବଲାଲ ତାଙ୍କୁ କହିଲେ, "ଆରେ ପୁଅ, କାଲି ଦ୍ୱିପ୍ରହରେ ଗଜରାଜ ସିଂହ ତୋ' ପାଖକୁ ଆସିଥିଲେ !"

ଜ୍ୱାଲାପ୍ରସାଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କିଏ, ଠାକୁର ଗଜରାଜ ସିଂହ ଆସିଥିଲେ— ମୋ ସଙ୍ଗେ ଦେଖା ହେବାପାଇଁ ? କ'ଣ କିଛି କହିଯାଇଛନ୍ତି ?"

"ହଁ, ବରଜୋର ସିଂହଙ୍କର ହାତଗୃଷ କଥା କହିବାପାଇଁ ଆସିଥିଲେ । କହୁଥିଲେ ଫସଲ ପାଚି ଚାଲିଲାଣି । କେଦେଇଙ୍କ ନାମରେ ତ ଜମି ଦାଖଲ ଖାରଜ ହୋଇଯାଇଛି । କେଦେଇଙ୍କ ସେବକ ଲଛିରାମ ଜମି ଦଖଲ କରିବାପାଇଁ ଦର୍ଖାସ୍ତ ଦେଇଛି । ପାଚିଲା ଫସଲର କଥାନା, ସେଇଥିପାଇଁ ତୋର ସାହାଯ୍ୟ ସେ ଚାହୁଁଥିଲେ ।"

ଜ୍ୱାଲାପ୍ରସାଦଙ୍କର ମନ ଭାରି ବ୍ୟସ୍ତ ହୋଇ ଉଠିଲା । ସେ ଏକ ହତାଶାମୟ କରୁଣ କଣ୍ଠରେ କହିଲେ, "ବାପା, ମୁଁ ଏଥିରେ କ'ଣ କରିବି ? ଲମ୍ବରଦାରଣୀଙ୍କ ନାଁରେ ଜମି ଯେତେବେଳେ ଦାଖଲ ଖାରଜ ହୋଇ ସାରିଛି, ତାକୁ ତ ସେ ଦଖଲ କରିବେ ନିଶ୍ଚୟ । ଆପଣ ନିଜେ କହନ୍ତୁ ମୁଁ ତାଙ୍କୁ ଏଥିରେ କ'ଣ ସାହାଯ୍ୟ କରି ପାରିବି ?"

"ଆଚ୍ଛା ତୁ ଗୋଟାଏ କାମ କର । ତୁ ନିଜେ ଯାଇ ବରଜୋର ସିଂହଙ୍କ ବିଧବା ପତ୍ନୀଙ୍କଠାରୁ ଲମ୍ବରଦାରଣୀଙ୍କୁ ଦଖଲ ଦିଆଇ ଦେ । ସେଥିରେ କେବଳ ଏହି ସର୍ତ୍ତ ରହିବ ଯେ ଏ ବର୍ଷର ଫସଲଟା ବରଜୋର ସିଂହଙ୍କ ସ୍ତ୍ରୀ କାଟିନେବେ । ତାହେଲେ ଗଣ୍ଡଗୋଳ ସହଜରେ ତୁଟିଯିବ ।"

ଜ୍ୱାଲାପ୍ରସାଦ ପଚାରିଲେ, "ବରଜୋର ସିଂହଙ୍କ ସ୍ତ୍ରୀ କଣ ରାଟମପୁର ଆସିଛନ୍ତି ?"

"ହଁ, ସେ ତାଙ୍କ ପିଲାଛୁଆ ଧରି ଗଜରାଜ ସିଂହଙ୍କ ଘରେ ଅଛନ୍ତି । ଗଜରାଜ ସିଂହ କହି ଯାଇଛନ୍ତି କାଲି ସକାଳେ ପୁଣି ତୋ ପାଖକୁ ସେ ଆସିବେ ।" ପୁଣି ଟିକିଏ ରହିଯାଇ ଶିବଲାଲ କହିଲେ, "ଯଦି କିଛି ହୋଇ ପାରିବ କରିଦେ, ବିପଦଗ୍ରସ୍ତ ବିଧବା ସ୍ତ୍ରୀର କଥା ନା !"

ଜ୍ୱାଲାପ୍ରସାଦ ବଡ଼ ଉଦାସ ଭାବରେ ଜବାବ ଦେଲେ, "ଦେଖେଁ, କିଛି କରିବାପାଇଁ ଚେଷ୍ଟା କରିବି । ମନେ ହେଉଛି, ଆପଣ ଯେଉଁ ବାଟ ବତାଇଲେ, ହୁଏତ ଲମ୍ବରଦାରଣୀ ସେଥିରେ ରାଜି ହୋଇଯାଇପାରନ୍ତି ।"

ସନ୍ଧ୍ୟା ପୂର୍ବରୁ ଜ୍ୱାଲାପ୍ରସାଦ ଶିବପୁର ଚାଲିଗଲେ । ସେଠି ପହଞ୍ଚିଲାବେଳକୁ ଅନ୍ଧାର ହୋଇଯାଇଥିଲା । ପ୍ରଭୁଦୟାଳଙ୍କ ରାଧାକୃଷ୍ଣ ମନ୍ଦିରରେ ଆଳତି ହେଉଥିଲା । ପୂର୍ବପରି ଧୂମଧାମ ବି ଲାଗିଥିଲା । ଲମ୍ବରଦାରଣୀଙ୍କ ଚାକରମାନେ ଜ୍ୱାଲାପ୍ରସାଦଙ୍କୁ ଦେଖି ସପ୍ରଣାମ ସ୍ୱାଗତ କରି ବୈଠକଖାନାରେ ନେଇ ବସାଇଦେଲେ ଓ ତାଙ୍କ ଆସିବା କଥା ଜେଦେଇଙ୍କୁ ଜଣାଇଦେଲେ । ସେତେବେଳକୁ ସେବକ ଲଚ୍ଛିରାମ ନିଜ ଘରକୁ ଚାଲି ଯାଇଥିଲା; ତେଣୁ ତାକୁ ମଧ୍ୟ ଆସିବାପାଇଁ ଖବର ଦିଆଗଲା ।

ଜେଦେଇ ଜ୍ୱାଲାପ୍ରସାଦଙ୍କୁ ନିଜ ରହିବା ଘର ଭିତରକୁ ଡକେଇ ନେଇ ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା କରି କହିଲେ, "ତମେ ଆଜି ଆସିଲ ଦିଅର, ମୋର ବଡ଼ ଭାଗ୍ୟ, ଦୁଇ ଚାରି ଥର ଡକାଇଲିଣି । କିନ୍ତୁ ତମେ ତ ହାକିମ ଲୋକ, ଯେତେବେଳେ ଦେଖିଲେ ଟୁର୍‌ରେ ।" ଏତିକି କହି ଜେଦେଇ ଟିକିଏ ହସିଦେଲେ ।

ଜ୍ୱାଲାପ୍ରସାଦ ମଧ୍ୟ ଟିକିଏ ହସିଦେଇ କହିଲେ, "କ'ଣ କହିବି ଭାଉଜ, ଆମେ ତ କାମ କରି କରି ନାକେଦମ୍ ! ଗଲା ବର୍ଷଠାରୁ ଘରେ ବସିବାକୁ ବି ଟିକିଏ ଫୁରୁସତ୍ ନାହିଁ । ନିଜ କାମ ସହିତ ମୀର ସାହେବଙ୍କ ପୂରା କାମ ମୋତେ କରିବାକୁ ପଡ଼ୁଛି । କାଲି ରାତିରେ ଟୁର୍‌ରୁ ଫେରି ଆଜି ସକାଳୁ ହଠାତ୍ ମନେ ପଡ଼ିଲା ଭାଉଜଙ୍କ ପାଖକୁ ଅନେକ ଦିନୁ ଯାଇନାହିଁ । ତେଣୁ ଟିକିଏ ସମୟ କରି ଚାଲି ଆସିଲି ।"

"ବଡ଼ ଭଲ କଲ, ଦିଅର ! ତମେ ତ ଏବେ ମୋର ଏକମାତ୍ର ଆଶ୍ରା; ବସୁନ, ଛୁଡ଼ୀ ହେଲ କାହିଁକି ? ମୁଁ ତ ପୁଣି ତମ ଘରେ ରହିକରି ଆସିଛି । କେଡ଼େ ସୁନ୍ଦର ତମର ସେ ପିଲାଟି । ମୋ ସଖୀ ଭଲରେ ଅଛନ୍ତି ତ ?"

ଜେଦେଇ ଯମୁନାକୁ ସଖୀ ଡାକନ୍ତି ବୋଲି ଜ୍ୱାଲାପ୍ରସାଦ ଜାଣନ୍ତି; ତେଣୁ ସେ କହିଲେ, "ସେ ତୁମକୁ ନମସ୍କାର କହିଛି ।" ପୁଣି ଟିକିଏ ରହିଯାଇ କହିଲେ, "ଭାଉଜ, ତମପାଖକୁ ଆଜି ଗୋଟାଏ ଜରୁରୀ କାମରେ ଆସିଛି । ତମ ପାଖରେ ମୋର ଗୋଟାଏ ଅନୁରୋଧ ଅଛି ।"

"ହଁ, ଠାକୁର, ଲଚ୍ଛୁରାମ ହାତରେ ସବୁକାମ କରେଇ ନେଉଛୁ । ଦୁଇଚାରି ଦିନରେ ସେ ଜମିର ଦଖଲ ମିଳିଯିବ । ମାମଲାଟା ବହୁତ ଦିନ ହେଲା ପଡ଼ିରହିଲାଣି ।"

"ଭାଉଜ, ମୁଁ ତୁମକୁ କହିବାକୁ ଆସିଛୁ ଯେ ବରଜୋର ସିଂହଙ୍କର ପିଲାପିଲି ସମସ୍ତେ ଏଠିକି ଆସିଛନ୍ତି । ସେମାନଙ୍କର ଆଜିକାଲି ଭାରି ଅଭାବ, ତମେ ତାଙ୍କୁ ଏ ବର୍ଷର ଫସଲଟା କାଟି ନେବାକୁ ଛାଡ଼ିଦିଅ । ଯା'ପରେ ସେମାନେ ଆପେ ଆପେ ତମକୁ ଦଖଲ ଛାଡ଼ିଦେବେ । ଲଚ୍ଛୁରାମକୁ କହିଦିଅ ସେ ବର୍ତ୍ତମାନ ଜମି ଦଖଲ ନ କରୁ ।"

ଏ କଥା ଶୁଣି କେଦେଇଙ୍କର ଚକ୍ଷୁ ଗମ୍ଭୀର ହୋଇଗଲା । ସେ ତଳକୁ ମୁହଁ ପୋତି ଦେଇ କହିଲେ, "ଦେଖ ଠାକୁର, ଦୁନିଆରେ ସବୁ ଲୋକଙ୍କର ଆପଣା ଆପଣା ଭାଗ୍ୟ ଅଛି । ଦୁନିଆରେ କେତେ ଦୁଃଖୀ, କେତେ ଅନାଥ ପଡ଼ିଛନ୍ତି । କାହାର ଦୁଃଖ ପ୍ରକୃତରେ କିଏ ନେଇ ପାରିବ ? ତା'ଛଡ଼ା ଜମିଉପରେ ଆମର ଅଧିକାର ଅଛି, ତମେ ଜାଣିଛ ।"

ଜ୍ୱାଲାପ୍ରସାଦ କହିଲେ, "ଭାଉଜ, ତମେ ଯାହା କହୁଛ ଠିକ୍ । ତମର ଜମିରେ ଯେମିତି ଅଧିକାର, ଫସଲ ଉପରେ ମଧ୍ୟ ସେମିତି ଅଧିକାର; କିନ୍ତୁ ଜମିରେ ବର୍ତ୍ତମାନ ଯେଉଁ ଫସଲ ଛିଡ଼ା ହୋଇଛି ତାହା ବରଜୋର ସିଂହ ତାଙ୍କ ନିଜ ହାତରେ କରି ଦେଇଯାଇଛନ୍ତି । ଆଇନ ଅନୁସାରେ ତ ଫସଲ ନିଶ୍ଚୟ ତମର, ତେହେଲେ ପରପାଇଁ ଟିକିଏ ଦୟା ଓ ଉପକାର କରିବା ପାଇଁ ମୁଁ ତୁମକୁ କହୁଛି ।"

କେଦେଇଙ୍କ ମୁହଁରେ ପୁଣି ହସ ଖେଳିଗଲା । ସେ କହିଲେ, "ଠାକୁର, ସତରେ ତମେ କେଡ଼େ ଭଲ ମଣିଷ; କେଡ଼େ ବଡ଼ ତମର ହୃଦୟ ! ତମେ ନିଜେ ଲଚ୍ଛୁରାମକୁ କହିଦିଅ ସେ ବର୍ତ୍ତମାନ ଦଖଲ ବନ୍ଦ କରିଦେଉ, ତମ କଥା ମୁଁ କ'ଣ କେବେ ଟାଳି ପାରିବ ?" ସେ ପୁଣି କହିଲେ, "ଠାକୁର, ତୁମେ ଖାଇକରି ଯିବ । ମୁଁ ନିଜେ ତମ ଖାଇବା ଏଇ ସାଙ୍ଗେ ସାଙ୍ଗେ ତିଆରି କରି ଦେଉଛି । ତମେ ବସ, ଟିକିଏ ବିଶ୍ରାମ ନିଅ ।"

"ଏଇ ଥରଟା ମୋତେ କ୍ଷମାକର ଭାଉଜ, ମୁଁ ବାପାଙ୍କୁ କହିକରି ଆସିନାହିଁ । ସେ ଖାଇବାପାଇଁ ମୋତେ ଅପେକ୍ଷା କରି ବସିଥିବେ । ଆଉ ଏଣିକି ଆସିଲେ ଘରେ ଖାଇବା ପାଇଁ ମନା କରିଦେଇ ଆସିବି, ତମରି ହାତର ପରଷା ଖାଇ ଫେରିବି ।"

"ଆଚ୍ଛା, ତମର କଥା ହେଲା, ତେବେ କିଛି ଜଳଖିଆ ଖାଇଦେଇ ଯା ।"

ଜଳଖିଆ ଖାଇସାରି ଜ୍ୱାଲାପ୍ରସାଦ ଯେତେବେଳେ ବାହାରିଲେ, ଦେଖିଲେ ବାହାର ପାଖେ ଲଚ୍ଛୁରାମ ତାଙ୍କ ଅପେକ୍ଷାରେ ବସିଛି । ଜ୍ୱାଲାପ୍ରସାଦ ଆସିଲା ମାତ୍ରେ ସେ ଉଠିପଡ଼ି ଛିଡ଼ା ହୋଇ କହିଲା, "କେମିତି ଆଜି ଏତେ କଷ୍ଟ କଲେ ?"

ଜ୍ୱାଲାପ୍ରସାଦ ଉତ୍ତର ଦେଲେ, "ଭଲ ହେଲା ଲଚ୍ଛୁରାମ, ତମେ ଆସିଲ । ଶୁଣିଲି ତମେ

ଗୃହେଦନ ଭିତରେ ବରଜୋର ସିଂହଙ୍କର ଜମି ଦଖଲ ନେବାକୁ ଠିକ୍ କରିଛ ।"

"ଆଜ୍ଞା, ଲମ୍ବରଦାରଣୀ ଦଖଲ ପାଇଁ ହୁକୁମ ଦେଇଛନ୍ତି । ଦଖଲ ପାଇଁ ବହୁତ ଡେରି ହୋଇଗଲାଣି । ଫସଲ କାଟିବା ସମୟ ବି ହୋଇଗଲାଣି ।"

"ବୁଝିଲ ଲଚ୍ଛୁରାମ, ଫସଲ କାଟିବା ସମୟ ହୋଇଗଲାଣି । ସେଇଥିପାଇଁ ମୁଁ କହିବାକୁ ଆସିଛି ସେମାନେ ଫସଲ କାଟି ନ ନେବା ଯାଏ ତମେ ଦଖଲ କରିବ ନାହିଁ । ମୁଁ ଲମ୍ବରଦାରଣୀଙ୍କ ସଂଗେ କଥାବାର୍ତ୍ତା କରିଛି । ସେ ରାଜି ହୋଇଛନ୍ତି ଓ ତମକୁ ଏହି କଥା ଜଣାଇ ଦେବା ପାଇଁ କହିଛନ୍ତି ।"

ଜ୍ୱାଲାପ୍ରସାଦଙ୍କ କଥା ଲଚ୍ଛୁରାମକୁ ଭଲ ଲାଗିଲାନାହିଁ । ସେ କହିଲା, "ଲମ୍ବରଦାରଣୀ ନିଜେ ମାଲିକ, ସେ ଯାହା ଚାହିଁବେ ତାହା କରିବେ । କିନ୍ତୁ ଦେଖନ୍ତୁ ନାଏବ ସାହେବ, ଜମିବାଡ଼ି କଥାରେ ଦୟାଧର୍ମର ଜାଗା ନାହିଁ । ଏଥିପାଇଁ ଲମ୍ବରଦାରଣୀ କେମିତି ରାଜି ହୋଇଗଲେ ?"

ଲଚ୍ଛୁରାମର ଏ ପ୍ରକାର ଆକ୍ଷେପ ଜ୍ୱାଲାପ୍ରସାଦଙ୍କୁ ଟିକିଏ ଅଡ଼ୁଆ ଲାଗିଲା । ସେ ଟିକିଏ କର୍କଶ ଭାବରେ କହିଲେ, "ଯା, ସେ କଥା ତୁ ତୋ ମାଲିକାଣୀଙ୍କୁ ପଚାରିବୁ । ମୁଁ ଜାଣେ, ପ୍ରଭୁଦୟାଲ ଓ ତାଙ୍କ ସ୍ତ୍ରୀଙ୍କ ଭିତରେ ଆକାଶ ପାତାଳ ପ୍ରଭେଦ । ମୋର ବର୍ତ୍ତମାନ ତମକୁ ଏତିକି କହିଦେବା କଥା ଯେ ତମେ ବର୍ତ୍ତମାନ ଜମି ଦଖଲ କରିବା ପାଇଁ ଚେଷ୍ଟା କରନାହିଁ । ବୁଝିଲିଟି !" ଲଚ୍ଛୁରାମର ଉତ୍ତରକୁ ଅପେକ୍ଷା ନ କରି ଜ୍ୱାଲାପ୍ରସାଦ ସେଠାରୁ ଚାଲିଗଲେ ।

ଲଚ୍ଛୁରାମ ତା' ପରେ ଯାଇ ଜେଦେଇଙ୍କ ପାଖରେ ପହଞ୍ଚିଲା । ସେତେବେଳକୁ ସେ ଆଖିବୁଜି ପଲଙ୍କ ଉପରେ ବିଶ୍ରାମ କରୁଥିଲେ ଓ ମନରେ ନାନା ପ୍ରକାର ସ୍ୱପ୍ନ ଦେଖୁଥିଲେ । ଲଚ୍ଛୁରାମର ପାଦଶବ୍ଦ ଶୁଣିଲା ମାତ୍ରେ ତାଙ୍କର ସବୁ ସ୍ୱପ୍ନ ଉଭେଇ ଗଲା । ଆଖି ଖୋଲି ସେ ଲଚ୍ଛୁରାମ ପାଖରେ ଛିଡ଼ା ହୋଇ କହିଲେ, "ଲଚ୍ଛୁ, ଖବର କଅଣ ?"

ଲଚ୍ଛୁରାମ ଟିକିଏ ଭାବପ୍ରବଣ ହୋଇ କହିଲା, "କ'ଣ ମାଲିକାଣୀ, ଏ ଘରେ ଏବେ କ'ଣ ନାଏବ ସାହେବଙ୍କ ହୁକୁମ ଚାଲିବ ?"

ଲଚ୍ଛୁରାମର ଏ ପ୍ରକାର ରୁକ୍ଷ କଥା ଜେଦେଇଙ୍କୁ ଭଲ ଲାଗିଲା ନାହିଁ । ତେବେ ମନ କଥା ମନରେ ଚପାଇ ଟିକିଏ ହସିଦେଇ ସେ କହିଲେ, "ନାହିଁ, ତା' ନୁହେଁ, ମୁଁ ତାଙ୍କୁ କହିଥିଲି ତମ ସଂଗେ କଥାବାର୍ତ୍ତା କରିବା ପାଇଁ । ଏ ତ ଗୋଟାଏ ଅତି ଛୋଟ କଥା, ଏଥିରେ ଏତେ ବିରକ୍ତ ହେବାର କ'ଣ ଅଛି ?"

ଲଚ୍ଛୁରାମ କହିଲା, "କିନ୍ତୁ ମାଲିକାଣୀ, ଆପଣ ମୋ ସଂଗେ ଆଗରୁ କଥାବାର୍ତ୍ତା କରି ନେଇଥିଲେ ଭଲ ହୋଇଥାନ୍ତା । ଆପଣ ମୋତେ ଏ ଘରର ବୁଝାସୁଝା ଭାର

ଦେଇଛନ୍ତି ନା ?'

ଜେଦେଇ ଏଥର ଖୁବ୍ ଜୋରରେ ହସିଦେଇ କହିଲେ, "ହିଁ, ମୁଁ ତମକୁ ଏ ଘରେ ହର୍ତ୍ତାକର୍ତ୍ତା କରିଛି । କିନ୍ତୁ ତମେ କ'ଣ ଜାଣ, ନାଏବ ସାହେବ ଜଣେ ଦେବତା, ସେ ଆମକୁ କେତେ ସାହାଯ୍ୟ କରନ୍ତି ?"

ଲଚ୍ଛିରାମ କହିଲା, "କିନ୍ତୁ ମାଲିକାଣୀ, ମୁଁ ଭାବୁଛି ଆମର ଦଖଲ ନେଇଯିବା ଦରକାର ।"

ଜେଦେଇ ଟିକିଏ ଗମ୍ଭୀର ହୋଇ କହିଲେ, "ବୁଝିଲ ଲଚ୍ଛି, ଏହି ଦଖଲ ପାଇଁ ତ ତମ ମାଲିକଙ୍କର ଜୀବନ ଗଲା । ତମେ ତ ବର୍ତ୍ତମାନ ମୋର ଏକମାତ୍ର ଆଶ୍ରୟ । ତମେ କ'ଣ ଭାବୁଛ, ମୁଁ ତୁମକୁ ହରାଇ ବସିବି ?"

ଲଚ୍ଛିରାମ ଟିକିଏ ବ୍ୟସ୍ତ ହୋଇପଡ଼ି କହିଲା, "କାହିଁକି, ଏଥିରେ କ'ଣ କିଛି ଗଣ୍ଡଗୋଳ ଅଛି କି ? ନାଏବ ସାହେବ ଏହି କଥା କହିବା ପାଇଁ ଆସିଥିଲେ କି ?"

ଲଚ୍ଛିରାମକୁ ଡରାଇ ଦେବା ପାଇଁ ଜେଦେଇଙ୍କୁ ଟିକିଏ ମଜା ଲାଗିଲା । ସେ କହିଲେ, "ହିଁ, ସେ ଏମିତି କିଛି ଖବର ଶୁଣିଥିଲେ । ଆଠ ଦଶ ଜଣ ଲଠିଧାରୀ ଲୋକ ଗଜରାଜ ସିଂହଙ୍କ ବନ୍ଧୁ ଘରୁ ଆସି ତାଙ୍କ ଘରଠାରେ ଅପେକ୍ଷା କରି ରହିଛନ୍ତି । ନାଏବ ସାହେବ ଆସିଲାବେଳେ ସେଠୁ ପ୍ରାୟ କୋଶେ ବାଟରେ ଦୁଇଜଣ ବନ୍ଧୁକଧାରୀ ଲୋକଙ୍କୁ ଦେଖିଲେ । ତାଙ୍କୁ ପଚାରିବାରୁ ସେମାନେ କହିଲେ, ସେମାନେ ଗଜରାଜ ସିଂହଙ୍କ ବନ୍ଧୁବାନ୍ଧବ; ଶିକାର କରିବା ପାଇଁ ଆସିଛନ୍ତି ।"

କଥା ଶୁଣି ଲଚ୍ଛିରାମ ଦେହରୁ ଝାଳ ବାହାରିଗଲା । ପଚାରିଲା, "ମାଲିକାଣୀ, ଏସବୁ ଦେଖି ପୁଲିସ ଓ ସରକାର କ'ଣ ଚୁପ୍‌ଚାପ୍ ବସିଥିବେ ?"

"ମୁଁ ସେକଥା କ'ଣ ଜାଣେ ? ତମେ ତ ଜାଣିଛ ଥାନା ଅଫିସର ଅମଜଦ୍ ଅଲ୍ଲୀ ଆମକୁ ଠିକ୍ ବେଳରେ କେମିତି ଠକିଲା ? ନାଏବ ସାହେବ ଯେତେବେଳେ ଆମର ଆଶ୍ରା ହୋଇ ଛିଡ଼ା ହୋଇଛନ୍ତି, ସେତେବେଳେ ତାଙ୍କ କଥାକୁ ତୁମେ କାହିଁକି ଏତେ ଧରିବସୁଛ ? ଆମମାନଙ୍କର ଆଶ୍ରା ଭଗବାନ ।"

ଲଚ୍ଛିରାମ ଏବେ କହିଲା, "ନାହିଁ, ତା ହେଲେ ନାଏବ ସାହେବ ଯେମିତି କହିବେ ଆମେ ସେମିତି କରିବା । ସେଥିରେ ଏତେ ଟିକେ ଏପାଖ ସେପାଖ ହେବ ନାହିଁ ?"

ଜେଦେଇ ଟିକିଏ ହାଇମାରି କହିଲେ, "ଆଜି ମୋ ଦେହଟା ଭଲ ନାହିଁ । ଖାଇବା ବେଳ ହେଲାଣି, ତମେ ଘରକୁ ଯାଅ । ନାଏବ ସାହେବ କହିଛନ୍ତି, ସବୁ ଠିକ୍ କରି ଦେବେ; ହେଲେ ତମେ ଟିକିଏ ସାବଧାନ ଥିବ ।"

ଲଚ୍ଛିରାମ ବର୍ତ୍ତମାନ ନିଜ ଘରକୁ ବାହାରିଲା ବେଳକୁ ଏକା ଏକା ଯିବାପାଇଁ ମଧ୍ୟ ଦମ୍ ପାଇଲା ନାହିଁ । ସାଙ୍ଗରେ ଜଣେ ଲୋକ ନେଇକରି ସେ ଗଲା ।

## ଛଅ

**ହୋଲି**ଯାତ୍ରାକୁ ରାଜପୁର ଯିବା ପାଇଁ ରାମସହାୟ ଶିବଲାଲ, ଜ୍ୱାଳାପ୍ରସାଦ ଓ ଯମୁନାଙ୍କୁ ଅତି ଆଗ୍ରହରେ ନିମନ୍ତ୍ରଣ କରିଥିଲେ । ମୁନସି ଶିବଲାଲ ରାମସହାୟଙ୍କ ଚିଠି ପାଇ ଜ୍ୱାଳାପ୍ରସାଦଙ୍କୁ କହିଲେ, "ତୁମର ମାମୁ ବଡ଼ ଆଦରରେ ଡକାଇଛନ୍ତି, ଆମର ଯିବା ଦରକାର । ରାଜପୁରରେ କିଛି ଦିନ ରହିଯିବା ପାଇଁ ମୋର ଇଚ୍ଛା ହେଉଛି । ବୁଲାବୁଲି କରିବା ଛଡ଼ା ମୋର ଏବେ ଆଉ କାମ କ'ଣ ?"

"କିନ୍ତୁ ବାପା, ମୋତେ ଯେ କେତୋଟି ଛୁଟି ନେବାକୁ ପଡ଼ିବ । ଏସବୁ ଯାନିଯାତ୍ରା ସରକାରୀ ଅଫିସରଙ୍କ ପାଇଁ ନୁହଁ; ବରଂ ଅଫିସରଙ୍କୁ ସେତିକିବେଳେ ବେଶି କାମ ପଡ଼େ । ଆପଣ ଆପଣଙ୍କ ବୋହୂକୁ ସାଙ୍ଗରେ ନେଇ ଚାଲିଯା'ନ୍ତୁ । ଛୁନକୀ ଝିଅଙ୍କୁ ବି ନେଇ ଯା'ନ୍ତୁ । ଏକା ଭିକ୍ଷୁ ରହିଲେ ଆମର ଢେର ।"

ଛୁନକୀ ପାଖରେ ଛିଡ଼ା ହୋଇଥିଲା; ଏ କଥା ଶୁଣି କହିଲା, "ବୋହୂ ତ ଏବେ ରହିକରି ଆସିଛନ୍ତି, ପୁଣି ଯିବେ କେମିତି ? ଆମ ଏଠି ତ ପୁଣି ହୋଲି ହେବ । ବଡ଼ ଅଫିସରଙ୍କ ଘର, ଲୋକେ ଆସିବେ, ନାଚ ତାମସା ହେବ । ତାକୁ ସବୁ ପୁଣି କିଏ ସମ୍ଭାଳିବ ? ନାହିଁ ତମେ ତ ସେଠି ବେଶୀ ଦିନ ରହିବ ନାହିଁ । ଏକୁଟିଆ ଚାଲିଯାଅ ।"

ଜ୍ୱାଳାପ୍ରସାଦ କହିଲେ, "ଚାଲନ୍ତୁ, ମୁଁ ଆପଣଙ୍କ ସଂଗରେ ଦିନକ ପାଇଁ ରାଜପୁର ଯିବି, ଆପଣଙ୍କୁ ଛାଡ଼ିଦେଇ ଚାଲି ଆସିବି । ମୋର ସେଠିକି ଯିବା କାମଟା ବି ହୋଇଯିବ ।"

ଶିବଲାଲଙ୍କୁ ରାଜପୁରରେ ଛାଡ଼ି ଜ୍ୱାଳାପ୍ରସାଦ ଫେରିଆସି ଘରଠି ଦେଖିଲେ ଗଜରାଜ ସିଂହ ତାଙ୍କୁ ଅପେକ୍ଷା କରି ବସିଛନ୍ତି । ଜ୍ୱାଳାପ୍ରସାଦ ଘୋଡ଼ାଗାଡ଼ିରେ ଫେରିଲା ବେଳେ ଗଜରାଜ ସିଂହ ତାଙ୍କୁ ଘର ପାଖରେ ଦେଖିଥିଲେ; କିନ୍ତୁ ସେ ତାଙ୍କ ତହସିଲ ଅଫିସ ପାଖରେ ବୋଧେ ଅଟକି ଯାଇଥିଲେ ।

"କ୍ଷମା କରିବେ ନାଏବ ସାହେବ ! ସେଦିନ ପରେ ମୁଁ ଆଉ ଆପଣଙ୍କ ସଂଗେ ଦେଖା କରିବାକୁ ଆସିପାରିନାହିଁ । ଝିଅକୁ ଛାଡ଼ିବା ପାଇଁ ରାଜପୁର ଚାଲିଯାଇଥିଲି । ମୋର ତ ଯିବା କଥା ନୁହେଁ; ତେବେ ବାଧ୍ୟ ହୋଇ ଯାଇଥିଲି । ଏବେ ତ ଆଉ ପାଖରେ କେହି ଲୋକ ନାହିଁ । ବରଜୋର ତ ଥିଲା, ଚାଲିଗଲା । ଝିଅକୁ କାଲି ଛାଡ଼ିଦେଇ ଆସିଲି । ପ୍ରଥମ ହୋଲିଟା ନା ! ଆପଣଙ୍କ ଖବର ନେଇ ବୁଝିଲି ଯେ ଆପଣ ଆଜି ଫେରିବେ ।

ଜ୍ୱାଲପ୍ରସାଦ ଗଜରାଜ ସିଂହଙ୍କୁ ଖଣ୍ଡେ ପାନ ମାଗି କହିଲେ, "ଆପଣ ବରଜୋରଙ୍କ ଜମି ବିଷୟରେ ଯାହା କହିଥିଲେ ମୁଁ କରି ଦେଇଛି । ବର୍ତ୍ତମାନ ଲମ୍ବରଦାରଣୀ ଜମି ଦଖଲ ପାଇଁ କୌଣସି ବ୍ୟବସ୍ଥା କରିବେ ନାହିଁ । ଫସଲ କାଟିସାରି ଆପଣ ନିଜେ ତାଙ୍କୁ ଦଖଲ ଦେଇଦେବେ । କଚେରି-ଦାଚେରି କରିବା କିଛି ଦରକାର ନାହିଁ । ସେଦିନ ତାଙ୍କ ସଂଗରେ ମୁଁ ସବୁକଥା ଠିକ୍ କରି ନେଇଛି ।"

"ଜ୍ୱାଲବାବୁ, ଆପଣ ସେ ଅନାଥମାନଙ୍କର ବହୁତ ଉପକାର କରିଛନ୍ତି । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ମୁଁ ଏ ଖବର ବରଜୋର ସ୍ତ୍ରୀ ପାଖରେ ପହଞ୍ଚାଇ ଦେବି । ସେ ବର୍ତ୍ତମାନ ବାପଘରକୁ ଚାଲିଯାଇଛି । ଜମି ଦଖଲ ଦେବା ଦାୟିତ୍ୱ ମୋ ହାତରେ ଅଛି ।

ଠାକୁର ଗଜରାଜ ସିଂହ ବଡ଼ ଖୁସି ହୋଇ ଘରକୁ ଫେରିଗଲେ ।

ତହିଁ ଆରଦିନ ସଂଧ୍ୟାବେଳେ ଗଜରାଜ ସିଂହ ପୁଣି ଆସି ଜ୍ୱାଲପ୍ରସାଦଙ୍କ ଘରେ ପହଞ୍ଚିଲେ । ମୁହଁ ତାଙ୍କର ଖୁବ୍ ପ୍ରସନ୍ନ ଦେଖାଯାଉଥିଲା । ସବୁଆଡ଼େ ହୋଲି ଧୂମ୍‌ଧାମ୍, ବାୟୁମଣ୍ଡଳରେ ଏକପ୍ରକାର ଆନନ୍ଦ ଉଲ୍ଲାସ । ଗଜରାଜ ସିଂହ ହୋଲି ଦିନ ତାଙ୍କ ଘରଠାରେ ଭୋଜନ କରିବା ପାଇଁ ଜ୍ୱାଲପ୍ରସାଦଙ୍କୁ ନିମନ୍ତ୍ରଣ କରିବା ପାଇଁ ଆସିଥାନ୍ତି । ସେ କହିଲେ, "ଦେଖନ୍ତୁ ଜ୍ୱାଲବାବୁ, ଯାହା ତ ହେବାର ହୋଇଗଲାଣି । ନ୍ୟାୟ ଦୃଷ୍ଟିରେ ଯାହା ଠିକ୍, ଆପଣ ତାହାହିଁ କରିଛନ୍ତି । ଆପଣଙ୍କୁ ଶତ୍ରୁ ବୋଲି ଭାବିବା ବରଂ ମୋର ଭୁଲ । ମୁଁ ଏବେ ନିଜକୁ ନିଜେ ଅପରାଧୀ ବୋଲି ଭାବୁଛି । ଆପଣ ଆମ ଘରେ ନିମନ୍ତ୍ରଣ ରକ୍ଷାକଲେ ମୁଁ ଜାଣିବି ଯେ ଆପଣ ମୋତେ କ୍ଷମା କରିଛନ୍ତି । ଆପଣଙ୍କ ସ୍ତ୍ରୀଙ୍କ ପାଇଁ ରାଣୀସାହେବାଙ୍କର ସ୍ୱତନ୍ତ୍ର ନିମନ୍ତ୍ରଣ ଅଛି ।"

ଗଜରାଜ ସିଂହଙ୍କ ନିମନ୍ତ୍ରଣରେ ଯେଉଁ ଆତ୍ମୀୟତା ଥିଲା ଜ୍ୱାଲପ୍ରସାଦ ତାକୁ ଅସ୍ୱୀକାର କରି ପାରିଲେ ନାହିଁ । କହିଲେ, "ନିଶ୍ଚୟ ଯିବି ଠାକୁର ସାହେବ ! ଦୁନିଆରେ ଭଲ ମନ୍ଦ ଲାଗିଛି । ମଣିଷ ଭୁଲ କରୁଛି ଓ ସେଥିପାଇଁ ଦଣ୍ଡ ବି ପାଉଛି । ନିଜ ଭାବନାର ଊର୍ଦ୍ଧ୍ୱକୁ ଉଠିବା ଲୋକ ଦୁନିଆରେ ଖୁବ୍ କମ୍ ଅଛନ୍ତି । ମଣିଷର ଭାବନା ବି ଅନେକ ସମୟରେ ତାର ସୀମା ଡେଇଁ ଚାଲିଯାଏ; କିନ୍ତୁ ସେହି ଭାବନା ଯେତେବେଳେ ତାର ସୀମା ଭିତରକୁ ପୁଣି ଫେରିଆସେ କେତେ ଭଲ ଲାଗେ ସତେ !"

ହୋଲି ଜଳା ପରଦିନ ରଂଗ ଖେଳ । ଜ୍ୱାଲପ୍ରସାଦଙ୍କ ସଂଗରେ ରଂଗ ଖେଳିବା ପାଇଁ ଘାଟମପୁରର ପ୍ରାୟ ସବୁ ଲୋକ ଆସିଥିଲେ । ଖୁବ୍ ଆଦର ଅଭ୍ୟର୍ଥନା ହେଲା । ସକାଳୁ ପିଆପିଇ ଆରମ୍ଭ ହୋଇ ଯାଇଥିଲା । ଜ୍ୱାଲପ୍ରସାଦଙ୍କୁ ବି ଲୋକଙ୍କ ସଂଗରେ ପିଇବାକୁ ପଡ଼ିଥିଲା ।

ଦୁଇ ପ୍ରହର ବେଳକୁ ଯମୁନାକୁ ସଂଗରେ ନେଇ ଜ୍ୱାଲପ୍ରସାଦ ଠାକୁର ଗଜରାଜ ସିଂହଙ୍କ ଘରେ ପହଞ୍ଚିଲେ । ଯମୁନା ଘର ଭିତରକୁ ଚାଲିଗଲା । ବାହାରେ ଗଜରାଜ ସିଂହଙ୍କ ଅଫିସ ଘରେ ନାଚଗୀତ ଚାଲିଥିଲା । ଗାଉଁଲି ନାଚୱାଲି ନାଚ କରୁଥିଲେ । ଲୋକଙ୍କ ଭିତରେ ମଦପିଆ ଖୁବ୍ ଚାଲିଥିଲା ।

ପ୍ରାୟ ଦୁଇଟା ବେଳକୁ ଯାତ୍ରା ଭାଙ୍ଗିଲା । ଲୋକେ ଖାଇବା ପାଇଁ ବସିଗଲେ । ଗଜରାଜ ସିଂହ ଜ୍ୱାଲପ୍ରସାଦଙ୍କୁ ନିଜ ପାଖରେ ବସାଇଲେ । ବରଜୋର ସିଂହଙ୍କର ଦୁଇପୁଅ ପଙ୍ଗତରେ ପରଷୁଥିଲେ । ଗଜରାଜ ସିଂହ କହିଲେ, "ଜ୍ୱାଲବାବୁ, ଏ ପିଲାଙ୍କ ଘରେ ଏ ବର୍ଷ ହୋଲି ହେଉନାହିଁ । ତେଣୁ ସେମାନଙ୍କୁ ମୁଁ ଏଠିକୁ ଡକାଇ ଆଣିଛି । ପିଲା ଲୋକ ସେମାନେ । କ'ଣ ହଜେଇଛନ୍ତି ବୁଝିବେ କୁଆଡ଼ୁ ?" ସେମାନଙ୍କର ମା' ହୁଏତ ଆଜି ଚୁନୌଠାରେ ବସି ଆଖିରୁ ଲୁହ ଗଡ଼ାଉଥିବ । ସାକ୍ଷାତ୍ ଲକ୍ଷ୍ମୀ ସିଏ । କିନ୍ତୁ ଭଗବାନ କେଉଁ ପାପରୁ ତାକୁ ଏ ଦଣ୍ଡ ଦେଲେ କେଜାଣି ? ଆପଣ ଏମାନଙ୍କର ବହୁତ ଉପକାର କରିବେ ଜ୍ୱାଲବାବୁ ! ଅନ୍ତତଃ ଏମାନେ ନିଜ ଘରକୁ ତ ଲେଉଟି ପାରିବେ !"

ଜ୍ୱାଲପ୍ରସାଦଙ୍କ ଆଖି ନିଶାରେ ଲାଲ ପଡ଼ିଯାଇଥିଲା । କିନ୍ତୁ ଏ କରୁଣ କାହାଣୀ ଶୁଣି ହୃଦୟ ତାଙ୍କର କରୁଣାରେ ଉଚ୍ଛୁଳି ଉଠିଲା । ବଡ଼ କରୁଣ କଣ୍ଠରେ ସେ କହିଲେ, "ମୋ ଅଜଣାରେ ଏମାନଙ୍କ ପ୍ରତି ମୁଁ ଯାହା ଭୁଲ କରି ପକାଇଲି ସେ ତୁଳନାରେ ଏ ଉପକାର ଅବଶ୍ୟ କିଛି ନୁହେଁ ।"

ଗଜରାଜ ସିଂହ ଖୁବ୍ ଅନୁଭବୀ ଲୋକ । ସେ ବର୍ତ୍ତମାନ ସୁଯୋଗ ଉଣ୍ଡି ପଚାରିଲେ, "ନାଏବ ସାହେବ, ଲମ୍ବରଦାରଣୀ ଆପଣଙ୍କୁ ବହୁତ ଖାତିର କରନ୍ତି । ଆପଣ କ'ଣ ବରଜୋର ସିଂହର ଏହି ଶହେ ବିଘା ଜମିର ପଟ୍ଟା ତାଙ୍କଠାରୁ ଆଣି ଏମାନଙ୍କ ନାମରେ କରାଇଦେଇ ପାରିବେ ?"

ଜ୍ୱାଲପ୍ରସାଦ କ'ଣ ଟିକିଏ ଚିନ୍ତା କଲାପରି କହିଲେ, "ହଁ, ହେବାରେ ତ କୌଣସି ବାଧା ନାହିଁ । ଜମିର ପଟ୍ଟା ତ ପୁଣି କାହା ନାଁରେ ହେଲେ କରିବାକୁ ହେବ । କେବଳ ନଜର ଟଙ୍କା ଯାହା ଦେବାକୁ ପଡ଼ିବ । ହଉ, ନଜର ଟଙ୍କା ଶହେ ଦେଡ଼ଶ' ପଡ଼ିଲେ ମୁଁ ଛାଡ଼ କରାଇଦେବି । ଆପଣ ଯଦି କହିବେ ମୁଁ ଚେଷ୍ଟା କରିବି ।"

ଗଜରାଜ ସିଂହ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ଆଜ୍ଞା, ରାଜବଂଶର ପିଲାଙ୍କୁ ରସ୍ୱତ କରିବାକୁ ପଡ଼ିଲା, ସେଇ ହେଉଛି ଦୁର୍ଭାଗ୍ୟ । ହେଲେ କ'ଣ କରାଯିବ, ସମୟ ତ ସବୁ କରେ । ବିଧିର ବିଧାନକୁ କେହି ଆଡ଼େଇ ଦେଇପାରେ ନାହିଁ । ଭୋକରେ ମରିବା ଅପେକ୍ଷା ଜମିବାଡ଼ି ଚଷିବା ନିଶ୍ଚୟ ବହୁତ ଭଲ । ଜ୍ୱାଲବାବୁ, ଆପଣ ଏତିକି

କରିଦେଲେ ଏମାନଙ୍କର ବହୁତ ଉପକାର ହେବ । କୌଣସିମତେ ଏମାନଙ୍କର କାଳ ତ ମେଣ୍ଟିଯିବ !"

ଗଜରାଜ ସିଂହଙ୍କ କଣ୍ଠରେ ଯେପରି କାରୁଣ୍ୟ, ସେହିପରି ଆକ୍ଷେପ ଭରି ରହିଥିଲା । ଜ୍ୱାଲାପ୍ରସାଦଙ୍କର ମନ ଧୀରେ ଧୀରେ ବ୍ୟାକୁଳ ହୋଇ ଉଠୁଥିଲା । ଖାଇବାପାଇଁ ତାଙ୍କର ଆଉ ଆଗ୍ରହ ହେଉ ନଥିଲା ଓ ସେ ମନ ଦୁଃଖରୁ କିମ୍ବା ମଦନିଶାରୁ ଖାଇବାପାଇଁ ଇଚ୍ଛା କରୁ ନ ଥିଲେ କହିବା କଷ୍ଟ । ତେବେ ଖାଇସାରି ମନରେ ବହୁତ ଚିନ୍ତା ଧରି ଜ୍ୱାଲାପ୍ରସାଦ ଘରକୁ ଫେରିଲେ । ରାଣୀ ଦେବକୁଅଁର ସେଦିନ ଯମୁନା ଓ ଚୁନିକାଙ୍କୁ ତାଙ୍କ ଘରେ ରଖାଇ ନେଲେ । ଭିକ୍ଷୁ ହୋଲି ଗୀତ ଗାଇବାପାଇଁ ତାଙ୍କ ସମାଜର ଲୋକମାନଙ୍କ ପାଖକୁ ଚାଲିଯାଇଥିଲା ।

ଘରକୁ ଆସି ଜ୍ୱାଲାପ୍ରସାଦ ବିଛଣାରେ ପଡ଼ିଗଲେ । ବରଜୋର ସିଂହଙ୍କର ପିଲାପିଲିଙ୍କ କଥା ଭାବି ଭାବି ତାଙ୍କୁ ଆଦୌ ନିଦ ହେଲାନାହିଁ । ସେ ବିଛଣାରେ ପଡ଼ି ଏପଟ ସେପଟ ହେଉଥାନ୍ତି । ବାହାରେ ଚାରିପାଖେ ନାଚଗୀତ ଚାଲିଥାଏ; କିନ୍ତୁ ସେ ଉଦାସଭାବରେ ଘର ଭିତରେ ପଡ଼ିଥାନ୍ତି ।

ସତେ ଯେମିତି ନିଜ ଉଦାସ ଭାବ ସହିତ ବିଦ୍ରୋହ କରିବାପାଇଁ ସେ ଉଠି ଛିଡ଼ା ହୋଇ ପଡ଼ିଲେ ଏବଂ ଲୁଗାପଟା ପିନ୍ଧି ନିଜ ଘୋଡ଼ାଗାଡ଼ି ଠିକ୍ କରି ସେଇ ଅଚେତନ ଅବସ୍ଥାରେ ଶିବପୁରୀ ଚାଲିଲେ ।

ସେତେବେଳକୁ ଭରି ଖରା । ଚାରିଆଡ଼େ ଧୂଳି ଉଠୁଥାଏ । ରଂଗଖେଳ ଯଦିଓ ବନ୍ଦ ହୋଇଥାଏ ତେବେ କେତେକ ଜାଗାରେ ହୋଲିର ଢୋଲକୀ ଓ ଉନ୍ମତ୍ତ ଗାନ ଶୁଣା-ଯାଉଥାଏ । ଜ୍ୱାଲାପ୍ରସାଦଙ୍କ ମନରୁ ଉଦାସ ଭାବ ଅନେକ କଟିଯାଇଥିଲା । ସେ ଯାଇ ଲାଲା ପ୍ରଭୁଦୟାଳଙ୍କ ବଡ଼କୋଠା ପାଖରେ ପହଞ୍ଚିଗଲେ ।

ପ୍ରଭୁଦୟାଳଙ୍କ ଘରଠାରେ ସବୁ ଶୁନ୍‌ଶାନ୍ ଥିଲା । ରାଧାକୃଷ୍ଣ ମନ୍ଦିର କବାଟ ପଡ଼ିଥିଲା । ଦରୱାନ ଛଡ଼ା ସେଠି ଆଉ କେହି ନ ଥିଲେ । ଏ ବର୍ଷ ଶିବପୁରୀରେ ପ୍ରଭୁଦୟାଳଙ୍କ ଘରେ ହୋଲିଯାତ୍ରା ପାଳନ କରାହେଉ ନ ଥିଲା । ଚାକରବାକର ଯେ ଯୁଆଡ଼େ ହୋଲି କରିବାପାଇଁ ନିଜ ନିଜ ବନ୍ଧୁବାନ୍ଧବ ଘରମାନଙ୍କୁ ଚାଲିଯାଇଥିଲେ । ଜଣେ ଅଧେ କିଏ କେମିତି ଏଠିସେଠି ବସି ଢୁଲାଉଥିଲେ । ଜ୍ୱାଲାପ୍ରସାଦ ସେଇଠୁ ଲେଉଟି-ଯିବାକୁ ଭାବୁଥିଲେ । ଏମିତି ଗୋଟାଏ ଦିନରେ ଜେଦେଇଙ୍କ ପାଖକୁ ଆସିବା ଭୁଲ ହୋଇଗଲା । ପୁଣି ପରମୁହୂର୍ତ୍ତରେ ତାଙ୍କ ଅନ୍ତରରୁ ଯେମିତି କିଏ କହିଲା, "ତମେ ତ ହୋଲି ଖେଳିବାକୁ ଆସିନାହଁ । ବରଜୋର ସିଂହଙ୍କ ପରିବାରର ସମସ୍ୟା ସମାଧାନ କରିବା ପାଇଁ ଆସିଛ ।" ଜ୍ୱାଲାପ୍ରସାଦ ଜେଦେଇଙ୍କ ପାଖକୁ ତାଙ୍କ ଆସିବା ଖବର ପଠାଇଦେଲେ ।

ସେତେବେଳକୁ ଜେଦେଇ ବିଛଣାରେ ଗଡ଼ପଡ଼ ହେଉଥିଲେ । ନିଦ ଭାଙ୍ଗି ଯାଇଥିଲା; କିନ୍ତୁ ଦେହରୁ ଅଳସ ଛାଡ଼ି ନାହିଁ । ଜ୍ୱାଲାପ୍ରସାଦ ଆସିବାର ଶୁଣି ହଠାତ୍ ଅଳସ ଛାଡ଼ିଗଲା । ସେ ଆନନ୍ଦରେ ଉଠି ଛିଡ଼ା ହୋଇପଡ଼ିଲେ, ଚାକରାଣୀ ପଠାଇ ଜ୍ୱାଲାପ୍ରସାଦଙ୍କୁ ଘରେ ବସାଇଲେ ଓ ନିଜେ ଲୁଗାପଟା ସଜାଡ଼ି ଠିକ୍‌ଠାକ୍ ହୋଇ ଯାଇ ପହଞ୍ଚିଲେ । ଦେହରେ ଖାଲି ଧଳା ଶାଢ଼ି, ବେଶଭୂଷା ନାହିଁ, ଅଳଙ୍କାର ନାହିଁ । ଜ୍ୱାଲାପ୍ରସାଦଙ୍କୁ ଦେଖି ସେ ଟିକିଏ ହସ ଫୁଟାଇ କହିଲେ, "ବହୁତ ଧନ୍ୟବାଦ, ଠିଅର ସାହେବ ! ଏହି ହୋଲି ଦିନରେ ବି ଭାଉଜଙ୍କୁ ଭୁଲିନାହଁ । ସତରେ ତମର ବଡ଼ ଦୟା ।" ଏତିକି କହି ଜ୍ୱାଲାପ୍ରସାଦଙ୍କ ଟିକିଏ ଛାଡ଼ି ସେ ବସିଲେ ।

ମାମୁଲି ବେଶଭୂଷାରେ ଜେଦେଇ କେଡ଼େ ସୁନ୍ଦର ଦିଶୁଥିଲେ, ସେହି ଓଠ ହାସ୍ୟରେ କି ମାଧୁରି ଭରିରହିଥିଲା ! ଜ୍ୱାଲାପ୍ରସାଦ କାଲେ କ'ଣ କହିବେ ବୋଲି ଟିକିଏ ଅପେକ୍ଷା କରି ଜେଦେଇ ପଚାରିଲେ, "ଠିଅର ସାହେବ, ଆଜି କ'ଣ ବଡ଼ ଗମ୍ଭୀର ହୋଇ ମତେ ଦେଖୁଛ ? ମନେ ହେଉଛି ହୋଲି ରଙ୍ଗ ଆଜି ଖୁବ୍ ଜମିଛି !" ଏତିକି କହି ସେ ଖୁବ୍ ଜୋରରେ ହସିଦେଇ କହିଲେ, "କ'ଣ କରିବା, ଆମର ତ ଏବର୍ଷ ହୋଲି ହେଲାନାହିଁ, ନହେଲେ ମୁଁ ତ ତୁମକୁ କେତେ ପିଆଇ ଦେଇଥାନ୍ତି ।"

ଜ୍ୱାଲାପ୍ରସାଦ ନୀରବତା ଭାଙ୍ଗି କହିଲେ, "ନାହିଁ ଭାଉଜ, ମୁଁ ପିଇବାପାଇଁ ଆସିନାହିଁ, ଆଜି ଦିନଯାକ ତ ବହୁତ ପିଆ ହୋଇଛି । ତମ ପାଖକୁ ଗୋଟାଏ କାମରେ ଆସିଛି ।"

ଜେଦେଇ ଟିକିଏ ଅଭିମାନ କଲାପରି କହିଲେ, "ଯେତେବେଳେ ଆସିଲେ ତ ଖାଲି ଏଇ କାମ । କାମପାଇଁ ଆସିବା କ'ଣ ଦରକାର; କହି ପଠାଇଥିଲେ ତ ହୋଇଯାନ୍ତା । ମୁଁ ତ ଥରେ କହିଛି, ତମେ ଯାହା କହିବ, ମୋପାଇଁ ତା' ବେଦର ଗାର । ଯାହା କହୁଛ, ହସିକରି କହ । ଏତେ ଗମ୍ଭୀର ହେବା ଦରକାର ନାହିଁ ।"

ଜ୍ୱାଲାପ୍ରସାଦ ଏବେ ଜାଣିପାରିଲେ ସେ ବୋଧହୁଏ ଟିକିଏ ବେଶୀ ଗମ୍ଭୀର ହୋଇ-ପଡ଼ିଛନ୍ତି । ତେଣୁ ଟିକିଏ ହସ ଫୁଟାଇବାକୁ ଚେଷ୍ଟାକରି କହିଲେ, "ଭାଉଜ, ମୁଁ ହରଜୋର ସିଂହ ଜମି କଥା ଭାବୁଥିଲି । ସେ ଜମି କ'ଣ ତାଙ୍କ ପିଲାଙ୍କୁ ମିଳିପାରିବ ନାହିଁ ? ସେମାନେ ବିଚାରା ବାଲ୍‌ବୁଲ୍ ଅନାଥ ହୋଇଗଲେଣି ।"

ଜେଦେଇ ଜବାବ୍ ଦେଲେ, "ତମେ ତ ଠିଅର ଆଇନକାନୁନ ସବୁ ଜାଣ । ମୁଁ ସେ ଜମି କେମିତି ଦେଇପାରିବି ? ହଁ, ସେମାନେ ଯଦି ବର୍ତ୍ତମାନ କରଜ ପାଉଣା ସବୁ ପୂରା କରି ଦିଅନ୍ତେ, ତାହେଲେ ତାଙ୍କୁ ଜମି ମିଳିଯାନ୍ତା । ଆଇନ ଅନୁସାରେ ତ ଆମେ ଏପର୍ଯ୍ୟନ୍ତ ସେ ଜମି ଦଖଲ ନେଇନାହୁଁ ।"

ଜ୍ୱାଲାପ୍ରସାଦ ଟିକିଏ ଭାବପ୍ରବଣ ହୋଇ କହିଲେ, "କିନ୍ତୁ ଭାଉଜ, ସେ ଅନାଥମାନଙ୍କ

ପାଖରେ କରଜ ଶୁଝିବାପାଇଁ ଏତେ ପଇସା କାହିଁ ? ମୋ ପାଖରେ ବି ନାହିଁ, ନଚେତ୍ ମୁଁ ବି ଦେଇଦିଅନ୍ତି ।"

ଜେଦେଇ ଜ୍ୱାଲାପ୍ରସାଦଙ୍କୁ ଚାହିଁଲେ । ସତେ ଯେମିତି କିଛି ସମୟ ପାଇଁ ଜେଦେଇଙ୍କ ଦୃଷ୍ଟି ଜ୍ୱାଲାପ୍ରସାଦଙ୍କ ଦୃଷ୍ଟିରେ ମିଶି ରହିଗଲା । ସେ ହଠାତ୍ ଉଠିପଡ଼ି କହିଲେ, "ବସ, ମୁଁ ଆସୁଛି ।" ଏତିକି କହି ସେ ହଠାତ୍ ବୁଲିପଡ଼ି ଚାଲିଗଲେ ।

ଜେଦେଇଙ୍କ ଏପ୍ରକାର ବ୍ୟବହାର ଦେଖି ଜ୍ୱାଲାପ୍ରସାଦଙ୍କୁ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ସବୁକଥା ଶୁଣିବାପାଇଁ ଜେଦେଇ ତାଙ୍କୁ ସୁଯୋଗ ନଦେଇ ଚାଲିଗଲେ । ତାଙ୍କୁ କେମିତି ସେ ନିଜର ମନକଥା ସବୁ କହିବେ ଭାବୁଛନ୍ତି—ଚାକରାଣୀ ଆସି ଖବର ଦେଲା, "ଲମ୍ବରଦାରଣୀ ଆପଣଙ୍କୁ ଘରଭିତରକୁ ଡାକୁଛନ୍ତି ।"

ଜ୍ୱାଲାପ୍ରସାଦ ଜେଦେଇଙ୍କ ଘରେ ପହଞ୍ଚିଲାବେଳକୁ ଚାକରାଣୀ ସେଠୁ ଚାଲିଯାଇଥିଲା । ଜେଦେଇଙ୍କ ପୂର୍ବ ରୂପ ସମ୍ପୂର୍ଣ୍ଣ ବଦଳି ଯାଇଥିଲା । ଦେହସାରା ଅଳଙ୍କାର ଭରିଯାଇଥିଲା; ଦେହରେ ସୁନା ଜରିଲଗା ଘାଘରା, ମୁଣ୍ଡରେ ରେଶମୀ ଓଢ଼ଣୀ । ଜ୍ୱାଲାପ୍ରସାଦଙ୍କୁ ଦେଖି ସେ କହିଲେ, "ଦିଅର ସାହେବ, ହୋଲି ଦିନରେ ଯେତେବେଳେ ଆସିଛ, ଆଜି ତମକୁ ଭାଉଜ ସାଥୀରେ ହୋଲି ଖେଳିବାକୁ ପଡ଼ିବ ଓ ସେଥିପାଇଁ ଭାଉଜଙ୍କଠାରୁ ହୋଲି ମିଠାଖିଆ ବି ନେବାକୁ ହେବ ।" ଏତିକି କହି ସେ ଜ୍ୱାଲାପ୍ରସାଦଙ୍କ ଆଗରେ ସୁନା ମୋହରର ଗୋଟିଏ ଥଳି ରଖିଦେଇ ପୁଣି କହିଲେ, "ଦିଅର ସାହେବ, ଏହି ସୁନା ମୋହର ନେଇ ମୁଁ ଥରେ ତମପାଖକୁ ଯାଇଥିଲି । ସେତେବେଳେ ତମେ ଅଫିସର ହୋଇଥିଲ; ତେଣୁ ସ୍ତ୍ରୀକୁ ଲାଞ୍ଚ ଭାବି ଫେରାଇ ଦେଇଥିଲ । ଆଜି ମୁଁ ତୁମକୁ ମୋ ଦିଅର ହିସାବରେ ଏହି ଶହେ ସୁନା ମୋହର ଦେଉଛି । ଆଜି ଆଉ ତମେ ମନା-କରି ପାରିବ ନାହିଁ । ଆଉ ଦେଖ, ତମ ପାଖରେ ପଇସା ନାହିଁ ବୋଲି ଆଉ ଦିନେ କେବେ କହିବ ନାହିଁ । କାରଣ ମୋ ପାଖରେ ଯାହା କିଛି ଅଛି, ସେ ସବୁ ତୁମର ।" ଏତିକି କହି ଜ୍ୱାଲାପ୍ରସାଦଙ୍କ ମୁହଁରେ ଜେଦେଇ ମୁଠାଏ ଅବିର ବୋଳିଦେଲେ ।

ସୁନା ମୋହର ଥଳି ଧରି ଜ୍ୱାଲାପ୍ରସାଦ ଜେଦେଇଙ୍କ ଘରୁ ବାହାରିଲା ବେଳକୁ ସନ୍ଧ୍ୟା ଗଡ଼ିଯାଇ ଚନ୍ଦ୍ର ଉଠି ଆସୁଥିଲା । ଲୋକେ ସବୁ ହୋଲି ଗୀତ ଗାଇ ଗାଇ ଦଳ-ଦଳ ହୋଇ ଯିବା ଆସିବା କରୁଥିଲେ । ଜେଦେଇଙ୍କ ଚାକର ଜ୍ୱାଲାପ୍ରସାଦଙ୍କୁ ବାଟେଇ ଦେବାପାଇଁ ଫାଟକ ପର୍ଯ୍ୟନ୍ତ ଆସିଲା । ସେତେବେଳକୁ ରାଧାକୃଷ୍ଣ ମନ୍ଦିର କବାଟ ଫିଟି ସାରିଥିଲା; କିନ୍ତୁ ଦିଅଁ ଦର୍ଶନପାଇଁ ଜ୍ୱାଲାପ୍ରସାଦଙ୍କ ମନରେ ସାହସ ନଥିଲା । ସେ ଭାବୁଥିଲେ ସେ ଚାକର ହୁଏତ ତାଙ୍କୁ ଦେଖି ମନେ ମନେ ହସୁଥିବ, ପରିହାସ କରୁଥିବ । ତାଙ୍କ ହାତରେ ସୁନା ମୋହରର ଥଳି ଥିଲେ ମଧ୍ୟ ଗୋଡ଼ ବିଚଳିତ ଭାବରେ

ପଡ଼ୁଥିଲା । ଦେହ, ମନ, ଆଖି ସବୁଥିରେ ସତେ ଯେମିତି ସେ ଏକପ୍ରକାର ଜ୍ୱଳନ ଅନୁଭବ କରୁଥିଲେ । ନିଜ ଗାଡ଼ିରେ ଚଢ଼ି ତରତରରେ ସେ ଧାଟମପୁରକୁ ଚାଲିଗଲେ ।

## ସାତ

ଠାକୁର ଗଜରାଜ ସିଂହଙ୍କ ଘରେ ଭୋଜି ଖାଇବା ପାଇଁ ମୀର୍ ସଖାବତ୍ ହୁସେନ୍ ଆସିଥିବାର ଦେଖି ଜ୍ୱାଲାପ୍ରସାଦଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ତାଙ୍କୁ ବିନମ୍ର ନମସ୍କାର କରି କହିଲେ, "ହଜୁର, ଆପଣ ଆଜି କେମିତି ନିଜର ନିୟମ ଭାଂଗି ଦେଇଛନ୍ତି । ଗଜରାଜ ସିଂହଙ୍କର ପରମ ଭାଗ୍ୟ, ଆପଣ ଆଜି ତାଙ୍କ ଘରେ ଭୋଜି ଖାଇବା ପାଇଁ ଆସିଛନ୍ତି ।"

ମୀର୍ ସାହେବ ଟିକିଏ ହସିଦେଇ କହିଲେ, "ବୁଝିଲ ବାବା, ନିୟମ ତ ଭାଂଗିବା ପାଇଁ ତିଆରି କରାଯାଇଥାଏ । ଗଜରାଜ ସିଂହଙ୍କ ସମ୍ବନ୍ଧ ଚନ୍ଦ୍ରଭୂଷଣ ସିଂହଙ୍କ କଥା ଭାଂଗିବା କ'ଣ ମୋ ପକ୍ଷରେ ସହଜ ! ସେ ଗଜରାଜ ସିଂହଙ୍କର ଯେମିତି, ମୋର ବି ସେମିତି ମାନ୍ୟ ।" ତାପରେ ସେ ଚନ୍ଦ୍ରଭୂଷଣ ସିଂହଙ୍କୁ ଚାହିଁ କହିଲେ, "ରାଜା ସାହେବ, ଏ ବିଚାରା ଖୁବ୍ ସୁଶୀଳ, ଖୁବ୍ ଭଦ୍ର । ଇଏ ଏଠିକି ନାଏବ ତହସିଲଦାର ହୋଇ ଆସିଛନ୍ତି । କିନ୍ତୁ ବୁଝିବେ, ଇଏ ମୋର ଡାହାଣ ହାତ । ଯେମିତି ବୁଦ୍ଧିମାନ୍, ସେମିତି ସଚ୍ଚୋଟ, ସେମିତି ଖୁବ୍ ଦାୟିତ୍ୱସଂପନ୍ନ ବି ! ମୁଁ ତ ଇଲାକାର ସବୁ କାମ ଏଙ୍କର ହାତରେ ଛାଡ଼ି ଦେଇଛି; କିନ୍ତୁ ଆଜଯାଏ କେବେ କାହାଠୁ କିଛି ଓଜର ଆପତ୍ତି ପାଇନାହିଁ ।

ନଭେମ୍ବର ମାସ ଶେଷ ପ୍ରାୟ । ଶୀତ ପଡ଼ିଆସୁଥାଏ । ରାଜା ଚନ୍ଦ୍ରଭୂଷଣ ସିଂହ ଏଲାହାବାଦରୁ କାନପୁର ଦେଇ ନିଜ ଇଲାକାକୁ ଫେରୁଥାନ୍ତି । ଠାକୁର ଗଜରାଜ ସିଂହଙ୍କ ଅନୁରୋଧରେ ତାଙ୍କ ଘରକୁ ସପ୍ତାହକ ପାଇଁ ଆସିଥାନ୍ତି ଓ ତାଙ୍କର ଖାତିରରେ ସେଦିନ ଗଜରାଜ ସିଂହଙ୍କ ଘରେ ଭୋଜି ହେଉଥାଏ ।

ରାଜା ଚନ୍ଦ୍ରଭୂଷଣ ଏବେ ଜ୍ୱାଲାପ୍ରସାଦଙ୍କୁ ଟିକିଏ ଧ୍ୟାନର ସହିତ ଚାହିଁଲେ; ଦେଖିଲେ ତାଙ୍କର ଆଖି ନିଶାରେ ଲାଲ ହୋଇଯାଇଛି । ସେ ଏକପ୍ରକାର ବ୍ୟଂଗପୂର୍ଣ୍ଣ ହସ ହସି

ମୀର୍ ସାହେବଙ୍କୁ କହିଲେ, "ମୀର୍ ସାହେବ, ମୁଁ ତ ସ୍ୱାଙ୍କୁ ଆଗରୁ ଦେଖିଛୁ । ସ୍ୱାଙ୍କ ବିଷୟରେ ଅନେକ କଥା ଶୁଣିଛୁ ମଧ୍ୟ । ସେ ଯେମିତ ଭଲ, ସେମିତ କର୍ତ୍ତବ୍ୟପରାୟଣ ମଧ୍ୟ ।" ତା'ପରେ ସେ ଜ୍ୱାଲପ୍ରସାଦଙ୍କୁ କହିଲେ, "ଆପଣ ଏଇଠି ଥିଲେ । ମୁଁ ଆପଣଙ୍କୁ କେମିତ ଦେଖିଲି ନାହିଁ ! ମୋର ଧାରଣା ଅଲ୍ପ ଟିକିଏ ପିଇଲେ ଆପଣଙ୍କର କିଛି କ୍ଷତି ହେବ ନାହିଁ । ଆପଣ ନିଜେ ଢାଳିକରି ପିଅନ୍ତୁ । ଗତଥର ବରଜୋର ସିଂହ ଆପଣଙ୍କ ଗ୍ଲାସରେ ମଦ ଢାଳିଥିଲେ । ସେଥିପାଇଁ ଆପଣ ତାଙ୍କୁ ଯାହା ପୁରସ୍କାର ଦେଲେ, ସେ କଥା ଭାବିଲେ ନିଜେ ଢାଳିବାକୁ ମୋତେ ଡର ଲାଗୁଛି ।" ଏତିକି କହି ଚନ୍ଦ୍ରଭୂଷଣ ଖୁବ୍ ଜୋରରେ ହସିଦେଲେ ।

ଗଜରାଜ ସିଂହଙ୍କୁ ଲାଗିଲା କଥାଟା ନିଶ୍ଚୟ ଟିକିଏ ଅଡ଼ୁଆ ହୋଇଯିବ; କାରଣ ଅସଲ କଥାଟା ନ ବୁଝି ଜ୍ୱାଲପ୍ରସାଦଙ୍କୁ ଏପରି ଅପମାନ ଦିଆଗଲା । ସେ ରୁପା ଗ୍ଲାସରେ ମଦ ଭର୍ତ୍ତିକରି ଜ୍ୱାଲପ୍ରସାଦଙ୍କ ଆଡ଼କୁ ବଢ଼ାଇ ଦେଇ ରାଜା ଚନ୍ଦ୍ରଭୂଷଣଙ୍କୁ କହିଲେ, "ରାଜା ସାହେବ, ଆପଣ ନାଏବ ସାହେବଙ୍କୁ ଭୁଲ ବୁଝିଛନ୍ତି । ତାଙ୍କର ଅନୁଗ୍ରହରୁ ଆଜି ବରଜୋର ସିଂହଙ୍କ ବିଧବା ପତ୍ନୀ ଓ ସନ୍ତାନମାନଙ୍କୁ ସେମାନଙ୍କର ହାତଗୃଷ ଜମି ଫେରସ୍ତ ମିଳିଛି ।"

ମୀର୍ ସାହେବ ଏ ପର୍ଯ୍ୟନ୍ତ ସବୁକଥା ଉପରଠାଉରିଆ ଭାବରେ ହସହସିରେ ଶୁଣୁଥିଲେ । ହଠାତ୍ ଚମକିପଡ଼ି କହିଲେ, "ଜ୍ୱାଲପ୍ରସାଦଙ୍କ ଅନୁଗ୍ରହରୁ ବରଜୋର ସିଂହଙ୍କ ବିଧବା ପତ୍ନୀଙ୍କୁ ତାଙ୍କ ହାତଗୃଷ ଜମି କେମିତ ଫେରସ୍ତ ମିଳିଗଲା, ମୋତେ ତ କିଛି ଜଣାନାହିଁ ! କେମିତ ହେଲା, କ'ଣ କ'ଣ ହେଲା, ମୋତେ ଟିକିଏ କହିଲେ !"

ଜ୍ୱାଲପ୍ରସାଦ ପ୍ରସଙ୍ଗକୁ ଏଡ଼ାଇ ଦେଇ କହିଲେ, "ନାହିଁ, ସେମିତ କିଛି ନାହିଁ । ମୁଁ ଭୁଲି ଯାଇଥିଲି । ଖୁବ୍ ମାମୁଲି କଥା, ମୁଁ ପରେ ଆପଣଙ୍କୁ କହିଦେବି ।"

କିନ୍ତୁ ଗଜରାଜ ସିଂହ ଜ୍ୱାଲପ୍ରସାଦଙ୍କ ଗୁଣ ଗାନ କରିବା ପାଇଁ ଚାହୁଁଥିଲେ— ବିଶେଷତଃ ଚନ୍ଦ୍ରଭୂଷଣଙ୍କ ମନରେ ଯେଉଁ ଭୁଲ ଧାରଣା ଥିଲା ତାହା ଯେମିତ ନ ରହେ । ତେଣୁ ଜ୍ୱାଲପ୍ରସାଦ ଯେମିତ କଥାଟାକୁ ଆଡ଼େଇ ଦେବାକୁ ଚାହୁଁଥିଲେ ଗଜରାଜ ସିଂହ ତାହା ଜାଣି ନପାରି କହିବାକୁ ଆରମ୍ଭ କଲେ, "ମୁଁ ଜ୍ୱାଲପ୍ରସାଦଙ୍କୁ କହିଥିଲି ଯେ ପ୍ରଭୁଦୟାଲଙ୍କ ସ୍ତ୍ରୀ ତାଙ୍କ କଥାକୁ ଖାତିର କରୁଥିବାରୁ ସେ ବରଜୋର ସିଂହଙ୍କ ପିଲାଙ୍କ ନାମରେ ଜମିର ପଟ୍ଟା କରାଇ ଦିଅନ୍ତୁ । ଜ୍ୱାଲବାବୁ ବରଜୋର ସିଂହଙ୍କ ବିଧବା ପତ୍ନୀଙ୍କୁ ଶହେ ସୁନା ମୋହର ଦେଲେ ଓ ସେହି ଟଙ୍କାରେ ବରଜୋର ସିଂହଙ୍କର କରଜ ପାଉଣା ଭରଣା କରି ଜମି ଛୁଡ଼ିଦେବା ପାଇଁ ସେ ଜେଦେଇଙ୍କୁ ରାଜି କରାଇ ନେଲେ । ରାଜା ସାହେବଙ୍କୁ ଏସବୁ କଥା ଜଣା ନଥିଲା । ସେଇଥିପାଇଁ ସେ

ଏମିତ କହୁଥିଲେ । କ'ଣ କହୁଛନ୍ତି ରାଜା ସାହେବ ! ଏସ୍ବା ନା' ଆଉ କ'ଣ ?''

ସେଠି ଯେତେ ଲୋକ ଥିଲେ ସମସ୍ତଙ୍କ ଉପରେ ଗଜରାଜ ସିଂହଙ୍କର କଥାର ଖୁବ୍ ପ୍ରଭାବ ପଡ଼ିଲା । ଏକ ବିରାଟ ରହସ୍ୟ ଉଦ୍‌ଘାଟିତ ହେବା ସଂଗେ ସଂଗେ ଜ୍ୱାଲାପ୍ରସାଦଙ୍କ ମାନ-ସମ୍ମାନ ବହୁତ ବଢ଼ିଗଲା ।

କିନ୍ତୁ ମୀର୍ ସାହେବ ଚୁପ୍‌ଚାପ୍ ବସି ରହିଥିଲେ, ମୁହଁରେ ହର୍ଷ କିମ୍ବା ବିଷାଦର କୌଣସି ଚିହ୍ନ ନଥିଲା । ମନେ ହେଉଥିଲା ସେ ଯେମିତ ଅନ୍ୟ କୌଣସି ଚିନ୍ତାରେ ରହିଯାଇଥିଲେ । ତାଙ୍କ ସାମନାରେ ଯେଉଁ କଥାବାର୍ତ୍ତା ଚାଲିଥିଲା, ସେଥିରେ ତାଙ୍କର କୌଣସି ସ୍ପୃହା ନଥିଲା । ମୀର୍ ସାହେବଙ୍କ ଉଦାସୀନତାକୁ ଭଂଗ କରିବାକୁ ଚେଷ୍ଟା କରି ଗଜରାଜ ସିଂହ କହିଲେ, "ତହସିଲଦାର ସାହେବ, ନାଏବ ସାହେବଙ୍କ ଉପରେ ଲୋକେ ଏତେ ଖୁସି ଯେ ତାହା କଥାରେ କହିହେବ ନାହିଁ । ଏତେ ଅଳ୍ପ ବୟସରେ ସେ ପ୍ରାୟ ସମସ୍ତଙ୍କୁ ଆପଣାର କରି ନେଇଛନ୍ତି । କି ଶ୍ରେଷ୍ଠ କି ବଡ଼ ସମସ୍ତେ ତାଙ୍କର ପ୍ରଶଂସା କରୁଛନ୍ତି ।

ଶେଷରେ ମୀର୍ ସାହେବ ଆଉ ରହି ନ ପାରି କହିଲେ, "ଆପଣମାନେ ଜ୍ୱାଲାବାବୁଙ୍କୁ ଏତେ ସମ୍ମାନ କରନ୍ତି; ସେଥିପାଇଁ ମୁଁ ଖୁସି । ସେ ଏତେ ସାଧୁ, ସଚ୍ଚୋଟ, ତାଙ୍କ ହୃଦୟରେ ଏତେ ଦୟା, ସେଥିପାଇଁ ବି ମୁଁ ଭାରି ଖୁସି । କିନ୍ତୁ ମୁଁ ଜାଣିଛି ଜ୍ୱାଲାବାବୁ ବର୍ତ୍ତମାନ ପିଲା; ଦୁନିଆର ଅନୁଭୂତି ତାଙ୍କର ଖୁବ୍ କମ୍ । ତେବେ ସେଥିରେ କିଛି କ୍ଷତି ନାହିଁ । ଜୀବନରେ ଅନୁଭୂତି ତ ଦିନକୁ ଦିନ ବଢ଼ୁଥିବ । ସେହି ଅନୁଭୂତି ଯେତିକି ବଢ଼ୁଥିବ, ତା' ସଂଗରେ ତାଙ୍କ ଗୁଣ ବି ସେତିକି ବିକଶିତ ହେଉଥିବ ।''

ମୀର୍ ସାହେବଙ୍କର ଏମିତ କଥା ଶୁଣି ସମସ୍ତେ ଭାରି ଆଶ୍ଚର୍ଯ୍ୟ ହେଲେ । କେହି କିଛି ନ କହି ଚୁପ ରହିଲେ ।

ଖାଇପିଇ ସାରି ମୀର୍ ସାହେବ ଯେତେବେଳେ ଘରକୁ ବାହାରିଲେ ସେ ଜ୍ୱାଲା-ପ୍ରସାଦଙ୍କୁ କହିଲେ, "ଆଚ୍ଛା ବାବା, ଆମ ଘର ପର୍ଯ୍ୟନ୍ତ ମୋ ସଂଗେ ଚାଲ, ତମ ସଂଗେ ମୋର ଟିକିଏ କଥା ଅଛି ।''

ଜ୍ୱାଲାପ୍ରସାଦ ଭାରି ଚିନ୍ତିତ ହୋଇ ପଡ଼ିଲେ । ମୀର୍ ସାହେବଙ୍କ କଥା ଅନ୍ୟମାନେ ବୁଝନ୍ତୁ ବା ନବୁଝନ୍ତୁ ଜ୍ୱାଲାପ୍ରସାଦ ଭଲ ଭାବରେ ବୁଝିଯାଇଥିଲେ । ଯେଉଁ କଥାକୁ ସେ ଡରୁଥିଲେ ଏବେ ସେହି କଥାରେ ପଡ଼ିଲେ । ବଡ଼ ଶଙ୍କିତ ହୋଇ ସେ ମୀର୍ ସାହେବଙ୍କ ଘର ପର୍ଯ୍ୟନ୍ତ ଗଲେ ।

ବାଟରେ ମୀର୍ ସାହେବ କିଛି ନକହି ଚୁପ୍‌ଚାପ୍ ଚାଲିଲେ, କିନ୍ତୁ ଘରେ ପହଞ୍ଚିବା-ମାତ୍ରେ ଜ୍ୱାଲାପ୍ରସାଦଙ୍କୁ କହିଲେ, "ବନ୍ଧୁ, କ୍ଷମା କରିବ, ରାତି ବହୁତ ହେଲାଣି; କିନ୍ତୁ

ନଜାନ୍ତି କରୁଥିବା କଥା ଥିଲା ବୋଲି ତମକୁ ପାଖରେ ଡାକି ଆଣିଲି । ତୁମେ ଅବଶ୍ୟ ଜାଣନ୍ତି; କିନ୍ତୁ ଏ କଥା ନ କହିଲେ ବୋଧହୁଏ ମୋତେ ଶାନ୍ତିରେ ନିଦ ହେବନି ।''

ଜ୍ୱାଲାପ୍ରସାଦଙ୍କ ଛାତି ଥରୁଥିଲା, ସେ ପଚାରିଲେ, ''ହଜୁର ସବୁ ଭଲ ତ ?''

ମୀର୍ ସାହେବ ମୁରୁକି ହସା ଦେଇ କହିଲେ, ''ମୋର ତ ସବୁ ଭଲ, କେବଳ ତମର ଭଲ ବୁଝିବାପାଇଁ ତମକୁ ଏତେ ବାଟ ଡାକି ଆଣିଛି ।'' ଏତିକି କହି ମୀର୍ ସାହେବ ପୁଣି ଚୁପ୍ ହୋଇଗଲେ ।

ଜ୍ୱାଲାପ୍ରସାଦଙ୍କ ମନଭିତରେ ଯେଉଁ ଆଶଙ୍କା ଥିଲା ତାହା ଏବେ ସମ୍ପୂର୍ଣ୍ଣ ଭୟରେ ପରିଣତ ହୋଇଗଲା । ସେ ମୁହଁକୁ ତଳକୁ କରି ଚୁପ୍‌ଚାପ୍ ମୀର ସାହେବଙ୍କ ପ୍ରଶ୍ନକୁ ଅପେକ୍ଷା କରି ରହିଲେ । ଅବଶ୍ୟ ସେ କ'ଣ ପଚାରିବେ ଜ୍ୱାଲାପ୍ରସାଦ ମନେ ମନେ ଠିକ୍ ଜାଣିପାରୁଥିଲେ ।

ମୀର୍ ସାହେବ କିଛି ସମୟ ଚିନ୍ତା କଲାପରି ରହିଗଲେ, ସତେ ଯେମିତି କେମିତି କଥା ଆରମ୍ଭ କରିବେ, କଣ କହିବେ କିଛି ଭାବି ପାରୁ ନ ଥିଲେ । ତା'ପରେ ଏକ ଦୀର୍ଘଶ୍ୱାସ ପକାଇ କହିଲେ, ''ଆଚ୍ଛା, ବରଜୋର ସିଂହଙ୍କ ବିରୁଦ୍ଧରେ ତମେ ସାକ୍ଷୀ ଦେବା ଫଳରେ ସେ ଆତ୍ମହତ୍ୟା କରି ମଲେ, ଅଥଚ ତମେ ତାଙ୍କ ସ୍ତ୍ରୀଙ୍କୁ ପୁଣି ଶହେ ସୁନା ମୋହର ସାହାଯ୍ୟ ଦେଲ । ତମେ ପ୍ରକୃତରେ ଯାହା କରିଛ ତାହା ମନୁଷ୍ୟର ନୁହେଁ, ଦେବଦୂତର କାର୍ଯ୍ୟ । ତୁମ ପାଇଁ ତୁମ ପିତାଙ୍କର ବହୁତ ଗର୍ବ କରିବାର ଅଛି । କିନ୍ତୁ ମୁଁ ଖାଲି ଭାବୁଛି ସତରେ କ'ଣ ମଣିଷ ଦେବଦୂତ ହୋଇପାରେ ? ମୁଁ ସଂସାରରେ ବହୁତ କିଛି ଦେଖିଛି, ମୋର ଖୁବ୍ ଅନୁଭୂତି ଅଛି । କିନ୍ତୁ ମୁଁ ଏପର୍ଯ୍ୟନ୍ତ ଯାହା ଜାଣିଛି ତାହା କ'ଣ ଭୁଲ୍ ? ତାକୁ କ'ଣ ପୁଣି ମୋତେ ସଂଶୋଧନ କରିବାକୁ ହେବ ?''

ଜ୍ୱାଲାପ୍ରସାଦ ଏଥିରେ କ'ଣ ବା ଉତ୍ତର ଦିଅନ୍ତେ, ଚୁପ୍ ହୋଇ ରହିଲେ ।

ମୀର୍ ସାହେବ ମଧ୍ୟ ଏତିକି କହି ଚୁପ୍ ରହିଗଲେ; ସତେ ଯେମିତି ନିଜ ପ୍ରଶ୍ନର ମହତ୍ତ୍ୱ ବୁଝି ପାରି ମନେ ମନେ ତାର ଉତ୍ତର ପାଇବା ପାଇଁ ସେ ଚେଷ୍ଟା କରୁଥିଲେ । ରାତିର ଅନ୍ଧକାର ତାଙ୍କ ମୁହଁ ଚାରିପାଖ ଯେମିତି ଘେରି ରହିଥିଲା—ଜ୍ୱାଲାପ୍ରସାଦଙ୍କ ଅନ୍ତରରେ ସେହିପରି ଜମାଟ ବାନ୍ଧି ଯାଉଥିଲା । ଶୀତଳ ପବନ ତାଙ୍କ ରୋମମୂଳରେ ପଶି ଯାଉ-ଥିଲା । ଏହିପରି ଏକ ଜଟିଳ ତଥା ଶୀତଳ ପରିସ୍ଥିତିରେ ପରିବର୍ତ୍ତନ ସୃଷ୍ଟି କରି ମୀର୍ ସାହେବ କହିଲେ, ''ଶହେ ସୁନା ମୋହରର ଦାମ୍ ବହୁତ ବେଶୀ । ତମ ପାଖରେ ଏତେ ସୁନା ମୋହର ଥିଲା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଉଛି ତମ ବାପାଙ୍କୁ ମୁଁ ଜାଣେ, ତେଣୁ ତୁମର ସମ୍ପତ୍ତି ମୁଁ ବେଶ୍ ଅନ୍ଦାଜ କରି ପାରୁଛି । ମୁଁ ଜାଣେ ତୁମେ ଲାଞ୍ଚ ନିଅନାହିଁ; କିନ୍ତୁ ଯେ ଲାଞ୍ଚ ନିଏ ନାହିଁ ସେ ଅନ୍ୟ ଲୋକକୁ ଏତେ ସମ୍ପତ୍ତି କେବେ ଦାନ କରିପାରେ ନାହିଁ ।''

ଜ୍ୱାଲାପ୍ରସାଦ ଚାହିଁଥିଲେ ଏଥର ବି ଚୁପ୍ ରହି ପାରିଥାନ୍ତେ; କାରଣ ମୀର୍ ସାହେବ ତ ତାଙ୍କ ନିଜ କଥା କହୁଥିଲେ, ଜ୍ୱାଲାଙ୍କୁ ସେ କିଛି ପଚାରି ନଥିଲେ । ତଥାପି ମୀର୍ ସାହେବ ଯେ ତାଙ୍କୁ ସତ୍ୟ କହିବା ପାଇଁ ଆହ୍ୱାନ କରୁଛନ୍ତି ଏ କଥା ସେ ବେଶ୍ ଅନୁଭବ କରି ପାରିଥିଲେ । ଜ୍ୱାଲାପ୍ରସାଦଙ୍କ ମନରେ ଯେଉଁ ସତ୍ୟ ଲୁକ୍କାୟିତ ଥିଲା, ତାହା ଆପେ ଆପେ ଫୁଟିପଡ଼ିଲା । ସେ କହିଲେ, "ହଜୁର୍, ସେ ସୁନା ମୋହର ମୋ'ର ନୁହେଁ, ତାହା ଜେଦେଇଙ୍କର । ସେ ବରଜୋରର ବିଧବା ସ୍ତ୍ରୀଙ୍କୁ ସେହି ମୋହର ଦେଇଥିଲେ । ସେହି ମୋହରଦ୍ୱାରା ବରଜୋରଙ୍କ ପତ୍ନୀ ଋଣ ପରିଶୋଧ କରି ନିଜ ଜମି ଫେରେଇ ନେଇଥିଲେ ।"

ଏ କଥା ଶୁଣିଲା ମାତ୍ରେ ରାଗରେ ମୀର୍ ସାହେବଙ୍କ ମୁହଁ ଲାଲ ପଡ଼ିଗଲା । ସେ କହିଲେ, "କ'ଣ, ସେହି ଜମିକୁ ସେ ଫେରାଇ ନେଇ ଚାଲିଗଲା ? ଯେଉଁ ଜମିପାଇଁ ପ୍ରଭୁଦୟାଳକୁ ପ୍ରାଣ ଦେବାକୁ ପଡ଼ିଲା ଓ ବରଜୋରକୁ ଆତ୍ମହତ୍ୟା କରିବା ପାଇଁ ହେଲା ! ବଡ଼ ଅଜବ୍ ଏ ଦୁନିଆ, ଯାହାକୁ ବୁଝିବା ସମ୍ଭବ ନୁହେଁ । ଲମ୍ବରଦାରଣୀ ଜେଦେଇ ନିଜ ହାତରେ ବରଜୋର ସିଂହର ହାତଗୃହ ଜମି ଓ୍ୱାପସ କରିଦେଲେ ? ଯାହା ଭିତରେ ନିଶ୍ଚୟ କିଛି ରହସ୍ୟ ଅଛି ।" ତାପରେ ମୀର୍ ସାହେବ ଜ୍ୱାଲାପ୍ରସାଦଙ୍କ ଉପରେ ଦୃଷ୍ଟି ରଖି କହିଲେ, "ଦେଖ ବାବୁ, ଏ ରହସ୍ୟକୁ ଲୁଚାଇ ରଖିବାକୁ ହେବ, ଅନ୍ୟ କେହି ଯେମିତି ଏକଥା ନ ଜାଣନ୍ତି । ତୁମର ନିଜର ସ୍ତ୍ରୀ ଅଛନ୍ତି, ପିଲା ଅଛି, ମାନ ସମ୍ମାନ ଅଛି । ଦୁନିଆରେ ବହୁତ ଦୋଷ ଦୁର୍ବଳତା ଅଛି ଓ ଦୁନିଆର ଭଲ ପାଇଁ ଲୋକ ଏହି ଦୋଷ-ଦୁର୍ବଳତାକୁ ପ୍ରକାଶ ନ କରି ଲୁଚାଇ ରଖିବାକୁ ଚାହେଁ । ସେଇଥି ପାଇଁ ମଣିଷ ନିଜକୁ ପାପଠାରୁ ଦୂରେଇ ରଖିବା ପାଇଁ ଓ ଦୁର୍ବଳତାଠାରୁ ବଞ୍ଚି ରହିବା ପାଇଁ ଏତେ ଚେଷ୍ଟା କରେ ।

ନିଜ କଥା କହିସାରି ମୀର୍ ସାହେବ କିଛି କାଳ ଚୁପ୍ ରହି କ'ଣ ଭାବିବାକୁ ଲାଗିଲେ । ତାଙ୍କ ମନରେ ଭାବନାର ଘନଘଟା ତାଙ୍କ ମୁହଁରେ ସ୍ପଷ୍ଟ ଆଙ୍କି ହୋଇ ଯାଇଥିଲା । ତା' ପରେ ସେ ହଠାତ୍ ଉଠି ଛିଡ଼ା ହୋଇ ପଡ଼ିଲେ; ସତେ ଯେମିତି ଅନିଚ୍ଛା ସତ୍ତ୍ୱେ କ'ଣ ଗୋଟାଏ କହିବା ପାଇଁ ସେ ବାଧ୍ୟ ହୋଇ ପଡ଼ିଲେ । ସେ କହିଲେ, "ଦେଖ ବାବୁ, ମୋ' ପ୍ରାଣରେ କାହିଁକି କେଜାଣି ତମ ପାଇଁ ଏକପ୍ରକାର ମମତା ସୃଷ୍ଟି ହୋଇଯାଇଛି । ହୋଇପାରେ, ମୋର ଆଗକୁ ପଛକୁ କେହି ନାହିଁ ବୋଲି ତମକୁ ମୁଁ ମୋର ପୁଅପରି ମନେକରି ନେଇଛି । ଥରେ ଯେତେବେଳେ ମୁଁ ତୁମକୁ ପୁଅ ବୋଲି ସ୍ୱୀକାର କରିଛି, ସେତେବେଳେ ପିତାର କର୍ତ୍ତବ୍ୟ ପାଇଁ ଅନ୍ତତଃ ତୁମକୁ ମୋତେ ବଞ୍ଚାଇବାକୁ ପଡ଼ିବ । ତୁମଠାରେ ବହୁତ ଭଲ ଗୁଣ ଅଛି, ବହୁତ ସରଳତା ବି ଅଛି । ତୁମଠାରୁ ଅଲଗା ହେବା ମୋ ପକ୍ଷରେ କଷ୍ଟ; ତଥାପି ମୋତେ ସେ କଷ୍ଟ ବରଦାସ୍ତ କରିବାକୁ ହେବ । ତମକୁ

ରକ୍ଷା କରିବାର କେବଳ ଗୋଟିଏ ରାସ୍ତା ମୋତେ ଦେଖାଯାଉଛି । ମୋତେ ତମକୁ ଏଠୁ ବଦଳି କରାଇ ଦେବାକୁ ହେବ । କମିଶନର ମୋ କଥା ଖୁବ୍ ମାନନ୍ତି । ଆସନ୍ତା ବର୍ଷ ଆଲ୍ହାବାଦ ସୋରାବ ତହସିଲର ତହସିଲଦାର ପେନ୍‌ସନ୍ ନେବା କଥା । ମୁଁ ଭାବୁଛି ମୁଁ ଯଦି ଟିକିଏ ଜୋର୍‌ସୋର ଚେଷ୍ଟା କରେ ତେବେ କମିଶନର ସାହେବ ତମକୁ ସେଇଠି ତହସିଲଦାର କରିଦେବେ । ଅବଶ୍ୟ ତମେ ଏତେ ଚଞ୍ଚଳ ପ୍ରମୋଶନ ପାଇଗଲେ, ଲୋକେ ଆପତ୍ତି କରିବେ । ହେଲେ ମୁଁ ତ କହୁଛି, ଏ ମୋର ନିଜ ପୁଅର କଥା । ମୁଁ ଯେମିତି ହେଲେ କମିଶନରଙ୍କୁ ରାଜି କରାଇ ନେବି ।''

ଜ୍ୱାଲପ୍ରସାଦ ହଠାତ୍ କାନ୍ଦି ପକାଇଲେ, ଆଖିରେ ତାଙ୍କର ଲୁହ ଭରିଗଲା । ସେ କାନ୍ଦି କାନ୍ଦି କହିଲେ, ''ହଜୁର, ମୁଁ ନିଶ୍ଚୟ ଅପରାଧୀ; କିନ୍ତୁ ଆପଣ ମୋତେ ନିଜ ପାଖରୁ ଅନ୍ତର କରନ୍ତୁ ନାହିଁ । ମୁଁ ନିୟମ କରି କହୁଛି, ଭବିଷ୍ୟତରେ ଆପଣ ମୋ' ବିଷୟରେ କୌଣସି ଆପତ୍ତି ଅଭିଯୋଗ ଶୁଣିବାକୁ ପାଇବେ ନାହିଁ ।''

ମୀର୍‌ସାହେବ ମୁରୁକି ହସି କହିଲେ, ''ବାବା, ଥରେ ପ୍ରଶ୍ନ ଉଠିଲେ ତାକୁ ଆଉ ଫେରାଇ ନିଆଯାଏ ନାହିଁ । ତମ ପ୍ରତିଶ୍ରୁତି ଉପରେ ଭରସା କରି ମୁଁ କାମ କରି ପାରିବି ନାହିଁ । ପୁଣି ତୁମେ ଜାଣ, ଯେଉଁଠି ମାୟା, ମମତା ଓ ନ୍ୟାୟ ମଧ୍ୟରେ ସନ୍ଦେହ ଉପସ୍ଥିତ ହୁଏ, ସେଠି ନ୍ୟାୟର ପକ୍ଷ ସ୍ୱୀକାର କରିବାକୁ ପଡ଼େ । କିନ୍ତୁ ଏହି ନ୍ୟାୟ ମଧ୍ୟ ମମତାରୁ ବିଚ୍ୟୁତ ହେବା ଉଚିତ ନୁହେଁ । ତମେ ଏଠୁ ପ୍ରମୋଶନରେ ହିଁ ଯିବ ।''

ଜ୍ୱାଲପ୍ରସାଦ କହିଲେ, ''ଆପଣ ମୋତେ ଦଣ୍ଡ ଦିଅନ୍ତୁ ।''

''ହଁ, ତମକୁ ଦଣ୍ଡ ଦେଉଛି ତ । ଘାଟମପୁର ଠାରୁ ସୋରାବ ତହସିଲଦାରି ଢେର୍ ଶ୍ରେଷ୍ଠ ।'' ଏତିକି କହି ସେ ହସିଦେଲେ ।

ତହିଁ ଆରଦିନ ରାତି ପାହିବା ମାତ୍ରେ ମୁନ୍‌ସି ଶିବଲାଲ ଆସି ଜ୍ୱାଲପ୍ରସାଦଙ୍କ ପାଖରେ ବସିଲେ । ଜ୍ୱାଲପ୍ରସାଦ ଟିକିଏ ଚିନ୍ତିତ ତଥା ଗମ୍ଭୀର ଦେଖାଯାଉଥିଲେ । ଗଲା ରାତିରେ ତାଙ୍କୁ ଭଲ ନିଦ ବି ହୋଇ ନଥିଲା ।

ଯଦିଓ ମୁନ୍‌ସି ଶିବଲାଲ ଗଜରାଜ ସିଂହଙ୍କ ଭୋଜିରେ ନିଜ ପୁଅର ପକ୍ଷ ସମର୍ଥନ କରି କଥାବାର୍ତ୍ତା କରିଥିଲେ ତଥାପି ନିଜ ପୁଅ ଯେ ଅନ୍ୟ କାହାକୁ ଭୁଲରେ ଶହେ ସୁନା ମୋହର ଦେଇଦେବ, ତାହା ବରଦାସ୍ତ କରିବା ପାଇଁ ସେ ରାଜି ନଥିଲେ । ଶିବଲାଲଙ୍କର ଆଜି ପର୍ଯ୍ୟନ୍ତ ବିଶ୍ୱାସ ଥିଲା ଯେ ଜ୍ୱାଲପ୍ରସାଦ ଖୁବ୍ ସାଧୁ, ସଚ୍ଚୋଟ ଓ ସଚ୍ଚରିତ୍ର । କିନ୍ତୁ ସେ ଯେତେବେଳେ ଜାଣିଲେ ଯେ ଜ୍ୱାଲପ୍ରସାଦ ନିଜ ହାତରୁ ବର-ଜୋରର ବିଧବା ପତ୍ନୀକୁ ଶହେ ସୁନା ମୋହର ଦେଇଛନ୍ତି ସେତେବେଳେ ତାଙ୍କ ମୁଣ୍ଡରେ ସନ୍ଦେହର ଭୂତ ଚଢ଼ିଗଲା । ଦି ମାସ ତଳେ ଜମି କିଣିବା ପାଇଁ ରାଧେଲାଲଙ୍କୁ

ଦେବାଲାଗି ଅଢ଼େଇଶହ ଟଙ୍କା ସେ ମାଗିଥିଲେ; କିନ୍ତୁ ଜ୍ୱାଲାପ୍ରସାଦ ନିଜର ହିସାବପତ୍ର ଦେଖାଇ ଟଙ୍କା ଦେଇ ପାରିବେ ନାହିଁ ବୋଲି କହିଥିଲେ । ତେଣୁ ଗତ ରାତିରେ ଶହେ ସୁନା ମୋହର କଥା ଶୁଣି ତାଙ୍କୁ ଭାରି ଖରାପ ଲାଗିଲା । ଯେଉଁ ପୁଅକୁ ସେ ଏତେ ନିଜର, ଏତେ ସାଧୁ ସଚ୍ଚୋଟ ଓ ସରଳ ବୋଲି ଭାବିଥିଲେ, ତା' ମନରେ ପୁଣି ଏତେ କପଟ ଥିଲା !

ପିତାଙ୍କର ଏ ପ୍ରକାର ଭାବଭଙ୍ଗୀ ଦେଖି ଜ୍ୱାଲାପ୍ରସାଦଙ୍କର ମନ ଟିକିଏ ଚହଲିଗଲା । ଶିବଲାଲ ତାଙ୍କୁ କହିଲେ, "କାଲି ରାତିରେ ମୁଁ ଶୁଣି ଆଶ୍ଚର୍ଯ୍ୟ ହେଲି, ତୁ ବରଜୋର ସିଂହଙ୍କ ବିଧବା ପତ୍ନୀକୁ ଶହେ ସୁନା ମୋହର ଦେଇ ଦେଇଛୁ । କିନ୍ତୁ ରାଧେଲାଲ ଯେତେବେଳେ ଜମି କିଣିବା ପାଇଁ ମାତ୍ର ଅଢ଼େଇଶହ ଟଙ୍କା ମାଗିଲା, ସେତେବେଳେ ତୁ ସଫା ମନା କରିଦେଲୁ !"

ଜ୍ୱାଲାପ୍ରସାଦ ଟିକିଏ ଇତସ୍ତତଃ ଭାବରେ ଜବାବ୍ ଦେଲେ, "ସେ ଟଙ୍କା ମୋର ନୁହେଁ । ଘରର ହିସାବପତ୍ର ତ ଆପଣଙ୍କ ପାଖରେ ସବୁ, ମୁଁ ତ ସବୁ ଦରମା ଆପଣଙ୍କ ହାତରେ ଦେଇ ଦେଉଛି ।"

ମୁନ୍‌ସି ଶିବଲାଲ ଟିକିଏ ଅଧିକ ଗମ୍ଭୀର ହୋଇ କହିଲେ, "ହଁ, ଦରମା ତ ତୁ ସବୁ ମୋତେ ଦେଇ ଦେଉଛୁ; କିନ୍ତୁ ଉପୁରି ଟଙ୍କା କୁଆଡ଼େ ଯାଉଛି ; ମୁଁ ତ ଆଜିଯାଏ ଭାବୁଥିଲି ତୋର ଉପୁରି ରୋଜଗାର ନଥିଲା; କିନ୍ତୁ ଯାହା ଦେଖୁଛି ମୁଁ ଭୁଲ ବୁଝିଥିଲି, ଏବେ ସବୁ ଠିକ୍ ଜଣାପଡ଼ିଲା ।"

ଏ କଥା ଶୁଣି ଜ୍ୱାଲାପ୍ରସାଦଙ୍କ କଣ୍ଠ ରୁଦ୍ଧ ହୋଇଆସିଲା; ସେ କହିଲେ, "ମୁଁ ସତ କହୁଛି, ମୋର କୌଣସି ଉପୁରି ରୋଜଗାର ନାହିଁ କିମ୍ବା ସେ ସୁନା ମୋହରଗୁଡ଼ା ମୋର ନୁହେଁ । ମୁଁ ନିଶ୍ଚୟ କରି କହୁଛି କାହାଠାରୁ ପଇସାଟିଏ ମଧ୍ୟ ଲାଞ୍ଚ ନେବାକୁ ମୁଁ ପାପ ବୋଲି ମନେ କରେ ।"

ବର୍ତ୍ତମାନ ଶିବଲାଲ ଟିକିଏ ଅଡୁଆରେ ପଡ଼ିଗଲେ । ଟିକିଏ ରହିଯାଇ ପୁଣି ରୁକ୍ଷ ସ୍ୱରରେ ପଚାରିଲେ, "ତା ହେଲେ ସେ ସୁନା ମୋହର କାହାର ? ଲୋକେ କହୁଛନ୍ତି ତୁ ଦେଇଛୁ ବୋଲି । ଆଜିକାଲି ଏ କଳିଯୁଗରେ ଏଡ଼େବଡ଼ ଦାତା କିଏ ତା' ନାଁ ଟିକିଏ କହିଲୁ ମୁଁ ଶୁଣେ !"

ବର୍ତ୍ତମାନ ଜ୍ୱାଲାପ୍ରସାଦଙ୍କୁ ନିଜ ଇଚ୍ଛା ବିରୁଦ୍ଧରେ ଜବାବ ଦେବାକୁ ପଡ଼ିଲା । ସେ କହିଲେ, "ଆପଣ ବାଧ କରିବାରୁ ମୁଁ କହୁଛି; କିନ୍ତୁ ଆପଣ ଅନ୍ୟ କାହା ଆଗରେ କହିବେ ନାହିଁ । ଏ ଟଙ୍କା ଲମ୍ବରଦାରଣୀ ଜେଦେଇ ମୋ' ହାତରେ ବରଜୋର ସିଂହଙ୍କ ବିଧବା ପତ୍ନୀଙ୍କୁ ଦେଇଥିଲେ । ସେହି ଟଙ୍କାରେ ସେ କରଜ ପାଉଣା ଭରଣା କରି ତାଙ୍କ

ଜମି ଫେରେଇ ନେଲେ ।"

ଏ କଥା ଶୁଣି ଶିବଲାଲଙ୍କ ମୁହଁରୁ ହଠାତ୍ ସବୁ କାଳିମା ଲିଭିଗଲା, ଆନନ୍ଦରେ ଚକ୍ଷୁ ତାଙ୍କର ଝଲସି ଉଠିଲା । ସେ କହିଲେ, "ହଁ, ହଁ, ଏବେ ବୁଝିଲି । ଲମ୍ବୋଦରାଣୀ କେଦେଇଙ୍କ କଥା ମୁଁ ଆଦୌ ଭାବି ନ ଥିଲି । କିନ୍ତୁ ମୋର ଧାରଣା ତୋର କଥାରେ ଲମ୍ବୋଦରାଣୀ କେଦେଇ ଦରଜୋର ସିଂହଙ୍କ ବିଧବା ପତ୍ନୀକୁ ଏ ଟଙ୍କା ଦେଇଛନ୍ତି, ଏଥିରେ କିଛି ଭୁଲ ନାହିଁ ।"

ଜ୍ୱାଳାପ୍ରସାଦ ପୁଣି ବାଧ୍ୟ ହୋଇ ସତ କଥା କହିଲେ, "ଏ ଦୁନିଆ କଥାରେ ଆପଣଙ୍କର ଯାହା ଅନୁଭୂତ, ସେଥିରେ ଆଉ ଭୁଲର ପ୍ରଶ୍ନ କାହିଁ ?"

ସତ କଥା ଜାଣିପାରିଲା ପରେ ଶିବଲାଲଙ୍କର ଚେହେରା ବଦଳିଗଲା । ସେ ହସି ହସି କହିଲେ, "ଜ୍ୱାଲା, ତୋର ଭାଗ୍ୟ ଏବେ ଖୋଲିଗଲା । ବହୁତ ବଡ଼ ଶିକାର ତୋ ହାତ-ମୁଠାକୁ ଚାଲି ଆସିଛି । କିନ୍ତୁ ନିୟମ କର, ଭବିଷ୍ୟତରେ ଏମିତି ଆଉ କାହାକୁ ଟଙ୍କା ପଇସା ଦିଆଇବୁ ନାହିଁ । ଏଣିକି ନିଜପାଇଁ ଜମିବାଡ଼ି କରିବାକୁ ଚେଷ୍ଟାକର । ଲମ୍ବୋଦରାଣୀ କେଦେଇଙ୍କ ପାଖରେ ଟଙ୍କା ପଇସା, ସୁନାରୂପା ମିଶି ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ଅଛି ।"

ଜ୍ୱାଳାପ୍ରସାଦ ବାପାଙ୍କ କଥାରେ କିଛି ଜବାବ ନ ଦେଇ ଚୁପ୍ ରହିଲେ । ସେତେବେଳକୁ ନିଜ ପ୍ରତି, ନିଜ ପିତାଙ୍କ ପ୍ରତି ଓ ସାରା ଦୁନିଆ ପ୍ରତି ତାଙ୍କ ମନରେ ଏକପ୍ରକାର ବିତୃଷ୍ଣା ଜାଗିଉଠିଥିଲା ।

## ଆଠ

ତ୍ରିବେଣୀ ସ୍ନାନ ସାରି ମୁନ୍‌ସି ଶିବଲାଲ ନିଜ କୁଟୀରକୁ ଫେରିଲାବେଳକୁ ବହୁତ କ୍ଲାନ୍ତ ହୋଇପଡ଼ିଥିଲେ । ସେତେବେଳକୁ ଛୁନକା ଚୁଲୀ ଲଗାଇ ଡେଚେଡ଼ି ବସାଇ ଦେଇ ସାରିଥିଲା ।

ମୁନ୍‌ସି ଶିବଲାଲ ଏବେ ତ୍ରିବେଣୀ କୂଳରେ ତୀର୍ଥବାସ କରୁଥିଲେ । ସୋରବ ଆସିବାପରଠାରୁ ପ୍ରତିବର୍ଷ ମାଘ ମେଳା ସମୟରେ ସେ ଏହି ତୀର୍ଥବାସକୁ ଆସୁଥିଲେ । ସେଠି ତାଙ୍କର ସବୁ ପ୍ରକାର ସୁବିଧା ଥିଲା । ତ୍ରିବେଣୀଠାରୁ ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ବଡ଼ ଯତ୍ନରେ ତାଙ୍କର କୁଡ଼ିଆ ତିଆରି ହୋଇଥିଲା । ବେଶ୍ ବଡ଼ କୁଡ଼ିଆଟିଏ,

ପାଣି ପବନର କିଛି ଭୟ ନଥିଲା ।

ପ୍ରାୟ ଅଧଘଣ୍ଟା ପରେ ଛୁନକା ଗାଧୁଆରୁ ଫେରି ଦେଖିଲା ଶିବଲାଲ ରେଜେଇ ଘୋଡ଼େଇ ହୋଇ ବିଛଣାରେ ଶୋଇଛନ୍ତି ଓ ଚୁଲି ଲିଭିକରି ପଡ଼ିଛି । ସେ ଶିବଲାଲଙ୍କ ମୁଣ୍ଡ ପାଖକୁ ଚାଲିଯାଇ ପଚାରିଲା, "କଣ ହେଲା, ଦେହ ଭଲ ନାହିଁ କି ? ଚୁଲି ଲିଭିଗଲାଣି, ଖେଚେଡ଼ି ଏପର୍ଯ୍ୟନ୍ତ ଫୁଟିନାହିଁ । ତମେ ନିଜେ ନ କଲେ ତ ହୋଇ ପାରିବ ନାହିଁ । ଉଠ, ଚୁଲି ଜଳା, ଖେଚେଡ଼ି ଖାଇ ଦେଇ ପୁଣି ଶୋଇବ ।"

ମୁନ୍‌ସି ଶିବଲାଲ ରେଜେଇ ଭିତରୁ କହିଲେ, "ତୁ ଚୁଲି ଫୁଙ୍କି ଦେ, ଖେଚେଡ଼ି ହୋଇଗଲେ ମୋତେ କହିଦେବୁ, ମୁଁ ଓହ୍ଲାଇ କରି ଖାଇନେବି । ବର୍ତ୍ତମାନ ଉଠିବାକୁ ମନ ହେଉନାହିଁ ।"

"ମଲି ମଲି, ମୁଁ କେମିତି ଖେଚେଡ଼ି ଛୁଇଁବି ମ ? ତୀର୍ଥ କରିବାକୁ ଆସିଛ, ଧର୍ମକର୍ମ ଟିକିଏ ଖିଆଲ ରଖ । ମୁଁ ଛୁଇଁଲେ ଚୁଲି ଛୁଆଁ ହେବ ନାହିଁ ?"

"ହଁ, ହେଲେ ହେଉ, ଖେଚେଡ଼ି କରି କରି ମୁଁ ବ୍ୟସ୍ତ ହୋଇଗଲିଣି । ରାଧାର ସ୍ତ୍ରୀ କିମ୍ବା ତା' ବୋହୂ, କଣେ କେହି ଆସିଗଲେ ଭଲ ହୁଅନ୍ତା; କିନ୍ତୁ କାହିଁ କିଏ ଆସୁଛି ? ଦେଖ୍, ଖେଚେଡ଼ି ହୋଇଗଲେ ଥାଳରେ ବାଢ଼ିଦେଇ ମୋତେ ଡାକିବୁ, ବର୍ତ୍ତମାନ ଉଠିବା ପାଇଁ ମୋର ଆଦୌ ଇଚ୍ଛା ହେଉନାହିଁ, ମୋତେ ଆଜି ଭାରି ଥଣ୍ଡା ଧରିଛି ।"

ମୁନ୍‌ସି ଶିବଲାଲଙ୍କ କଥା ଶୁଣି ଛୁନକା ଚୁପ୍ ପଡ଼ିଗଲା । ପୁଣି କହିଲା, "ସେ କି କଥା କହୁଛ, ମୋ ହାତ ସିଝୁଡ଼ି ଖେଚେଡ଼ି ତମେ କେମିତି ଖାଇବ ! ରାତିରେ ପଛେ ମୁଁ ତମ ଜଳଖିଆ ତିଆରି କରିଦେବି; କିନ୍ତୁ ବର୍ତ୍ତମାନ ତମେ ଖେଚେଡ଼ି କର । ଯଦି ଖେଚେଡ଼ି କରିବା ପାଇଁ ଅଳସ ଲାଗୁଛି, ତାହେଲେ ଦୁଧ ପିଇ ରହିଯାଅ, ପୁଣି ଦୁଇପ୍ରହରକୁ କରିବ ।"

ମୁନ୍‌ସି ଶିବଲାଲ ବଡ଼ ବିରକ୍ତ ହୋଇ କହିଲେ, "ନାହିଁ, ମୋତେ ଭାରି ଭୋକ ହେଉଛି, ମୁଁ ଖେଚେଡ଼ି ଖାଇବି । ମୁଁ ତ କହୁଛି ତୁ ଖେଚେଡ଼ି କରିଦେ ।"

ଏ କଥା ଶୁଣି ଛୁନକା କାନ୍ଦି ପକାଇ କହିଲା, "ମୁଁ ତମକୁ ହାତ ଯୋଡ଼ୁଛି, ମୋତେ ଏ ପାପ କରିବା ପାଇଁ କହ ନାହିଁ । ମୁଁ କେବେ ଚୁଲି ଛୁଇଁବି ନାହିଁ । ତମ ପରଲୋକ ମୋ ହାତରେ କାହିଁକି ନଷ୍ଟ ହେବ ?"

ମୁନ୍‌ସି ଶିବଲାଲ ରାଗରେ ଉଠିପଡ଼ି ଛୁନକା ଉପରେ ଏକ ଚାପୁଡ଼ା ବସାଇ କହିଲେ, "ଭାରି ପରଲୋକ ଦେଖାଉଛୁ । ମୁଁ କହୁଛି ଯା ଖେଚେଡ଼ି କର ।" ତା'ପରେ ସେ ପୁଣି ରେଜେଇ ଘୋଡ଼େଇ ହୋଇ ପଡ଼ିଗଲେ ।

ଛୁନକା କାନ୍ଦି କାନ୍ଦି ଚୁଲି ପାଖକୁ ଗଲା । ଏଣେ ଚୁଲି ଫୁଙ୍କୁଥାଏ, ତେଣେ କହୁଥାଏ,

"ହେ ଗଙ୍ଗାମାତା, ମୁଁ ଏଙ୍କର ଧର୍ମ ନେଇନାହିଁ, ତମେ ସାକ୍ଷୀ ରହିଲ । ଏଙ୍କର ବୁଦ୍ଧି ଖରାପ ହୋଇଗଲାଣି, ତମେ ଏଙ୍କୁ କ୍ଷମା କର । ଭୋଷାଇ କରି ଖୁଆଇଲେ ତ ଧର୍ମ ଯିବ, ନ କଲେ ବରାବର ଭୋକରେ ରହିବେ, ତା' ଛଡ଼ା ମୋ ଉପରେ ମାଡ଼ ବସିବ ।"

ଖେଚେଡ଼ି କରସାରି ଚୁନକା କହିଲା, "ଖେଚେଡ଼ି ହୋଇଗଲାଣି, ଶୀଘ୍ର ଖାଇଦିଅ । ଦୁଇପ୍ରହରେ ତମକୁ ଡେପୁଟି ସାହେବଙ୍କ ଡେରାକୁ ଯିବାକୁ ହେବଟି ?"

ମୁନସି ଶିବଲାଲ ଉଠିପଡ଼ି କୁର୍ତ୍ତା ଓ ଗାମୁଛା ରଖିଦେଇ ଗୋଟାଏ ଶାଲ ଘୋଡ଼େଇ ହୋଇପଡ଼ିଲେ । ପିଢ଼ା ଉପରେ ବସିପାଇ କହିଲେ "ଆଣ, ଜଲଦି ଖାଇବାକୁ ଆଣ । ଡେପୁଟି ସାହେବଙ୍କ କଥା ମୁଁ ପୁରା ଭୁଲିଯାଇଥିଲି ।"

ଚୁନକା ବାଢ଼ିଦେବା ମାତ୍ରେ ଶିବଲାଲ ଖାଇବା ଆରମ୍ଭ କରିଦେଇ କହିଲେ, "ଆଜି ଜାଣି ଖେଚେଡ଼ି ସ୍ୱାଦ ଲାଗୁଛି । ମୋତେ ତ ରାନ୍ଧି ଆସେ ନାହିଁ, ମୁଁ କଲେ ଭଲ ଲାଗନ୍ତା କେମିତି ? ଆଚ୍ଛା, ଆଉ ଟିକିଏ ଖେଚେଡ଼ି ଆଉ ଆଳୁ ଭରତା ଦେ । ଭାରି ଭଲ ହୋଇଛି ।"

ଚୁନକା ଗୁମଟରେ ଖେଚେଡ଼ି ଧରି ବାଢ଼ୁଛି, ରାଧେଲାଲ କୁଡ଼ିଆ ଭିତରକୁ ପଶି ଆସିଲେ । ତାଙ୍କ ସାଙ୍ଗରେ ତାଙ୍କ ସ୍ତ୍ରୀ ବି ଥିଲେ ।

ରାଧେଲାଲ ଓ ତାଙ୍କ ସ୍ତ୍ରୀଙ୍କୁ ଦେଖି ଚୁନକା ଅପରାଧିନୀ ପରି ଉଠି ଛିଡ଼ା ହୋଇପଡ଼ିଲା ଓ ସଙ୍ଗେ ସଙ୍ଗେ ଚୁଲି ପାଖକୁ ଚାଲିଆସିଲା । ମୁନସି ଶିବଲାଲ କହିଲେ, "ଆ, ରାଧେ, ସାନ ବୋହୂଙ୍କୁ ନେଇ ଆସିଲୁ ଭଲ କଲୁ । ମୋ ଖିଆପିଆରେ ଭାରି ଅସୁବିଧା ହେଉଛି । ଘରେ ସବୁ ଭଲ ତ ?"

ରାଧେଲାଲ ଉତ୍ତର ଦେଲେ, "ହଁ ସବୁ ଠିକ୍ ଯେ ହେଲେ ଏଯାଏ କିଶନୁର କିଛି ପତା ମିଳିଲା ନାହିଁ । ଲୋକେ ବନାରସରେ ତାକୁ ଗୋଟାଏ ସାଧୁମେଳାରେ ଦେଖିଥିଲେ । କିନ୍ତୁ ଏବେ ଆଉ ତାଙ୍କ ସଙ୍ଗରେ ସେ ନାହିଁ । ତାର ବାହାଘର ପାଖ ହୋଇଗଲାଣି, କିନ୍ତୁ ତାର ଦେଖାନାହିଁ । ତାର ଖୋଜ-ଖବର ନେବା ପାଇଁ ମୁଁ ଜ୍ୟାଲିକୁ ବହୁତ କହୁଛି, ହେଲେ ତାର ସମୟ କାହିଁ ?"

ମୁନସି ଶିବଲାଲ ଖାଇସାରି ହାତ ଧୋଉ ଧୋଉ କହିଲେ, "ହଁ, ବାହାଘର ତ ପାଖେଇଗଲାଣି, କିନ୍ତୁ ମୁଁ କହୁଛି ତାର ବାହାଘର କରି ନାହିଁ । ପରଝିଅକୁ ଆଣି ଘରେ ବସାଇବ, କିନ୍ତୁ ପୁଅର ଏଣେ ଦେଖାନାହିଁ, ସେଟା ତ ବିଲକୁଲ୍ ବାରବୁଲା ହୋଇଗଲା ।"

ରାଧେଲାଲଙ୍କ ସ୍ତ୍ରୀଙ୍କୁ ନିଜ ପୁଅ ବିଷୟରେ ଏମିତି କଥା ଶୁଣିବାକୁ ଭଲ ଲାଗିଲା ନାହିଁ । ସେ କାନ୍ଦ କାନ୍ଦ ହୋଇ ଝଣ୍ଡେ ଦୂରରୁ କହିଲା, "କିଶନୁଟା ତ ପିଲାଲୋକ, କିଛି

ଜାଣେନାହିଁ, ଯେ' ଯେମିତି ଶିଖେଇ ଦେଲା, ସେମିତି କଲା । ବାହା ହୋଇଗଲେ ସୁଧୁରି ହୋଇଯିବ । ଜ୍ୱାଲା ଜଣେ ବଡ଼ ଅଫିସର, ଚାହିଁଲେ ଦିନକରେ ତାକୁ ଖୋଜି ବାହାର କରିଦେବ । ଜ୍ୱାଲା ତ ଆମ କଥା ଶୁଣୁନାହିଁ । ନିଜ ଭାଇକୁ ନ ପଚାରିବା କ'ଣ ଠିକ୍ ?"

ଜ୍ୱାଲା ପ୍ରତି ଏହି ଆକ୍ଷେପକୁ ସହି ନ ପାରି ଛନକା କହିଲା, "ଜ୍ୱାଲା ବାବୁ ତ ସବୁ କରୁଛି, ଘର ଘର ବୁଲି ଖୋଜିବା ବାକି ଅଛି । ଏଣେ ତହସିଲଦାର କାମ କରିବ, ତେଣେ ଦେଶଯାକ ବୁଲି କିଶନକୁ ଖୋଜିବ !"

ରାଧେଲାଲଙ୍କ ସ୍ତ୍ରୀ ବିଗିଡ଼ି ଯାଇ କହିଲା, "ଚୁପ୍ ରହ ଛନକା, ଜ୍ୱାଲା କଥା ଏତେ କହ ନାହିଁ ।"

ମୁନ୍ସି ଶିବଲାଲ୍ ଟିକିଏ ଚପିଯାଇ କହିଲେ, "ତୁ ଏଥିରେ ମଝିରେ ପଡ଼ି କାହିଁକି କଥା କହୁଛୁ ? ତାପରେ ସେ ରାଧେଲାଲକୁ କହିଲେ, "ରାଧା, ତମେ ତ ସବୁ ଏପର୍ଯ୍ୟନ୍ତ କିଛି ଖାଇ ନ ଥିବ । ଆଚ୍ଛା ଛନକା ଗଲୁ, ଗୁଡ଼ିଆ ଦୋକାନରୁ କିଛି ପୁରି ମିଠାଇ ନେଇ ଆସିବୁ ।"

ଛନକା ଶିବଲାଲଙ୍କର ଅଇଁଠା ବାସନ ଉଠାଉ ଉଠାଉ କହିଲା, "ଆଚ୍ଛା, ମୁଁ ଚୁଲି ଠିକ୍ କରୁ କରୁ ମାଲିକାଣୀ ଗଙ୍ଗାରୁ ବୁଡ଼ି ପଡ଼ି ଆସନ୍ତୁ, ତା'ପରେ ସେ ନିଜେ ରାନ୍ଧି-ଦେବେ । ବଜାର ପୁରି ମିଠେଇରେ କ'ଣ ପେଟ ପୂରିବ ?"

ରାଧେଲାଲ କହିଲେ, "ନାହିଁ, ଚୁଲି ଠିକ୍ କରିବା ଦରକାର ନାହିଁ । ବହୁତ ବାଟରୁ ଆସି ଆମେ ଥକିଗଲୁଣି, ଗାଧୋଇବାବେଳ ବି ଗଡ଼ିଗଲାଣି, ଯା' ତୁ ପୁରି ମିଠାଇ ନେଇ ଆ ।"

ଛନକା କହିଲା, "ତା'ହେଲେ ପୁରି ତରକାରି ତିଆରି କରିଦେବା ।"

ଏଥର ରାଧେଲାଲର ସ୍ତ୍ରୀ ପାଟି ଫିଟେଇ ଉତ୍ତର ଦେଲା, "ହଁ, ଛନକା ରୋଷାଇଘରେ ପଶି ଏବେ ତୁ ରାଣୀ ହୋଇଗଲୁ ନା ! ଭାଇଙ୍କୁ ଭାତ ଡାଲି ଖୁଆଇ ତାଙ୍କ ଧରମ ନେଲୁ; ଏବେ ଆମ ପାଳି ପଡ଼ିଛି । ଇଏ ମୋତେ କାହିଁକି ଅକାରଣ ଆଣିଲେ କେଜାଣି, ଛନକା ତ ଭାଇଙ୍କୁ ରୋଷାଇ କରି ଦେଉଛି !"

ରାଧେଲାଲ କହିଲେ, "ଆଚ୍ଛା ଛନକା, ଭାଇଙ୍କୁ ତ ଷାଠିଏ ଧରିଲାଣି । ତାଙ୍କର ଆଉ ମୁଣ୍ଡ ଠିକ୍ ନାହିଁ । ତୁ କେମିତି ଜାତି ଅଜାତି ନ ବୁଝି ନିଜ ହାତରେ ରୋଷାଇ କରି ତାଙ୍କୁ ଖୁଆଇଲୁ ?"

ଛନକା କାତର ଦୃଷ୍ଟିରେ ଶିବଲାଲଙ୍କୁ ଚାହିଁ ରହିଲା । ସେ କହିଲେ, "ପ୍ରତିଦିନ ତ ମୁଁ ରୋଷାଇ କରୁଥିଲି । ଆଜି ବି ସବୁ ଯୋଗାଡ଼ କରି ଦେଇଥିଲି । କିନ୍ତୁ କ'ଣ ହେଲା,

ଗଙ୍ଗାରୁ ଗାଧୋଇ ଆସିଲା ପରେ ଦେହ ଏମିତି ଲାଗିଲା ଯେ ନିଜେ କରି ପାରିଲି ନାହିଁ, ତାକୁ କରିବା ପାଇଁ କହିଲି ।" ଟିକିଏ ରହିଯାଇ ସେ ପୁଣି କହିଲେ, "ମୁଁ ଭାବୁଛି ଯେ ରାନ୍ଧି କରି କିଛି ପାପ କରିନାହିଁ କିମ୍ବା ମୁଁ ତା' ରନ୍ଧା ଖାଇ କରି ବି କିଛି ପାପ କରିନାହିଁ ।"

ରାଧେଲାଲ ଟିକିଏ ଏପାଖ ସେପାଖ ହୋଇ କହିଲେ, "ହଁ, ସେ କଥା ଠିକ୍ ଯେ, କିନ୍ତୁ ଜାତିଆଇ ତ ପାପ ବୋଲି ବିଚାର କରନ୍ତି ! ହଉ ଛାଡ଼ନ୍ତୁ, ଯାହା ତ ହେଲାଣି ହେଲାଣି; ଏଣିକି ତ ଇଏ ଆସିଲାଣି, କରିବ । ଛୁନକା ରୋଷାଇ କରିବା କଥା ଆଉ କାହା କାନରେ ନ ପଡ଼ିଲେ ଭଲ ।"

ଛୁନକା ହତପ୍ରଭ ହୋଇ ରାଧେଲାଲ ଓ ତାଙ୍କ ସ୍ତ୍ରୀଙ୍କ ପାଇଁ ପୁରି ମିଠାଇ ଆଣିବା ପାଇଁ ଚାଲିଗଲା ଓ ମୁନ୍‌ସି ଶିବଲାଲ ଡେପୁଟୀ ସାହେବଙ୍କ ସଙ୍ଗେ ଦେଖା କରିବାପାଇଁ ଲୁଗାପଟା ପିନ୍ଧି ଘଣ୍ଟାଏ ଆଗରୁ ବାହାରି ଗଲେ ।

ଠାକୁର ଅମନସିଂହ ଡେପୁଟି କଲେକ୍‌ଟର ମେଳା ଭିତରେ ବୁଲିବୁଲି କରି ଫେରି ଆସି ଆରାମଚଉକିରେ ପଡ଼ି ଖବର କାଗଜ ପଢ଼ୁଥିଲେ । ସେ ଚଉକିରୁ ଉଠିପଡ଼ି ଶିବଲାଲଙ୍କୁ ସ୍ୱାଗତ କରି କହିଲେ "ଆସନ୍ତୁ ଶିବଲାଲ ସାହେବ, ଆଜି ବୋଧହୁଏ ଆପଣ ବିଶ୍ରାମ ନେଇ ନାହାନ୍ତି । ମିଟିଙ୍ଗ୍ ପାଇଁ ତ ଆହୁରି ଘଣ୍ଟାଏ ସମୟ ଅଛି ।"

ମୁନ୍‌ସି ଶିବଲାଲ ଥକିଗଲା ପରି ସାମନାରେ ପଡ଼ିଥିବା ଗୋଟାଏ ଚଉକିରେ ବସିଯାଇ କହିଲେ, "କ'ଣ କରିବି ଆଜ୍ଞା, ଘରୁ ଆଜି ମୋ ସାନଭାଇ ଓ ତା ସ୍ତ୍ରୀ ଆସି ପହଞ୍ଚି ଯିବାରୁ ମୁଁ ଟିକିଏ ଆଗରୁ ବାହାରି ଆସିଲି । ବିଚରା ବଡ଼ ଅଡ଼ୁଆରେ ପଡ଼ିଛନ୍ତି । ମୋ ସାନ ପୁତୁରା ଘର ଛାଡ଼ି କୁଆଡ଼େ ଚାଲିଯାଇଛି; କହୁଛନ୍ତି ସନ୍ନ୍ୟାସୀ ହୋଇଗଲା, ବନାରସରେ ଦଳେ ସନ୍ନ୍ୟାସୀଙ୍କ ମେଳରେ ଥିଲା, ଏବେ କିନ୍ତୁ ସେଠି ଆଉ ନାହିଁ । କାଳେ ଏହି ମାଘମେଳାକୁ ଆସିଥାଇ ପାରେ, ଏହି ସନ୍ଧାନରେ ସେମାନେ ଆସି ପହଞ୍ଚିଛନ୍ତି ।"

ଠାକୁର ଅମନସିଂହ ମନେ ମନେ କ'ଣ ଟିକିଏ ଚିନ୍ତା କଲାପରି କହିଲେ, "ଆଚ୍ଛା, ତାକୁ ବୟସ କେତେ ହେବ ? ଆପଣ ତାର ଆଉ ସବୁ କଥା ମୋତେ ବତାଇ ପାରିବେ ?"

"ହଁ, ବୟସ ଚବିଶ ପଚିଶ ହେବ । ଦେଖିବାକୁ ପତଳା, ଟିକିଏ ସାମାନ୍ୟ ଡେଙ୍ଗା, ସାବନା ରଙ୍ଗ, ଲମ୍ବାଳିଆ ମୁହଁରେ ଗୋଟାଏ କଟା ଦାଗ ଅଛି ।"

ଠାକୁର ଅମନସିଂହ ମନକୁ ମନ ଚୁପ୍ ଚୁପ୍ କହୁଥିଲେ, "ହଁ, ସବୁ ତ ମିଳି ଯାଉଛି ।"

"କ'ଣ ହେଲା ଠାକୁର ସାହେବ ! ଏ ବିଷୟରେ ଆପଣଙ୍କୁ ଆଉ କେହି କିଛି କହିଥିଲା କି ?"

"ହଁ, ଆଜି ସକାଳେ ଏହିପରି ଜଣେ ଯୁବକ ସନ୍ନ୍ୟାସୀ· ମେଳା ଭିତରେ ସ୍ତ୍ରୀଲୋକ-ମାନଙ୍କ ସହିତ ଖରାପ ବ୍ୟବହାର କରି ଧରାହୋଇଛି । ପରେ ଜଣାପଡ଼ିଲା ସେ ଏଠିକାର କସ୍ତିମ ଘରେ ଥିଲା, ଏବେ ତାକୁ ହାଜତକୁ ପଠାଇ ଦିଆଯାଇଛି । ସେ ନିଜର ନାମ ଆଉ ଠିକଣା ଦେବାପାଇଁ ଆଦୌ ରାଜି ହେଉନାହିଁ । ବର୍ତ୍ତମାନ ଏହି ସବୁକୁ ଥାନାବାବୁ ବିଶନଦୟାଳ ଆସିଗଲେ ତାଙ୍କଠାରୁ ପୁରା ଖବର ମିଳିଯିବ । ସେ ସାଧୁ ଠିକ୍ ଏ ଗୃହକୁ ଓ ଦୁଷ୍ଟଚରିତ୍ର ଢଙ୍ଗର ।

କସ୍ତିମ ନାଁ ଶୁଣି ମୁନ୍‌ସି ଶିବଲାଲ ଠିକ୍ ଡରିଗଲେ । ପୁଣି ନିଜ ମନରୁ ଡର ଛଡ଼ାଇବା ପାଇଁ ଆପେ ଆପେ କହିଲେ, "ସେ ତାହେଲେ କିଶନୁ ନୁହେଁ । କସ୍ତିମ ଘରେ ସେ କେମିତି ରହିବ ? ତା ଛଡ଼ା ତାର ଦୁଷ୍ଟଚରିତ୍ରତା ବିଷୟରେ କେହି କେବେ ଅଭିଯୋଗ କରିନାହିଁ ।"

ଠାକୁର ଅମନସିଂହ ହସି ହସି କହିଲେ, "ଆରେ ଛାଡ଼ନ୍ତୁ ସେ କଥା । ଆଜିକାଲି ଏ ଟୋକାଏ କ'ଣ ନକରି ପାରନ୍ତି ? ମିନିଟିଂପରେ ଥାନାବାବୁ ବିଶନଦୟାଳଙ୍କ ହାତରେ ତାକୁ ଏଠିକି ଡକାଇ ଆଣିବା, ଆପଣ ନିଜ ଆଖିରେ ଦେଖି ସବୁ ବୁଝିଯିବେ ।"

ବିଶନଦୟାଳ ଯେତେବେଳେ ସାଧୁକୁ ଆଣି ଠାକୁର ଅମନ ସିଂହଙ୍କ ଡେରାରେ ପହଞ୍ଚାଇ ଦେଲେ, ଶିବଲାଲଙ୍କୁ ସେଇଠିକି ଡକାଇ ନିଆଗଲା । ସାଧୁଙ୍କୁ ଦେଖିଲା ମାତ୍ରେ ଶିବଲାଲ କହି ପକାଇଲେ, "ଆରେ କିଶନୁ, ତୋର ଆଜି ଏ ଅବସ୍ଥା ! ଆମମାନଙ୍କର ନାକ କାଟି ତୁ ତଳେ ପକାଇ ଦେଲୁ !"

କିଶନଲାଲ ବଡ଼ ବାପାଙ୍କୁ ଦେଖିଲା ମାତ୍ରେ ରଡ଼ି ଛାଡ଼ିଲା, "ମୋତେ ରକ୍ଷାକର ବାପା, ଏମାନେ ମୋ ପ୍ରାଣ ନେଇଯିବେ, ମୋତେ ରକ୍ଷାକର ।" ଏତିକି କହି ସେ ଟଳି ଟଳି ଭୂମିରେ ଗଡ଼ିପଡ଼ିଲା ।

କିଶନଲାଲର ଦେହସାରା ଫୁଲିଯାଇଥିଲା ଓ ସ୍ଥାନେ ସ୍ଥାନେ ଫାଟି ରକ୍ତ ବୋହି ଯାଉଥିଲା । ମନେ ହେଲା ଯେମିତି ସେ ବହୁତ ମାଡ଼ ଖାଇଥିଲା ଓ ଆହୁରି ମାଡ଼ ଖାଇବାକୁ ବାକି ଥିଲା । ମୁନ୍‌ସି ଶିବଲାଲ ଥାନା ବାବୁ ବିଶନଦୟାଳଙ୍କୁ ପଚାରିଲେ, "ଥାନାଦାର ସାହେବ, ଏ ଲୋକକୁ ଏତେ ମାଡ଼ କାହିଁକି ହୋଇଛି ?"

"ଆଜ୍ଞା, ଏହି ମାଡ଼ରୁ ସିନା ଜଣାପଡ଼ିଲା ସେ କସ୍ତିମଘରେ ସପ୍ତାହେ ହେଲା ଥିଲା ବୋଲି । ଯା ପୂର୍ବରୁ ସେ କିଛି କହିବା ପାଇଁ ରାଜି ହେଉ ନ ଥିଲା । ସେ ନିଜ ନାମ

ଓ ବାପନାମ କହିବା ପାଇଁ ରାଜି ହେଉ ନଥିବାରୁ ତାକୁ ମଗାଇବାକୁ ପଡ଼ୁଛି; କାରଣ କଶମ ସ୍ତ୍ରୀ ବିଷୟରେ ଯାହା ସବୁ କହୁଛି ସ୍ତ୍ରୀ ଦ୍ୱାରା ସେସବୁ ଯାଞ୍ଚ କରିବାକୁ ହେବ, ବଡ଼ ବଡ ଲୋକଙ୍କ ମାମଲା ନା !" ଏତକି କହି ବିଶନଦୟାଲ ଟିକିଏ ହସି-ଦେଲେ ।

ଠାକୁର ଅମନସିଂହ ହସି ହସି କହିଲେ, "ଗ୍ରାଉଁ, ବାପ ନାଁ ଓ ଠିକଣା ତ ଜଣାପଡ଼ିଲାଣି ଓ ସକାଳେ ଯାହା କରିଥିଲି ସେଥିପାଇଁ ଖୁବ୍ ବେଶୀ ମିଳିଗଲାଣି । ଆଚ୍ଛା, ଶିବଲାଲ ସାହେବ, ଆପଣ ଏବେ ତାକୁ ନେଇଯାନ୍ତୁ; କିଛି କାମରେ ଲଗାଇଦିଅନ୍ତୁ ।" ଏତିକି କହି ଅମନସିଂହ ତାର ହାତକଡ଼ି ଖୋଲି ଦେବାପାଇଁ ନିର୍ଦ୍ଦେଶ ଦେଲେ ।

ମୁନ୍ସି ଶିବଲାଲ ଫେରି ନିଜ କୁଡ଼ିଆରେ ପହଞ୍ଚିବାବେଳେ ଦୂରରୁ କୁଡ଼ିଆ ଭିତରୁ ଖୁବ୍ ପାଟିତୁଣ୍ଡ ଶୁଭୁଥିଲା । କାରଣ କୁଡ଼ିଆ ଭିତରେ ରାଧେଲାଲ ସ୍ତ୍ରୀ ଓ ଛୁନକୀ ଭିତରେ ବାଦବିବାଦ ଚାଲିଥିଲା । ରାଧେଲାଲ ସ୍ତ୍ରୀ ଛୁନକୀକୁ ଫତେପୁର ପଠାଇ ସେଠି ଘରଦ୍ୱାର ସମ୍ଭାଳିବା ପାଇଁ ତାକୁ ବାଧ୍ୟ କରୁଥିଲା; କିନ୍ତୁ ଛୁନକୀ ସେଥିରେ ମୋଟେ ରାଜି ହେଉ ନଥିଲା । ସେ ସୋରୀବ ଯାଇ ସେଠି ଜ୍ୱାଲାପ୍ରସାଦଙ୍କ ସ୍ତ୍ରୀ ଯମୁନା ଓ ତାଙ୍କ ପୁଅ ଗଙ୍ଗାପ୍ରସାଦ କଥା ବୁଝାସୁଝା କରିବାପାଇଁ ଚାହୁଁଥିଲା । ରାଧେଲାଲ ସ୍ତ୍ରୀର ରାଗ ପଞ୍ଚମକୁ ଚଢ଼ିଯାଇଥିଲା । ଶିବଲାଲ କୁଡ଼ିଆ ପାଖରେ ପହଞ୍ଚିଲା ବେଳକୁ ସେ ଖୁବ୍ ପାଟିକରି କହୁଥିବାର ଶୁଣାଗଲା, "ଭାଇଙ୍କର ଧର୍ମକର୍ମ ତ ସବୁ ନଷ୍ଟ କରିଦେଲୁ, ଆହୁରି ପୁଣି ମୋ ସାଙ୍ଗରେ ଲଢ଼ାଇ କରିବାକୁ ବସିଛୁ ? ଜ୍ୱାଲା ଯଦି ତୋର ଏତେ ଆପଣାର, ଭାଇ ଯଦି ତୋର ଏତେ ଆପଣାର, ତୁ ତାଙ୍କ କଥା ସମ୍ଭାଳ, ମୁଁ ଯାଉଛି । ତୋ ରାଜ୍ୟ ତୁ ଏବେ ବୁଝ । ତୁ ଫତେପୁର ଗଲେ ଯାଇଁ ମୁଁ ଏଠାରେ ରହିବି । ଆଜି ସେ ଆସନ୍ତୁ, ଭାଇଙ୍କୁ ଆଉ ତାଙ୍କୁ ଏକାଠି ବସାଇ ତୋ କଥା ବୁଝିବି ।"

ରାଧେଲାଲଙ୍କର ସ୍ତ୍ରୀର କର୍କଶ ସ୍ୱର ଶୁଣି ମୁନ୍ସି ଶିବଲାଲ ଭାରି ଡରିଗଲେ । ଶିବଲାଲଙ୍କ ସଂଯୁକ୍ତ ପରିବାରରେ ରାଧେଲାଲଙ୍କ ସ୍ତ୍ରୀର ଭାରି ହାକିମି ଥିଲା ଓ ଶିବଲାଲ ସେଥିରେ ଖୁବ୍ ଅଭ୍ୟସ୍ତ ଥିଲେ । ସେତେବେଳେ କୁଡ଼ିଆ ଭିତରକୁ ପଶିବାର ତାଙ୍କର ସାହସ ହେଲା ନାହିଁ । ସେଇଠୁ ସେ ଫେରିଆସିଲେ ।

ସେଠୁ ଫେରିଯାଇ ମେଲାରେ ସେ ଲକ୍ଷ୍ୟହୀନ ଭାବରେ ଏଣେତେଣେ ବୁଲିଲେ । ମନ ତାଙ୍କର ଖୁବ୍ ଭାରି ହୋଇଯାଇଥିଲା । ସତେ ଯେମିତି କିଏ ତାଙ୍କ ଉପରେ ପାହାର ଉପରେ ପାହାର ପକାଉଥିଲା; ସାରା ଦୁନିଆ ବଦଳିଗଲା ପରି ତାଙ୍କୁ ଲାଗୁଥିଲା ।

ସନ୍ଧ୍ୟାବେଳ, ଖୁବ୍ ଜୋରରେ ପବନ ଚାଲିଥାଏ । ଉତ୍ତର ଆଡ଼ୁ ଗ୍ରେଟ ଗ୍ରେଟ

ବାଦଲଖଣ୍ଡ ଆକାଶରେ ଦୌଡ଼ୁଥାନ୍ତି; ବାୟୁମଣ୍ଡଳରେ ବତାସ ଆସିଲାପରେ ଜଣା-ପଡ଼ୁଥାଏ । ଶିବଲାଲ ନିରୁଦ୍ଦେଶ୍ୟ ଭାବରେ ଏଣେତେଣେ ଗୁଡ଼ାଏ ଖୁବ୍ ବୁଲିଲେ । ଉତ୍ତରାୟଣର ମକର ସଂକ୍ରାନ୍ତି; ମାଘମେଳାରେ ଲୋକ ଖୁବ୍ ବଢ଼ୁଥାନ୍ତି । ବୁଲିବୁଲି ଯେତେବେଳେ ସେ ହାଲିଆ ହୋଇଗଲେ ଓ ଶୀତ ସମ୍ଭାଳି ପାରିଲେ ନାହିଁ, ବାଧ୍ୟହୋଇ ବସାକୁ ଫେରିଲେ ।

କୁଡ଼ିଆଘରେ ବର୍ତ୍ତମାନ ଭାରି କାମଦାମ ଚାଲିଥିଲା । କଲଗୋଲ ବନ୍ଦ ହେବାପରେ ଛୁନକୀ ରୋଷାଇ ଯୋଗାଡ଼ରେ ଲାଗିଯାଇଥିଲା । ମୁନସି ଶିବଲାଲ ଘରଭିତରକୁ ଆସି କାହାକୁ କିଛି ନକହି ଲୁଗାପଟା ଘୋଡ଼େଇ ହୋଇ ଖଟିଆ ଉପରେ ପଡ଼ିଗଲେ । ମୁନସି ରାଧେଲାଲ, ତାଙ୍କ ପତ୍ନୀ, ଛୁନକୀ ଓ କିଶନଲାଲଙ୍କ ଭିତରେ କଥାବାର୍ତ୍ତା ଚାଲିଥାଏ । ଶିବଲାଲଙ୍କୁ ଲାଗୁଥାଏ ସତେ ଯେମିତି ବହୁ ଦୂରରୁ ଆବାଜ ଆସି ତାଙ୍କ କାନରେ ବାଜି ପୁଣି ଦୂରକୁ ଚାଲିଯାଉଛି । ମଝିରେ ମଝିରେ ସେ ଚମକି ଉଠୁଥାନ୍ତି । ସେ କଥାରୁ ସେ ଅନେକ ବୁଝିପାରୁ ନଥାନ୍ତି, ଅନେକ ବି ତାଙ୍କୁ ଭଲ ଲାଗୁ ନଥାଏ । ଗୁଡ଼ାଏ ବେକାର କଥା ଚାଲିଥାଏ । ଶ୍ରାନ୍ତି ଓ କ୍ଳାନ୍ତି ଯୋଗୁ ଶିବଲାଲଙ୍କୁ ନିଦ ମାଡ଼ି ଆସୁଥାଏ; କିନ୍ତୁ ନିଦ ଉପରେ କଥାର ଆଘାତରେ ନିଦ ଭାଙ୍ଗିଯାଉଥାଏ । ପୁଣି ତାଙ୍କୁ ଲାଗୁଥାଏ ସତେ ଯେମିତି ତାଙ୍କ ଦେହଟାକୁ କିଏ ଝାଂକି ନେଉଛି । ସେ ଆଖି ଖୋଲି ଦେଖିଲେ, ତାଙ୍କ ମୁଣ୍ଡ ପାଖରେ ଛୁନକୀ ଛିଡ଼ା ହୋଇ କହୁଛି, "ଉଠ, କେତେବେଳ ଯାଏ ଶୋଇଛ ? ଦେଖ, ଜ୍ୱାଲା ଆସି ବସିଛି । ମୁଁ ବି ରୋଷାଇ କରି ସାରିଲିଣି ।"

ଜ୍ୱାଲା ନାମ ଶୁଣି ମୁନସି ଶିବଲାଲ ଧଡ଼ପଡ଼ ହୋଇ ଉଠିବସିଲେ । ଶିବଲାଲ ଦେଖିଲେ ତାଙ୍କ କୁଡ଼ିଆଘରର ଆକାର ବହୁତ ମେଲିଯାଇଛି । ଭୂଇଁରେ ଦରି ଓ ଗଦି ବିଛା ହୋଇଛି ଓ ସେଥିରେ ଅନେକ ଅଚିହ୍ନା ସ୍ତ୍ରୀ ଲୋକ ବସିଛନ୍ତି ।

ଜ୍ୱାଲାପ୍ରସାଦ ଆଗେଇ ଯାଇ ଶିବଲାଲଙ୍କ ପାଦ ଛୁଇଁ ନମସ୍କାର କରି କହିଲେ, "ବାପା, ଇଏ ଘାଟମପୁରର ଲମ୍ବରଦାରଣୀ ଓ ଇଏ ଲକ୍ଷ୍ମୀଚନ୍ଦର ସ୍ତ୍ରୀ; ମାଘମେଳାରେ ତ୍ରିବେଣୀ-ସ୍ନାନ ପାଇଁ ଆସିଛନ୍ତି । ଲକ୍ଷ୍ମୀଚନ୍ଦ ମୋତେ ଆଗରୁ ଲେଖିଥିଲେ ଯେ, ମୁଁ କହିଥିଲି ବାପାଙ୍କ ବସାଘର ତ ଅଛି, କିଛି ଅସୁବିଧା ହେବ ନାହିଁ । ଆଜି ସନ୍ଧ୍ୟା ଗାଡ଼ିରେ ଏମାନେ କାନପୁରରୁ ଆସିଛନ୍ତି । ଏମାନଙ୍କୁ ଆଣିବା ପାଇଁ ମୁଁ ସୋରାଁରୁ ସିଧା ଆଲ୍ଲାହାବାଦ ଷ୍ଟେସନ ଯାଇଥିଲି, ସେଇ ଷ୍ଟେସନରୁ ନେଇ ଆସିଛି ।"

"ଆଚ୍ଛା, ଭଲ ହେଲା ।" ଏତିକି କହି ରାଧେଲାଲ, ତାଙ୍କ ସ୍ତ୍ରୀ ଓ କିଶନଲାଲ ଯେଉଁଠି ବସିଥିଲେ, ସେ ଆଡ଼କୁ ଚାହିଁ ମୁନସି ଶିବଲାଲ କହିଲେ, "ରାଧା ଓ ତା ସ୍ତ୍ରୀ ଦୁହେଁଯାକ ଆଜି ଦିପ୍ରହରେ ଆସି ପହଞ୍ଚିଛନ୍ତି । ଉପରଓଳି କିଶନ ବି ଆସି ଜୁଟିଲା । ଈଶ୍ୱରଙ୍କ

ଦୟାରୁ ସମସ୍ତେ ଆଜ ଏକାଠି ଅଛି କିଛି ।"

ଜ୍ୱାଲପ୍ରସାଦ ସତେ ଯେମିତି ତାଙ୍କ ବାପାଙ୍କ ଦୃଷ୍ଟିର ମର୍ମ ବେଶ୍ ବୁଝିପାରିଲେ । କହିଲେ, "ମୁଁ ତ ଏଇ ବର୍ତ୍ତମାନ ଯୋଗ୍ୟ ଫେରିଯିବି, ପଅରଦିନ ତ୍ରିବେଣୀ-ସ୍ନାନ ପାଇଁ ସମସ୍ତଙ୍କୁ ସାଙ୍ଗରେ ଧରି ଫେରି ଆସିବି । ମୁଁ କକାଙ୍କୁ ଓ କଣନକୁ ବି ସାଙ୍ଗରେ ନେଇ ଯାଉଛି । ସେଇଠି ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବି ।"

ଏ କଥା ଶୁଣି ମୁନ୍‌ସିଙ୍କର ମନ ହାଲୁକା ହୋଇଗଲା । ସେ କହିଲେ, "ହଁ ଠିକ୍ କଥା, ସେମାନଙ୍କୁ ନେଇଯା, ଆଉ କଣନ ପାଇଁ କିଛି ଟିକିଏ ସୁବିଧା କରିଦେ ।"

"ହଁ ଆପଣ ନିଶ୍ଚିନ୍ତ ହୁଅନ୍ତୁ । କକା ଓ ମୁଁ କଥାବାର୍ତ୍ତା କରି ତାପାଇଁ ଯାହି ହେଲେ ଗୋଟାଏ ବ୍ୟବସ୍ଥା କରିବୁ ।"

ଶିବଲାଲଙ୍କ ମନ ଆହୁରି ବି ହାଲୁକା ହୋଇଗଲା ।

ଜ୍ୱାଲପ୍ରସାଦ ପୁଣି କହିଲେ, "କାଲି ହୁଏତ ଲକ୍ଷ୍ମୀଚନ୍ଦ ଆସିପାରେ । ସେ ଏଠି କାଠ ଠିକା ନେଇଛି । ଗୋଟାଏ କାଠକଟା ମେସିନ୍ ବସାଇ ଫର୍ଣ୍ଣିଚର କାରଖାନା ଖୋଲିବ । ଲକ୍ଷ୍ନୌରେ ଖୁବ୍ ବ୍ୟବସାୟ ଚଳିଛି । ଲୁଗାପଟା ଛଡ଼ା ଅନ୍ୟ ବ୍ୟବସାୟ ବି କରିବା ପାଇଁ ସେ ଚାହୁଁଛି ।"

ମୁନ୍‌ସି ଶିବଲାଲ ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲେ, "ଏ ବଢ଼େଇକାମରେ ସେ କାହିଁକି ମାତିଛି ? ସେ ତ ଚାହିଁଥିଲେ ଏଠି ଲୁଗା ଡିଲର୍ ହୋଇ ପାରିଥାନ୍ତା ।"

ଜେଦେଇ ନିଜ ଘାଘରାକୁ ଟିକିଏ ସଜାଡ଼ି ସଜାଡ଼ି କହିଲେ, "ବାପା, ମୁଁ ବି ସେହି କଥା କହୁଥିଲି । ଯାହାହେଲେ ବି ନିଜ କୁଳମର୍ଯ୍ୟାଦା ତ ପୁଣି ଦେଖିବାକୁ ହେବ ! କିନ୍ତୁ ଦଅର ସାହେବ ତାକୁ ମନା କରିବେ କ'ଣ, ତାରି କଥାରେ ଭାସିଗଲେ । ଈଶ୍ୱରଙ୍କ ଦୟାରୁ ଘାଟମପୁରରେ ଆମର ଭଲ ଜାଗା ଅଛି, ସେଠି ରହି ଆରାମରେ କାମ କରନ୍ତା; ସେ କଥା ନାହିଁ, ଖାଲି ଦେଶବିଦେଶ ବୁଲିବା ଲକ୍ଷ୍ମୀର ମନ । ନାଗପୁର ଗଲା, ସେଠୁ ଆଲ୍ଲାହାବାଦ ଆସିଲା । ଖାଲି ଲଗିଛି କାଠକାରଖାନା ଝୁଙ୍କ୍ ।"

ଜ୍ୱାଲପ୍ରସାଦ ହସି ହସି କହିଲେ, "ବାପା, ଏ ତ ଆଜିକାଲି ନୂଆ ଯୁଗ । ନିଜ ହାତରେ ତ କେହି ବଢ଼େଇକାମ କରୁନାହିଁ । ସେ ତ କାଠର କାରଖାନା ଖୋଲିବ, ଶହ ଶହ ବଢ଼େଇ ସେଥିରେ ଚାକିରି କରିବେ । ମେସିନ୍‌ଦ୍ୱାରା କାମ ହେବ । ଲକ୍ଷ ଲକ୍ଷ ଟଙ୍କାର କାମ ହେବ । ନୂଆ ସଂସାରର ନୂଆ ରୂପ ହେବ ।"

ନୂଆ ସଂସାରର ନୂଆ ରୂପ ହେବ—ଏ କଥାର ମର୍ମ ଶିବଲାଲ କିଛି ବୁଝିପାରିଲେ ନାହିଁ । ତା ଛଡ଼ା ପୁଅ ଯେତେବେଳେ ନୂତନ ଯୁଗର ଲୋକ ତା' କଥା ମିଛ ବା ହେବ କେମିତି ? ମୁନ୍‌ସି ଶିବଲାଲ କହିଲେ, "ହଁ, ଆଲ୍ଲାହାବାଦ ସହର ଆମ ପ୍ରଦେଶର

ରାଜଧାନୀ । ଲାଟ ସାହେବ ଏଠି ରହୁଛନ୍ତି । ଏଠି ଅବଶ୍ୟ ଟଙ୍କା ଅଛି । ବାଣିଜ୍ୟ-ବ୍ୟବସାୟରେ ତ ପଇସା ନିଶ୍ଚୟ ମିଳିବ ।''

ସ୍ୱା ଭିତରେ ରାଧେଲାଲ କିଛି କରିବାପାଇଁ ଦୁଇଥର ଗଲା ଖଙ୍କାରି ସାରିଥିଲେ । ବର୍ତ୍ତମାନ ସେ ଆଉ ସମ୍ଭାଳି ନପାରି କହିଲେ, ''ହଁ, ବେପାର-ବଣିଜରେ ପଇସା ଅଛି; କିନ୍ତୁ ବେପାରୀ ସାହେବମାନଙ୍କ ହାତରୁ ରକ୍ଷା ପାଇଲେ ତ ! ଆଲାହାବାଦରେ ଯେତେ ବଡ଼ ଦୋକାନ ଅଛି ସବୁ ସାହେବମାନଙ୍କର । ସେଥିରୁ ବେଶୀ ସରକାରୀ ଜିନିଷ କିଣାହୁଏ । ତେବେ ଜ୍ୱାଲା, ମନେ ରଖିବାକୁ ହେବ ଯେ ଲକ୍ଷ୍ମୀଚନ୍ଦଙ୍କୁ ସାହେବମାନଙ୍କ ସହିତ ଲଢ଼ିବାକୁ ହେବ । ସାହେବମାନଙ୍କ ସହିତ ମୁକାବିଲା କରିବା କିଛି ସହଜ କଥା ନୁହେଁ । କ'ଣ ଜ୍ୱାଲା, ମୁଁ ମିଛ କହୁଛି ?''

ଏ କଥା ଶୁଣି ଜ୍ୱାଲାପ୍ରସାଦ ଚମକି ପଡ଼ିଲେ । ପ୍ରକୃତରେ ରାଧେଲାଲଙ୍କ କଥା ସତ୍ୟ । ସାହେବମାନଙ୍କ ସହିତ ମୁକାବିଲା କରିବା ପ୍ରକୃତରେ ଏକ ସମସ୍ୟା ! ଏ ବିଷୟରେ କିଛିକାଳ ଚିନ୍ତା କରି ଜ୍ୱାଲାପ୍ରସାଦ କହିଲେ, ''ହଁ, ପ୍ରକୃତରେ କଳକାରଖାନା ସବୁ ତ ସାହେବମାନଙ୍କ ହାତରେ । ତେଣୁ କାଠକାରଖାନାରେ ପ୍ରକୃତରେ ଅସୁବିଧା ପଡ଼ିପାରେ । ମୁଁ ଏ ବିଷୟରେ ଲକ୍ଷ୍ମୀଚନ୍ଦ ସଙ୍ଗେ କଥାବାର୍ତ୍ତା କରିବି । ଏହି ଦୃଷ୍ଟିରୁ ମୁଁ କେବେ ବିଚାର କରିନଥିଲି । ଲକ୍ଷ୍ମୀଚନ୍ଦ ତ ବମ୍ବେ ଓ ଆଲାହାବାଦରେ ବ୍ୟବସାୟ କରି ଆସିଛି; ସେ ହୁଏତ ଏ ବିଷୟରେ କିଛି ଚିନ୍ତା କରି ପାରିଥାଏ ।''

ମୁନସି ରାଧେଲାଲ ବଢ଼ିଆ କଥାଟାଏ କହିଲେ ଭାବି ମନେମନେ ଭାରି ଖୁସିହୋଇ ପୁଣି କହିଲେ, ''ବିଲାତି କାଠ ସଙ୍ଗେ ହିନ୍ଦୁସ୍ଥାନୀ କାଠ କୁଆଡ଼ୁ ସମାନ ହେବ ? ବିଲାତରୁ କାଠଜିନିଷ ସବୁ ତିଆରି ହୋଇ ଆସୁଛି । ଲମ୍ବରଦାରଣୀ ! ତମେ ନିଜେ ଲକ୍ଷ୍ମୀଚନ୍ଦକୁ ବୁଝାଅ, ନଚେତ୍ ତମ ବୋହୂ ଜରିଆରେ ତାକୁ କହ ସେ କାଠ ବ୍ୟବସାୟରେ ନ ପଶୁ ।''

ଲମ୍ବରଦାରଣୀ ଜେଦେଇ ଜ୍ୱାଲାପ୍ରସାଦଙ୍କୁ କହିଲେ, ''ଦିଅର ବାବୁ, ପଅରଦିନ ଲକ୍ଷ୍ମୀଚନ୍ଦ ଆସିଲେ ତମେ ଟିକିଏ ତା ସଙ୍ଗେ କଥାବାର୍ତ୍ତା କରିବ । ଆମ କଥାକୁ ସେ ଫୁଟ୍‌କିମାରି ଉଡ଼ାଇ ଦେଉଛି, ତମ କଥା ସେ ଶୁଣିଲେ ଶୁଣିପାରେ ।''

ସେତେବେଳେ ଲକ୍ଷ୍ମୀଚନ୍ଦର ସ୍ତ୍ରୀ ରାଧା ଗୋଟାଏ କଣରେ ବସି ସବୁକଥା ଶୁଣୁଥିଲା । କେତେ କଥା ସେ ବୁଝୁଥିଲା, କେତେ ବୁଝୁନଥିଲା । କିନ୍ତୁ ସେ ଏତିକି ଜାଣୁଥିଲା ଯେ ତା' ସ୍ୱାମୀ ବିଷୟରେ ଆଲୋଚନା ଚାଲିଛି; ତେଣୁ ସେ କଥା ତାକୁ ବେଶୀ ସୁଖ ଲାଗୁ ନଥିଲା । ସେ ତା ଶାଶୁଙ୍କ କାନରେ ଚୁପଚୁପ କରି କହିଲା, ''ମା' ବହୁତ ରାତି ହେଲାଣି, ତମ ଖାଇବା-ପିଇବା ପାଇଁ କିଛି ଯୋଗାଡ଼ କରିବି କି ?''

କେଦେଇଙ୍କର ବର୍ତ୍ତମାନ ମନେ ପଡ଼ିଲା ଖାଇବା-ପିଇବା ପାଇଁ ବନ୍ଦୋବସ୍ତ କରିବାକୁ ହେବ । ତେଣୁ ସେ ବୋହୂକୁ କହିଲେ, "ହଁ, ପୁରି ତରକାରି ତିଆରି କର, ଛୁନକା ତତେ ସାହାଯ୍ୟ କରିବ ।" ତା'ପରେ ସେ ପୁଣି ଜ୍ୱାଲାପ୍ରସାଦଙ୍କୁ କହିଲେ, "ଦେଅର ବାବୁ, ତମେ ଆଜି ଖାଇସାରି ସୋଗିବ ଚାଲିଯିବ, ନଚେତ୍ କାଲି ସକାଳୁ ଯିବ; ବର୍ତ୍ତମାନ ଗଲେ ରାତି ଅଧକୁ ପହଞ୍ଚିବ, ବହୁତ ଶୀତ ପଡ଼ୁଛି, ରାସ୍ତାରେ କଷ୍ଟ ହେବ ।"

ମୁନ୍‌ସି ରାଧେଲାଲ କହିଲେ, "କଷ୍ଟ କ'ଣ ହେବ ଲମ୍ବରଦାରଣୀ ? ଆମେ ତିନିଜଣ ଅଛୁ । ପୁଣି ଜ୍ୱାଲାର ଘୋଡ଼ାଗାଡ଼ି ଅଛି, ବଜାରରୁ ପୁରି ମିଠାଇ ମଗାଇଦେବା, ବୋହୂକୁ କାହିଁକି ଅକାରଣ ହଇରାଣରେ ପକାଇବା ?"

ସେତେବେଳକୁ ଛୁନକା ପୁଣି ଚୁଲି ଲଗାଇବାକୁ ବସିଥିଲା । ମୁନ୍‌ସି ତାକୁ ଚାହିଁ କହିଲେ, "ଶୁଣ, ଯା ବଜାରରୁ ସେରେ ପୁରି ଓ ଦୁଇସେର ମିଠାଇ ନେଇ ଆ । ଜ୍ୱାଲାକୁ ଶୀଘ୍ର ଯିବାକୁ ହେବ ।"

ଛୁନକା ବିଗିଡ଼ିଯାଇ କହିଲା, "ହଁ, ପଇସା ବେଶୀ ହୋଇଗଲାକିନା, ଯେତେବେଳେ ଇଚ୍ଛା ସେତେବେଳେ ପୁରି ମିଠେଇ ମଗାଇ ଆଣ । ମୁଁ ତ ଚୁଲି ଲଗାଇଲିଣି, ସାଙ୍ଗେ ସାଙ୍ଗେ ଚୁକି ହୋଇଯିବ । ମନେରଖିଥା, ଜ୍ୱାଲାକୁ ରାତି ଅଧରେ ମୁଁ ଛାଡ଼ିବି ନାହିଁ । ଉଠିବୁ ତ ଲୋ ବୋହୂ !"

## ନଅ

ଛୁନକା ଗଙ୍ଗାକୁ ଗପ ଶୁଣାଉଥିଲା । କହୁଥିଲା, ଗୋଟିଏ ରାଜ୍ୟରେ ଜଣେ ରାଜା ଥିଲେ । ତାଙ୍କର ସାତ ରାଣୀ । ସାତ ରାଣୀଙ୍କ ପାଇଁ ସାତଟା ରାଣୀମହଲ; ଆଉ ସବୁ ରାଣୀଙ୍କର ଗୋଟିଏ ଗୋଟିଏ ରାଜକୁମାର ଥିଲେ ।

ଏତିକିବେଳକୁ ରାଧେଲାଲଙ୍କ ସ୍ତ୍ରୀ ଡାକ ପକାଇଲେ, "ଛୁନକା, ଭଣ୍ଡାରଘର ଚାବି ଆଣ ତ !"

ଗଙ୍ଗାକୁ କୋଳରେ ବସାଇ ଖେଳାଉ ଖେଳାଉ ଛୁନକା ଜବାବ ଦେଲା, "କ'ଣ ଦରକାର ? ମୁଁ ଏଇ ଯାଉଛି, ଜିନିଷ ବାହାର କରିଦେବି ।"

ରାଧେଲାଲଙ୍କ ସ୍ତ୍ରୀ ରାଗିଯାଇ ବଡ଼ପାଟିରେ କହିଲେ, "ମୁଁ ତ କହୁଛି ଚାବି ଦେ, ମୁଁ ନିଜେ ବାହାର କରିନେବି ।"

ଛୁନକୀ କହିଲା, "ମୁଁ ଜିନିଷ ସଜାଡ଼ି କରି ରଖିଛୁ, ତମକୁ ସହଜରେ ମିଳିବ ନାହିଁ, ସବୁ ଏପାଖ ସେପାଖ ହୋଇଯିବ ।" ତାପରେ ସେ ଗଙ୍ଗାପ୍ରସାଦକୁ କହିଲା, "ଉଠିଗୁଡ଼ି, ମୁଁ ଜିନିଷ ଦେଇଆସେ ।"

କିନ୍ତୁ ଦଶବର୍ଷର ପିଲା ଗଙ୍ଗାର ମନ ଗପ ଉପରେ ଏମିତି ମଜ୍ଜି ଯାଇଥିଲା ଯେ ସେ ତାକୁ ଛାଡ଼ିବାକୁ ରାଜି ହେଲା ନାହିଁ । କହିଲା, "ଛୁନକୀ ଆଇ, ଗପ ନ ସରିଲେ ମୁଁ ତୁମକୁ ଛାଡ଼ିବି ନାହିଁ । ତମେ ଅଜିଙ୍କୁ କାହିଁକି ଚାବିଟା ଦେଇ ଦେଉନାହଁ ?" ତାପରେ ଗଙ୍ଗାପ୍ରସାଦ ଛୁନକୀ ଜାନିରୁ ଚାବି ଫିଟାଇ ନେଇ ରାଧେଲାଲଙ୍କ ସ୍ତ୍ରୀଙ୍କୁ ଦେଇ ଫେରିଆସି କହିଲା, "ହଁ ଛୁନକୀ ଆଇ ! ସବୁ ରାଣୀଙ୍କର ଗୋଟିଏ ଗୋଟିଏ ରାଜକୁମାର ଥିଲେ, ସେଠୁ କ'ଣ ହେଲା ?"

ବର୍ତ୍ତମାନ ଛୁନକୀର ମନ ଗପରେ ନଥିଲା କି ଗଙ୍ଗାପ୍ରସାଦ କଥାକୁ ସେ ଶୁଣୁ ନଥିଲା; ବରଂ ସେ ଦେଖୁଥିଲା ରାଧେଲାଲର ସ୍ତ୍ରୀ କେମିତି ଭଣ୍ଡାରଘର ଆଡ଼କୁ ଯାଉଛନ୍ତି । ସେ ଗଙ୍ଗାପ୍ରସାଦକୁ କୋଳରୁ ଓହ୍ଲାଇ ଦେଇ କହିଲା, "ମୁଁ ଏଇ ସାଙ୍ଗେ ସାଙ୍ଗେ ଆସୁଛି । ତୁ ଏଇଠି ଲକ୍ଷ୍ମୀ ସଙ୍ଗରେ ଖେଳୁଥା ।" ତା'ପରେ ସେ ଭଣ୍ଡାର ଘର ଆଡ଼କୁ ଚାଲିଲା ।

କିନ୍ତୁ ସେ ଭଣ୍ଡାର ଘରେ ପହଞ୍ଚିବା ପୂର୍ବରୁ ମୁନ୍‌ସି ଶିବଲାଲଙ୍କ ବିକଳ ଧ୍ୱନି ଶୁଣି ତାଙ୍କର ଆଡ଼କୁ ଫେରିଗଲା ।

ମୁନ୍‌ସି ଶିବଲାଲଙ୍କର ମୁଣ୍ଡବ୍ୟଥା ବର୍ତ୍ତମାନ ବହୁତ ବଢ଼ି ଯାଇଥିଲା । ତ୍ରିବେଣୀ ଉପବାସ ସମୟରେ ତାଙ୍କୁ ଯେଉଁ ଥଣ୍ଡା ଓ କାଶ ଧରିଥିଲା, ତାହା ଏପର୍ଯ୍ୟନ୍ତ ଭଲ ହୋଇ ନଥିଲା । ପ୍ରଥମେ କବିରାଜୀ ଔଷଧ ଖାଇଲେ, ସେଥିରେ କିଛି କମିଲା ନାହିଁ । ବୈଦ୍ୟ କହିଲେ, ବେଶି ମଦ ଯୋଗୁ ରୋଗ କମୁନାହିଁ । ତାଙ୍କୁ ସେ ମଦ ଛାଡ଼ିବା ପାଇଁ କହିବାରୁ ଶିବଲାଲଙ୍କ ମନ ସେଥିରେ ମାନିଲା ନାହିଁ । ଏମିତି ମାସେ କଟିଗଲା । ତାପରେ ସେ ବୈଦ୍ୟଙ୍କୁ ଛାଡ଼ି ଡାକ୍ତରୀ ଚିକିତ୍ସା କଲେ । ଦୁଇଦିନ ହେଲା ସେ ଔଷଧ ଖାଉଥିଲେ ।

ଛୁନକୀ ତାଙ୍କ କୋଠରୀରେ ପହଞ୍ଚି ପଚାରିଲା, "ଦେହ କ'ଣ ଟିକିଏ ବେଶୀ ଖରାପ ଲାଗୁଛି ?"

ଶିବଲାଲ ଛୁନକୀ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ପୂର୍ବପରି ବିକଳ ହୋଇ ପାଟି କରୁଥିଲେ ।

ଛୁନକୀ ଶିବଲାଲଙ୍କ ମୁଣ୍ଡ ପାଖରେ ବସି ତାଙ୍କ ମୁଣ୍ଡ ଚିପିଦେବାରୁ ତାଙ୍କୁ ବହୁତ ଆରାମ ଲାଗିଲା, କଷ୍ଟ ଅନେକ କମିଗଲା । ସେ ଆସ୍ତେ ଆସ୍ତେ ଆଖି ଖୋଲି ପଚାରିଲେ,

"ଆରେ ତୁ କେଉଁଠି ଥିଲୁ ?"

"ଗଙ୍ଗାକୁ ଯାଇଥିଲି, ହେଲେ ତମେ ଡାକ ଦେଲନାହିଁ କାହିଁକ ? ମୁଁ ସାନବୋହୂ ପଛେ ପଛେ ଭଣ୍ଡାରଘରକୁ ଯାଉଥିଲି । ତମ ପାଟି ଶୁଣି ଇଆଡ଼କୁ ଚାଲି ଆସିଲି ।"

ମୁନ୍‌ସି ଶିବଲାଲ ପଚାରିଲେ, "ସାନବୋହୂ ପଛେ ପଛେ ତୁ ଭଣ୍ଡାରଘରକୁ କାହିଁକି ଯାଉଥିଲୁ ?"

"ମୋଠୁ ଭଣ୍ଡାରଘର ଚାବି ମଗାଇ ନେଲେ । ମୁଁ କହିଲି ଜିନଷ ସବୁ ମୁଁ ସଜାଡ଼ି-କରି ରଖିଛି, ଓଲଟପାଲଟ ହୋଇଯିବ । ମୋତେ ମାଗିଲେ ମୁଁ ହାତରେ କାଢ଼ିକରି ଦେଇଦେବି ।"

ମୁନ୍‌ସି ମନେ ମନେ ଟିକିଏ ଭାବିଲେ । ତାଙ୍କର ମନେ ହେଲା ଘରର ଅଧିକାର ପରଲୋକଙ୍କ ହାତକୁ ଚାଲିଯାଉଛି, ପରିବାରର ପରମ୍ପରା ଭାଙ୍ଗିଯାଉଛି । ତେଣୁ ପାଟି ଫିଟାଇ କ୍ଷୀଣ ସ୍ୱରରେ ସେ କହିଲେ, "ତୁ ସାନବୋହୂକୁ କାହିଁକି ଚାବି ଦେଲୁନାହିଁ ? ଘରର ମାଲିକ ସେ, ତାଙ୍କୁ କେତେ ଖରାପ ଲାଗିଥିବ ?"

ଚୁନକୀ ଟିକିଏ ଚଢ଼ାଗଳାରେ ଜବାବ ଦେଲା, "ଘରର ମାଲିକାଣୀ ତ ଜ୍ୱାଲାର ବୋହୂ; ଜ୍ୱାଲା ଯୋଗୁ ସିନା ସମସ୍ତେ ଆଜି ରାଜଭୋଗ କରୁଛନ୍ତି । ଏବେ ଜ୍ୱାଲା ସ୍ତ୍ରୀ କୁଆଡ଼େ ଗଲା, ମାଲିକ ହୋଇଗଲେ ସାନବୋହୂ !"

ଶିବଲାଲଙ୍କୁ ଚୁନକୀର କଥା ଭଲ ଲାଗିଲା ନାହିଁ ସତ; କିନ୍ତୁ ସେ କ'ଣ ଜବାବ ଦେବେ କିଛି ଭାବି ପାରିଲେ ନାହିଁ । କିଛି ସମୟ ଆଖି ବୁଜି କ'ଣ ଭାବିଲାପରି ରହିଗଲେ । ତାପରେ ଖୁବ୍ ପାଟି କରି କହିଲେ, "ନା, ଯାହା ହେଲେ ବି ସାନବୋହୂ ଘରର ମାଲିକ; ବୁଝିଲୁ ! ତୋର ଜାଣିବା ଦରକାର ରାଧାର ସ୍ତ୍ରୀ ଯେତେ ଦିନ ବଞ୍ଚିଛି ଓ ଯେତେ ଦିନ ଏଠି ସେ ଅଛି, ସେତେ ଦିନ ସେ ଘରର ମାଲିକ । ଏ ଘର ବିଷୟରେ କଥା କହିବାକୁ ତୁ କିଏ ?"

ଏ ପ୍ରକାରର ଉତ୍ତର ଶୁଣି ଚୁନକୀ ଆଖିରେ ଲୁହ ଭରିଗଲା; ତଥାପି ସେ ଶିବଲାଲଙ୍କ ମୁଣ୍ଡ ସେମିତି ଚିପୁଥାଏ । ଏମିତି ଗାଳି, ଏମିତି ଅପମାନ ତ ଚୁନକୀ ପକ୍ଷରେ ଆଜି ନୂଆ ନୁହେଁ । ଜୀବନସାରା ଏଗୁଡ଼ା ତା ଦେହର ମଳି ହୋଇଯାଇଛି । ସେ ଏଣେ କାନ୍ଦୁଥାଏ, ତେଣେ ମୁଣ୍ଡ ଚିପୁଥାଏ । ଶିବଲାଲ ଆଖି ବୁଜି ସେମିତି ପଡ଼ିଥାନ୍ତି, ସତେ ଯେମିତି ଚୁନକୀ ସେଠି ଅଛି ବୋଲି ସେ ଜାଣୁ ନଥାନ୍ତି । ଟିକିଏ ଆରାମ ଲାଗିବାରୁ ସେ ଆସ୍ତେ ଆସ୍ତେ ଶୋଇପଡ଼ିଲେ ଓ ଚୁନକୀ କୋଠରୀରୁ ବାହାରକୁ ଚାଲିଗଲା ।

ଦୁଇପ୍ରହର ଗଡ଼ାଗଡ଼ି ବେଳ, ପୁରି ଛଣା ହେଉଥାଏ । ରାଧେଲାଲର ସ୍ତ୍ରୀ ସାମନାରେ

ବସିଥିବା କଣନୁକୁ ଖାଇବାକୁ ଦେଉଥାଏ ଓ କଣନୁ ଖାଉଥାଏ । କଣନୁ ସକାଳୁ କୁଆଡ଼େ ଯାଇଥିଲି ଯେ ଏବେ ଆସି ପହଞ୍ଚିଲା । ତା ପାଇଁ ସକାଳ ପ୍ରହରୁ ରୁଟି ଡାଲି ଘୋଡ଼ା ହୋଇ ରହିଥିଲା । ଏବେ ବି ସେଗୁଡ଼ା ଘର କଣରେ ସେମିତି ପଡ଼ିରହିଥିଲା । ଛୁନକୀର ଦେହ ସହିଲା ନାହିଁ, ସେ ବାରଣ୍ଡାରେ ଠିଆହୋଇ କଣନୁର ଖିଆପିଆ ଦେଖୁଥାଏ । କନୁ ଘଧେଲଲର ସ୍ତ୍ରୀ ଓ କଣନୁ ତା'ଆଡ଼କୁ ଚାହୁଁ ନଥାନ୍ତି କମ୍ବା କଛି କହୁ ନଥାନ୍ତି, ସତେ ଯେମିତି ସେମାନେ ତାକୁ ଦେଖି ନାହାନ୍ତି । ମନକୁ ତାର ଖରା ବାଧିଲା । ସେଠୁ ସେ ଗୁଲିଯାଇ ଯମୁନା ପାଖରେ ପହଞ୍ଚିଲା । ଯମୁନା ତାକୁ ଦେଖିଲା-ମାତ୍ରେ ପଚାରିଲା, "ଖୁଡ଼ୀ, କୁଆଡ଼େ ଯାଇଥିଲ କି ? ଦେଖିଲ ଗଙ୍ଗା କେତେ କାନ୍ଦୁଛି ? କହୁଛି, ଛୁନକୀ ଆଈ ମୋତେ ଗୁଡ଼ି ଦେଇ ସାନ ଆଈ ପଛେ ପଛେ ଗୁଲିଗଲା ।"

ଛୁନକୀ କିଛି ଜବାବ ଦେଲା ନାହିଁ, ଗଙ୍ଗାକୁ କୋଳରେ ଧରି ଯମୁନା ଖଟ ପାଖରେ ଚୁପଚାପ୍ ବସିଗଲା । ଅଖିରୁ ତା ର ଅବିରଳ ଲୁହଧାର ଛୁଟିଲା ।

ଯମୁନା କିଛି କାଳ ଏକ ଆଖିରେ ଛୁନକୀକୁ ଗୁହିଁ ରହିଲା । ମନରେ ତାର କେମିତି ଗୋଟାଏ ଭୟ ଆସିଗଲା, ପଗ୍ଚରିଲା, "କଣ ହେଲା ଖୁଡ଼ୀ, କାନ୍ଦୁଛ କାହିଁକି ? ବାପାଙ୍କ ଦେହ ଭଲ ଅଛିଟି ?"

ଛୁନକୀ ଲୁହ ପୋଛି ଦେଇ କ୍ଷୀଣ ସ୍ୱରରେ କହିଲା, "ହଁ ତାଙ୍କ ଦେହ ଭଲ ଅଛି, କନୁ ଏସବୁ ତାଙ୍କୁ କିଛି ଦେଖାଯାଉନାହିଁ ।"

ଯମୁନା ପଗ୍ଚରିଲା, "କଣ ଦେଖାଯାଉନାହିଁ ?"

"ରୋଷାଇଘରକୁ ଯାଇ ତମେ ନିଜେ ଦେଖୁନା ! ଗରମ ପୁରି ଛଣାହେଉଛି, କଣନୁ ଖାଉଛି । ସକାଳ ଜିନଷ ସେମିତି ଘୋଡ଼ା ହୋଇ ରହିଛି । ସେଗୁଡ଼ା ଫୋପଡ଼ା ହେବ ନା କ'ଣ ?"

ଘିଅ-ବାସନା ଆସି ଯମୁନା ନାକରେ ବାଜିଲା । ସେ ସବୁ କଥା ବୁଝିଗଲା, ପଗ୍ଚରିଲା, "ଭଣ୍ଡାରଘର ଗୁବି ତ ତମ ପାଖରେ ଥିଲା, ଖୁଡ଼ୀ କ'ଣ ବଜାରରୁ ଘିଅ ଅଟା ମଗାଇଲେ ?"

"ସାନବୋହୂ ପୁଣି ବଜାରରୁ ମଗାଇବେ, ତାଙ୍କର ମୁହଁ ଅଛି ? ଭଣ୍ଡାରଘର ଗୁବି ମୋଠୁ ଜବରଦସ୍ତ ଛଡ଼ାଇ ନେଇଛନ୍ତି । ତେଣେ ତ ଫତେପୁର ଘରେ ମାଲିକ, ପୁଣି ଏଠିକି ଆସି ଏଠି ବି ମାଲିକ ହୋଇ ବସିଛନ୍ତି । ମନଇଚ୍ଛା ଖର୍ଚ୍ଚ ଗୁଲିଛି । କାଲି ବଗୁରା କଷ୍ଟ କରି କମାଉଛି, ଆଉ ଏଠି ଦାଦପୁଅ ବୋହୂ ଆସି ହୁକୁମ ଖଟାଉଛି ।"

ଯମୁନା ମନରେ ଯେଉଁ ଭାବନା ଉଠିଆସୁଥିଲା ତାକୁ ସେ ଚପାଇ ରଖି କହିଲା, "ଛାଡ଼ ଛୁନକୀ ଖୁଡ଼ୀ, ସେମାନେ ତ ନିଜ ଭାଗ ଖାଇବା ପାଇଁ ଆସିଛନ୍ତି । ଯା, ତମେ

ଗଙ୍ଗାକୁ ଟିକିଏ ବାହାରେ ବୁଲେଇ ଆଣ ।"

"ନାହିଁ, ସେମାନେ ନିଜ ଭାଗ ଖାଉନାହାନ୍ତି ଯେ ଗଙ୍ଗାର ଭାଗ ଖାଉଛନ୍ତି । ଗଙ୍ଗା ତ ରାଜକୁମର, ବଡ଼ ହେଲେ ପାଠ ପଢ଼ିବ, ଜମିବାଡ଼ି କିଣିବ, ବଡ଼ ମଣିଷ ହେବ । ତା' ଭାଗ ତ ଏଇ ଠକ ସବୁ ଖାଇଯାଉଛନ୍ତି ।" ଏମିତି କହି କହି ଛୁନକୀ ଗଙ୍ଗାକୁ ନେଇ ଚାଲିଗଲା ।"

ଛୁନକୀ ଯେମିତି ଭାବରେ କଥାଟା ବନ୍ଦ କଲା, ସେତିକିରେ ସେ କଥା ବନ୍ଦ ହେଲାନାହିଁ; ବରଂ ବନ୍ଧୁ ଧନ ପାଇଁ ତା' ଲାଗିରହିଲା । ଏମାନେ ଖାଲି ଗଙ୍ଗାର ଭାଗ ଖାଉନାହାନ୍ତି; ତାର ଭାଗ୍ୟକୁ ମଧ୍ୟ ଖାଉଛନ୍ତି । ଏହି କଥାରେ ଯମୁନା ଚିନ୍ତିତ ହୋଇ ପଡ଼ିଲା । ଛୁନକୀ ଯାହା କହିଲା ତାହା ଅପ୍ରିୟ ହେଲେ ମଧ୍ୟ ଏକ ଭୟଙ୍କର ସତ୍ୟ । ସେ ସତ୍ୟକୁ ଆଖି ବୁଜି ଦେଇ ହେବ ନାହିଁ କିମ୍ବା ଉଡ଼ାଇ ଦେଇ ହେବ ନାହିଁ । ଠିକ୍ ଏତିକି ବେଳକୁ ରାଧେଲାଲର ସ୍ତ୍ରୀ ଗୋଟାଏ ବେଲାରେ ପୁରି ତରକାରି ଧରି ଆସି ପହଞ୍ଚିଲା, କହିଲା, "ରାତି ଜଳଖିଆ ତିଆରି କରି ଦେଇଛି । କିଶନୁକୁ ଭାରି ଭୋକ ହେଉଥିଲା । କହିଲି ସକାଳଖିଆ ରଖା ହୋଇଛି, ଏଇନେ କାହିଁକି ନଷ୍ଟ କରିବୁ, ଜଳଖିଆ ଟିକିଏ ଖାଇଦେ । ସକାଳଖିଆଟା ପୁଣି ରାତିରେ ଖାଇଦେବୁ । ତୋ ପାଇଁ, ଗଙ୍ଗା ପାଇଁ ଓ ଜ୍ୱାଲା ପାଇଁ ଏହି ଜଳଖିଆ ଆଣିଛି, ରଖ ।"

ଯମୁନା ଖୁଡ଼ୀଙ୍କୁ ଚାହିଁଲା; କିନ୍ତୁ କିଛି କହିବାକୁ ସାହସ ପାଇଲା ନାହିଁ । କିନ୍ତୁ ତା' ଆଖିରେ ଯେଉଁ ଭାବ ଫୁଟିଉଠୁଥିଲା ରାଧେଲାଲର ସ୍ତ୍ରୀ ସହଜରେ ତାହା ଜାଣିପାରି ତା'ମନରୁ ସେ କଥା ଦୂର କରିଦେବା ପାଇଁ କହିଲା, "ଭଣ୍ଡାରଘର ଚାବି ଆଜି ମୁଁ ଛୁନକୀଠାରୁ ନେଇ ଯାଇଛି । ମୁଁ ଯେତେବେଳେ ଏଠିକି ଆସିଲଣି, ଚାକରାଣୀ ହାତରେ କାହିଁକି ଘରକଥା ଛାଡ଼ିଦେବା ? ଏ ଘରର ଖିଆପିଆ ଦାୟିତ୍ୱ ସବୁ ମୋର ।"

କିନ୍ତୁ ଯମୁନା ପାଟିରୁ ହଠାତ୍ ବାହାରି ପଡ଼ିଲା, "ହଁ ଖୁଡ଼ୀ, ତମେ ଚାବି ନେଲ, ଭଲ କଲ । ମୁଁ ସେଇ କଥା ଭାବୁଥିଲି, କିନ୍ତୁ ପୁଣି ଭାବିଲି ତମ ଉପରେ ବେଶୀ କାମ ପଡ଼ିଯିବ । ତମେ କେଇଟା ଦିନ ଏଠି ରହିବ ଯେ ! ତୁମକୁ ତ ଯେମିତି ହେଲେ ଫତେପୁର ଘର ସମ୍ଭାଳିବାକୁ ହେବ । ଆମକୁ ତ ଏଠି ସବୁ କଥାରେ ଛୁନକୀ ଖୁଡ଼ୀ ଭରସା; ତମେ ତ ଜାଣ ସବୁକାମ ସେ କରନ୍ତି । ସେଇଥିପାଇଁ ତାଙ୍କ ହାତରେ ମୁଁ ଚାବି ଦେଇଥିଲି । ତାଛଡ଼ା ତମେ ଯିବା ପରେ ସେଇ ତ ପୁଣି ଘର ବୁଝିବେ ! ସେଇଥିପାଇଁ ତାଙ୍କ ହାତରୁ ଚାବି ଆଣି ତମକୁ ମୁଁ ଦେଇ ନଥିଲି । ତେବେ ଭଲ ହେଲା, ତାଙ୍କଠୁ ଚାବି ନେଇଗଲ ।"

ଯମୁନା ଧୀର ସ୍ଥିର କୋମଳ ଭାଷାରେ ଯାହା କହିଲା, ସେଥିରେ କୌଣସି ସଂଘର୍ଷ

କିମ୍ବା ବିରୋଧର କଥା ନଥିଲା । କିନ୍ତୁ ରାଧେଲାଲର ପତ୍ନୀ ଫତେପୁର ଚାଲିଯିବ ଏହି କଥାକୁ ସେ ଯାହା ଦୁଇଥର କହିଲା, ତାହା ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ମନେ ହେଲା ତାର ସେଠିକାର ରହଣି ଓ ତାର ଅଧିକାରକୁ ଯମୁନା ସତେ ଯେପରି ପସନ୍ଦ କରୁ ନଥିଲା । ସେ କହିଲା, "ମୁଁ ଯେତେବେଳେ ଆସିଲିଣି, ତୋର ଏ ସବୁ କଥା ଚିନ୍ତା କରିବା କିଛି ଦରକାର ନାହିଁ । ମୁଁ ଫତେପୁର କଥା ବୁଝିବି କିମ୍ବା ଫତେପୁର ଯିବି କିମ୍ବା ଫତେପୁରରୁ ସମସ୍ତେ ଏଠିକି ଚାଲି ଆସିବେ କିମ୍ବା ରାମୁ ଓ ଶାମୁର ବୋହୂ ଦୁହେଁ ଫତେପୁର କଥା ବୁଝିବେ, ସେ କଥା ତୋର ଚିନ୍ତା କରିବା ଦରକାର ନାହିଁ ।" ଏତିକି କହି ରାଧେଲାଲର ସ୍ତ୍ରୀ ଚାଲିପଡ଼ି ଚାଲିଗଲା ।

ଯମୁନା କଥାରେ ରାଧେଲାଲଙ୍କ ସ୍ତ୍ରୀ ଯେମିତି ମୁହାଁମୁହିଁ ଜବାବ ଦେଲା ସେଥିରେ ଯମୁନା ଟିକିଏ ବିଚଳିତ ହୋଇ ପଡ଼ିଲା । ଭାବିଲା ଛୁନକା ଖୁଡ଼ୀ ଠିକ କହୁଥିଲେ । ଗଙ୍ଗାର ଭାଗ ଓ ଭାଗ୍ୟ ଉଭୟଙ୍କୁ ନଷ୍ଟ କରିବା ପାଇଁ କକାଘର ସମସ୍ତେ ଆସି ଏଠି ଜ୍ୱାଲାପ୍ରସାଦଙ୍କ ଗ୍ରୀବ ଉପରେ ବସିବେ ।

ଯମୁନା କିଛି ସମୟ ହତବୁଦ୍ଧି ହୋଇ ବସିପଡ଼ିଲା । ତା'ପରେ ନିଜ କୋଠରୀରୁ ବାହାରି ମୁନ୍‌ସି ଶିବଲାଲଙ୍କ କୋଠରୀ ଆଡ଼କୁ ଗଲା ଓ ଦରଜା ପାଖରେ ଠିଆ ହୋଇ ପଚାରିଲା, "ବାପା, ଦେହ କେମିତି ଅଛି ? ଏ ଔଷଧରେ କ'ଣ କିଛି ଲାଭ ହେଲା ?"

ମୁନ୍‌ସି ଶିବଲାଲ କହିଲେ, "ବର୍ତ୍ତମାନ ତ ଟିକିଏ କମିଛି, ଈଶ୍ୱରଙ୍କ ଦୟା ।"

ଯମୁନା କିଛି ନ କହି ଦୁଆରକୁ ଆଉଜି ଛିଡ଼ା ହୋଇ ରହିଲା । ମୁନ୍‌ସି ଶିବଲାଲ ପଚାରିଲେ, "କ'ଣ କିଛି କହିବାର ଅଛି ?" କିଛି ସମୟ ପୂର୍ବେ ଛୁନକା ସାଙ୍ଗରେ ସେ ଯେଉଁ କଥାବାର୍ତ୍ତା ହୋଇଥିଲେ ତାଙ୍କର ମନେ ପଡ଼ିଗଲା ।

"ନାହିଁ, କିଛି କହିବାର ନାହିଁ ଯେ, ଶୁଣିଥିଲି ଖୁଡ଼ୀ ଏବେ କହୁଥିଲେ ଫତେପୁରରୁ ତାଙ୍କର ସମସ୍ତେ ଆସୁଛନ୍ତି ଏଠି ରହିବା ପାଇଁ । ଆପଣ କ'ଣ ଏ କଥା ଜାଣନ୍ତି ?"

ମୁନ୍‌ସି ଶିବଲାଲ ଚମକି ପଡ଼ି କହିଲେ, "କଣ କହିଲ, ରାଧେଲାଲ ପରିବାର ସମସ୍ତେ ଏଠିକି ଆସିବେ ? ମୋତେ ତ ଏ ବିଷୟରେ କେହି କିଛି କହିନାହିଁ । ଫତେପୁରରେ ତ ଘରଦ୍ୱାର ଜମିବାଡ଼ି ସବୁ ଅଛି, ଏଠିକି ପୁଣି ସେମାନେ ଆସିବେ କାହିଁକି ?"

ରାଧେଲାଲର ସ୍ତ୍ରୀ କେତେବେଳୁ ଆସି ଯମୁନା ପଛରେ ଛିଡ଼ା ହୋଇଥିଲା ଯମୁନାକୁ ଜଣା ନ ଥିଲା । ନଚେତ୍ ସେ ଏକଥା ପକାଇ ନଥାନ୍ତା । ରାଧେଲାଲ ସ୍ତ୍ରୀ ଆଗକୁ ବାହାରି ଯାଇ କହିଲା, "ଦାଦା, ଆପଣଙ୍କ ଦେହ ଭଲ ନ ଥିବାରୁ ଆପଣଙ୍କ ସେବା କରିବା ପାଇଁ ତ ଆମେ ଆସିଛୁ । ରାମୁ ଓ ଶାମୁ ଫତେପୁରରେ ଅଛନ୍ତି । ବୋହୂ ଦୁହେଁ ଘର ବୁଝୁଛନ୍ତି । କିଶନୁ ଏଇଠି ଅଛି; ବିଶନୁକୁ ସାଙ୍ଗରେ ଧରି ଫତେପୁରରୁ ଆସିଛୁ ।

ବଶନୁକୁ କୌଣସି ଗୋଟାଏ କାମ୍ ମିଳିବା ଦରକାର । ଜ୍ୱାଲା ଚାହିଁଲେ ତା'ପାଇଁ ଗୋଟାଏ କାମ ଖୋଜିଦେବ ।"

ରାଧେଲାଲ ସ୍ତ୍ରୀର କଡ଼ା କଥା ଶୁଣି ଶିବଲାଲ କଳା ପଡ଼ିଗଲେ, କହିଲେ, "ହଁ, ଠିକ୍ କଥା । ରାଧା ତ ଜାଣିବା ଶୁଣିବା ଲୋକ, ସେ ଯାହା ଠିକ୍ ଭାବିବ କରିବ !"

ଯମୁନା ପରାସ୍ତ ହେଲା ପରି ହତାଶ ମନରେ ସେଠୁ ଚାଲିଗଲା ।

ସନ୍ଧ୍ୟାବେଳକୁ ଘରକୁ ଫେରି ଜ୍ୱାଲାପ୍ରସାଦ ଦେଖିଲେ ଯମୁନାର ମନଟା କାହିଁକି ମଳିନ ପଡ଼ିଯାଇଛି । ଜ୍ୱାଲାପ୍ରସାଦଙ୍କୁ ଜଳଖିଆ ବାଢ଼ି ଦେଇ ଯମୁନା କହିଲା, "ଶୁଣିଛନା, କଶନୁ ଓ ବଶନୁକୁ ଧରି କକା ଖୁଡ଼ୀ ଦୁହେଁ ଯାକ ଏଇଠି ରହିବେ । ଖୁଡ଼ୀ ଆଜି ବାପାଙ୍କୁ ଏହି କଥା କହୁଥିଲେ ।"

ଯତେ ଯେମିତି ଜ୍ୱାଲାପ୍ରସାଦଙ୍କ ଉପରେ ଏ କଥାର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ କହିଲେ, "ହଁ, ଏଥିରେ କହିବାର କ'ଣ ଅଛି ? ପିଲା ଦୁଇଟା ଏଠି ରହି କାମରେ ଲାଗିଯିବେ, ବାପାଙ୍କର ମନ ବି ଟିକିଏ ବଦଳିଯିବ ।"

ଯମୁନା ତ ଆଗରୁ ହାରିଥିଲା, ଏଠି ମଧ୍ୟ ସେ ହାରିବ ବୋଲି ଜାଣିଥିଲା । ବରଂ ଏଠି ଜିତିଥିଲେ ତାକୁ ଆଶ୍ଚର୍ଯ୍ୟ ଲାଗିଥାନ୍ତା । ସେ କଥାକୁ ଆଉ ନ ବଢ଼ାଇ ଚୁପ୍ ରହିଲା ।

ସନ୍ଧ୍ୟାବେଳେ ସୁବିଧା ଦେଖି ଯମୁନା ସବୁକଥା ଛୁନକୀକୁ କହିଦେଲା । ଛୁନକୀ ଟିକିଏ ହସି ଦେଇ କହିଲା, "ନାହିଁ, ଏ କଥା କୁଆଡ଼ୁ ହେବ । ଆଜି ମୁଁ ସାନବୋହୂକୁ ପଚାରିବ । ତମେ ଚୁପ୍‌ଚାପ୍ ବସି ସବୁ ଦେଖିବ, କିଛି କହିବ ନାହିଁ ।"

ଛୁନକୀ ଏବେ ମନରେ ଗୋଟାଏ ଜିଦ୍ ନେଇ ଶିବଲାଲଙ୍କ ପାଖକୁ ଚାଲିଲା ।

ରାତି ସେତେବେଳକୁ ଅନେକ ହୋଇଗଲାଣି । ମୁନସି ଶିବଲାଲ ଛୁନକୀ ଅପେକ୍ଷାରେ ଥାଆନ୍ତି । ଅବଶ୍ୟ ଭିକ୍ଷୁ ଠିକ୍ ସମୟରେ ଆସି ଶିବଲାଲଙ୍କ ମୁଣ୍ଡ ପାଖରେ ମଦ ବୋତଲ ରଖିଦେଇ ଚାଲିଯାଇଥିଲା; କିନ୍ତୁ ସେ ଏତେ ଦୁର୍ବଳ ହୋଇ ପଡ଼ିଥିଲେ ଯେ ଆପେ ଉଠି ଗ୍ଲାସରେ ମଦ ଢାଳିବା ପାଇଁ ତାଙ୍କର ଶକ୍ତି ନଥିଲା । ଛୁନକୀକୁ ଦେଖିଲା ମାତ୍ରେ ସେ ବହୁତ ରାଗିଯାଇ କହିଲେ, "ଏତେବେଳ ଯାଏ କୁଆଡ଼େ ମରିଥିଲୁ ? ଏତେ ଡେରି ହେଲାଣି, ଆଣ ମଦ ଆଣ ।"

ଛୁନକୀ ଜବାବ ଦେଲା, "ତମ ଘରେ ଯେଉଁ ମହାଭାରତ ଲାଗିବାକୁ ଯାଉଛି ସେହି କଥା ଭାବି ମନ ଭଲ ଲାଗୁନାହିଁ । ସେଇଥିପାଇଁ ଗଙ୍ଗାକୁ ଖେଳାଇବାକୁ ବଡ଼ ବଗିଚାକୁ ବାହାରି ଯାଇଥିଲା ।" ଏତିକି କହି ରୁପା ଗ୍ଲାସରେ ମଦ ଢାଳି ସେ ଶିବଲାଲଙ୍କ ହାତକୁ ବଢ଼ାଇ ଦେଲା ।

ମୁନସି ଶିବଲାଲ ମଦ ପିଇ ନେଇ ଛୁନକୀକୁ ଏକ ଆଖିରେ ଅନାଇ ରହିଲେ ।

କାରଣ ସେ ଯାହା କହିଲା ତାହା ନିତାନ୍ତ ଗଣ୍ଡଗୋଳିଆ କଥା । ତେଣୁ ସେ ଖୁବ୍ ପାଟି କରି ପଚାରିଲେ, "ଆମ ଘରେ କ'ଣ ମହାଭାରତ ?"

କିନ୍ତୁ ଛୁନକା ତ ଆଜି ପ୍ରତିଜ୍ଞା କରି ଆସିଥିଲା । ତେଣୁ ଶିବଲାଲଙ୍କ ବଡ଼ପାଟିରେ ସେ ଡରନ୍ତା କାହିଁକି ? ସେ ଖୁବ୍ ଧୀରେ ଅଥଚ ଦୃଢ଼ ଗଳାରେ କହିଲା, "ଜାଣିନି ଜ୍ୱାଲ ପଇସାରେ ମଜା କରି ଖାଇବା ପାଇଁ ତା କକାଙ୍କ ପରିବାରର ସମସ୍ତେ ଏଠିକି ଆସୁଛନ୍ତି । ଦୁର୍ଯ୍ୟୋଧନର ବଂଶ ଅସ୍ତେ ଅସ୍ତେ ଏକାଠି ହେଉଛନ୍ତି ।"

"ଦୁର୍ଯ୍ୟୋଧନ ବଂଶ ! କ'ଣ ଗୁଡ଼ାଏ ରୁ ଗପୁଛୁ ?" ମୁନ୍‌ସି ଶିବଲାଲ ଛୁନକାକୁ ଗାଳି ଦେଇ ଦେଇ ଚୁପ୍ ହୋଇଗଲେ । ତାଙ୍କର ମନେହେଲା ଛୁନକା କଥାରେ ଅନେକ ସତ୍ୟ ଅଛି । ସେ ଭାବିଲେ, ସେ ହେଉଛନ୍ତି ପଣ୍ଡୁ । ତାଙ୍କୁ ନେଇଯିବା ପାଇଁ ମୃତ୍ୟୁ ତାଙ୍କ ଚାରିପାଖେ ବୁଲୁଛି । ରାଧେଲାଲ ହେଉଛନ୍ତି ଧୃତରାଷ୍ଟ୍ର । ପଣ୍ଡୁଙ୍କର ମୃତ୍ୟୁପରେ ଦୁର୍ଯ୍ୟୋଧନ ହାତକୁ କ୍ଷମତା ଚାଲି ଆସିବ । ହଁ, ଠିକ୍ ତ ମହାଭାରତ ! ଛୁନକା ତ ଆଦୌ ଭୁଲ କହିନାହିଁ । ଏହି ସବୁ ଚିନ୍ତାରୁ ରକ୍ଷା ପାଇବା ପାଇଁ ଶିବଲାଲ ଗ୍ଲାସରୁ ଆଉ ଢୋକେ ମଦ ଚଢ଼ାଇଦେଲେ । ସେଥିରେ ସାରା ଦୁନିଆଁଟା ତାଙ୍କୁ ଯେମିତି ଧୂସର ଦେଖାଗଲା । ମହାଭାରତଟା ଯେମିତି ସ୍ପଷ୍ଟ ଦେଖାଗଲା । ଆଉ କିଛି ମଦପାଇଁ ଛୁନକା ହାତକୁ ଗ୍ଲାସ ବଢ଼ାଇ ଦେଇ ଶିବଲାଲ ଶିଥିଳ ସ୍ୱରରେ କହିଲେ, "ହଁ, ଲକ୍ଷଣ ତ କିଛି ଭଲ ଦେଖାଯାଉ ନାହିଁ । ଦଶବର୍ଷ ପରେ ଆଜି ଏମାନେ ଏକାଠି ହେଉଛନ୍ତି । କ'ଣ କରିବାକୁ ହେବ କିଛି ଜଣା ପଡ଼ୁନାହିଁ ।"

"କ'ଣ କରିବ, ଜ୍ୱାଲକୁ କହି କାଶନକୁ ସୋରାବଠାରୁ ଦୂରରେ କୌଣସି ଗୋଟାଏ ଚାକିରୀ କରାଇ ଦେଉ । ସେ ଜଣେ ବଡ଼ ଅଫିସର, ଯାହା ଚାହିଁବ ତାହା କରିପାରିବ । ତା ହେଲେ ପୁଅର ଭଲମନ୍ଦ ଦେଖିବା ପାଇଁ ତା ବାପମା' ତା ପାଖକୁ ଚାଲିଯିବେ । ବିଶନୁ ବି ସେଠିକି ଯାଇ ତା ବାପା ଭାଇଙ୍କ ପାଖରେ ରହି ଯାହି ହେଲେ କାମ ଶିଖିବ ।

ମୁନ୍‌ସି ଶିବଲାଲ ଛୁନକା ଆଡ଼କୁ ଏକଧ୍ୟାନରେ ଚାହିଁ ରହିଲେ । ଅନେକ କଥା ଆସ୍ତେ ଆସ୍ତେ ସେ ବୁଝିପାରିଲେ, "ହଁ କ'ଣ କହିଲୁ, ରାଧା, ତା ସ୍ତ୍ରୀ କାଶନୁ ବିଶନୁ ସବୁ ଏଠୁ ଦୂରକୁ ଚାଲିଯିବେ ? ଜ୍ୱାଲ କାଶନୁକୁ ଦୂରରେ ଚାକିରୀ କରାଇ ଦେବ—ଏହି କଥା ତୁ କହିଲୁ ନା ? ଆଉ ଦେଖୁଛୁ କ'ଣ, ଆଣ ଗ୍ଲାସରେ ମଦ ଭର୍ତ୍ତି କର ।"

ଛୁନକା ଶିବଲାଲଙ୍କ ହାତରେ ଗ୍ଲାସ ଧରାଇ ଦେଇ କହିଲା, "ହଁ, ମୁଁ ସେହି କଥା କହୁଥିଲି ।"

ମୁନ୍‌ସି ଶିବଲାଲ ଆଉ ଥରାକେ ମଦ ପିଇ ଦେଇ କହିଲେ, "ତୋ କଥା ତ ଠିକ୍;

କିନ୍ତୁ ସେ କିଶନୁଟା ତ ନିତାନ୍ତ ବାଉବୁଲା ଅଳସୁଆଟା, ତା'ହାତରେ କ'ଣ କିଛି କାମ ହେବ ?"

' କିଶନୁ ସାଙ୍ଗରେ ତୁମେ ରାଧେଲାଲକୁ ପଠାଇଦିଅ । ଯେମିତି ସୁପୁତ୍ର ଜନ୍ମ କରିଛ ସେମିତି ତାକୁ ସେ ବାଟ ଦେଖାଉ । ଜ୍ୱାଲାକୁ କହିବାକୁ ତ ମୋର ସାହସ ହେଉନାହିଁ, ତମେ ତାକୁ ଟିକିଏ କହୁନା ? ନୋହିଲେ ଘାଟମପୁର ଲମ୍ବରଦାରଣୀ ଘରେ ତାକୁ ରଖାଇ ଦେଉନା ? ତାଙ୍କର ତ କାମ ବହୁତ, ଚାଳିଶ ପଚାଶ ଚାକରବାକର ବି ଅଛନ୍ତି ।"

ତହିଁ ଆର ଦିନ ସକାଳେ ଶିବଲାଲ ଜ୍ୱାଲାପ୍ରସାଦର ବୈଠକଖାନାରେ ପହଞ୍ଚିଲା ବେଳକୁ ସେ ସେଠି ବସି କ'ଣ କାଗଜପତ୍ର ଦେଖାଦେଖି କରୁଥିଲେ । ଶିବଲାଲ ଟିକିଏ ଚୁଡ଼ା କରି ବସିଗଲେ । ବାପାଙ୍କୁ ଦେଖି ଜ୍ୱାଲାପ୍ରସାଦ ପଚାରିଲେ, "ବାପା, ମୋତେ କ'ଣ କିଛି କହିବାକୁ ଅଛି ? ମୋତେ ନ ଡକାଇ ଏଠିକି ଆସିଲେ କାହିଁକି ?"

"ଆରେ ଚାଲିଆସିଲି ତ କଣ ହେଲା ! ହଁ ତୋତେ କହିବାକୁ ଆସିଥିଲି କିଶନୁ ପାଇଁ କେଉଁଠି ଗୋଟାଏ କିଛି କାମ ବୁଝିଦେ । ତୁ ତ ଏକଥା କିଛି ନ ବୁଝି ଚୁପ୍‌ଚାପ୍ ବସିରହିଛୁ ।"

"ହଁ, କିଶନୁ କଥା ମୁଁ କ'ଣ କରିବି ? କକା ଅଛନ୍ତି, ସେକଥା ସେ ବୁଝିବେ ।"

"ନାହିଁ, ରାଧା ହାତରେ କିଛି ହେବ ନାହିଁ । ଯାହା ହେବ ତୋରି ହାତରେ ହେବ । ତୁ ଜଲ୍‌ଦି ଚେଷ୍ଟା କର ।"

ଜ୍ୱାଲାପ୍ରସାଦ ବର୍ତ୍ତମାନ ବଡ଼ ଅଡୁଆରେ ପଡ଼ିଲେ । ଏମିତି ଗୋଟାଏ ଅପାଠୁଆ ବାଉବୁଲା ପାଇଁ ସେ ଏବେ କି ଚେଷ୍ଟା କରିବେ ?

"ହଁ, ଏମିତି ତ କିଛି ପାଠ ପଢ଼ିନାହିଁ ଯେ କେଉଁଠି ଅଫିସ୍‌ରେ ବା କଚେରୀରେ ରହିଯିବ । ହେଲେ କେଉଁଠି ଜମିଦାର ଘରେ ପିଆଦା କିମ୍ବା ମକଦ୍ଦମୀ ହୋଇ ରହିପାରନ୍ତା ।"

"ହଁ, ସେମିତି ଗୋଟାଏ ହେଲେ ଚାକିରି ଅବା ପାଇପାରେ; କିନ୍ତୁ ଏ ଅଞ୍ଚଳରେ ତ ସେମିତି ବଡ଼ ଜମିଦାର କେହି ନାହାନ୍ତି, ଯାହା ଘରେ ସ୍ୟାକୁ ମୁଁ ରଖାଇ ଦେଇ ପାରିବ ।"

ମୁନ୍‌ସି ଶିବଲାଲ ଗଳା ଝଙ୍କାରି କହିଲେ, "ତୁ ଯଦି କିଛି ନ ଭାବୁ ତା ହେଲେ ଗୋଟାଏ କଥା କହିବି । କାହିଁକି କହୁଛି କି, ଘରର ମାନ-ସମ୍ମାନର କଥା ନା ?"

"ହଁ, ବୁଝିଲି ଯେ, ଆପଣଙ୍କ କଥାକୁ ମୁଁ ଖରାପ ମନେ କରିବି କେମିତି ?"

ମୁନ୍‌ସି ଶିବଲାଲ ଟିକିଏ ମୁହଁ ଆଡ଼େଇ ନେଇ କହିଲେ, "ମୋର ଧାରଣା ଘାଟମ-

ପୁର ଲମ୍ବରଦାରଣୀ ଜେଦେଇଙ୍କର ଗୋଟାଏ ଲୋକ ନିତାନ୍ତ ଦରକାର; ଯେ ତାଙ୍କ ମକଦ୍ଦମା ଇତ୍ୟାଦି ଦେଖି ପାରିବ, ଓକିଲଙ୍କ ପାଖକୁ ଧାଁ-ଧଉଡ଼ କରି ପାରିବ । ସେ ତ ତୋ କଥା କେବେ ଭାଙ୍ଗି ପାରିବେ ନାହିଁ । ତୁ କିଶନୁକୁ ତାଙ୍କର ପାଖରେ ରଖାଇ ଦେ । ରାଧା ଆଉ ତା ସ୍ତ୍ରୀ ସେଇଠି ରହିବେ । କିଶନୁର ଖାଲି ନାଁ ରହିବ; କିନ୍ତୁ ରାଧା ସବୁ କାମ ତୁଲେଇବ ।

ବାପାଙ୍କର ଏହି ପ୍ରସ୍ତାବ ଶୁଣି ଜ୍ୱାଲାପ୍ରସାଦ ହତବୁଦ୍ଧି ହୋଇ କିଛି କାଳ ବାପାଙ୍କୁ ଚାହିଁ ରହିଲେ ।

"କ'ଣ ହେଲା, କ'ଣ ଭାବୁଛୁ ?"

"ନାହିଁ, କିଛି ନାହିଁ । ଏ କଥା ଟିକିଏ ଭଲ କରି ଭାବିବାକୁ ପଡ଼ିବ, ବଡ଼ ନାଗର କଥା ନା ! ଆପଣ ତ କିଶନୁ କଥା ଜାଣନ୍ତି । ସେଠି ତ ଖାଲି ସ୍ତ୍ରୀଲୋକ ରହନ୍ତି । ଲକ୍ଷ୍ମୀଚନ୍ଦ ଘାଟମପୁରରେ ମାସେ ଅଧେ କେବେ କେମିତି ରହେ । ମୁଁ ଭାବୁଛି କିଶନୁକୁ ସେଠିକି ପଠାଇବା ଠିକ୍ ହେବ ନାହିଁ ।"

"ସେଇଥିପାଇଁ କିଶନୁ ସାଙ୍ଗରେ ରାଧାକୁ ପଠାଉଛି । ରାଧା ସାଙ୍ଗରେ ସାନ-ବୋହୂ ବି ସେଠି ରହିବ । ସେଠି ମା' ବାପାଙ୍କ ଅକ୍ତିଆରରେ ରହିବ, ସ୍ୱା ଭିତରେ ତାର ବାହାଘର ବି ହୋଇଯିବ । ବାହା ହୋଇଗଲେ ତାର ଅଭ୍ୟାସ ବଦଳିଯିବ । ତାପରେ ଟିକିଏ ନମ୍ର ସ୍ୱରରେ କହିଲେ, "ତୁ ତ ବୁଝୁଥିବୁ, ତାକୁ ସେଠିକି ପଠାଇ-ଦେଲେ ତୋର ନିଶ୍ଚୟ ଭଲ ହେବ ।"

"ହଁ, ସେ କଥା ତ ମୁଁ ବୁଝୁଛି ।" କୌଣସିମତେ କଥା ଶେଷ କରିଦେବା ପାଇଁ ଏତିକି କହି ସେ ନିଜ କାଗଜପତ୍ର ଦେଖିବାକୁ ଲାଗିଲେ ଓ ମୁନ୍‌ସି ଶିବଲାଲ ସେଠୁ ଉଠି ଚାଲିଗଲେ ।

ଶିବଲାଲ ଜ୍ୱାଲାପ୍ରସାଦଙ୍କୁ ଯେଉଁ ପ୍ରସ୍ତାବ ଦେଇଥିଲେ ସେ ବିଷୟରେ ଜ୍ୱାଲାପ୍ରସାଦ ମନେ ମନେ ଯେତେ ଚିନ୍ତା କଲେ ବି କଥାଟା ତାଙ୍କ ମନକୁ ପାଇଲା ନାହିଁ । ସେ ଭାବିଲେ ରାଧେଲାଲଙ୍କୁ ବୁଝାସୁଝା କରାଇ ଏ ପ୍ରସ୍ତାବକୁ ବନ୍ଦ କରିଦେବା ବରଂ ଭଲ । ଏହିପରି ଭାବି ରାଧେଲାଲଙ୍କ ଆସିବା ବାଟକୁ ସେ ଅନାଇଁ ରହିଲେ ।

ତିନିଦିନ ପରେ ରାଧେଲାଲ ତାଙ୍କ ଜ୍ୟେଷ୍ଠ ପୁଅ କିଶନଲାଲକୁ ସାଙ୍ଗରେ ଧରି ଆସି ପହଞ୍ଚିଥିଲେ; ମାତ୍ର ସେ ପହଞ୍ଚିଲାବେଳକୁ ଜ୍ୱାଲାପ୍ରସାଦ ଟୁରରେ ବାହାରି ଯାଇଥିଲେ । ରାଧେଲାଲ ଭାଇଙ୍କୁ ନମସ୍କାର କରି ଫତେପୁର ଘର ବିଷୟରେ ଯାହା ସବୁ ବନ୍ଦୋବସ୍ତ କରିଥିଲେ ସବୁ ଗୋଟି ଗୋଟି କହିଗଲେ । ସାରାଂଶ ହେଲା ରାମଲାଲ ମାଷ୍ଟର କାମରେ ମୁକରର ଥିଲା । ଶ୍ୟାମଲାଲ ହାତରେ ଚାଷ ନ କରି ଜମି ସବୁ ଭାଗକୁ ଲେଖି ଦେଇଥିଲା ।

ଗଫୁର ମିଆଁଙ୍କର ବିଧବା ପତ୍ନୀ ସଲାମା ରହିମପୁର ଗାଁର ଅଧା ଜମିର ମାଲିକ । ଶ୍ୟାମଲାଲ ସଲାମାଙ୍କର ସେହି ଜମିବାଡ଼ି ଓ ହିସାବପତ୍ର ବୁଝୁଥିଲା । ଏବେ ସେ ସେହି ଅଧା ଜମିକୁ ନିଜ ନାଁରେ କରାଇ ନେଇଛି । ଏବେ ଅଲିଭ ନେଇଥିବନ ହେଲା ଗଫୁର ମିଆଁର ଜୋଇଁ ଶ୍ୟାମଲାଲ ନାଁରେ ମକଦ୍ଦମା ଦାୟର କରି ଦେଇଛି । ସେହି ମକଦ୍ଦମା ବର୍ତ୍ତମାନ ଡେପୁଟି ସାହେବଙ୍କ କଚେରୀରୁ ଦେବାନୀ ଅଦାଲତକୁ ଚାଲିଗଲାଣି । ପଣ୍ଡିତ ଗିରିଜାଶଙ୍କର ମିଶ୍ର ହେଉଛନ୍ତି ସବ୍‌ଜଜ ଓ ତାଙ୍କ ସଙ୍ଗରେ ଜ୍ୱାଲାପ୍ରସାଦଙ୍କର ଭାରି ଚିହ୍ନା-ପରିଚୟ । ସେ ତାଙ୍କ ସଙ୍ଗରେ ଟିକିଏ କଥାବାର୍ତ୍ତା କରିଦେଲେ ମକଦ୍ଦମାରେ ଜିତାପଟ ହୋଇଯିବ ଓ ରହିମପୁର ଗାଁର ଅଧା ଜମି ହାତକୁ ଆସିଯିବ । ବାକି ଯେଉଁ ଅଧା ଜମି କୟୁମ ମିଆଁ ପାଖରେ ଅଛି ତାହା ଶସ୍ତା ଦରରେ ମିଳିଯିବ; କାରଣ ତାଙ୍କ ପାଖରେ ବର୍ତ୍ତମାନ ପଇସାପତ୍ର ନାହିଁ । ସେ ସେହି ଜମିକୁ ବିକି ଦେଇ ତୀର୍ଥଯାତ୍ରା କରିବାକୁ ଚାହୁଁଛନ୍ତି ।''

ମୁନସି ଶିବଲାଲ କହିଲେ, ''କିନ୍ତୁ ଟଙ୍କା କେଉଁଠୁ ଆସିବ ?'' କୟୁମ ମିଆଁ ତାଙ୍କ ଭାଗ ଜମି ପାଇଁ କେତେ ଟଙ୍କା ଚାହୁଁଛନ୍ତି ?''

''ସେ ଆଠ ହଜାର ଟଙ୍କାରେ ଜମି ରେଜେଷ୍ଟ୍ରୀ କରିଦେବେ; କିନ୍ତୁ ରେଜେଷ୍ଟ୍ରୀ ବେଳେ ସେ ନେବେ ଚାରି ହଜାର । ବାକି ଚାରି ହଜାର ଆମେ ଆସ୍ତେ ଆସ୍ତେ ତିନି ବର୍ଷରେ ଦେଇଦେବା ।''

ଶିବଲାଲ ପଚାରିଲେ, ''ଏଇ ଚାରି ହଜାର ଟଙ୍କା ବର୍ତ୍ତମାନ କେଉଁଠୁ ଆସିବ ?''

''ଟଙ୍କା କେଉଁଠୁ ଆସିବ ?'' ରାଧେଲାଲ ଉତ୍ତର ନ ଦେବାରୁ ଶିବଲାଲ ପୁଣି ଆଉ ଥରେ ପଚାରିଲେ ।

ରାଧେଲାଲ ଟିକିଏ ଗୁଁ ଘୁଁ ହୋଇ କହିଲେ, ''ହଜାରେ ଟଙ୍କା ମୁଁ ଏଠୁ ସେଠୁ ଯାହି-ତାହି ଯୁଟେଇ ଦେବି । ଫତେପୁରରେ ଆମକୁ ହଜାର ଟଙ୍କା ଝଣ୍ଡେ କରଜ ମିଳିଯିବ । ବାକି ଦୁଇ ହଜାର ଟଙ୍କା ଜ୍ୱାଲାକୁ ଯୋଗାଡ଼ କରିବାକୁ ପଡ଼ିବ । ଦୁଇ ହଜାର ଟଙ୍କାର କଥା ତ ! ଜମିଟା ଜ୍ୱାଲା ନାମରେ କଣାହେବ ।''

''ଆଉ ସେ ଗଫୁର ମିଆଁ ଜମି ? ସେ ମକଦ୍ଦମା ଖର୍ଚ୍ଚ ସବୁ କେଉଁଠୁ ଆସିବ ?''

''ସେ ଜମି ମଧ୍ୟ ଶ୍ୟାମଲାଲ ଜ୍ୱାଲା ନାଁରେ କରିଦେବ । ରହିମପୁର ଜମି ବି ଜ୍ୱାଲା ନାଁରେ ଲେଖାପଢ଼ି ହୋଇଯିବ । ସେ କେବଳ ପଣ୍ଡିତ ଗିରିଜାଶଙ୍କରଙ୍କ ସଙ୍ଗରେ କଥାବାର୍ତ୍ତା କରି ଜମିଟା ଆମ ନାଁରେ କରାଇ ଆଣିବ ।''

ଏହି ପ୍ରସ୍ତାବ ଶିବଲାଲଙ୍କ ମନକୁ ଖୁବ୍ ପାଇଲା । ସେ କହିଲେ, ''ଆଚ୍ଛା ଜ୍ୱାଲା ଫେରୁ, ମୁଁ ତା ସଙ୍ଗେ କଥାବାର୍ତ୍ତା କରିବି । ଯଦି ତା ପାଖରେ ପଇସା ନ ଥାଏ, ତେବେ ସେ

କରଜ ନେଇ ଆସିବ । କିନ୍ତୁ ଦୁଇ ହଜାର ଟଙ୍କା ତମକୁ ଯୋଗାଡ଼ କରିବାକୁ ପଡ଼ିବ । ଯୋଗାଡ଼ ହୋଇ ପାରିବନି ?''

''ହଁ, ହଜାର ଟଙ୍କା ତ ମୋ ଅକ୍ତିଆରରେ ଅଛି । ମୁଁ ସପ୍ତାହକ ଭିତରେ ଯୋଗାଡ଼ କରିଦେବି । ଆଉ ହଜାର ପାଇଁ ଲାଲ ରାମକିଶୋର ସାଙ୍ଗରେ ମୁଁ କଥାବାର୍ତ୍ତା କରିଛି । ରାମକିଶୋର ବି ସେଥିରେ ରାଜି ହୋଇଛନ୍ତି । ଭାଇ, ତହସିଲଦାର ବଂଶର ଗୋଟାଏ ଇଜ୍ଜତ୍ ତ ପୁଣି ଅଛି !''

ମୁନ୍‌ସି ଶିବଲାଲ ରାଧେଲାଲଙ୍କ କଥାକୁ ଦୋହରାଇ ଖୁସି ହୋଇ କହିଲେ, ''ହଁ, ତହସିଲଦାର ବଂଶର ନିଶ୍ଚୟ ଇଜ୍ଜତ୍ ଅଛି । ଜମିଦାର ବଂଶର ଅଧିକ ଜମି ଓ ଟଙ୍କା ପଇସା ବି ହେବା ଦରକାର । ତୁ ଠିକ୍ କହୁଛୁ ରାଧା ! ମୁଁ କୌଣସି ନା କୌଣସି ଉପାୟରେ ବାକି ଦୁଇ ହଜାର ଟଙ୍କା ନିଶ୍ଚୟ ଯୋଗାଡ଼ କରିଦେବି ।''

## ଦଶ

ଜ୍ୱାଲାପ୍ରସାଦ ବିଶନଲାଲଙ୍କୁ ପଚାରିଲେ, ''ଏବେ ତୁ କ'ଣ କରିବୁ ବୋଲି ଭାବୁଛୁ ?''

''ମୁଁ କ'ଣ କରିବି, ଆପଣ ଯାହା ଭାବିବେ କରିବେ । କିନ୍ତୁ ମୋର କହିବାର କଥା ସ୍ୱୀକାର ମୋଦ୍ୱାରା ହେବ ନାହିଁ ।''

ଜ୍ୱାଲାପ୍ରସାଦ ପଚାରିଲେ, ''ତା'ହେଲେ ସ୍ପଷ୍ଟ କାହିଁକି କରୁନାହୁଁ ?''

ବିଶନଲାଲ ଏ ପ୍ରଶ୍ନର କିଛି ଉତ୍ତର ଦେଇ ପାରିଲା ନାହିଁ । ବିଶନଲାଲ କିଶନଲାଲ-ଠାରୁ ଦୁଇ ବରଷ ସାନ । ତାର ବିଶେଷ କୌଣସି ଦୁର୍ଗୁଣ ନଥିଲା; ବରଂ ପାଠପଢ଼ାରେ ସେ ଏକରକମ ଭଲ । ବର୍ଷେ ପୂର୍ବରୁ ସେ ମିଡ଼ିଲ୍ ସ୍କୁଲ୍ ପାସ୍ କରି ସାରିଥିଲା । ଭାରି ଏକଜିଦିଆ ସେ, କାହାରି କଥାରେ ମୁଣ୍ଡ ନୁଆଁଇବାର ଅଭ୍ୟାସ ତାର ନ ଥିଲା । ସେଇଥିପାଇଁ ସେ ନିଜକୁ ସ୍ୱୀକାରିବାପାଇଁ ଅଯୋଗ୍ୟ ମନେ କରୁଥିଲା । ଯୁବକ ଲୋକ ସେ, ଯେମିତି ବଳିଷ୍ଠ ସେମିତି ଡେଙ୍ଗା, ନିଶ୍ଚିନ୍ତ ମୁହଁ, ଭାବଭୋଳା ଆଖି । ଖୁବ୍ ସୁନ୍ଦର ନ ହେଲେ ବି ଅସୁନ୍ଦର ନୁହେଁ । ଏକଦୃଷ୍ଟିରେ ସେ ଜ୍ୱାଲାପ୍ରସାଦଙ୍କୁ ଅନାଇଁ ରହିଲା ।

ଜ୍ୱାଲାପ୍ରସାଦ ଟିକିଏ ବିରକ୍ତ ହେଲାପରି କହିଲେ, ''ମୁଁ ପଚାରୁଛି, ତୁ କାହିଁକି ସ୍ପଷ୍ଟ କରିବାପାଇଁ ରାଜି ହେଉନୁ ?''

"ମୁଁ ତ ଚାଷ କରୁଥିଲି; କିନ୍ତୁ ଶାମୁଭାଇ ମୋତେ ମନା କଲେ । ମୁଁ ଶପଥ କରି କହୁଛି ମୋର ଏଥିରେ କିଛି ଦୋଷ ନାହିଁ । ସେ ଦୁଇଟା ମଇଁଷି ରଖିଥିଲେ, ଦିନକୁ ଷୋଳ ସେର ଦୁଧ ହେଉଥିଲା । ମଫସଲରେ ଏତେ ଦୁଧ ବିକ୍ରୀ ହୁଅନ୍ତା କେଉଁଠି ! ତେଣୁ ମୁଁ ସେସବୁ ବାଣ୍ଟି ଦେଉଥିଲି । ସେ ମୋଉପରେ ଭାରି ବିରକ୍ତ ହୋଇ କହୁଥିଲେ ଦୁଧ ଏକାଠି କରି, ସେଥିରୁ ଦହି କରି, ଦହି ମୁହାଁଇ ସେଥିରୁ ଲହୁଣୀ ବାହାର କରି ଲହୁଣୀରୁ ଘିଅ କର ।"

ଜ୍ୱାଲାପ୍ରସାଦ କହିଲେ, "ଶାମୁ ତ ତାହେଲେ କିଛି ଭୁଲ କହୁ ନ ଥିଲା !"

"ହଁ, ସେ ଠିକ୍ କହୁଥିଲେ ଯେ; କିନ୍ତୁ ମୁଁ ଆମ ଜମି ପାଖରେ ଗୋଟିଏ ଆଖଡ଼ା କରି ସେଠି ଜଗୁ ପହିଲ୍‌ମାନଙ୍କୁ ଗୁରୁ କରିନେଇ ଥିଲି । ବହୁତ କଷ୍ଟରେ ତାଙ୍କୁ ମୁଁ ମନେଇ କରି ଆଣିଥିଲି । ତାଙ୍କର ସାଙ୍ଗସାଥୀ ବି ଅନେକ ତାଙ୍କ ପାଖରେ ଜୁଟୁଥିଲେ । ସେମାନଙ୍କ ଯୋଗୁ ଘିଅ ଦୁଧ ସବୁ ଖର୍ଚ୍ଚ ହୋଇଯାଉଥିଲା । ସେଥିରେ ଶାମୁଭାଇ ଚିଡ଼ିଯାଇ ମୋ ଆଖଡ଼ା ବନ୍ଦ କରିଦେଲେ, ଜଗୁ ପହିଲମାନଙ୍କୁ ଓ ତାଙ୍କ ସାଙ୍ଗସାଥୀମାନଙ୍କୁ ସେଠୁ ବାହାର କରିଦେଲେ । ମତେ ମଧ୍ୟ ସେଠୁ ତଡ଼ିଦେଲେ । ସେହିଦିନୁ ମୁଁ ନିୟମ କରିଛି ଆଉ ଚାଷ କରିବି ନାହିଁ, ବିଶେଷତଃ ଶାମୁଭାଇଙ୍କ ପାଖରେ ରହି ମୁଁ କାମ କରିବି ନାହିଁ । ଏ କଥା ଦେଖି ଲୋକେ ହସୁଛନ୍ତି । ଜଗୁ ଓସ୍ତାଦ୍ ମୋତେ ଶାପ ଦେଇଛନ୍ତି ଯେ ମୁଁ ଯେତେ ଖେଳ-କୌଶଳ ଜାଣିଛି ସେଗୁଡ଼ା ମୋର ସବୁ ପାଶୋର ହୋଇଯିବ !"

ବିଶନଲାଲର କଥା ଶୁଣି ଜ୍ୱାଲାପ୍ରସାଦଙ୍କୁ ଯେତିକି ହସ ମାଡ଼ୁଥିଲା ସେତିକି ରାଗ ବି ଲାଗୁଥିଲା । ଏହି ସମୟରେ ମୁନ୍‌ସି ଶିବଲାଲ ଜ୍ୱାଲାପ୍ରସାଦଙ୍କ ବୈଠକଖାନା ଭିତରକୁ ପଶି ଆସିଲେ । ତାଙ୍କ ସାଙ୍ଗରେ ରାଧେଲାଲ ବି ଥିଲେ । ତାଙ୍କ ମୁହଁରେ ତାଙ୍କ ସ୍ୱାଭାବିକ କୁଟିଳ ହସ ଫୁଟିଉଠୁଥିଲା ।

ଜ୍ୱାଲାପ୍ରସାଦ ଉଠିପଡ଼ି ବାପା ଓ କକା ଉଭୟଙ୍କୁ ସ୍ୱାଗତ ଜଣାଇଲେ । ମୁନ୍‌ସି ଶିବଲାଲ କହିଲେ, "ବୁଝିଲୁ ଜ୍ୱାଲା, ରାଧା ଗୋଟିଏ ଭଲ ଖବର ନେଇ ଆସିଛି । ମୋର ତ ସେଥିରେ କିଛି ଆପତ୍ତି ନାହିଁ । ହେଲେ ତୁ ଟିକିଏ ଶୁଣିଯା' । ମୁଁ ତ ଭାବୁଛି ସେକଥା ଯଦି ହୋଇଯାଏ, ତା'ହେଲେ ଖୁବ୍ ଭଲ ହେବ ।"

ଏତେବେଳକୁ ସେମାନେ ସମସ୍ତେ ବସିଯାଇଥିଲେ ଓ ଜ୍ୱାଲାପ୍ରସାଦ ରାଧେଲାଲଙ୍କୁ ଏକ ପ୍ରଶ୍ନପୂର୍ଣ୍ଣ ଦୃଷ୍ଟିରେ ଚାହିଁ ରହିଥିଲେ ।

ରାଧେଲାଲ ଗଳା ସଫା କରି କହିଲେ, "କଥା ହେଉଛି, ଫତେପୁର ପାଖରେ ରହିମ୍‌ପୁର୍ ବୋଲି ଯେଉଁ ଗାଁ ଅଛି, ସେଇ ଗାଁର ଗଫୁର ମିଆଁର ବିଧବା ସ୍ତ୍ରୀଠାରୁ ସେଇ ଗାଁର ଆଠଣା ଅଂଶ ଶାମୁ କିଣି ନେଇଛି । ଏଇ ଜମି ବର୍ତ୍ତମାନ ଶାମୁ ନାଁରେ

ହୋଇଯାଇଛୁ ଓ ସେ ଜମିର ଦଖଲ ବ ନେଇଯାଇଛୁ ।''

ବନଶଲାଲ୍ ମଝିରେ ପଡ଼ି କହିଲା, ''ବୁଝିଲ ଜ୍ୱାଲାଭାଇ ! ଏଗୁଡ଼ା ସବୁ ଧୋକାବାଜି କଥା । ଶ ମୁଭାଇ ସଲ୍ଲମା ଖୁଡ଼ୀକୁ ଅଫିମ ଖୁଆଇ ଗୋଟାଏ ସାଦା କାଗଜରେ ତାଙ୍କଠୁ ଟିପ ନେଇଯାଇଛୁ ଓ ସେଥିରେ ଶାମୁଭାଇ ନାଁରେ ସେ ଜମି କରଦେଇଛନ୍ତି ବୋଲି ଲେଖାଇ ନେଇଛୁ । ରହମତ୍ ଖାଁ ଏହି ବିଷୟରେ ଶାମୁଭାଇ ନାଁରେ ଏକ ମକଦ୍ଦମା କରଛୁ ।''

ମୁନ୍‌ସି ଶିବଲାଲ୍ ବଶନଲାଲଙ୍କୁ ଧମକ ଦେଇ କହିଲେ, ''କ'ଣ ଏଣୁତେଣୁ ଗୁଡ଼ାଏ ଗପୁଚ୍ଛୁ ?'' ତା'ପରେ ସେ ଜ୍ୱାଲାପ୍ରସାଦଙ୍କୁ ଚାହିଁ କହିଲେ, 'ଏଇ ବଶନୁଟା ଶାମୁର ଶତ୍ରୁ ହୋଇଗଲାଣି । ସେଥିପାଇଁ ସେ ତାକୁ ଏଠାକୁ ସାଙ୍ଗରେ ନେଇ ଆସିଛୁ । ସେ ପୁରପୂର ଜଗୁ ପହିଲ୍‌ମାନର କଥାରେ ଚାଲୁଛୁ । ଜଗୁ ପହିଲ୍‌ମାନ ରହମତ୍ ଖାଁର ପିଇସା ।'' ତା'ପରେ ସେ ପୁଣି ବଶନଲାଲଙ୍କୁ ଧମକ ଦେଇ କହିଲେ, ''ଖବରଦାର, ଏ ମକଦ୍ଦମା ବିଷୟରେ ତୋ' ପାଟିରୁ ଯେମିତି ଆଉ ଗୋଟିଏ ଶବ୍ଦ ନ ବାହାରେ !''

ଜ୍ୱାଲାପ୍ରସାଦ କହିଲେ, ''ଦେଖ୍ ବଶନ, ଅନ୍ୟ କଥାରେ କଥା କହିବା ଉଚିତ ନୁହେଁ । ହଁ କାକା, ଆପଣ କଣ କହୁଥିଲେ କହନ୍ତୁ । ତା ହେଲେ ରହମତ୍ ଖାଁ ଶାମୁ ନାଁରେ ମକଦ୍ଦମା ଆରମ୍ଭ କର ଦେଇଛୁ । ମକଦ୍ଦମାରେ ଏବେ କଣ ହୋଇଛୁ ?''

''ଆରେ ହବ କଣ ? ଦେଓ୍ୱାନୀ ମକଦ୍ଦମା ତ କିଛୁ ହସଖେଳ କଥା ନୁହେଁ । ଶାମୁର ତ ଦଖଲ ଅଛୁ । ସେ ଏବେ ମକଦ୍ଦମା ଲଢ଼ୁ । କେତେ ବର୍ଷ ଲାଗିବ, ହାଇକୋର୍ଟ ଅଛୁ, ପ୍ରିଭିକାଉନ୍‌ସିଲ ଅଛୁ । ସେଇ ଯୋଉ ଟମନଲାଲ ପଣ୍ଡ୍ୟା ଆମର ଲେଖାଯୋଖା ବଂଧୁ ହେବ, ସେ ଆମ ପକ୍ଷରେ ଅଛୁ । ଆମକୁ ତ ସବୁ ଲେଖାପଢ଼ି ମାଲୁମ । ତେଣେ ରହମତ୍ ଖାଁ ଆଲ୍ଲାହାବାଦ ଜିଲାରେ ରହୁଛୁ । ତା'ର ତ ପଇସାପତ୍ର ଆଦୌ ନାହିଁ । କାହା ବଳରେ ସେ ମକଦ୍ଦମା ଲଢ଼ିବ ?''

ଏ କଥା ଶୁଣି ମୁନ୍‌ସି ଶିବଲାଲ କହିଲେ, ''ଆମ ମକଦ୍ଦମା ପୁଣି ସବ୍‌ଜଜ୍ ପଣ୍ଡିତ ଗିରଜାଶଙ୍କରଙ୍କ ଅଦାଲତରେ ଅଛୁ ।''

ମୁନ୍‌ସି ଶିବଲାଲ କାହିଁକି ସବ୍‌ଜଜ୍‌ଙ୍କ କଥା କହିଲେ ଜ୍ୱାଲାପ୍ରସାଦ ବେଶ୍ ବୁଝି-ପାରଲେ; କିନ୍ତୁ ସେ ଚୁପ୍‌ରହି କଥାକୁ ଟାଳଦେଲେ । ସେ ରାଧେଲାଲଙ୍କୁ ପଚାରଲେ, ''ହଁ କାକା, ଆଗକୁ ଆଉ ଆପଣଙ୍କର କ'ଣ ବିଚାର ଅଛୁ ?''

''ହଁ ସେହି କଥା ତ କହୁଛୁ । ରହମ୍‌ପୁରା ଗାଁର ଅଧା ଅଂଶ ତ ଆମ ନାଁରେ ହୋଇଯାଇଛୁ; ବାକି ଅଧେ ରହିଛୁ । କୟୁମ ମିଆଁ ବର୍ତ୍ତମାନ ତୀର୍ଥଯାତ୍ରା କରିବାକୁ ବାହାରଛୁ, ସେ ତାର ଅଧା ଜମି ବିକିବାକୁ ଚାହୁଁଛୁ । ବଢ଼ ଶସ୍ତା ଦରରେ ଦେବ ବୋଲି

ଛଆର ଅଛି । ନଗଦ ଚାରି ହଜାର ନେବ ଓ ଆଉ ଚାରି ହଜାର ତିନି ବର୍ଷରେ ନେବ । ଏଥିରୁ ଫତେପୁରରେ ମୁଁ ଦୁଇହଜାର ଟଙ୍କା ଯୋଗାଡ଼ କରି ନେଇଛି; ବାକି ଦୁଇ-ହଜାର ଟଙ୍କା ତୁ ଯୋଗାଡ଼ କରିଦେ । ଏଇ ଅଧା ଜମିଟା ତୋର ନାଁରେ କିଣାଯିବ । ବାକି ଅଧାଜମି ଶାମୁ ତୋର ନାଁରେ କରିଦେବ । ତାହାହେଲେ ରହିମପୁର ଗାଁର ସବୁ ଜମି ତୋର ହୋଇଯିବ ।”

ଏ କଥା ଶୁଣି ବିଶନ ସମ୍ଭାଳି ନପାରି ହସିଦେଲା । କହିଲା, “ହଁ ଜ୍ୱାଲାଭାଇ ! ତମେ ଯଦି ଶାମୁଭାଇଙ୍କ ଫିସାଦରେ ପଡ଼ିବନା—ତା’ହେଲେ ତ ଖୁବ୍ ମଜ୍ଜା ହେବ । ତମର ତ ଏତେ ନାଁ ଅଛି, ଏତେ କ୍ଷମତା ଅଛି; ତମ ବିରୁଦ୍ଧରେ କହିବାପାଇଁ କାହାର କ’ଣ ସାହସ ହେବ ?”

ରାଧେଲାଲ୍ ବିଶନଲାଲର କାନକୁ ଧରି କହିଲେ, “ଆରେ ହାରାମଜାଦ, ଫେର୍ ପାଟି ଫିଟାଇଲୁ ? ଏ ତ ଶାମୁର ଜୀବନ-ଶନି ହୋଇ ବସିଛି ! ନିକମା ବାରବୁଲା, ହାରାମ-ଖୋର ! ଯା ଏଠୁ ପଳା !”

ବିଶନଲାଲ ଚୁପ୍‌ଚାପ ଘରୁ ବାହାରି ଚାଲିଗଲା ।

ଜ୍ୱାଲାପ୍ରସାଦ କିଛି ସମୟ ଚିନ୍ତା କରି ପରେ ମନେ ମନେ ଠିକ୍ କରିନେଇ କହିଲେ, “ମୁଁ ସେ ଦୁଇହଜାର ଟଙ୍କା ଯୋଗାଡ଼ କରିପାରିବି ନାହିଁ । ତମେ କୟୁମ୍ ମିଆଁଙ୍କୁ କହିଦିଅ ସେ ଜମିକୁ ସେ ଅନ୍ୟ ଯାହାକୁ ବିକିଦେଉ ।”

ମୁନ୍‌ସି ଶିବଲାଲ ଜ୍ୱାଲାପ୍ରସାଦଙ୍କୁ କଠୋର ଦୃଷ୍ଟିରେ ଚାହିଁ କହିଲେ, “ନାଁ, ସେମିତି କରିବା ଠିକ୍ ନୁହେଁ । ହାତକୁ ଆସୁଥିବା ଧନକୁ ଗୋଡ଼ରେ ଆଡ଼େଇ ଦେବା ଉଚିତ ନୁହେଁ । ମୁଁ ମୁନ୍‌ସି ରାମସହାୟଙ୍କୁ ଗୋଟାଏ ଚିଠି ଲେଖିଦେଉଛି । ସେ ଦୁଇହଜାର ଟଙ୍କା ଖୁସିରେ ଦେଇପାରିବେ ।” ତା’ପରେ ରାଧେଲାଲଙ୍କୁ ସେ ପୁଣି କହିଲେ, “ତୁ ଶାମୁର ଭାଗଟା ଜ୍ୱାଲାପ୍ରସାଦ ନାଁରେ ଲେଖି ଦେ ।”

ଜ୍ୱାଲାପ୍ରସାଦ ବର୍ତ୍ତମାନ ଦୃଢ଼କଣ୍ଠରେ କହିଲେ, “ବାପା ! ଶାମୁର ଜମିବାଡ଼ି ମୁଁ ଚାହେଁ ନାହିଁ । ମୁଁ କେବେ ତାହା ଗ୍ରହଣ କରିବି ନାହିଁ । ଯଦି ସଲିମା ଖୁଡ଼ୀ ଶାମୁକୁ ଜମି ଦେଇଛନ୍ତି, ତା’ହେଲେ ସେ ଜମି ଶାମୁ ହାତରେ ରହୁ ।”

“ତୋ ନାଁ ଆଉ ଶାମୁ ନାଁ ଭିତରେ କିଛି ତଫାତ୍ ନାହିଁ !” ରାଧେଲାଲ କହିଲେ, “କୋଠରେ ଯାହା ଜମିବାଡ଼ି ହେବ ସେଥିରେ ସମସ୍ତଙ୍କର ଭାଗ ରହିବ ।”

“ହଁ, ସେ କଥା ମୁଁ ଜାଣେ; କିନ୍ତୁ ରହିମପୁର ଗାଁର ଅଧା ଜମି ଶାମୁ ନାଁରେ ରହିଲେ ବେଶୀ ଭଲ ହେବ । ଆଉ ଫତେପୁରରେ ଯେଉଁ ଜମି ଅଛି, ସେ ବି ତ ଶାମୁ ନାଁରେ ଅଛି । ମୋତେ ଏବେ କାହିଁକି ତା ଭିତରେ ପୂରାଉଛନ୍ତି ?”

ବର୍ତ୍ତମାନ ରାଧେଲାଲ ବଡ଼ ଛଟପଟରେ ପଡ଼ିଲେ । ସେ କହିଲେ, "ବୁଝିଲୁ ଜ୍ୱାଲା! ଏବେ କଥା ହେଉଛି ଯେ ସଲାମା ତା' ଜ୍ୱାଇଁ କଥାରେ ପଡ଼ି କହୁଛି, ସେ ଅଫିମ ନିଶାରେ ବେହୋସ ଥିଲାବେଳେ ଧୋକାବାଜିରେ ଶାମୁଁ ନାଁରେ ଜମି ଲେଖା ହୋଇ-ଯାଇଛି ।"

"ହଁ, ବଣିନଲାଲ ତା'ହେଲେ ଠିକ୍ କହୁଥିଲା । ଆପଣ ତାହେଲେ ସିଧା କାହିଁକି କହୁନାହାନ୍ତି ଯେ ଆପଣ ମୋତେ ଏହି ଧୋକାବାଜିରେ ଭାଗୀଦାର କରିବାକୁ ଚାହାନ୍ତି ।" ଜ୍ୱାଲାପ୍ରସାଦଙ୍କର ପୌରୁଷ ଟିକିଏ ଜାଗିଉଠିଲା । ସେ କହିଲେ, "ଆପଣ ଏତିକି ମନେ ରଖିବେ, ଏସବୁ କାମରେ ମୋ ନାଁକୁ ଭର୍ତ୍ତି କରିବାକୁ ମୁଁ ଚାହେଁ ନାହିଁ । ଏସବୁ ମୋର ମାନ-ସମ୍ମାନର କଥା ।"

ଜ୍ୱାଲାପ୍ରସାଦଙ୍କ ଦୃଢ଼ତା ଦେଖି ମୁନସି ଶିବଲାଲ ଭାବିଲେ, ପୁଅ ଯାହା କହୁଛି ଠିକ୍ କହୁଛି । ମନରେ ତାଙ୍କର ଭାରି ଗର୍ବ ହେଲା । ପୁଅକୁ ବଡ଼ ଗୌରବରେ ଚାହିଁ ସେ କହିଲେ, "ହଁ ରାଧା, ଜ୍ୱାଲା ଠିକ୍ କହୁଛି । ବଡ଼ ଅଫିସର; ତାର ମାନ-ସମ୍ମାନର କଥା । ତା' ନାଁକୁ ବାଜି ଖାଇବା ଉଚିତ ନୁହେଁ । ଶାମୁ ଯଦି ମକଦ୍ଦମାରେ ଜିତେ, ତା ହେଲେ ସେ ଜମି ଜ୍ୱାଲା ନାଁରେ କରିଦିଆଯିବ । ବର୍ତ୍ତମାନ କରିବା ଅନ୍ୟାୟ ହେବ । ବର୍ତ୍ତମାନ ମକଦ୍ଦମାରେ ଭଲକରି ଲାଗ ।"

"ହଁ ଲାଗିବା ଯେ, କିନ୍ତୁ ଓକିଲ କହୁଛନ୍ତି ମକଦ୍ଦମା ଟିକିଏ ଦୁର୍ବଳ ଅଛି । ଦଲିଲ କାଗଜ ଯଦିଓ ପାଖରେ ଅଛି, ତଥାପି ତାହା ରେଜେଷ୍ଟ୍ରି ହୋଇନାହିଁ । ଯାହା ହେଲେ ବି ଶାମୁର ସେ ଜମିରେ ଅଧିକାର ଅଛି । ଖାଲି ହାକିମଙ୍କ ଉପରେ ଟିକିଏ ଜୋର ପଡ଼ିଗଲେ ମକଦ୍ଦମା ଠିକ୍ ହୋଇଯାନ୍ତା ।" ତା' ପରେ ସେ ଜ୍ୱାଲାପ୍ରସାଦଙ୍କୁ ଅନାଇଁ କହିଲେ, "ତୁ ତ ପଣ୍ଡିତ ଗିରିଜାଶଙ୍କରଙ୍କୁ ଜାଣୁ । ତାଙ୍କର କୋର୍ଟରେ ମକଦ୍ଦମା ପଡ଼ିଛି ।"

"ହଁ ଜାଣିଛି ଯେ, ସେ ନ ଜାଣିଲା ଭଲ । କିନ୍ତୁ ଏ ମକଦ୍ଦମା ବିଷୟରେ ପଣ୍ଡିତ ଗିରିଜାଶଙ୍କରଙ୍କ ସାଙ୍ଗରେ ମୁଁ କେବେ କଥାବାର୍ତ୍ତା କରିବ ନାହିଁ ।" ଏହି ଅପ୍ରିୟ କଥାକୁ ଏତିକିରେ ବନ୍ଦ କରିଦେବା ପାଇଁ ଜ୍ୱାଲାପ୍ରସାଦ ଛିଡ଼ାହୋଇ କହିଲେ, "ଡେପୁଟି ସାହେବ ଟୁର୍‌ରେ ଆସିଛନ୍ତି । ମୋତେ ସେ ଡକାଇଛନ୍ତି । ମୋର ବର୍ତ୍ତମାନ ଡେରି ହୋଇଯାଉଛି ।"

ଜ୍ୱାଲାପ୍ରସାଦଙ୍କର ଏଇ ମୁହାଁମୁହିଁ ଜବାବ ରାଧେଲାଲଙ୍କୁ ଭଲ ଲାଗିଲା ନାହିଁ । ଜ୍ୱାଲାପ୍ରସାଦ ଚାଲିଯିବା ପରେ ସେ ଶିବଲାଲଙ୍କୁ କହିଲେ, "ଭାଇ, ଆମ ହାତକୁ ଏହି ଜମିସବୁ କେମିତି ଆସିବ, ସେଥିପାଇଁ ଶାମୁ ଏସବୁ କରିଛି । ଏହି କଥା ତମେ ଜ୍ୱାଲାକୁ

ଟିକଏ ବୁଝାଇ ଦିଅ । ଯଦି ହୋଇଗଲା ତ ଏହି ଥର ହୋଇଯିବ । କ୍ୱାଲି କଥା ଯାହା ଦେଖୁଛୁ, ସେ କେବେ ଜମିବାଡ଼ି କମ୍ପା ପଇସାପଦ କରି ପାରିବ ନାହିଁ । ସେ ଏବେ କିଛୁ ନକରୁ, କରିବା ପାଇଁ ତ ଭାଇ ବସିଛୁ । ଖାଲି ଦରକାର ବେଳେ ଟିକଏ ଜୋରରେ ଲାଗିଗଲେ ହେଲା ।"

ମୁନ୍‌ସି ଶିବଲାଲ କ୍ଲାନ୍ତ ସ୍ୱରରେ କହିଲେ, "ହଁ, ତୁ ଯାହା କହୁଛୁ ଠିକ୍ , ହେଲେ କ'ଣ କରିବା ? ପୁଅ ଯେତେବେଳେ ବଡ଼ ହୋଇଗଲାଣି, ଖାଲି ସେତକ ନୁହେଁ, କୁଳ ଉଜ୍ୱଳ କରିବା ଭଳି ଜଣେ ପୁଅ, ତାକୁ ବେଶି କିଛୁ କହି ହେଉନାହିଁ । ହଁ, ଗୋଟାଏ କଥା କହିବାକୁ ଅଛି । କିନ୍ତୁ ବଡ଼ ହୁସିଆରରେ କାମ କରିବାକୁ ପଡ଼ିବ ।"

"ଆଚ୍ଛା କହନ୍ତୁ, ମୁଁ ପୂରା ହୁସିଆର ଅଛି ।"

"ମୁଁ କିଶନୁ କଥା ଭାବୁଥିଲି । ମୁଁ କ୍ୱାଲାକୁ କହିଲି ତାକୁ କୌଣସି ଗୋଟାଏ କାମରେ ଲଗାଇଦେ । ତାହା ହେଲେ ତା'ର ଅଭ୍ୟାସ ବଦଳିଯିବ । ଯାହା ହେଲେ ତ ପୁଣି ତାର ବାହାଘର କରିବାକୁ ହେବ ।"

ରାଧେଲାଲ କାନ୍ଦ କାନ୍ଦ ହେଲା ପରି କହିଲେ, "ଏହି କିଶନୁଟା ଏମିତି ନକମା ବାଉଳା ହେବ ବୋଲି ମୁଁ କ'ଣ କେବେ ଜାଣିଥିଲି ! ଏଇଟା ତ ମାଇନର ବି ପାଶ୍ କଲାନାହିଁ । କ୍ୱାଲି ଏବେ ଯାକୁ କେଉଁଠି କାମରେ ଲଗାଇବ ?"

"ଆରେ ସେହି କଥା କହୁଥିଲି । ଘାଟମପୁର ଲମ୍ବରଦାରଣୀଙ୍କୁ ତୁ ତ ଜାଣୁ । ମାଘ-ମେଳାରେ ସେ ଦିନ ତାଙ୍କ ସାଙ୍ଗରେ ଦେଖାହୋଇଥିଲା । ତାଙ୍କର ତ ଗୋଟାଏ ବଡ଼ ଇଲାକା; ପ୍ରାୟ ଗୋଟାଏ ତାଲୁକା ତାଙ୍କ ଅଧୀନରେ ଅଛି । କ୍ୱାଲି କଥା ସେ ଖୁବ୍ ମାନନ୍ତି । ଘରଲୋକ ପରି ସେ ତା' ସାଙ୍ଗରେ ଚଳନ୍ତି । କିଶନୁ ଯଦି ସେହିଠାରେ ଗୁମାସ୍ତା କାମରେ ରହିଯାନ୍ତା, ତା ହେଲେ କେମିତି ହୁଅନ୍ତା ?"

ଏ କଥା ଶୁଣି ରାଧେଲାଲଙ୍କ ମଳିନ ଚେହେରା ସାଙ୍ଗେ ସାଙ୍ଗେ ଚମକି ଉଠିଲା । ସେ କହିଲେ, "ଠିକ୍ କହିଲ ଭାଇ ! ସେତକ ଯଦି ମିଳିଯାନ୍ତା, ଜାଣ କିଶନୁର ଭାଗ୍ୟ ଖୋଲିଯାନ୍ତା ।"

"ଖାଲି କ'ଣ ତାର ଏକା, ଏହି ଘରର ଭାଗ୍ୟ ବି ଖୋଲିଯାନ୍ତା । କିନ୍ତୁ କଥା ହେଉଛି କିଶନୁ ସାଙ୍ଗରେ ତୋତେ ବି ଯିବାକୁ ପଡ଼ିବ; ନ ହେଲେ କିଶନୁ ସବୁ କାମ ବିଗାଡ଼ି ଦେବ । ଗୁମାସ୍ତାଟା ଖାଲି ତା' ନାଁରେ ରହିବ । ସବୁ କାମ ତୋତେ କରିବାକୁ ହେବ । ତୋର ଯଦି ଏଥିରେ ରାଜି, ତାହେଲେ ମୁଁ ଲମ୍ବରଦାରଣୀଙ୍କୁ ଚିଠି ଲେଖି ତମ ଦୁହିଁଙ୍କୁ ତାଙ୍କ ପାଖକୁ ପଠାଇଦେବି ।"

"ଭାଇ, ଏମିତି ସୁବର୍ଣ୍ଣ ସୁଯୋଗ ମୁଁ କ'ଣ କେବେ ଛାଡ଼ିବି ? ତମ ଆଜ୍ଞା ମୋର

ଶିରୋଧାର୍ଯ୍ୟ । କିନ୍ତୁ ଜ୍ୱାଲା ବୋଧହୁଏ ଆମ ଘାଟମପୁର ଯିବା କଥା ପସନ୍ଦ କରିବ ନାହିଁ ।"

"ହଁ, ସେକଥା ଠିକ୍ । ସେଥିପାଇଁ ତ ମୁଁ ଚିଠି ଲେଖିଦେବି ବୋଲି କହୁଛି । ତୁ କିନ୍ତୁ ନିଜ ଆଡ଼ୁ ଜ୍ୱାଲାପ୍ରସାଦକୁ ଏ ବିଷୟରେ କିଛି କହିବୁ ନାହିଁ ।"

ଦୁଇ ତିନିଦିନ ଭିତରେ କିଶନଲୁର ଚାକିରି ପାଇଁ ଲମ୍ବରଦାରଣୀ ଜେଦେଇଙ୍କୁ ଚିଠି ଲେଖିବା ପାଇଁ ଶିବଲାଲ ଜ୍ୱାଲାପ୍ରସାଦଙ୍କୁ ମନାଇ ନେଲେ । ପନ୍ଦର ଦିନ ଭିତରେ ରାଧେଲାଲ, ତାଙ୍କ ସ୍ତ୍ରୀ ଓ କିଶନଲାଲ ଘାଟମପୁର ଚାଲିଗଲେ ।

ଜ୍ୱାଲାପ୍ରସାଦଙ୍କ ଘରେ ବର୍ତ୍ତମାନ ଶାନ୍ତି ଫେରି ଆସିଲା । ବିଶନଲାଲ ଯେମିତି ଧୀରସ୍ଥିର, ଜ୍ୱାଲାପ୍ରସାଦ ଓ ଯମୁନାଙ୍କ ପ୍ରତି ତା'ର ସେମିତି ଆଦର ଓ ସମ୍ମାନ ଥିଲା । ସବୁବେଳେ ନିଜ କଥାରେ ସେ ଥାଏ । ତାଙ୍କ ତିନି ଭାଇଙ୍କ ଭିତରେ ଆକାଶ ପାତାଳ ଅନ୍ତର । ସ୍ୱା ଭିତରେ ଗଙ୍ଗାପ୍ରସାଦ ବିଶନଲାଲକୁ ଖୁବ୍ ଆଗେଇ ଯାଇଥିଲା । କିନ୍ତୁ ବିଶନଲାଲ ଘରେ ବାନ୍ଧି ହୋଇ ରହିବା ଲୋକ ନୁହେଁ । ତାର ଅଧିକାଂଶ ସମୟ ବାହାରେ ବୁଲାବୁଲି କରି କଟିଯାଉଥିଲା ।

ଯୋଗିବରେ ମଙ୍ଗଳବାର ଦିନ ଗୋଟାଏ ହାଟ ବସେ । ସେଠି ବିକାକିଣା ପାଇଁ କେବଳ ଆଖପାଖରୁ ନୁହେଁ, ଦୂରଦୂରାନ୍ତରୁ ମଧ୍ୟ ଅନେକ ଲୋକ ଆସନ୍ତି । ସେହି ହାଟଠାରୁ କିଛି ଦୂରରେ ଯୋଗିବ ଗାଁ ବାହାରେ ଗୋଟାଏ ବଡ଼ ସରକାରୀ ଆମ୍ବ-ତୋଟା ଓ ସେହି ତୋଟା ଭିତରେ ହନୁମାନ ଜୀଉଙ୍କର ଗୋଟାଏ ମନ୍ଦିର ଭଙ୍ଗାରୁଜା ହୋଇ ପଡ଼ିଥିଲା । ଦିନେ ବିଶନଲାଲ ବୁଲୁ ବୁଲୁ ହଠାତ୍ ସେହି ତୋଟାକୁ ଦେଖି ସେଠି ଗୋଟାଏ ଆଖଡ଼ା ତିଆରି କରିବା ପାଇଁ ଠିକ୍ କଲା । ସେତିକି ବେଳେ ସେଠାରେ ଘୁମରୁ ମିସିର ବୁଲୁଥିଲା । ହନୁମାନ ମନ୍ଦିର ସଂସ୍କାର କରିବା ପାଇଁ ସେ ମନେ ମନେ ବିଚାରୁଥିଲା । ଦୁହେଁଯାକ ସାଥୀ ହୋଇ ଗାଁକୁ ଫେରିଲେ । ଦୁହିଙ୍କ ମଧ୍ୟରେ ଭଲ ଚିହ୍ନା ପରିଚୟ ହୋଇଗଲା । ଘୁମରୁ ବେଚୁ ମିସିରଙ୍କ ସାନଭାଇ । ମାସେ ହେଲା ସେ ବନାରସରୁ ପଳାଇ ଆସିଥିଲା । ସେଠି ସଂସ୍କୃତ ପଢ଼ିବା ପାଇଁ ତାକୁ ପଠାହୋଇଥିଲା; କିନ୍ତୁ ତାକୁ ଲାଗିଲା ଯେମିତି ସଂସ୍କୃତ ପାଠ ତାର ଜନ୍ମ-ଶତ୍ରୁ । ବ୍ୟାକରଣର ଅତଳ ସମୁଦ୍ରରେ ସତେ ଯେମିତି ତାର ଜୀବନ ଚାଲିଯିବ ।

ଘୁମରୁ କୋଡ଼ିଏ ଏକୋଇଶି ବର୍ଷର ଯୁବକ; ମୋଟାସୋଟାରେ ଟିକିଏ କମ୍ ହେଲେ ବି ବିଶନଲାଲଠାରୁ ଡେଙ୍ଗାରେ ସେ ବଡ଼ । ମୁଣ୍ଡରେ ସବୁବେଳେ ଗୋଟାଏ ଟିପା । ତାର ବ୍ୟାକରଣ କିଛି ମନେ ନ ଥିଲା; କିନ୍ତୁ ସଂସ୍କୃତ ଶ୍ଳୋକ ବହୁତ ମନେ ରଖିଥିଲା ଓ ତାକୁ ସୁର ଧରି ଗାଇପାରୁଥିଲା । ବନାରସରୁ ପଳାଇ ଆସିବାରୁ ବଡ଼ଭାଇ

ଗୁଡ଼ାଏ ଗାଳିଗୁଲଜ କଲା । କିନ୍ତୁ ଏଡେ ବଡ଼ ପିଲାଟାକୁ ଆଉ କ'ଣ କହିବ ? ତାକୁ ତ ଆଉ ବାଧିକରି କିଛି କରାଇ ହୁଅନ୍ତା ନାହିଁ ।

ବେଚୁ ମିସିର ସୋରିବର ନାଏବ ତହସିଲଦାର । ସେଇଠି ବି ତାଙ୍କ ନିଜ ଘର । ସେଠୁ କେବେ ତାଙ୍କର ବଦଳି ହୋଇନି କି ବଦଳି ହେବାର ଆଶା ବି ନଥିଲା । ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ କେମିତି ସେ ଏତେକାଳ ମାଡ଼ିବସି ରହିଥିଲେ । ସେ ଯଦି ସେଠୁ ବଦଳି ହେବା ପାଇଁ ରାଜି ହୋଇଥାନ୍ତେ, ତା ହେଲେ କେତେ ଦିନୁ ଡେପୁଟି ମାଜିଷ୍ଟ୍ରେଟ ହୋଇ ସାରିଥାନ୍ତେ ।

ଘୁମରୁ ଓ ବିଶନଲାଲ ଦୁହେଁ ଖୁବ୍ ସାଥୀ ହୋଇଗଲେ । ଦୁହିଙ୍କର ବଳବୟସ ଯେମିତି ସମାନ, ଜିଦ୍ ବି ସେମିତି ସମାନ । ବାଟରେ ଫେରିଲାବେଳେ ସେମାନଙ୍କର ସବୁ ଯୋଜନା ଠିକ୍ ହୋଇଗଲା, ତୋଟାରେ ଗୋଟାଏ ଆଖଡ଼ା କରି ସେଠି ବିଶନଲାଲ କୁସ୍ତି କସରତ୍ ଶିଖାଇବ ଓ ଘୁମରୁ ମହାବୀର ମନ୍ଦିରରେ ପୂଜାରୀ ହୋଇ ଚାରି ଆଯନ ଜମାଇବ । ସପ୍ତାହକ ଭିତରେ ଦଶ ବାର ଜଣ ଯୁବକ ଆଖଡ଼ାକୁ ଆସିଗଲେ ଓ ହନୁମାନଜୀଙ୍କର ମନ୍ଦିର ସଫାସୁତୁରା ହୋଇ ଭୋଗଲଗା ଆରମ୍ଭ ହୋଇଗଲା ।

ହୋଲି ସରିଯାଇଥାଏ । ବିଲରେ ପାଚିଲା ଫସଲ ଛିଡ଼ା ହୋଇଥାଏ । କେତେ ଜାଗାରେ ଫସଲକଟା ଆରମ୍ଭ ହୋଇ ଯାଇଥାଏ । ମଙ୍ଗଳବାର ହାଟ ଖୁବ୍ ଚମକି ଉଠିଥାଏ । ଆଖପାଖ ଲୋକେ ନୂଆ ଗୁଡ଼, ନୂଆ ଫସଲ ଆଣି ହାଟକୁ ଯିବା ଆସିବା କରୁଥାନ୍ତି; ହାଟ ଖୁବ୍ ଜମୁଥାଏ । ମହାବୀରଙ୍କଠାରେ ଏତେ ଭୋଗ ଲାଗୁଥାଏ ଯେ ସେହି ପଇସାରୁ ଆଖଡ଼ାର ସମସ୍ତ ଖର୍ଚ୍ଚ ଛୁଟିଯାଉଥାଏ । ଲୋକେ ଏବେ ଘୁମରୁଙ୍କୁ ପଣ୍ଡିତ ଘୁମରୁ ଓ ବିଶନକୁ ବିଶନ ଗୁରୁ ବୋଲି ଡାକୁଥାନ୍ତି ।

ସେ ଦିନ ମଙ୍ଗଳବାର ହାଟକୁ ବୃନ୍ଦୁସିଂହ କେମିତି ଓ କାହିଁକି ଆସିଥିଲେ ଲୋକେ ଠିକ୍ କହି ପାରୁ ନ ଥିଲେ । ଅଗେ ବୃନ୍ଦୁସିଂହଙ୍କ ଆଖଡ଼ା ସାରା ସୋରିବରେ ଏକମାତ୍ର ଆଖଡ଼ା ଥିଲା ଓ ଦଶବର୍ଷ ପୂର୍ବେ ସମଗ୍ର ପୂର୍ବ ଜିଲାରେ ସେ ସର୍ବଶ୍ରେଷ୍ଠ ପହିଲ୍‌ମାନ ଥିଲେ । କିନ୍ତୁ ତାଙ୍କର ବୟସ ଗଡ଼ିଯିବାରୁ ଠାକୁର ବୀରଭାନୁ ସିଂହ ତାଙ୍କ ପାଇଁ ଗୋଟାଏ ଆଖଡ଼ା ତିଆରି କରି ଦେଇଥିଲେ ।

କେତେ ଲୋକ କହନ୍ତି ଯେ ସୋରିବରେ ଆଉ ଗୋଟାଏ ଆଖଡ଼ା ହେବାରୁ ତାଙ୍କ ଅଭିମାନରେ ଟିକିଏ ଆଞ୍ଚ ଲାଗିଥିଲା; କିନ୍ତୁ ଆଉ କେତେକ କହନ୍ତି ଯେ ଆଉ ଗୋଟାଏ ନୂଆ ଆଖଡ଼ା ହେବାରୁ ସେ ଭାରି ଖୁସି ହୋଇଥିଲେ । ସେ ଯାହାହେଉ, ସେ ଦିନ ବୃନ୍ଦୁସିଂହ ତାଙ୍କର ବଡ଼ ଶିଷ୍ୟ ମେକୁସିଂହ ସାଙ୍ଗରେ ହାଟକୁ କେବଳ ବୁଲି ଆସି ନ ଥିଲେ,

ଗାଁ ବାହାରେ ଯେଉଁ ଆଖଡ଼ା ହୋଇଥିଲା ତା'କୁ ବି ଦେଖିବାକୁ ଆସିଥିଲେ ।

ପହିଲମାନ ବୃଦ୍ଧୁସିଂହ ବିଶନ ଗୁରୁଙ୍କ ଆଖଡ଼ାରେ ପହଞ୍ଚିଲା ବେଳକୁ ଗୁରୁଜୀ ଲାଲ ଲେଙ୍ଗୁଟି ପିନ୍ଧି ମହାବୀର ଠାକୁରଙ୍କ ଆଗରେ ବୈଠକ ମାରୁଥିଲେ । ଗୁରୁ ବିଶନଲାଲ ସବୁଦିନ ସନ୍ଧ୍ୟାବେଳେ ଶହେ ଦଣ୍ଡ ଓ ପାଞ୍ଚଶହ ବୈଠକ ମାରି ଠାକୁରଙ୍କ ଆଶୀର୍ବାଦ ଭିକ୍ଷା କରୁଥିଲେ ଓ ତାପରେ ଆଖଡ଼ାକୁ ଯାଇ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । ପହିଲମାନ ବୃଦ୍ଧୁସିଂହ ଆଖଡ଼ାରେ ପହଞ୍ଚିଲାବେଳକୁ ବିଶନ ଗୁରୁ ଦଣ୍ଡକାମ ସାରି ବୈଠକ ଆରମ୍ଭ କରିଥିଲେ । ତାଙ୍କର ପାଞ୍ଚଶହ ବୈଠକ ଦେଖି ବୃଦ୍ଧୁସିଂହ ଅତି ଆନନ୍ଦରେ ପାଟିକରି କହିଲେ, ' ବାଃ ବେଟା, ସାବାସ୍‌ ସାବାସ୍‌ !''

ବିଶନଲାଲ ଆଗରୁ କେବେ ବୃଦ୍ଧୁସିଂହଙ୍କୁ ଦେଖି ନ ଥିଲେ । ତଥାପି ତାଙ୍କ ଶରୀର ଓ ତାଙ୍କ ଢଙ୍ଗଢାଙ୍ଗ ଦେଖି ସେ କେହି ଜଣେ ପହିଲମାନ ହେବେ ବୋଲି ଜାଣି ପାରିଥିଲେ । ବୃଦ୍ଧୁସିଂହଙ୍କ ପାଖରେ ତାଙ୍କର ଶିଷ୍ୟ ମେକୁସିଂହ ଠିଆ ହୋଇଥିଲେ । ମେକୁଙ୍କର ବୟସ ବିଶନଲାଲଙ୍କ ସହିତ ସମାନ ଥିଲେ ବି ମେକୁଙ୍କର ଦେହ ଟିକିଏ ଅଧିକ ହୃଷ୍ଟପୁଷ୍ଟ ଥିଲା । ପହିଲମାନ ବୃଦ୍ଧୁସିଂହ ମେକୁଙ୍କ ଆଡ଼କୁ ଚାହିଁ କହିଲେ, ''ଦେଖ ମେକୁ, ତୋର ଇଏ ଜଣେ ଯୋଡ଼ିଦାର ।''

ମେକୁସିଂହ ଏହି ସମୟରେ ବୃଦ୍ଧୁସିଂହଙ୍କ ପାଦ ଛୁଇଁ କହିଲେ, ''ଗୁରୁଜୀ, ମୁଁ ପହିଲମାନ ବୃଦ୍ଧୁସିଂହଙ୍କ ଶିଷ୍ୟ; ଚାହିଁଲେ ଏହାଙ୍କୁ ଦୁଇ ମିନିଟରେ ଚିତ୍‌ କରି ପକାଇ ଦେବି ।''

ବୃଦ୍ଧୁସିଂହ ହସି ଦେଇ କହିଲେ, ''ଆରେ, ତୁ ଗୋଟାଏ ଶିଷ୍ୟ; ସେ ହେଉଛନ୍ତି ଜଣେ ଗୁରୁ । କ'ଣ ବାବା, ତମ ନାଁ ବିଶନ ଗୁରୁ କି ? ଯେତେବେଳେ ଶୁଣିଲି ଆଉ ଜଣେ କେହି ଗୁରୁ ସୋରାବରେ ଆଖଡ଼ା ଖୋଲିଛନ୍ତି, ମନ ସମ୍ଭାଳି ହେଲା ନାହିଁ । ଟିକିଏ ଦେଖିବାକୁ ଚାଲି ଆସିଲି । କାଲିର ନୂଆ ଟୋକା ତୁମେ, ଏଡ଼େ ଚଞ୍ଚଳ ଗୁରୁ ହୋଇଗଲଣି ?''

ବିଶନ ଗୁରୁ ଏବେ ଜଣାଶୁଣା ପହିଲମାନ ବୃଦ୍ଧୁସିଂହଙ୍କ ଆଗରେ ହାତ ମଳି ମଳି ଛିଡ଼ା ହୋଇଥାନ୍ତି । ଧୁମରୁ ପଣ୍ଡିତ ମନ୍ଦିରରେ ବସି ଏସବୁ ତାମସା ଦେଖୁଥାନ୍ତି । ଏବେ ସେ ଭାବିଲେ ସାମନାକୁ ନ ଗଲେ ଚଳିବ ନାହିଁ । ତେଣୁ ସେ ଆସି ବିଶନ ଗୁରୁଙ୍କୁ ଟିକିଏ ହଟାଇ ଦେଇ ପହିଲମାନ ବୃଦ୍ଧୁସିଂହଙ୍କୁ କହିଲେ, ''ଗୁରୁଜୀ, ଭାଙ୍ଗ ଛଣା ହୋଇ ରହିଛି, ଆସନ୍ତୁ ଲୋଟାଏ ଚଢ଼ାନ୍ତୁ । ଏ ଆଖଡ଼ା କଥା ଛାଡ଼ନ୍ତୁ । ଆମେ ତ ପିଲାମାନେ ଖୁସିରେ ଏ ଆଖଡ଼ା କରିଛୁ । ଆପଣଙ୍କର ଏଥିରେ ଏତେ ବ୍ୟସ୍ତ ହେବାର କ'ଣ ଅଛି ?''

ପହିଲ୍‌ମାନ ବୃଜ୍‌ସିଂହ ଥଟ୍ଟା କରି କହିଲେ, "ଏଠି ତମେ ଭାଙ୍ଗଖିଆ, ଗଞ୍ଜେଇ-ଖିଆ ଟୋକାଏ ଯାହା ପହିଲ୍‌ମାନ ହେବ ମୁଁ ଜାଣିଛି । କିନ୍ତୁ ଏହି ସାରା ଯୋଗିବ ର ଜଣେ କେବଳ ଗୁରୁ, ସେ ହେଉଛନ୍ତି ପହିଲ୍‌ମାନ ବୃଜ୍‌ସିଂହ ।" ତା ପରେ ପୁଣି ସେ ବିଶନଲାଲଙ୍କୁ କହିଲେ, "ମୁଁ ଡଉଁରିଆ ବାନ୍ଧିବାକୁ ଆସିଛି, ତମେ ଡଉଁରିଆ ବନ୍ଧାଇ ନିଅ ।"

ବର୍ତ୍ତମାନ ବିଶନଲାଲ ବାଧ୍ୟ ହୋଇ କହିଲେ, "ଡଉଁରିଆ ତ ଜଣେ ଗୁରୁଙ୍କଠାରୁ ନିଆଯାଏ । ମୁଁ ତ ଆଗରୁ ଜଗୁ ପହିଲ୍‌ମାନଙ୍କଠାରୁ ନେଇ ସାରିଛି । ମୁଁ ଏବେ ଅନ୍ୟ ଲୋକଙ୍କୁ ଡଉଁରିଆ ଦେଉଛି—ଆଉ ନେବି କ'ଣ ?"

ବୃଜ୍‌ସିଂହ ମେକୁସିଂହଙ୍କୁ ଚାହିଁ କହିଲେ "କିଣ ମେକୁ ! ଏ ଟୋକା କଥା ଶୁଣୁଛୁ । ଏ କୁଆଡ଼େ ଗୁରୁ ହୋଇ ଡଉଁରିଆ ବାନ୍ଧିବାକୁ ଆସିଛି । ଯା ସାଙ୍ଗେ ତୁ ବଳ କରି ପାରିବୁ ?"

ଏତେବେଳକୁ ଚାରିକଡ଼େ ଲୋକସବୁ ଜମାହୋଇ ସାରିଥିଲେ । ଜଣକେ ଜାଣିଏ ଲେଖାଏଁ କଥା କହି ଖୁବ୍ ପାଟିତୁଣ୍ଡ କରୁଥିଲେ । ବୃଜ୍‌ସିଂହ କଥା ଶୁଣି ଲୋକେ ପାଟି କରି କହିଲେ, "ହଁ, ହୋଇଯାଉ, ଦେଖାଯାଉ କିଏ ଜିତୁଛି ।" ଯା ପରେ ପାଟିତୁଣ୍ଡ ଖୁବ୍ ବଢ଼ିଲା ।

ଘୁମରୁ ପଣ୍ଡିତ ବେଳ ଗଣି ଲୋକଙ୍କ ଆଡ଼କୁ ଚାହିଁ କହିଲେ, "ଏଠି କ'ଣ ମଜ୍ଜା ଦେଖିବାକୁ ଆସିଛ ? ସେ କଥା ପଟିବ ନାହିଁ । ଆଚ୍ଛା, ବିଶନ ଗୁରୁ ଆଉ ମେକୁସିଂହ ଭିତରେ ଲଢ଼େଇ କଥା ରହିଲା । ପନ୍ଦର ତାରିଖ ମଙ୍ଗଳବାର ଦିନ ହେବ । ବୃଜ୍ ପହିଲ୍‌ମାନଙ୍କର ଆଖଡ଼ାରେ ହେଉ କିମ୍ବା ଏଠି ହେଉ, ସେଥିପାଇଁ ବିଶନ ଗୁରୁଙ୍କର ଡର ନାହିଁ । ଯଦି ବିଶନଲାଲ ମେକୁ ପାଖରେ ହାରିଯାଏ ତେବେ ସେ ତ ବୃଜ୍‌ସିଂହଙ୍କ ଡଉଁରିଆ ବାନ୍ଧିବ; ନାହିଁ ଯଦି ମେକୁସିଂହ ହାରିଯାଏ ତାହାହେଲେ ଏ ଆଖଡ଼ା ନିଶ୍ଚିନ୍ତ ଚାଲିବ । ବୃଜ୍ ପହିଲ୍‌ମାନ ଆଉ ଏଠି ମୁହଁ ଦେଖାଇବେ ନାହିଁ ।"

ମେକୁସିଂହ ବିଶନ ଗୁରୁଙ୍କୁ ତୁଚ୍ଛ ଦୃଷ୍ଟିରେ ଚାହିଁ କହିଲା, "ହଁ, ମୁଁ ସେଥିରେ ରାଜି ।"

ସେ ଦିନ ରାତିରେ ଘୁମରୁ ପଣ୍ଡିତେ ହନୁମାନଜୀଙ୍କ ପ୍ରସାଦ ଧରି ଯେତେବେଳେ ଘରେ ପହଞ୍ଚିଲେ, ଦେଖିଲେ ବେଚୁ ମିସିରଙ୍କ ପୂରା ଦରବାର ବସିଛି । ଘୁମରୁକୁ ଦେଖି ବେଚୁ ବଡ଼ ଜୋରରେ ହସିକରି କହିଲେ, "କିଣରେ ଘୁମରୁ, ମନ୍ଦିରକାମ ଖୁବ୍ ଜୋର୍ ଚାଲିଛି ଟି ? ଜଣାପଡ଼ୁଛି ତମ ହନୁମାନଜୀ ହାଇକୋର୍ଟରେ ପଡ଼ିଗଲେଣି ।"

ଘୁମରୁ ପଣ୍ଡିତେ ସେଠି ବସିଥିବା ଲୋକମାନଙ୍କୁ ଭୋଗ ମିଠେଇ ବାଣ୍ଟୁ ବାଣ୍ଟୁ କହିଲେ, "ନିଅ, ହନୁମାନଜୀଙ୍କ ପ୍ରସାଦ ନିଅ । ଏବେ ତ ତାଙ୍କ ପ୍ରତାପ ପୁଣି ବଢ଼ୁଛି;

କନ୍ତୁ ଭାଇ, ଆଜ ଗୋଟାଏ ଖୁବ୍ ମଜା ହେଲା । ବୃଦ୍ଧ ସିଂହଙ୍କ ଶିଷ୍ୟ ମେକୁସିଂହ ଆଉ ବଶନ ଗୁରୁଙ୍କ ଭିତରେ ଆସନ୍ତା ପନ୍ଦର ତାରିଖ ମଙ୍ଗଳବାର ଦିନ କୁସ୍ତି ହେବାର ଠିକ୍ ହୋଇଗଲା ।"

ବେଚୂ ମିସିର ଚମକି ପଡ଼ି କହିଲେ, "ଏ ବଶନ ଗୁରୁ ପୁଣି କିଏ ?"

"ଆରେ ତମକୁ ଜଣାନାହିଁ ? ଏ ବଶନଲାଲ ପରା; ତହସିଲ୍‌ଦାର ସାହେବଙ୍କ କକାପୁଅ ଭାଇ ! ସ୍ୱାଙ୍କର ସାଙ୍ଗରେ ଭାଗ ହୋଇ ଆମେ ସେ ମନ୍ଦିର ଆଉ ଆଖଡ଼ା ଚଳାଇଛୁ । ମୁଁ ମନ୍ଦିର ବୁଝୁଛି; ସେ ଆଖଡ଼ା ବୁଝୁଛନ୍ତି ।"

ବେଚୂ ମିସିରଙ୍କ ବୟସ ପଇଁଟ୍ରିଶରୁ ପଚାଶ ଭିତରେ । ସେ ସେଠିକାର ସାମାଜିକ ଜୀବନର ଏକପ୍ରକାର ନେତା ଥିଲେ । ସେ ନାଏବ ତହସିଲଦାର ହେବା ସାଙ୍ଗେ ସାଙ୍ଗେ ପଞ୍ଚାୟତି ଓ ପୁରୋହିତ ଉଭୟ କରୁଥିଲେ । ଏସବୁ କାମ ତାଙ୍କର ଉଚିତ ନୁହେଁ ବୋଲି ଡେପୁଟିସାହେବ ଦୁଇତିନି ଥର ତାଙ୍କୁ ସୂଚନା ଦେଇଥିଲେ; କିନ୍ତୁ ବେଚୂ କହନ୍ତି, କଣ କରିବେ, ଅଭ୍ୟାସ ତ ! ନହେଲେ ସେ କେତେବେଳୁ ଡେପୁଟି ମାଜିଷ୍ଟ୍ରେଟ୍ ହୋଇସାରନ୍ତେଣି । ବେଚୂ ମିସିର ଯେମିତି ନିର୍ଭୀକ, ସେମିତି ରାଗୀ ଏବଂ କେତେକାଂଶରେ କଳହପ୍ରିୟ ମଧ୍ୟ । ଲୋକେ ତାଙ୍କୁ ବହୁତ ଖାତିର କରୁଥିଲେ । କାରଣ ସେ ସଚ୍ଚୋଟ ହେବା ସାଙ୍ଗେ ସାଙ୍ଗେ ଲୋକଙ୍କ ସାଙ୍ଗେ ଯେମିତି ମିଳାମିଶା କରୁଥିଲେ, ସେମାନଙ୍କ ଭଲମନ୍ଦ ବି ସେମିତି ବୁଝୁଥିଲେ ।

ଜ୍ୱାଲାପ୍ରସାଦ ବେଚୂ ମିସିରଙ୍କ ପ୍ରତି ଖୁବ୍ ଦୟାଳୁ ଥିଲେ; ତାଙ୍କୁ ଏକପ୍ରକାର ଖାତିର ବି କରୁଥିଲେ । ସରକାରୀ କାର୍ଯ୍ୟରେ ସେ ସଦାବେଳେ ବେଚୂଙ୍କ ସହିତ ପରାମର୍ଶ କରୁଥିଲେ । ବେଚୂଙ୍କର ମଧ୍ୟ ଜ୍ୱାଲାପ୍ରସାଦଙ୍କ ପ୍ରତି ଏକପ୍ରକାର ମମତା ଥିଲା; କାରଣ ଜ୍ୱାଲାପ୍ରସାଦଙ୍କ ଚରିତ୍ର ଓ ସଚ୍ଚୋଟପଣିଆ ଦେଖି ସେ ତାଙ୍କ ପ୍ରତି ଖୁବ୍ ଖୁସି ଥିଲେ ।

ମେକୁସିଂହ ଓ ବଶନ ଗୁରୁଙ୍କ ଭିତରେ ଯେଉଁ ଜିଦ ପଡ଼ିଥିଲା, ବେଚୂ ମିସିରଙ୍କ ପାଇଁ ତାହା ବହୁତ ମହତ୍ତ୍ୱପୂର୍ଣ୍ଣ ଥିଲା । କାରଣ ସ୍ୱାର କିଛିଦିନ ପୂର୍ବେ ବୀରଭଦ୍ର ସିଂହ ବେଚୂଙ୍କର ସାମାଜିକ ନେତୃତ୍ୱ ଓ ସମ୍ମାନ ବିଷୟ ନେଇ ତାଙ୍କୁ ଅପମାନିତ କରିଥିଲେ ।

ଏସବୁ କଥା ଶୁଣି ବେଚୂ ମିସିର ଉଠି ଠିଆହେଲେ ଓ ଲୁଗାପଟା ପିନ୍ଧି ଜ୍ୱାଲାପ୍ରସାଦଙ୍କ ଘରକୁ ବାହାରିଲେ । ବାଟରେ ଦାରୋଗା ସହାବୁଦ୍ଦୀନଙ୍କୁ ଦେଖି ବେଚୂ ହସି ହସି କହିଲେ, "କ'ଣ ଦାରୋଗା ସାହେବ ! ଆପଣ ଜାଣିଛନ୍ତି, ତହସିଲଦାରଙ୍କ କକାପୁଅ ଭାଇ ଏଠିକୁ ଆସିଛନ୍ତି । ସେ ଜଣେ ଜଣାଶୁଣା ପହିଲମାନ ।"

"ହଁ, ମିସିରଜୀ, ମୁଁ ତ ତାଙ୍କୁ ଦେଖିଛି । ଶୁଣିଛି, ବୃଦ୍ଧ ପହିଲ୍‌ମାନଙ୍କର ତାଙ୍କ ଉପରେ ଭାରି ରାଗ । ସେ ଦିନେ ତାଙ୍କ ଆଖଡ଼ାକୁ ବୋଧହୁଏ ଯିବେ । ଏହି ବୃଦ୍ଧ ସିଂହଙ୍କର ଭାରି

ଗଙ୍ଗ । ହଉ ଦେଖାଯାଉ, ଲଢ଼େଇ କରିବାକୁ କେହି ତ ଜଣେ ମିଳିଲେଣି !''

''ଆରେ ସେ କଥା କ'ଣ କହୁଛ ! ବୁଦ୍ଧ୍ ପର୍ବ୍ ଆଜି ତାଙ୍କ ଆଖଡ଼ାକୁ ଆସିଥିଲା । ଆସନ୍ତା ପନ୍ଦର ତାରିଖକୁ ତହସିଲଦାରଙ୍କ ଭାଇଙ୍କ ସଙ୍ଗରେ ବୁଦ୍ଧ୍ସିଂହର ଶିଷ୍ୟ ମେକୁସିଂହର ଲଢ଼େଇ ଠିକ୍ ହୋଇଛି । ତେବେ ଏହି ଲଢ଼େଇ ପାଇଁ ପୋଲିସଙ୍କ ତରଫରୁ ବନ୍ଦୋବସ୍ତ ହୋଇଯିବା ଉଚିତ ।''

''କ'ଣ କହୁଛନ୍ତି ନାଏବ ସାହେବ ? ଅନେକ ଦିନୁ କିଛି ନାହିଁ । ସବୁ ଶୂନଶାନ୍ ପଡ଼ିଛି ! ମୁଁ ଏବେ ଆଜିଠାରୁ ଯୋଗାଡ଼ କରି ଦେଉଛି । ବୀରଭାନୁ ସିଂହ ସାଙ୍ଗରେ କଥାବାର୍ତ୍ତା କରି ମୁଁ ଏବେ ଆଜିଠାରୁ ଡିଙ୍ଗୁରା ଦେଇଦେଉଛି । ହେଲେ ଏମାନେ ତ ପିଲାଗୁଡ଼ା, ବଡ଼ ଦୁଇଜଣ ଲଢ଼ିବାବାଲା କିଏ ହେଲେ ଠିକେଣା କରି ଦିଅନ୍ତେ ।''

ବେଚୂ ମିସିର ହସି ହସି କହିଲେ, ''ହଁ, ପୁଣି ବୁଦ୍ଧ୍ସିଂହ ସାଙ୍ଗରେ ଲଢ଼ିବାପାଇଁ ଗୋଟାଏ ଯୋଡ଼ ଖୋଜିବା ଦରକାର । ଆପଣ ଖୋଜନ୍ତୁ । ଆପଣଙ୍କ ସାଙ୍ଗରେ ତ କଥା ହୋଇଗଲା, ଚାଲନ୍ତୁ ଯିବା ତହସିଲଦାରଙ୍କ ସାଙ୍ଗେ ଟିକିଏ ପରାମର୍ଶ କରିବା ।''

## ଏଗାର

ଘୋଷିବଠାରେ ରାତି ନଅଟାବେଳେ ଘୋଡ଼ାଗାଡ଼ିରେ ବସିଥିବା ଦୁଇଜଣ ସବଳକାୟ ଅପରିଚିତ ଯୁବକଙ୍କୁ ଦେଖି ଥାନାବାବୁ ସହାବୁଦ୍ଦୀନ୍ ଘୋଡ଼ାଗାଡ଼ିକୁ ଅଟକାଇ ପଚାରିଲେ, ''ତୁମେ ସବୁ କିଏ ? ଆରେ ଘୋଡ଼ାଗାଡ଼ିବାଲା, ତୁ ଏମାନଙ୍କୁ କେଉଁଠାରୁ ଆଣିଛୁ ?''

ଗାଡ଼ିବାଲା କିଛି କହିବା ପୂର୍ବରୁ ସବାର ଦୁହିଙ୍କ ମଧ୍ୟରୁ ପ୍ରାୟ ପଚିଶବର୍ଷର ଯୁବକ ଜଣେ ଜବାବ୍ ଦେଲେ, ''ହଜୁର୍, ଆମେ ଦୁହେଁ ଏ ଗାଡ଼ିରେ ଆଲାହାବାଦରୁ ଆସିଛୁ । ଫତେପୁରରେ ଆମ ଘର । ଆମର ତହସିଲଦାରଙ୍କ ପାଖରେ କାମ ଅଛି ।''

''ହଁ, କାମରେ ତ ଆସିଥିବ ନିଶ୍ଚୟ, କିନ୍ତୁ ତମେ କିଏ କହୁନାହଁ କାହିଁକି ?''

ଘୋଡ଼ାଗାଡ଼ିରେ ବସିଥିବା ଅନ୍ୟ ଡେଙ୍ଗା ଲୋକ ଜଣକ କହିଲା, ''ହଜୁର୍, ଏହି ଯୁବକ ଫତେପୁରର ଜମିଦାର ରହମତ୍ ଖାଁ, ଯାହାଙ୍କ ବର୍ତ୍ତମାନ ତାଙ୍କର ଜମିଦାରୀ ନେଇ ମକଦ୍ଦମା ଲାଗିଛି । ମୁଁ ନିଜେ ଜଗୁ ପହିଲ୍ମାନ । ଏ ଯୁବକ ମୋ ଶଳାଙ୍କର ପୁଅ । ମୁଁ ସ୍ୱାଙ୍କର ସାଙ୍ଗରେ ଏମିତି ଚାଲି ଆସିଛି । ତହସିଲଦାରଙ୍କର ସାନଭାଇ ବଣିନଲାଲ୍ ମୋର

ଶିଷ୍ୟ । ଆପଣ ଦୟା କରି ମୋତେ ତହସିଲଦାରଙ୍କ ଘର ଟିକିଏ ଦେଖାଇ ଦିଅନ୍ତୁ ।''

ବେଚୁ ମିସିର ସହାବୁଦ୍ଦୀନଙ୍କୁ ଟିକିଏ କହୁଣି ମାରି ଦେଇ ଗାଡ଼ିବାଲାକୁ କହିଲେ, ''ଏଇ ଆଗରେ ଯେଉଁ କଇଁଆଗଛ ଦେଖାଯାଉଛି, ତାରି ପ୍ରାୟ ଶହେ କଦମ ଆଗକୁ ବାଆଁକୁ ଗୋଟାଏ ମୋଡ଼ ଅଛି । ସେଇଠି ଗାଡ଼ି ମୋଡ଼ିଦେଲେ ପ୍ରାୟ ଏକ ଫର୍ଲଙ୍ଗ ଦୂରରେ ତହସିଲ ଅଫିସ ଓ ସେହି ଅଫିସ ସାମନାରେ ତହସିଲଦାରଙ୍କ ଘର ।''

ଘୋଡ଼ାଗାଡ଼ି ଚାଲିଯିବା ପରେ ବେଚୁ ମିସିର କହିଲେ, ''କ'ଣ ମିଆଁ ସାହେବ ! ଦେଖିଲେଟି, ଲଢ଼ାଇ ତ ଯୋଗାଡ଼ ହୋଇଗଲା ।'' ଏତିକି କହି ସେମାନେ ଜୋରରେ ଆଗେଇଗଲେ ।

ଏମାନେ ଜ୍ୱାଲପ୍ରସାଦଙ୍କ ପାଖରେ ପହଞ୍ଚିଲା ବେଳକୁ ସେ ଜଗୁ ମିଆଁ ଓ ରହମତ୍ ଖାଁଙ୍କ ସହିତ କଥାବାର୍ତ୍ତା କରୁଥିଲେ ଓ ବିଶନଲାଲ ସେମାନଙ୍କ ରହିବାପାଇଁ ବାହାର ବଙ୍ଗଳାରେ ବ୍ୟବସ୍ଥା କରୁଥିଲେ । ସହାବୁଦ୍ଦୀନ ଓ ବେଚୁ ପହଞ୍ଚି ଯିବାପରେ ଜ୍ୱାଲପ୍ରସାଦ କଥା ବନ୍ଦ କରି ଦେଇ ଉଠି ଠିଆହେଲେ ଓ ସେମାନଙ୍କୁ ସ୍ୱାଗତ କରି କହିଲେ, ''ଆସନ୍ତୁ ମିସିରଜୀ, ଆସନ୍ତୁ ସାହାବୁଦ୍ଦୀନ ସାହେବ ! ଆଜି କେମିତି ବାଟ ଭୁଲି ଚାଲି ଆସିଲେ ? ସବୁ ଭଲ ତ ! କ'ଣ କିଛି କାମ ଅଛି ?''

ବେଚୁ ମିସିର ବସୁ ବସୁ କହିଲେ, ''ନାହିଁ ଆଜ୍ଞା, ସେମିତି କିଛି ନାହିଁ । ଘରେ ମନ ଲାଗିଲା ନାହିଁ । ଭାବିଲି ବହୁତ ଦିନୁ ସାହେବଙ୍କ ଘରଆଡ଼େ ଯାଇନାହିଁ, ଟିକିଏ ଯାଇ ବୁଲି ଆସିବା । ସେଇଥିପାଇଁ ବାହାରି ଆସିଲୁ । ଆସୁ ଆସୁ ବାଟରେ ମିଆଁ ସାହେବଙ୍କ ସଙ୍ଗେ ଦେଖା ହୋଇଗଲା । କହିଲି, ଆଜି ତହସିଲଦାର ସାହେବଙ୍କ ଘରେ ଗପ ହେବ; ସାଙ୍ଗ ହୋଇ ଚାଲି ଆସିଲୁ ।'' ତାପରେ ମିସିରଜୀ ଲଣ୍ଠନ ଆଲୁଅରେ ଜଗୁ ପହିଲମାନଙ୍କୁ ଟିକିଏ ନିରେଖି ଚାହିଁ କହିଲେ, ''ଆଜିକାଲି ତ ଯୋଗ୍ୱବରେ ଖୁବ୍ କୁସ୍ତି କସରତ୍ ଚାଲିଛି । ଠାକୁର ବୀରଭାନୁଙ୍କ ସାହାଯ୍ୟରେ ବୁଦ୍ଧୁ ସିଂହଙ୍କ ଆଖଡ଼ା ବି ଚାଲିଛି । ଶୁଣିଲି ହଜୁରଙ୍କ ଅନୁଗ୍ରହରେ ହନୁମାନଜୀଙ୍କ ମନ୍ଦିର ତୋଟାରେ ହଜୁରଙ୍କ ସାନଭାଇ ବିଶନଲାଲ, ଯାହାଙ୍କୁ ଲୋକେ ବିଶନ ଗୁରୁ ବୋଲି କହୁଛନ୍ତି, ଗୋଟାଏ କୁସ୍ତି ଆଖଡ଼ା ଖୋଲିଛନ୍ତି ।''

ଜ୍ୱାଲପ୍ରସାଦ ଟିକିଏ ସିଧା ହୋଇ ବସିପଡ଼ି କହିଲେ, ''ହଁ, ଉଡ଼ା ଖବର ତ ଶୁଣିଛି, କିନ୍ତୁ ବିଶେଷ ଧ୍ୟାନ ଦେଇନାହିଁ ।'' ତାପରେ ସେ ପାଟିକରି ଡାକିଲେ ''ବିଶନୁ, ଏଣେ ଆ ।''

ବିଶନୁ ଧାଇଁ ଆସି ପଚାରିଲା, ''ହଁ, କ'ଣ କହନ୍ତୁ ?''

"ନାଏବ ସାହେବ କହୁଛନ୍ତି, ତୁ କ'ଣ ସେ କଇଁଆ ପାଖ ମହାବୀରଙ୍କ ମନ୍ଦିର ତୋଟାରେ ଗୋଟାଏ ଆଖଡ଼ା ଖୋଲିଛୁ !"

ବିଶନଲାଲ ଏ କଥାର କୌଣସି ଜବାବ ନ ଦେଇ ଚୁପଚାପ୍ ତଳକୁ ମୁହଁ କରି ଛିଡ଼ା ହୋଇ ରହିଲା ।

ଏ କଥା ଶୁଣି ଜଗୁ ପହିଲ୍‌ମାନ ଖୁବ୍ ଜୋରରେ ହସି କହିଲା, "ଆରେ ବାଃ, ସୋରବକୁ ଆସିଲା ମାତ୍ରେ ଗୁରୁ ହୋଇଗଲା । ଜଗୁ ପହିଲ୍‌ମାନର ଶିଷ୍ୟ ନା ! ଆଚ୍ଛା, ବହୁତ ଜୋରଦାର ଓ ବହୁତ ସଚ୍ଚୋଟ ଲୋକ । ଟିକିଏ ଠିକ୍ ମୁତାବକ କାମ କରି ପାରିଲେ, ଏ ଅଞ୍ଚଳରେ ଯାଙ୍କ ସହିତ ଛିଡ଼ା ହେବା ପାଇଁ କେହି ପୁଅ ନାହିଁ ।"

ଟିକିଏ ସୁବିଧା ଜାଣି ବେଚୁ ମିସିର କହିଲେ, "ଆଜ୍ଞା, ମିଆଁ ସାହେବ କହୁଛନ୍ତି ଅନେକ ଦିନୁ ସୋରବରେ କିଛି ଗହଳ ଚହଳ ନାହିଁ । ପୁଲିସଙ୍କ ତରଫରୁ କିଛି ଗୋଟାଏ ଯୋଗାଡ଼ ହେଲେ କେମିତି ହୁଅନ୍ତା ? ଯୋଗକୁ ଜଗୁ ପହିଲ୍‌ମାନ ବି ଆସିଛନ୍ତି । ଜଗୁ ଓ ବୁଦ୍ଧୁ ସିଂହଙ୍କ ଭିତରେ ଲଢ଼େଇ ହେଲେ ବହୁତ ଲୋକ ହୁଅନ୍ତେ । ମେଘୁସିଂହ ଓ ବିଶନ ଗୋଟାଏ ଯୋଡ଼ି ହୁଅନ୍ତେ । ଆଉ ପୁଲିସଙ୍କ ଭିତରୁ ଦୁଇଚାରି ଯୋଡ଼ି ବାହାର କରିଦିଅନ୍ତେ ।"

ଜ୍ୱାଲାପ୍ରସାଦ କିଛି ଚିନ୍ତା କଲା ପରି କହିଲେ, "ହଁ, ଆପଣଙ୍କ ବିଚାର ତ କିଛି ମନ୍ଦ ନୁହେଁ ।"

ବେଚୁ ମିସିର ଓ ସାହାବୁଦ୍ଦୀନ ଚାଲିଗଲା ପରେ ଜଗୁ ପହିଲମାନ ଓ ରହମତ୍ ଖାଁଙ୍କ ଖିଆପିଆ ବୁଝିବା ପାଇଁ ଜ୍ୱାଲାପ୍ରସାଦ ବିଶନଲାଲକୁ କହିଲେ । ବିଶନଲାଲକୁ ପଠାଇ ଦେଇ ଜ୍ୱାଲାପ୍ରସାଦ ପୂର୍ବ କଥାର ଖିଅ ଧରି କହିଲେ, "ବୁଝିଲ ରହମତ୍ ଖାଁ ! ମୁଁ ତ ଶାମୁ ସଙ୍ଗେ କଥାବାର୍ତ୍ତା କରି ସତ ମିଛ ସବୁ ଜାଣିପାରିବି; କିନ୍ତୁ ମୁଁ ତମକୁ ଏତିକି କହିଦେବାକୁ ଚାହେଁ ଯେ ଏସବୁ କଥାରେ ମୋର କୌଣସି ହାତ ନାହିଁ କିମ୍ବା ଏ ବିଷୟରେ ମୋତେ କିଛି ଜଣାନାହିଁ । ସଲିମାଙ୍କ ସମ୍ପତ୍ତି ମୁଁ ଆଦୌ ଚାହେଁ ନାହିଁ ।"

ରହମତ୍ ଖାଁ କିଛି କହିବା ପୂର୍ବରୁ ଜଗୁ ପହିଲ୍‌ମାନ କହିଲା, "ହଜୁରଙ୍କ କୀର୍ତ୍ତି ତ ଚାରିଆଡ଼େ ଜଳୁଛି । ହଜୁରଙ୍କ ଦୟା, ନ୍ୟାୟ ଓ ସାଧୁତା ବିଷୟରେ ଦୁନିଆରେ ଡଙ୍କା ବାଜୁଛି । ତେଣୁ ଶାମଲାଲ ଯେତେବେଳେ କହିଲେ ଯେ ସଲିମା ଭିଟାଜମି ସେ ଆପଣଙ୍କ ନାମରେ କରାଇ ନେଇଛନ୍ତି, ମୋର ଆଦୌ ବିଶ୍ୱାସ ହେଲା ନାହିଁ । ହଜୁର, ଏ ରହମତ୍ ଖାଁ ବିଚାରା ବଡ଼ ଗରିବ । ମାଲିମକଦ୍ଦମାକୁ ତାର ବଳ କାହିଁ ? ବିଚାରା ଚୁଡ଼ି ଦୋକାନ କରି ପେଟ ପୋଷେ । ସ୍ୱାମୀ ସ୍ତ୍ରୀ ଦୁଇଜଣ ଦିନରାତି ଖଟିଲେ, ବଡ଼ କଷ୍ଟରେ

ଦୁଇଓଳି ମୁଠାଏ ଖାଇବାକୁ ପା’ନ୍ତି । କାମ ଛାଡ଼ି ମାଲିମକଦ୍ଦମାରେ ପଶିବା ମାନେ ଶୋକରେ ମରିବା କଥା ।’’

ଜ୍ୱାଲାପ୍ରସାଦ ଏ କଥାରେ ବ୍ୟସ୍ତ ହୋଇ କହିଲେ, ‘‘ଦେଖ ଜଗୁ ପହିଲମାନ ! ମକଦ୍ଦମା ଯେତେବେଳେ ଦାଏର ହୋଇଗଲଣି, ସେତେବେଳେ ତାକୁ ନିଶ୍ଚୟ ଚଳାଇବାକୁ ହେବ ଓ ମକଦ୍ଦମା ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । କିନ୍ତୁ ମୁଁ ପ୍ରତିଜ୍ଞା କରି କହୁଛି ଯେ ଏ ବିଷୟରେ ମୁଁ କୌଣସି ଅଫିସରଙ୍କ ଉପରେ ଅଯଥା ପ୍ରଭାବ ପକାଇବାପାଇଁ ଚେଷ୍ଟା କରିବି ନାହିଁ କିମ୍ବା ଏ ବିଷୟରେ କୌଣସି ପ୍ରକାର ଆଗ୍ରହ ଦେଖାଇବି ନାହିଁ । ପଣ୍ଡିତ ଗିରିଜାଶଙ୍କର ଜଣେ ବଡ଼ ନ୍ୟାୟୀ ଲୋକ । ତାଙ୍କ ଉପରେ ବିଶ୍ୱାସ ରଖି ତମେ ମକଦ୍ଦମାକୁ ଠିକ୍ ଭାବରେ ଚଳାଅ ।’’

ଜଗୁ ପହିଲ୍‌ମାନ ଓ ରହମତ୍ ଖାଁ ଯେଉଁ ଉଦ୍ଦେଶ୍ୟରେ ଆସିଥିଲେ ସେ ଉଦ୍ଦେଶ୍ୟ ତାଙ୍କର ପୂରଣ ହୋଇଗଲା । ଜ୍ୱାଲାପ୍ରସାଦଙ୍କ ବିଷୟରେ ସେ ଯାହା ଶୁଣିଥିଲେ ତାହା ଖୋଲଅଣା ଠିକ୍ ବୋଲି ଦେଖିଲେ । ତହିଁଆରଦିନ ସକାଳେ ରହମତ୍ ଖାଁ ତ ଚାଲିଗଲା; କିନ୍ତୁ ବିଶନଲାଲ, ବେଚୂ ମିସିର ଓ ସାହାବୁଦ୍ଦୀନ ଖାଁ ମିଶି ଜଗୁ ପହିଲମାନଙ୍କୁ ରଖିନେଲେ । ସେହି ଦିନ ସଂଧ୍ୟାବେଳେ ଦାରୋଗା ସାହାବୁଦ୍ଦୀନ ଖାଁ ଓ ପଣ୍ଡିତ ବେଚୂ ମିସିର ଲଢ଼ାଇ ପ୍ରସ୍ତାବ ନେଇ ବୀରଭାନୁ ସିଂହଙ୍କ ପାଖରେ ପହଞ୍ଚିଲେ । ଲଢ଼େଇର ପ୍ରସ୍ତାବ ଥାନା ପକ୍ଷରୁ ଦିଆଯାଇଥିଲା । ଫତେପୁରର ଜଗୁ ପହିଲମାନ ଓ ସୋରାଂବର ବୁଦ୍ଧୂ ପହିଲ୍‌ମାନ ଥିଲେ ପ୍ରଧାନ ଯୋଡ଼ି ଓ ଦ୍ୱିତୀୟ ଯୋଡ଼ି ଥିଲେ ମେହେରୁସିଂହ ପହିଲ୍‌ମାନ ଓ ବିଶନ ପହିଲମାନ । ଏମାନଙ୍କ ଛଡ଼ା ପୋଲିସ୍ ଯୁବକମାନଙ୍କ ମଧ୍ୟରୁ ପାଞ୍ଚ ଯୋଡ଼ି ବି ଥିଲେ । ଠାକୁର ବୀରଭାନୁ ସିଂହ ବୁଦ୍ଧୂ ସିଂହଙ୍କୁ ଡକାଇ ଏହି ପ୍ରସ୍ତାବ ଶୁଣାଇଦେଲେ । ବୁଦ୍ଧୂ ସିଂହ ପ୍ରଥମେ ରାଜି ହେଉ ନ ଥିଲେ; କିନ୍ତୁ ପରେ ରାଜି ହେବାକୁ ବାଧ୍ୟ ହେଲେ ।

ବଡ଼ ଧୂମଧାମ୍‌ରେ ଲଢ଼େଇ ପାଇଁ ଯୋଗାଡ଼ ଚାଲିଲା । ଆହ୍ଲାବାଦ ସହରରେ ତଥା ଗାଁଗହଳରେ ପ୍ରଚାରପତ୍ର ବଣ୍ଟା ହୋଇଗଲା । ଦୁଇ ଆଖଡ଼ାରେ ବଡ଼ ଜୋର-ସୋର କାମ ଚାଲିଲା ।

ଲଢ଼େଇର ଦୁଇଦିନ ପୂର୍ବରୁ ବୁଦ୍ଧୂ ସିଂହ ଆସି ବିଶନ ଗୁରୁଙ୍କ ଆଖଡ଼ାରେ ପହଞ୍ଚିଲେ । ସେତେବେଳକୁ ଜଗୁ ଓସ୍ତାଦ୍ ବିଶନ ଗୁରୁଙ୍କୁ କସରତ୍ ଶିଖାଉଥିଲେ । କୁସ୍ତି ସରିଲା ପରେ ବୁଦ୍ଧୂ ପହିଲ୍‌ମାନ ଜଗୁ ପହିଲ୍‌ମାନଙ୍କୁ ଆଡ଼ୁଆଳକୁ ଡାକିନେଇ କହିଲେ, ‘‘ଜଗୁ ଓସ୍ତାଦ୍, ମୋର ଇଜ୍ଜତ୍ ଆପଣଙ୍କ ହାତରେ । ମୁଁ ବର୍ତ୍ତମାନ ଆପଣଙ୍କର ଶରଣ ମାଗୁଛି ।’’

ବୃଦ୍ଧ ପହିଲ୍‌ମାନଙ୍କର ଦୟନୀୟ ଅବସ୍ଥା ଦେଖି ଜଗୁ ପହିଲ୍‌ମାନଙ୍କୁ ଦୟା ମାଡ଼ିଲା । ସେ ପଚାରିଲେ, "କ'ଣ ଭାବୁଛନ୍ତି ?"

"କ'ଣ କହିବି, ଆପଣ ତ ଜାଣନ୍ତି ମୁଁ ବୀରଭାନୁ ସିଂହଙ୍କର ଆଶ୍ରୟରେ ଚଳୁଛି । ଯଦି ଏ ଲଢ଼େଇରେ ମୁଁ ହାରିଯାଏ, ତେବେ ମୋର ଆଶ୍ରୟ ନଷ୍ଟ ହୋଇଯିବ ।"

ଜଗୁସିଂହଙ୍କର ବି ନିଜ ଉପରୁ ବିଶ୍ୱାସ ଅନେକ ତୁଟିଯାଇଥିଲା; କିନ୍ତୁ ବୃଦ୍ଧ ସିଂହଙ୍କର କଥା ଶୁଣି ତାଙ୍କ ମନରେ ଅନେକ ସାହସ ହୋଇଗଲା । ସେ କହିଲେ, "ହଁ, ବହୁତ ଅସୁବିଧା ହେବ, ହେଲେ କଣ କରିବା ?"

ବୃଦ୍ଧ ସିଂହ ଟିକିଏ ଚିନ୍ତା କରି କହିଲେ, " ଏ କୁସ୍ତିରେ ତମେ ହାରିଯାଅ—ଏ କଥା ତ କହିହେବ ନାହିଁ; ହେଲେ ମୋର ଯୋଡ଼ି ମୋଠୁ ଟିକିଏ କମ୍ ହେଲେ କେମିତି ହୁଅନ୍ତା ? ଏଥିରେ ଆମ ଦୁହିଙ୍କର ମାନ ମହତ ରହିଯାନ୍ତା ।"

ଜଗୁ ବର୍ତ୍ତମାନ ନିଜ ଉଦ୍ଦେଶ୍ୟକୁ ମନରେ ରଖି କହିଲେ, "ଗୋଟିଏ ସର୍ତ୍ତରେ ତମ କଥା ରକ୍ଷା କରାଯାଇପାରେ । ମେକୁକୁ ବିଶନ ନିକଟରେ ହାର ମାନିବାକୁ ପଡ଼ିବ ।"

ଏ କଥା ଶୁଣି ବୃଦ୍ଧ ପହିଲ୍‌ମାନ ବଡ଼ ଅନଲରେ ପଡ଼ିଗଲେ । ମେକୁସିଂହ ଜଣେ ଉଦୀୟମାନ ଯୁବକ । ବିଶନଲାଲ୍ ନିକଟରେ ହାରିଯିବାପାଇଁ ତାକୁ ମନାଇବା କେବଳ କଠିନ ନୁହେଁ, ଏକପ୍ରକାର ଅସମ୍ଭବ ।"

ବୃଦ୍ଧ ସିଂହ କରୁଣ କଣ୍ଠରେ କହିଲେ, "ଦେଖନ୍ତୁ ଓସ୍ତାଦ୍‌ଜୀ, ମେକୁସିଂହ ମୋ ହାତର କଥା ନୁହେଁ । ଆପଣ ଅନ୍ୟ କୌଣସି ରାସ୍ତା ବାହାର କରନ୍ତୁ ।"

ଜଗୁ ଓସ୍ତାଦ୍ ଉତ୍ତର ଦେଲେ, "କଥା ହେଉଛି ଠାକୁର ବୀରଭାନୁ ସିଂହ ସିନା ତମର ଆଶ୍ରୟ; କିନ୍ତୁ ବିଶନଲାଲ୍ ଯେ ତହସିଲଦାରଙ୍କ ସାନଭାଇ । ତାଙ୍କ ଭାଇ ଯଦି ହାରିଯାନ୍ତି ତେବେ ତହସିଲଦାରଙ୍କୁ ଅପମାନ ହେବ ।"

ବୃଦ୍ଧ ସିଂହ ଟିକିଏ ଚିନ୍ତା କରି କହିଲେ,"ଆପଣ ତ ଠିକ୍ କହୁଛନ୍ତି । କାହିଁକି କେଜାଣି ତହସିଲଦାରଙ୍କ ଭାଇ ସାଙ୍ଗେ ଲଢ଼ିବାକୁ ମୁଁ ଏମିତି ଉଚ୍ଛୁକ ପଡ଼ିଲି । ମେକୁ ସିଖାଣରେ ପଡ଼ି ମୁଁ ଏସବୁ କରି ପକାଇଲି । ଆଚ୍ଛା, ମେକୁ ଯଦି ବିଶନଲାଲ୍ ପାଖରେ ହାରିବାକୁ ନାରାଜ, ତେବେ ପଅରଦିନ ସେ ଅନୁପସ୍ଥିତ ହେଲେ ଚଳିବ ତ ? ଏଥିରେ ଆପଣ ରାଜି ତ ?"

"ହଁ, ଏଥିରେ ରାଜି ।"

"ଲଢ଼େଇ ଦିନ ଟିକେଟ ଧରି ଲୋକେ ବହୁ ଦୂରଦୂରାନ୍ତରୁ ଆସି ପହଞ୍ଚିଥିଲେ । ସୋରିବରେ ଏକପ୍ରକାର ଯାତ୍ରା ହୋଇଗଲା । ଛୋଟ ଛୋଟ ଯୋଡ଼ି ଲଢ଼ି ସାରିଲା ପରେ ବିଶନଲାଲ୍ ଓ ମେକୁ ପହିଲମାନଙ୍କର ନାମ ଡକାହେଲା । ବିଶନଲାଲ୍ ଆଗରୁ ଲେଙ୍ଗୁଟି

ପିନ୍ଧି ପ୍ରସ୍ତୁତ ଥିଲା; ନାଁ ଡକାହେଲା ମାତ୍ରେ ଫୁଲୁକା ଉପରକୁ ଡେଇଁ ଆସିଲା । କିନ୍ତୁ ମେକୁସିଂହର କୌଣସି ପତ୍ତା ନଥିଲା । ମେକୁପାଇଁ କିଛି ସମୟ ଅପେକ୍ଷା କଲାପରେ ସେ ଆଖଡ଼ା ଛାଡ଼ି ଚାଲିଯାଇଛି ବୋଲି ଘୋଷଣା କରାଗଲା । ଲୋକଙ୍କ ଭିତରେ ଫୁସ୍ ଫାସ ଚାଲିଲା । ପାଟିତୁଣ୍ଡ ବି ହେଲା । ସ୍ୱା ଭିତରେ ବୃନ୍ଦୁସିଂହ ଓ ଜଗୁ ପହିଲମାନଙ୍କ ନାମ ଡକାଗଲା ।

ବୃନ୍ଦୁସିଂହ ଓ ଜଗୁ ପହିଲମାନ ଲଢ଼େଇ ପାଇଁ ବାହାରି ଆସୁଛନ୍ତି, ଠିକ୍ ଏହି ସମୟରେ ମେକୁସିଂହ ଧାଇଁ ଧାଇଁ ଆସି ପେଣ୍ଡାଲ ପାଖରେ ପହଞ୍ଚି ସିଧା ଜ୍ୱାଲାପ୍ରସାଦଙ୍କୁ କହିଲା, "ଆଜ୍ଞା, ମୁଁ ଏଠୁ ଆଖଡ଼ାରୁ ପଳାଇ ନଥିଲି । ମୋର ଗୁରୁ ବୃନ୍ଦୁସିଂହ ଜଗୁ ପହିଲମାନଙ୍କ ସଙ୍ଗେ କଥାବାର୍ତ୍ତା କରି ମୋତେ ଗୋଟିଏ ଘରେ ବାନ୍ଧି ରଖିଥିଲେ ।" ମେକୁସିଂହ ଏତେ ଜୋରରେ କହୁଥିଲା ଯେ ଉପସ୍ଥିତ ସବୁଲୋକ ତାହା ଶୁଣିପାରୁଥିଲେ ।

ମେକୁସିଂହର ଅଭିଯୋଗ ଶୁଣି ଲୋକମାନଙ୍କ ଭିତରେ ଖୁବ୍ ଚହଲ ପଡ଼ିଗଲା । କେତେକ ଲୋକ ପାଟିକରି କହିଲେ, "ଟିକେଟ୍ ଫେରାଇ ଦିଅ ।"

ଏହି ଗଣ୍ଡଗୋଳ ଦେଖି ଜଗୁ ପହିଲ୍ମାନ ଓ ବୃନ୍ଦୁସିଂହ ଦୁହେଁ ଆଶ୍ଚର୍ଯ୍ୟ ହୋଇଗଲେ । ଜଗୁ ବୃନ୍ଦୁସିଂହକୁ ପ୍ରଶ୍ନସୂଚକ ଦୃଷ୍ଟିରେ ଚାହିଁ ରହିଲା ଓ ବୃନ୍ଦୁସିଂହ ଜଗୁସିଂହ କାନରେ କହିଲା, "ସ୍ୱେ ବଦମାସ୍ ମେକୁଟା କେମିତି ବାହାରି ଆସିଲା ? ମୁଁ ତ ତାକୁ ବାନ୍ଧି ଦେଇଥିଲି, ଭଗବାନ ଜାଣନ୍ତି କେମିତି ସେ କବାଟ ଖୋଲିଲା । ଏଠି ଏତେ ଲୋକ ଅଛନ୍ତି, ନଚେତ୍ ତା' ମୁଣ୍ଡକୁ ମୋଡ଼ି ଥୋଇଦିଅନ୍ତି ।"

ଜଗୁ ଠିକ୍ ଜାଣିଲା ବୃନ୍ଦୁସିଂହ କଥାରେ କିଛି ମିଛ ନାହିଁ । ତାର ରୂପ ଦେଖି ଜଗୁ ମନରେ ଭାରି ଦୟା ଆସିଲା । ସେ ବୃନ୍ଦୁସିଂହ କାନରେ କହିଲା, "ଆଚ୍ଛା ପହିଲମାନ, କିଛି ଚିନ୍ତା କର ନାହିଁ । ତମେ ତ ମୋ କଥା ରଖିଛ, ଈଶ୍ୱର ନିଶ୍ଚୟ ତୁମର ମଙ୍ଗଳ କରିବେ ।" ତାପରେ ଦୁହେଁ କିଛି କାଳ ପରସ୍ପରକୁ ଅନାଇ ରହିଲେ ।

ବର୍ତ୍ତମାନ ଜଗୁ ଆଖଡ଼ା ଉପରକୁ ଆସି କର୍ମକର୍ତ୍ତାମାନଙ୍କୁ ଆହ୍ୱାନ କରି କହିଲା, "ଲୋକମାନେ କାହିଁକି ଏତେ ପାଟିତୁଣ୍ଡ କରୁଛନ୍ତି ? କୁସ୍ତି ଯଦି ନହୁଏ ତେବେ ଆମେ ଚାଲିଯିବୁ ।"

ଜଗୁ ପହିଲ୍ମାନଙ୍କ ପାଟିରେ ଲୋକେ ଡରିଗଲେ । ଗଣ୍ଡଗୋଳ ଅନେକ କମିଗଲା । ବେଚୁ ମିସିର ଉଠି କହିଲେ, "ବର୍ତ୍ତମାନ କୁସ୍ତି ଆରମ୍ଭ ହେଉ । ମେକୁସିଂହ କଥା ପରେ ବୁଝାଯିବ ।"

ଜଗୁ ପହିଲମାନ ଓ ବୃନ୍ଦୁସିଂହ ହାତ ମିଳାଇ କସରତ୍ ଆରମ୍ଭ କଲେ । ଜଣା-ପଡ଼ୁଥିଲା ଜଗୁସିଂହ ବୃନ୍ଦୁସିଂହଠାରୁ ଭଲ । ଦୁହିଙ୍କ ଭିତରେ ଓସ୍ତାଦୀ ଦାଉଁ ପେଁଚ

ଗ୍ଲଲ । ପାଞ୍ଚମିନଟ୍ ପର୍ଯ୍ୟନ୍ତ ସେମିତ ଗ୍ଲଲ । ଜଗୁସିଂହ ବୃନ୍ଦ୍ରସିଂହକୁ ଭୂମିରେ ଗଡ଼ାଇ ଦେଇ ରଗଡ଼ ନେଲ; କିନ୍ତୁ ବୃନ୍ଦ୍ରସିଂହକୁ ଚିତ୍ କରି ପାରିଲ ନାହିଁ ।"

ଲୋକଙ୍କୁ ଖୁବ ମଜା ଲଗୁଥିଲ । ବଡ଼ ଉତ୍ସାହରେ ସେମାନେ କୁସ୍ତି ଦେଖୁଥିଲେ । କିନ୍ତୁ କ୍ରମେ ଲୋକଙ୍କର ଧୈର୍ଯ୍ୟ ତୁଟିବାକୁ ଆରମ୍ଭ କଲ ଓ ସେମାନଙ୍କ ଭିତରେ ଫୁସ୍-ଫାସ୍ ଗ୍ଲଲ—ମେକୁସିଂହ କଥା ସତ ବୋଲି ମନେ ହେଉଛି । ଠିକ୍ ଏତିକିବେଳକୁ ବୃନ୍ଦ୍ରସିଂହକୁ ଜଗୁସିଂହ ଏପରି ଏକ ଦାଉଁ ମାରିଲ ଯେ ସେ ନିଜେ ଚିତ୍ ହୋଇ ପଡ଼ିଗଲ ଓ ବୃନ୍ଦ୍ରସିଂହ ତା' ଛାତି ଉପରେ ଯାଇଁ ବସିଗଲ । ବୃନ୍ଦ୍ରସିଂହ ଆଖଡ଼ା ଘରକୁ ଦୌଡ଼ିଯାଇ ଜ୍ୱାଲପ୍ରସାଦଙ୍କୁ ନମସ୍କାର କଲ ଓ ତା'ପରେ ବୀରଭାନୁ ସିଂହଙ୍କର ପାଦଛୁଇଁ ପ୍ରଣାମ କଲ । ବୃନ୍ଦ୍ରସିଂହ ଜଗୁସିଂହକୁ ହରାଇ ଦେଲ ବୋଲି ଲୋକଙ୍କ ଭିତରେ ହୁରି ପଡ଼ିଗଲ । ଜଗୁ ପହିଲମାନ ତଳକୁ ମୁହଁ ପୋତି ଆଖଡ଼ା ବାହାରକୁ ଗ୍ଲଲଗଲ ।

ବର୍ତ୍ତମାନ ମେକୁସିଂହକୁ ତା ନିଜକଥା କହିବାପାଇଁ କୁହାଗଲ । ବୃନ୍ଦ୍ରସିଂହ ଜଗୁ ସାଙ୍ଗରେ ହାତ ମିଳାଇବା କଥା ଭୁଲ ପ୍ରମାଣିତ ହୋଇଗଲ । ତେଣୁ ମେକୁସିଂହ ଏକ ପ୍ରକାର ଅସୁବିଧାରେ ପଡ଼ିଗଲ । ଜଗୁସିଂହ ଆଗକୁ ବଢ଼ିଯାଇ କହିଲ, "ସରକାର, ଏ ଟୋକା ମିଛ ଖବର କରୁଛି । ଯାହା ହେଲେ ବି ବଶନଲଲ ତ ଏଠି ଅଛି, ସେମାନେ ଏବେ କୁସ୍ତି ଲଢ଼ନ୍ତୁ ।"

ଲୋକେ ତାଳି ମାରିଲେ । କିନ୍ତୁ ମନେହେଲ ଯେମିତି ବଶନଲଲର ଚେତା ହଜିଗଲ । ଜଗୁ ବଶନଲଲକୁ ବିରକ୍ତ ହୋଇ ଚୁପ୍ କରି କହିଲ, "ଆରେ ଦେଖୁଛୁ କ'ଣ ? ଆଗକୁ ଯାଅ । ଭଗବାନ ଗ୍ହିଁଲେ ତୋର ନିଶ୍ଚୟ ବିଜୟ ହେବ ।" ତାପରେ ସେ ବୃନ୍ଦ୍ରସିଂହକୁ କହିଲ "ଓସ୍ତାଦ୍, ଏ ଦୁହେଁ ତ ଟୋକାଲୋକ, କିଛି ବୁଝନ୍ତି ନାହିଁ । ବାଗତମରେ ଯେମିତି ଭୁଲ ଦାଉଁପେଁଚ ନ ଲଗାନ୍ତି । ତେଣୁ ଏ କୁସ୍ତିକସରତ ଦେଖିବାର ଦାୟିତ୍ୱ ତୁମ ଉପରେ ।"

ଆଖଡ଼ାରେ ପହିଲମାନ ଯୋଡ଼ି ଠିଆହେଲେ । ବୃନ୍ଦ୍ରସିଂହ ସେମାନଙ୍କର ମଧ୍ୟସ୍ଥ ହେଲେ । ମେକୁସିଂହ ବଶନଲଲ ସଙ୍ଗରେ ହାତ ମିଳାଉ ମିଳାଉ ଯେଉଁ ଦାଉଁ ଲଗାଇଲ, ବଶନଲଲ ଦୁଇଫୁଟ ଉପରକୁ ଉଠି ଭୂମିରେ ଝସିପଡ଼ିଲ । କିନ୍ତୁ କେଜାଣି କେମିତି ବୃନ୍ଦ୍ରସିଂହ, ମେକୁସିଂହ ଓ ବଶନଲଲଙ୍କ ମଝିରେ ପଡ଼ିଗଲ । ବଶନ୍‌ଲଲ ମୁହଁମାଡ଼ି ପଡ଼ିଗଲ । କିନ୍ତୁ ବୃନ୍ଦ୍ରସିଂହ ମଝିରେ ପଡ଼ିଯିବାରୁ ମେକୁସିଂହ ବଶନଲଲ ଉପରେ ଚଢ଼ିବସି ପାରିଲ ନାହିଁ । ପଡ଼ିଯିବା ମାତ୍ରେ ବଶନଲଲ ପୁଣି ଉଠି ଛିଡ଼ା ହୋଇପଡ଼ିଲ । ସ୍ୱା ଭିତରେ ବୃନ୍ଦ୍ରସିଂହ ତାଙ୍କ ଦୁହିଙ୍କ ଭିତରୁ ବାହାରି ଆସି ଆଖଡ଼ା ଧାରରେ ଠିଆ ହୋଇପଡ଼ିଲ ।

ବର୍ତ୍ତମାନ ମେକୁ ଓ ବଶନଲାଲ ଭିତରେ ପ୍ରକୃତ କୁସ୍ତି ଲଢ଼େଇ ଅରମ୍ଭ ହୋଇଗଲା । ମେକୁ ଓ ବଶନଲାଲ ଆଖଡ଼ା ଗୃରପାଖେ ଧାଇଁଲେ । ଆଗରେ ବଶନଲାଲ, ପଛରେ ମେକୁସିଂହ; କନ୍ତୁ କେହ କାହାକୁ ଧର ପାରଲେ ନାହିଁ । ଲୋକେ ହସୁଥାନ୍ତ; ଖୁବ୍ ପାଟିତୁଣ୍ଡ କରୁଥାନ୍ତ । ପ୍ରାୟ ପାଞ୍ଚ ମିନଟ ପର୍ଯ୍ୟନ୍ତ ଏହପର ଗୃଲଲା । ଲୋକଙ୍କ ପାଟିତୁଣ୍ଡରେ ବଗିଡ଼ଯାଇ ମେକୁସିଂହ ବଶନଲାଲକୁ ଧରନେଲ । ଦୁହେଁ ପରସ୍ପରକୁ ଜାବୁଡ଼ ଧର ଆଖଡ଼ା ଭିତରେ ଚକର କାଟିବାକୁ ଲଗିଲେ । ବୁଦ୍ଧୁସିଂହ ମଧ୍ୟ ସେମାନଙ୍କର ଦାଉଁ ଦେଖି ସେମାନଙ୍କ ସଙ୍ଗେ ଦୌଡ଼ଲେ ।

ମେକୁସିଂହକୁ ହଠାତ୍ ଜଣାପଡ଼ଲା ସେ ଯେମିତ କେଉଁଠି ପିଟି ହୋଇଗଲା । ସଙ୍ଗେ ସଙ୍ଗେ ସେ ଗଡ଼ାପଡ଼ଲ ଓ ପଡ଼ଗଲାବେଳେ କୌଣସିମତେ ପେଟମାଡ଼ ପଡ଼ଯିବା ପାଇଁ ଚେଷ୍ଟାକଲ । କନ୍ତୁ ସେ ଦକ୍ଷିଣପଟ ମାଡ଼ ପଡ଼ଗଲ । ହଠାତ ବୁଦ୍ଧୁସିଂହର ପାଟି ଶୁଭିଲ "ସାବାସ୍ ବେଟା, ବଶନଲାଲ କୁସ୍ତିରେ ଜିତଲା ।" ଏତକ କହ ସେ ବଶନଲାଲକୁ ମେକୁସିଂହ ହାତରୁ ଛଡ଼ାଇ ନେଲା । ବଶନଲାଲ ଦଉଡ଼ ଦଉଡ଼ ସିଧା ଜଗୁ ପହ୍ଲବାନ ପାଖକୁ ଆସି ତାକୁ ପ୍ରଣାମ କଲା ଓ ପରେ ପରେ ତହସିଲଦାର ସାହେବଙ୍କୁ ନମସ୍କାର କଲା ।

ଦେଖଣାହାରୀ ଲୋକମାନଙ୍କର ମନେହେଲା ଯେମିତ ଏ କୁସ୍ତି କାମରତ୍ ଭିତରେ କିଛି ଗୋଟାଏ ଭିତର ଗଣ୍ଡଗୋଳ ରହଯାଇଛି । କନ୍ତୁ କେମିତ କେଉଁଠି ଗଣ୍ଡଗୋଳ ଥିଲା କେହ ଧର ପାରୁନଥିଲେ । ମେକୁସିଂହ ନିଜେ ବି କିଛି ବୁଝିପାରୁ ନ ଥିଲା । ନିଜ ଆଖିଦେଖା ଘଟଣାକୁ ସେ ବା ଅବଶ୍ୱାସ କରନ୍ତା କେମିତ ?

କୁସ୍ତି ଲଢ଼େଇ ପରଦନ ବୁଦ୍ଧୁସିଂହ ଜଗୁ ପହ୍ଲବାନଙ୍କ ସହତ ଦେଖା କରବାକୁ ଗଲା । ପୂର୍ବଦନ ଲଢ଼େଇର ପଚ୍ଚଶ ଟଙ୍କା ପୁରସ୍କାର ତା'ହାତରେ ଥିଲା । ସେହ ଟଙ୍କାକୁ ଜଗୁ ପହ୍ଲବାନ ହାତରେ ଥୋଇଦେଇ ସେ କହଲା, "ନଅନ୍ତୁ ଓସ୍ତାଦ୍, ଏ ଟଙ୍କା ଆପଣଙ୍କର । ଆପଣ ଯେଉଁଭଳି ଭାବରେ ମୋର ଇଜ୍ଜତ୍ ରକ୍ଷା କରଛନ୍ତ—ସେଥିପାଇଁ ମୁଁ ଆପଣଙ୍କ ନିକଟରେ ବଶେଷ କୃତଜ୍ଞ । ସେ ବଦମାସ ମେକୁଟାକୁ ମୁଁ ଆଜିଠାରୁ ମୋ ଆଖଡ଼ାରୁ ବାହାର କର ଦେଉଛି ।"

ଜଗୁ ପହ୍ଲବାନ ପଚ୍ଚଶ ଟଙ୍କାକୁ ଅଣ୍ଟାରେ ରଖୁ ରଖୁ ବଶନଲାଲକୁ ଦେଖି କହଲା, "ଦେଖ୍ ବାବା, ବୁଦ୍ଧୁସିଂହ ପହ୍ଲବାନଙ୍କଠାରୁ ଡେଉଁରଆ ବନ୍ଧାଇନେ । ଗୁରୁ ହେବାପାଇଁ ତୋତେ ଆହୁର ଅନେକ ଦନ ଲାଗିବ । ବୁଦ୍ଧୁସିଂହ ପ୍ରକୃତରେ ତୋର ଇଜ୍ଜତ ରଖିଛନ୍ତ ।"

ସେହଦନ ଦୁଇପ୍ରହରେ ଜଗୁପହ୍ଲବାନ ଫତେପୁର ଗୃଲଗଲା ।

ସେଦିନ କୁସ୍ତି ଲଢ଼େଇରେ ଯାହା ସବୁ ହେଲା, ବେଚୁ ମିସିରଙ୍କୁ ତାହା ଭଲ ଲାଗିଲା ନାହିଁ । ତହସିଲଦାରଙ୍କ ଭାଇ ବଂଶୀଲାଲ ମେକୁସିଂହକୁ ହରାଇ ଦେଇ ବୃନ୍ଦ ସିଂହଙ୍କର ଶିଷ୍ୟ ହୋଇଯିବା ଫଳରେ ଉଭୟଙ୍କର ଖ୍ୟାତି ବଢ଼ିଗଲା; ଅଥଚ ତାଙ୍କ ନିଜ ଭାଇ ଘୁମରୁ ହନୁମାନଜୀ ମନ୍ଦିରର କେବଳ ପୂଜାରୀ ହୋଇ ରହିଗଲା ।

ଆଜି ଏକ ଘଟଣା ଘଟିଲା, ଯାହା ବେଚୁଙ୍କୁ ବେଶୀ ଖରାପ ଲାଗିଲା । ଯେଉଁ ଆମ୍ବ ବଗିଚାରେ ହନୁମାନଜୀଙ୍କର ମନ୍ଦିର ଓ ଆଖଡ଼ା ଥିଲା ତାହା ବୀରଭାନୁସିଂହଙ୍କର ଜମିଦାରୀ ଭିତରେ । ବୀରଭାନୁସିଂହ ସେହି ଟୋଟାକୁ ବଂଶୀଲାଲଙ୍କ ନାମରେ ପୁରସ୍କାର ସ୍ୱରୂପ ପଟ୍ଟା କରିଦେଲେ । ତେଣୁ ସେହି ଆମ୍ବଟୋଟା ସାଙ୍ଗରେ ଗୋଟିଏ ପକା କୂଅ ଓ ହନୁମାନଜୀ ମନ୍ଦିର ବଂଶୀଲାଲର ନିଜ ସମ୍ପତ୍ତି ହୋଇଗଲା । ବର୍ତ୍ତମାନ ହନୁମାନଜୀ ମନ୍ଦିର ବିଷୟରେ ଘୁମରୁ ଆଜି ବଂଶୀଲାଲର ଭାଗୀଦାର ନ ହୋଇ ବରଂ ତାହାର କୃପାପାତ୍ର ହୋଇ ରହିଗଲା ।

ବର୍ତ୍ତମାନ ଖରା ଖୁବ୍ ବଢ଼ିଯାଇଥିଲା । ଜ୍ୱାଳାପ୍ରସାଦଙ୍କ ଘରର ବାତାବରଣ ଏବେ ଖୁବ୍ ଶାନ୍ତ ଥିଲା । ଅଦାଲତ କଚେରୀ ମାସେ ଛୁଟି ହୋଇଯାଉଥିଲା; ତେଣୁ ଜଜ୍ ଗିରିଜାଶଙ୍କର ଗ୍ରୀଷ୍ମ ଛୁଟିପାଇଁ ନିଜ ଘର ସୋହାବକୁ ଚାଲି ଆସିଥିଲେ ।

ପଣ୍ଡିତ ଗିରିଜାଶଙ୍କର ଓ ବେଚୁ ମିସିର ଏକା ବଂଶର ଲୋକ । ସେମାନଙ୍କ ଘର ଖୁବ୍ ପାଖ ଲଗାଲଗି । ପଚାଶବର୍ଷ ପୂର୍ବେ ତାଙ୍କ ବଡ଼ବଡ଼ିଆଙ୍କ ଭିତରେ ଗଣ୍ଡଗୋଳ ହୋଇ ସେମାନେ ଭିନ୍ନ ହୋଇଯାଇଥିଲେ । ସେଇଦିନୁ ଏ ଦୁଇ ପରିବାର ଭିତରେ ବରାବର ଶତ୍ରୁତା ରହି ଆସିଥିଲା । କିନ୍ତୁ ଇଂରେଜୀ ଅମଳରେ ଯେତେବେଳେ ଗିରିଜାଶଙ୍କର ଓ ବେଚୁ ଉଭୟଙ୍କୁ ସରକାରୀ ଚାକିରୀ ମିଳିଗଲା, ସେତେବେଳେ ସେମାନଙ୍କ ମଧ୍ୟରେ ଆଉ ଶତ୍ରୁତା ରହିଲା ନାହିଁ । ବେଚୁ ମିସିର ଗିରିଜାଶଙ୍କରଙ୍କୁ ନିଜ ଭାଇପରି ଖାତିର କରି ତାଙ୍କର ସ୍ନେହର ପାତ୍ର ହୋଇପଡ଼ିଥିଲେ । ବେଚୁ ମିସିରଙ୍କ ଜରିଆରେ ଗିରିଜାଶଙ୍କରଙ୍କ ସହିତ ଜ୍ୱାଳାପ୍ରସାଦଙ୍କର ଯେଉଁ ପରିଚୟ ଆରମ୍ଭ ହୋଇଥିଲା, କାଳକ୍ରମେ ତାହା ଖୁବ୍ ଘନିଷ୍ଠ ହୋଇ ଉଠିଥିଲା ।

ଗିରିଜାଶଙ୍କରଙ୍କ ଆସିବା ଖବର ପାଇବାର ଦୁଇଦିନ ପରେ ମୁନ୍‌ସି ଶିବଲାଲ ଯାଇଁ ବେଚୁ ମିସିରଙ୍କ ପାଖରେ ପହଞ୍ଚିଲେ ।

ମୁନ୍‌ସି ଶିବଲାଲଙ୍କୁ ଦେଖି ସବୁ ଲୋକ ଠିଆ ହୋଇଗଲେ ଓ ତାଙ୍କୁ ଗିରିଜାଶଙ୍କରଙ୍କ ନିକଟରେ ବସାଇ ଦେଇ ବେଚୁ ମିସିର କହିଲେ, "ମୁନ୍‌ସି ସାହେବ ! ଗରମ ଏବେ ବହୁତ ବଢ଼ିଗଲାଣି । ଗରମ ପବନ ବି ଖୁବ୍ ବହୁତ ବହିଲାଣି । ଆମ୍ବପଣାରେ ଭାଙ୍ଗ ତିଆରି ହେଉଛି । ପିଇଦିଅନ୍ତୁ, ବେଶ୍ ଥଣ୍ଡା ଲାଗିବ ।"

ମୁନ୍‌ସି ଶିବଲାଲ କହିଲେ, "ମୋତେ କ୍ଷମା କରିବେ ଆଜ୍ଞା, ମୋର ତ ପାଖେ ପାଖେ ଗୋଟାଏ ଜିନିଷ ରହିଛି ।"

ଗିରିଜାଶଙ୍କର ଟିକିଏ ହସିଦେଇ କହିଲେ, "ପାଟିର ସ୍ୱାଦ ବଦଳାଇବା ପାଇଁ ଅନ୍ୟ ଜିନିଷ ବି ଦରକାର ।"

"ଦେଖନ୍ତୁ ସାହେବ, ପାଟିର ସ୍ୱାଦ ବଦଳାଇବା ବୟସ ଗଲାଣି । ଏବେ ତ ମରଣକୁ ଚାହିଁ ବସିଛି; କେତେବେଳେ ସେ ଆସିବ । ଆପଣ ତ ବିଶ୍ୱାସ କରିବେ ନାହିଁ, ଯେତେବେଳେ ସିନା ଘଡ଼ା ଉଠିଯାଉଥିଲା; ଏବେ ତ ଅଧପାଏ ଚଳିବା କଷ୍ଟ । ଏବେ ଆଉ ମଦ ନାହିଁ, ଖାଲି ତାଡ଼ି ।"

ଭାଙ୍ଗ ତିଆରି ହୋଇ ଆସିଲା । ମୁନ୍‌ସି ଶିବଲାଲ ଲୋକଙ୍କ କଥା ଭାଙ୍ଗି ନ ପାରି କପେ ହେବ ଆମ୍ବପଣା ପିଇଦେଲେ ।

ଭାଙ୍ଗପିଆ ପରେ ବେଚୁଙ୍କର ବନ୍ଧୁବାନ୍ଧବ ସବୁ ଚାଲିଗଲେ । ସେମାନେ ଚାଲିଯିବା ପରେ ବେଚୁ ମିସିର ପଚାରିଲେ, "କହନ୍ତୁ ମୁନ୍‌ସିଜୀ, ଆପଣଙ୍କ ଦେହପା ସବୁ ଠିକ୍ ଅଛି ତ ! କିମିତି ଆପଣ ଇଆଡ଼େ ଗଡ଼ିପଡ଼ିଲେ ?"

ମୁନ୍‌ସି ଶିବଲାଲ ଉତ୍ତର ଦେଲେ, "ସବୁ ଈଶ୍ୱରଙ୍କ ଇଚ୍ଛା । ଶୁଣିଲି ଜଜ୍‌ସାହେବ ଆସିଛନ୍ତି, ଭାବିଲି ଯାଇଁ ଦେଖାକରି ଆସେ, ନ୍ୟାୟକୁ ତ ନିଶ୍ୱାସ ମାରିବାକୁ ବେଳ ନାହିଁ ।"

"ଆରେ ଆପଣ କାହିଁକି ଏତେ କଷ୍ଟ କଲେ ! ଆମେ ତ ଭାବିଥିଲୁ ଏଇ ଦିନେ ଅଧେ ଭିତରେ ଆପଣଙ୍କ ପାଖକୁ ଯିବୁ ବୋଲି ।"

"ହଁ, ସେଥିରେ କ'ଣ ଅଛି; ଚାଲିଆସିଲି ଯେ କ'ଣ ହେଲା । କଥା ଅଛି, ଶୋଷ ସିନା କୂଅ ପାଖକୁ ଯାଏ । ଆମର ନିଜର ଟିକିଏ କାମ ଅଛି । ଭାବିଲି ଜଜ୍‌ସାହେବ ତ ଆମ ନିଜ ଲୋକ । ସେ ସାହାଯ୍ୟ ନ କଲେ ଆଉ କିଏ କରିବ ?"

"ହଁ ହଁ କହନ୍ତୁ" ବୋଲି ଗିରିଜାଶଙ୍କର ଅନୁମତି ଦେଲେ ମଧ୍ୟ ତାଙ୍କ ସ୍ୱରରେ ଟିକିଏ ପରିବର୍ତ୍ତନ ଶୁଣାଯାଉଥିଲା ।

ମୁନ୍‌ସି ଶିବଲାଲ ଗଳା ଖଙ୍କାରି କହିଲେ, "କଥା ହେଉଛି ଆମ ଫତେପୁର ଜମିବାଡ଼ି ନେଇ ମକଦ୍ଦମା ଲାଗିଛି । ଆପଣଙ୍କ ଇଜଲାସରେ ସେ ମକଦ୍ଦମା ଅଛି । ସେଥିରେ ଏକ ପକ୍ଷରେ ରହମତ୍ ଅଲ୍ଲୀ ଖାଁ ଓ ଅନ୍ୟପକ୍ଷରେ ଶ୍ୟାମଲାଲ୍ ଓ ବେଗମ ସଲ୍ଲିମା ।"

"ଆଜ୍ଞା ହଁ, ସଲ୍ଲିମା ବେଓ୍ୱା ଶ୍ୟାମଲାଲ ନାଁରେ ଜମି ସେମିତି କରିଦେଇଛି ନାଁ ବିକି ଦେଇଛି, କିଛି ସ୍ପଷ୍ଟ ଜଣା ପଡ଼ୁନାହିଁ । କିନ୍ତୁ ସଲ୍ଲିମା କହୁଛି ଯେ ବିକି ନାହିଁ କିମ୍ବା ଦେଇନାହିଁ; ବରଂ ତାକୁ ଅଫିମ ଖୁଆଇ ତା' ହାତର ଟିପଚିହ୍ନ ନେଇଯାଇଛନ୍ତି ।"

ମୁନ୍‌ସି ଶିବଲାଲ ଉତ୍ତେଜିତ ହୋଇ କହିଲେ, "ସେ ମିଛ କହୁଚି, ସେ ନିଜେ ଜ୍ୱାଲାଠାରୁ ହଜାରେ ଟଙ୍କା ନେଇ ସାରିଛି । କେବେ ଜନ୍ମଦିନ, କେବେ ଭୋଜି ମଉଜ କରି ପଇସା ସବୁ ଖର୍ଚ୍ଚ କରିଛି, ତାର ତ ନିଜ ଝିଅ ଜୁଆଁଇଙ୍କ ସଙ୍ଗେ ବି ପଡ଼େ ନାହିଁ ।"

ଗିରିଜାଶଙ୍କର କିଛି କହିବା ପୂର୍ବରୁ ବେଚୁ ମିସିର କହିଲେ, "ହଁ, ତହସିଲଦାର ସାହେବ ଯଦି ଟଙ୍କା ଦେଇଥିବେ ସେତ କେବେ ମିଛ କହିବେ ନାହିଁ । ସେ ଯଦି ଟଙ୍କା ଦେଇଛନ୍ତି ବୋଲି କହିଦିଅନ୍ତି ତା'ହେଲେ ତ ଆପଣ ମକଦ୍ଦମାରେ ଜିତିଲେ । ଏଥିରେ ଆପଣଙ୍କର ଚିନ୍ତା କରିବାର କ'ଣ ଅଛି ?"

ମୁନ୍‌ସି ଶିବଲାଲ କହିଲେ, "ହଁ, କଥା କଣ କି, ଜ୍ୱାଲା ଶ୍ୟାମଲାଲକୁ ଟଙ୍କା ଦେଇଛି, ସିଧା ସଲ୍ଲମାଙ୍କ ହାତରେ ଦେଇନାହିଁ । ତେଣୁ ସେ ସଲ୍ଲମାଙ୍କୁ ଦେଇଥିବା କଥା କହିବାକୁ ରାଜି ହେବ ନାହିଁ ।"

ବେଚୁ ମିସିର କିଛି କମ୍ ଚତୁର ଲୋକ ନୁହନ୍ତି । ସେ କହିଲେ, "ହଁ, ସେଥିରେ କ'ଣ ଅଛି ? ତହସିଲଦାର ସାହେବ କେବଳ ସେତିକି କହିଦେଲେ ଢେର ।"

ମୁନ୍‌ସି ଶିବଲାଲ ଟିକିଏ ଇତସ୍ତତଃ ହୋଇ କହିଲେ, "ମୁଁ ଜ୍ୱାଲାର ବାପା, ମୁଁ କହିଲେ କ'ଣ କାମ ଚଳିବ ନାହିଁ ?"

ଏଥର ଗିରିଜାଶଙ୍କର ଜବାବ୍ ଦେଲେ, "ଶ୍ୟାମଲାଲ ଜ୍ୱାଲାପ୍ରସାଦଙ୍କର କକାପୁଅ ଭାଇ ଓ ରାଧେଲାଲ ଜ୍ୱାଲାପ୍ରସାଦଙ୍କର ନିଜର କକା । ସେମାନଙ୍କ କଥାରେ ଯଦି ମୁଁ ବିଶ୍ୱାସ କରିନାହିଁ, ତେବେ ଆପଣଙ୍କ କଥାରେ କେମିତି ବିଶ୍ୱାସ କରିବି ? ହଁ, ଜ୍ୱାଲା ଜଣେ ବଡ଼ ସରକାରୀ ଅଫିସର, ତାଙ୍କର ମାନସମ୍ମାନ ଖୁବ୍ ବେଶୀ, ସେ କେବେ ମିଛ କହିବେ ନାହିଁ । ତାଙ୍କ କଥା ମୁଁ ବିଶ୍ୱାସ କରିପାରେ ।"

ମୁନ୍‌ସି ଶିବଲାଲ ଉଠୁ ଉଠୁ କହିଲେ, "ଆଚ୍ଛା, ମୁଁ ଜ୍ୱାଲାକୁ କହିବି ସେ ନିଜେ ଆସି ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରିନେବ । ସେହି ସମ୍ପତ୍ତିକୁ ଶ୍ୟାମଲାଲ ଅବଶ୍ୟ ଜ୍ୱାଲା ନାଁରେ ଲେଖାଇ ଦେଇଛି । ଯଦି ଏଥିପାଇଁ ଜ୍ୱାଲା ସଙ୍କୋଚରେ ପଡ଼ି କିଛି ନ କହେ, ତେବେ ଏଇ ସାକ୍ଷୀ କ'ଣ ଯଥେଷ୍ଟ ହେବନାହିଁ ?"

"ନାଁ, ମୋଟେ ହେବ ନାହିଁ । ଆପଣ ତ ଅନ୍ତତଃ ଏତିକି ଜାଣନ୍ତି ଏକାନ୍ନବର୍ତ୍ତୀ ପରିବାରରେ ଜମି ଯାହା ନାଁରେ ଥିଲେ ବି ସେଥିରେ କିଛି ଯାଏ ଆସେ ନାହିଁ । ମାନସମ୍ମାନର କଥା । ଜ୍ୱାଲାବାବୁଙ୍କର କଚେରୀକୁ ଆସିବା ଆଦୌ ଦରକାର ନାହିଁ । ସେ ମୋତେ ଘରୋଇ ଭାବରେ କହିଦେଲେ ବି ହେବ । ଛୁଟି ପରେ ପରେ ଶୁଣାଣି ହେବ । ଶୁଣାଣି ସରିବା ମାତ୍ରେ ମୁଁ ରାୟ ଦେବି ।"

ଘରକୁ ଫେରିଯାଇ ମୁନ୍‌ସି ଶିବଲାଲ ଜ୍ୱାଲାପ୍ରସାଦଙ୍କୁ କହିଲେ, "ଜଜ୍‌ସାହେବ

ଗିରିଜାଶଙ୍କର କୁଟିରେ ଆସିଛନ୍ତି । ତାଙ୍କ ସଙ୍ଗେ ଆଜି ମୋର ଦେଖା ହୋଇଥିଲା ସେ କହୁଥିଲେ ଜ୍ୱାଲାବାବୁଙ୍କ ସଙ୍ଗେ ଆଜଯାଏ ଦେଖା ହୋଇନାହିଁ ।"

"ହଉ, ଏଣେତ ବହୁତ କାମ ଥିଲା, ଏଇ ଦୁଇଦିନରେ ଯିବ ।"

ତା'ପରେ ମୁନ୍‌ସି ଶିବଲାଲ ଜ୍ୱାଲାଙ୍କଠାରୁ ମୁହଁ ବୁଲେଇ ନେଇ କହିଲେ, "ମୁଁ ଶ୍ୟାମୁ ମକଦ୍ଦମା କଥା କହୁଥିଲି । ସେ କହିଲେ ଜ୍ୱାଲାପ୍ରସାଦ ସଲ୍ଲାମାକୁ ଟଙ୍କା ଦେଇଛନ୍ତି ବୋଲି ଯଦି କହିଦିଅନ୍ତି, ତା'ହେଲେ ସେ ରହିମ ଖାଁର ମକଦ୍ଦମା ଖାରଜ କରିଦେବେ ।"

"କନ୍ତୁ......କନ୍ତୁ ବାପା, ମୁଁ କେବେ ସଲ୍ଲାମାବେଗମକୁ ଟଙ୍କା ଦେଲି ? ମୋତେ ତ ଏକଥା କିଛି ଜଣା ନାହିଁ ! ଏଭଳି ମିଛ କଥା ତ ମୁଁ କେବେ କହି ପାରିବି ନାହିଁ ।"

"ହଁ, ତା ନ କହି ପାରିଲେ ଜମି କିଣିବା ପାଇଁ ଶ୍ୟାମଲାଲକୁ ତୁ ଟଙ୍କା ଦେଇଛୁ ବୋଲି ତ କହି ପାରିବୁ । ତୋଠୁ ଟଙ୍କା ନେଇ ମୁଁ ଶ୍ୟାମଲାଲକୁ ଦେଇଛି ଏକଥା ତ ମିଛ ନୁହେଁ । ସେ ଟଙ୍କାରେ ଜମିଦାରୀ କିଣା ହେଲା କି ଜମି କିଣା ହେଲା ସେଥିରେ ଯାଏ ଆସେ କେତେ ?"

ଏକଥା ଶୁଣି ଜ୍ୱାଲାପ୍ରସାଦଙ୍କ ମୁହଁରେ ଏକପ୍ରକାର ବ୍ୟଙ୍ଗ ହସ ଫୁଟି ଉଠିଲା । ସେ କହିଲେ, "ହଁ, ଯୁଧିଷ୍ଠିର ତ କହିଲେ ଅଶ୍ୱତ୍ଥାମା ହତ, ସେ ନର ହେଉ ବା କୁଞ୍ଜର ହେଉ ।"

ମୁନ୍‌ସି ତୀକ୍ଷଣ ସ୍ୱରରେ ଜବାବ ଦେଲେ "ମହାଭାରତ କଥା ତ ଏଠି ଖାଟୁ ନାହିଁ ।"

"ହଁ, କଳିଯୁଗ ନା, ମୋ ରଥ ଚକ ତ ଭୂଇଁ ଉପରେ ଉଡ଼ୁନାହିଁ ଯେ ପୁଣି ଆସି ଭୂଇଁରେ ଲାଗିଯିବ । ସରକାରଙ୍କର ବଡ଼ ହାକିମ ହୋଇ ମୁଁ କେବେ ମିଛ କହି ପାରିବ ନାହିଁ । ଆଉ ଯଦି ଅଧାସତ କହେ, ପଣ୍ଡିତ ଗିରିଜାଶଙ୍କର କିଛି ଦ୍ରୋଣାଚାର୍ଯ୍ୟ ନୁହନ୍ତି ଯେ ଅସ୍ତ୍ର ଛାଡ଼ି ବସିଯିବେ । ସେ ଜଜ୍‌ସାହେବ ନା; ନିଷ୍ପତ୍ତି ଜେରା କରିବେ । ଫଳରେ ଅଧାସତ ପୁରାସତ ପାଲଟି ଯିବ । କାରଣ ମୁଁ କେବେ ମିଛ କହି ପାରିବି ନାହିଁ ।"

ଯଦିଓ ମୁନ୍‌ସି ଶିବଲାଲ ବେଚୂ ମିସିରଙ୍କ ଘରେ ମାତ୍ର ଦୁଇପୋଷ ହେବ ପଣା ପିଇଥିଲେ ତଥାପି ସେ ପଣାରେ ଭାରି ନିଶାଥିଲା । ତାଙ୍କୁ ବର୍ତ୍ତମାନ ଲାଗିଲା ଯେ ତାଙ୍କ ପୁଅ ସତ୍ୟ ଓ ସାଧୁତା ନାଁରେ କେବଳ ନିଜ ଟାଙ୍ଗିଆ ନିଜ ଗୋଡ଼ରେ ହାଣିବା ଛଡ଼ା ତାଙ୍କୁ ଓ ତାଙ୍କ ପରିବାର ଲୋକଙ୍କୁ ମଧ୍ୟ ପରିହାସ କରୁଛି । ଜ୍ୱାଲାପ୍ରସାଦଙ୍କର ପ୍ରତ୍ୟେକ ଶବ୍ଦ ନିତାନ୍ତ ଅପମାନ ସୂଚକ ଗାଳିପରି ମନେ ହେଲା । ମୁନ୍‌ସି ହଠାତ୍ ରାଗିଯାଇ କହିଲେ, "ଇଏ ଏବେ ଜଣେ ବଡ଼ ଧର୍ମରାଜଙ୍କ ବାପ ହୋଇଗଲେ, ଏଡ଼େ ବଡ଼ ଜମିଦାରୀ ଛାଡ଼ି ଦେଇ ବସୁଛି, ମୋ ପୁଅ ଏଡ଼େ ନିକମା ହେବ ବୋଲି ମୁଁ କ'ଣ କେବେ ଜାଣିଥିଲି !"

ମୁନ୍‌ସି ଶିବଲାଲ ଏତିକି ପାଟିକଲେ ଯେ ଛୁନକୀ, ଭିକ୍ଷୁ, ଯମୁନା ଓ ବଶନଲାଲ ସମସ୍ତେ ଆସି ଦୁଆରେ ଜମା ହେଲେ ।

କ୍ରୋଧ ମଧ୍ୟ ଏକପ୍ରକାର ପାଗଳାମି । ପାଗଳାମି ଯେମିତି ରୁହିଯାଇ ରୁହିଯାଇ ଆସେ କ୍ରୋଧ ମଧ୍ୟ ସେମିତି ରୁହିଯାଇ ରୁହିଯାଇ ଆସେ ଓ ମସ୍ତିଷ୍କ ସେଥିରେ ନିଜ ଉପରୁ ଅଖ୍ତିଆର ହରାଇ ବସେ । ଶିବଲାଲ ଜ୍ୱାଲାପ୍ରସାଦଙ୍କ ଜବାବକୁ ଅପେକ୍ଷା କରି ରହିଲେ । ତାଙ୍କଠୁ ଜବାବ ତ କିଛି ମିଳିଲା ନାହିଁ ବରଂ ଅନେକ ଲୋକ ଆସି ଗଦା ହୋଇଗଲେ । ଶିବଲାଲ ଗର୍ଜିଉଠିଲେ, "ଆରେ ଗଧ, ଜବାବ ଦେଉନୁ କାହିଁକି ? ତୋତେ ଖୁଆଇ ପିଆଇ ବଡ଼ାଇ ଏତେବଡ଼ କଲି କଣ ତୁ ଶେଷରେ ଧର୍ମରାଜାଙ୍କର ବାପ ହେବୁ ବୋଲି !"

ଏ ପ୍ରକାର କ୍ରୋଧ ଦେଖି ଜ୍ୱାଲାପ୍ରସାଦଙ୍କ ମନରେ ସତ୍ୟ ଓ ସାଧୁତା ଆହୁରି ଦୃଢ଼ ହୋଇ ଉଠିଲା । ସେ ଦୃଢ଼ ସ୍ୱରରେ କହିଲେ 'କେବଳ ଆପଣ କାହିଁକି, ସତ୍ୟ ଓ ସାଧୁତା ଛାଡ଼ିବା ପାଇଁ ସ୍ୱୟଂ ଭଗବାନ କହିଲେ ବି ମୁଁ ମନା କରିଦେବି ।"

ମୁନ୍‌ସି ଶିବଲାଲ ହଠାତ୍ ଉଠି ଠିଆ ହୋଇ ପଡ଼ିଲେ ଓ ଏକ ଭରି ସୁରେଇକୁ ଉଠାଇ "ନେ, ମୁଁ ତୋର ସତ୍ୟ ଓ ସାଧୁତାର ଦଣ୍ଡ ଦେଉଛି" ବୋଲି କହି ଭରି ସୁରେଇଟାକୁ ନିଜ ମୁଣ୍ଡରେ କଚାଡ଼ି ଦେଲେ ।

ଏଣେ ଶିବଲାଲ ସୁରେଇ ଆଘାତରେ ଟଳମଳ ହୋଇ ଝସି ପଡ଼ିଲେ ଓ ତେଣେ ସବୁ ଲୋକ ଆସି ଜମା ହୋଇଗଲେ ।

ସେ ଦିନ ରାତିରେ ଆଲ୍ଲାହାବାଦରୁ ଡାକ୍ତର ଡକାଇ ଶିବଲାଲଙ୍କର ବହୁତ ଚିକିତ୍ସା କରାଗଲା; କିନ୍ତୁ ଥରେ ତାଙ୍କର ଯେଉଁ ଚେତା ହଜିଥିଲା ସେ ଆଉ ଫେରିଲା ନାହିଁ । ଜୀବନ ମରଣ ଭିତରେ ସାତଦିନ ଲଢ଼ାଇ ପରେ ସପ୍ତମଦିନ ତାଙ୍କର ଆଖି ଖୋଲିଲା । ସେ ଛୁନକୀ ଓ ଜ୍ୱାଲାପ୍ରସାଦଙ୍କୁ ଡକାଇଲେ ଓ ଜ୍ୱାଲାପ୍ରସାଦଙ୍କୁ ଛୁଇଁବା ମାତ୍ରେ ତାଙ୍କ ଆଖିରୁ ଲୁହ ଗଡ଼ି ପଡ଼ିଲା । ସେ କହିଲେ, "ମୋତେ କ୍ଷମା କରିବୁ ବାପା, ମୁଁ ଯାଉଛି । ତୋର କିଛି ଭୁଲ ନାହିଁ । ଛାଡ଼—ଏ ବାର୍ଦ୍ଧକ୍ୟ କଷ୍ଟରୁ ତ ଛୁଟି ମିଳିଲା !"

ଜ୍ୱାଲାପ୍ରସାଦ କାନ୍ଦି କାନ୍ଦି କହିଲେ, "ବାପା, ଆପଣ ଏମିତି କହନ୍ତୁ ନାହିଁ, ଆପଣ ନିଶ୍ଚୟ ଭଲ ହୋଇଯିବେ ।"

ମୁନ୍‌ସି ଛୁନକୀକୁ ଠାରରେ ଦେଖାଇ ଖୁବ୍ କ୍ଷୀଣ ଓ କ୍ଳାନ୍ତ ସ୍ୱରରେ ଜ୍ୱାଲାଙ୍କୁ କହିଲେ, "ଏଇ ଛୁନକୀକୁ ତୁ ମା' ବୋଲି ଭାବିବୁ । ତୋର ଦୟା ଉପରେ ମୁଁ ତାକୁ ଛାଡ଼ି ଦେଇ ଯାଉଛି", ଏତିକି କହି ମୁନ୍‌ସି ଶିବଲାଲ ଚିର ଦିନ ପାଇଁ ଚକ୍ଷୁ ବନ୍ଦ କରିଦେଲେ ।

## ବାର

ରାଧେଲାଲ ଓ ଜ୍ୱାଲାପ୍ରସାଦ ଘର ସାମନା ପଡ଼ିଆରେ ବସି ମୁନ୍‌ସି ଶିବଲାଲଙ୍କ ଶ୍ରାଦ୍ଧ କଥା ବିଚାର କରୁଥାନ୍ତି । ରାଧେଲାଲ କହିଲେ, "ଆରେ ପୁଅ ଜ୍ୱାଲା, ଭାଇଙ୍କର ବଡ଼ ନାଁ, ବଡ଼ଘର ଭୋଜ ପାଇଁ ପାଞ୍ଚଶହ ବ୍ରାହ୍ମଣ ଡାକିବାକୁ ହେବ । କିନ୍ତୁ ଏ ଅଞ୍ଚଳରେ ତ ପାଞ୍ଚଶହ ବ୍ରାହ୍ମଣ ମିଳିବେ ନାହିଁ । ତେଣୁ ଅନ୍ତତଃ ଶହେ ପଚାଶ ଜଣ ବ୍ରାହ୍ମଣଙ୍କୁ ଭୋଜନ ଦେବା ଦରକାର । ତାପରେ ଜାତିଭାଇ ଓ ବନ୍ଧୁ ବାନ୍ଧବଙ୍କ କଥା ଅଲଗା । ଆଲ୍ଲାହାବାଦ, ସୋରାବ ଓ ଫତେପୁର ମିଶାଇ ଯେମିତି ହେଲେ ଦୁଇଶ ତିନିଶ ଲୋକ ହେବେ ।

ଜ୍ୱାଲାପ୍ରସାଦ କହିଲେ, "ତାହେଲେ ପାଞ୍ଚ ଛଅଶହ ଲୋକଙ୍କର ଭୋଜ ଯୋଗାଡ଼ କରିବାକୁ ହେବ ।"

"ହଁ ବାବା, ଭାଇଙ୍କର ଶ୍ରାଦ୍ଧ କଥା ଏଥିରେ କ'ଣ ଆଉ କମ୍ କଲେ ଚଳିବ । ଆଉ ଲୋକଙ୍କ କଥା ଅଲଗା; କିନ୍ତୁ ତୁ ତ ତହସିଲଦାର, ସୋରାବର ରାଜା । ହୁକୁମ ଦେଲେ· ସବୁକଥା ଆଖି ପିଛୁଳାକେ ଯୋଗାଡ଼ ହୋଇଯିବ ।"

ଜ୍ୱାଲାପ୍ରସାଦ କ୍ଷୀଣ କଣ୍ଠରେ କହିଲେ, "କିନ୍ତୁ ଏ ସବୁ ମୁଁ କେବେ କରେ ନାହିଁ । ଏସବୁ କରିବା ଭୁଲ, ତା ଛଡ଼ା ଶ୍ରାଦ୍ଧକ୍ରିୟାରେ ଏ ସବୁ କରିବା କ'ଣ ଦରକାର ?"

ରାଧେଲାଲ ନିଜ କଥାରେ ଟିକିଏ ଜୋର ଦେଇ କହିଲେ, "ହଁ, ଦରକାର ନ ଥିଲେ ମୁଁ ତୋତେ କହନ୍ତି କାହିଁକି ? ବଡ଼ ପ୍ରତାପୀ, ବଡ଼ ପୁଣ୍ୟାତ୍ମା ଥିଲେ ଭାଇ । ତାଙ୍କର ସଦ୍‌ଗତି ହେବା ଦରକାର । ବ୍ରାହ୍ମଣମାନଙ୍କୁ ଓ ଜ୍ଞାତି କୁଟୁମ୍ବମାନଙ୍କୁ ଭୋଜନ ଦେଲେ ତାଙ୍କର ଆତ୍ମା ସନ୍ତୁଷ୍ଟ ହେବ ଓ ତାଙ୍କୁ ସଦ୍‌ଗତି ମିଳିବ । ମୁଁ ବର୍ତ୍ତମାନ ଅମଜଦ ଅଲ୍ଲୀ କାନୁନଗୋଙ୍କୁ କହି ଦେଉଛି, ଘରେ ବସି ବସି ପନ୍ଦର ଦିନରେ ସବୁ ଜିନିଷ ଯୋଗାଡ଼ ହୋଇଯିବ ।"

ଛୁନକା ପାଖରେ ଛିଡ଼ା ହୋଇ ଏସବୁ ଶୁଣୁଥାଏ ଓ ତା ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ସେ ଆଉ ସହି ନ ପାରି କହିଲା, "ନାହିଁ, ଜୋର ଜବରଦସ୍ତିରେ ଯେଉଁ ଜିନିଷ ଆସିବ, ସେଥିରେ ତାଙ୍କର ଭଲ ହେବ ନାହିଁ । ଖରାପ ହେବ । ଏକୋଇଶ ଜଣ ବ୍ରାହ୍ମଣ ଖୁଆଇ ଦିଅ, ଆଉ ବନ୍ଧୁ ବାନ୍ଧବ ଯେ ପଚିଶ ତିରିଶ

ଆସିବେ ତାଙ୍କପାଇଁ ଆୟୋଜନ କର । ଏସବୁ ଆମେ ଯୋଗାଡ଼ କରି ଦେବୁ । ତମେ ଚିନ୍ତା କର ନାହିଁ ।"

ଛୁନକୀ କଥା ରାଧେଲାଲଙ୍କୁ ଭଲ ଲାଗିଲା ନାହିଁ । ସେ କହିଲେ, "ତୁ କ'ଣ କଥାକୁ ବାଦ କରୁଛୁ ? ତୁ ଗୋଟାଏ ଖାଲି ଯୋଗାଡ଼ କରିବାଲି ! ତୁ ଆମ ନାକ କାଟି ତଳେ ପକାଇବାକୁ ବସିଛୁ !"

ଛୁନକୀ ବର୍ତ୍ତମାନ ଚମକି ଉଠି ଜ୍ୱାଲପ୍ରସାଦଙ୍କୁ କହିଲା, "ମୁଁ ଆଉ ଏ ଘରେ ରହିବି ନାହିଁ, କିଛି କହିବି ନାହିଁ । ଏହି ଲୋକଙ୍କର ଅଧର୍ମ ଜାଲରେ ପଡ଼ି ତାଙ୍କ ଜୀବନ ତ ଗଲା, ପୁଣି ଜ୍ୱାଲକୁ ବି ସେଇ ଜାଲରେ ପକାଉଛନ୍ତି । ଏଗୁଡ଼ା ମୁଁ ଆଖିରେ ଦେଖିବି ନାହିଁ ।" ଏହି କଥା କହି ସେ ସେଠାରୁ କାନ୍ଦି କାନ୍ଦି ଚାଲିଗଲା ।

ଛୁନକୀ ଚାଲିଯିବା ପରେ ଜ୍ୱାଲପ୍ରସାଦ କହିଲେ, "କାକା, ମୁଁ ତ ଭାବୁଛି ଛୁନକୀ ଠିକ୍ କଥା କହୁଛି । ତେଣେ ଲୋକଙ୍କଠାରୁ ଜବରଦସ୍ତ ପଇସା ଆଣିଲେ ସେମାନଙ୍କ ମନ କଷ୍ଟ ହେବ । ଏଣେତ ସହଜେ ମୋ ପାଖରେ ଟଙ୍କା ପଇସା କିଛି ନାହିଁ । ତେଣୁ ସବୁଆଡ଼ୁ ଟିକିଏ ଭାବିଚିନ୍ତି କାମ କରନ୍ତୁ ।"

ଏହି ସମୟରେ ଶ୍ୟାମଲାଲ ଗଙ୍ଗାପ୍ରସାଦକୁ ଘୋଷାରି ଘୋଷାରି ଆଣି ଜ୍ୱାଲପ୍ରସାଦଙ୍କ ପାଖରେ ପହଞ୍ଚି କହିଲା, "ଭାଇ, ଏ ଗଙ୍ଗା ଗୁଣ ଦେଖ । ଇଏ ବଶନୁ ଆଉ ତାର ବାରବୁଲା ସାଙ୍ଗମାନଙ୍କ ଗୋଷ୍ଠୀରେ ଭାଙ୍ଗ ପିଇକରି ଆସିଲାଣି । ଭିକ୍ଷୁ ସେ ଟୋକାଙ୍କୁ ମନା କରିବ କ'ଣ କାଳେ ଲୋଟାଏ ହେବ ଭାଙ୍ଗ ପିଇ ଦେଇଛି ।"

ଜ୍ୱାଲପ୍ରସାଦ କିମ୍ବା ରାଧେଲାଲ କିଛି କହିବା ପୂର୍ବରୁ ଭିକ୍ଷୁ ଆଗକୁ ଚାଲି ଆସି ମିଠାଇ ଡାଲାଟାଏ ରଖି ଦେଇ କହିଲା, "ଏଇ ନିଅନ୍ତୁ ମହାବୀରଜୀଙ୍କ ପ୍ରସାଦ । ଗଙ୍ଗା ଏଠିକି ଆସିଲାଣିଟି ! ମନ୍ଦିରରେ ଭାଙ୍ଗ ଛଣା ହେଉଥିଲା, ଅମେ ସେଥିରୁ ଟିକିଏ ଟିକିଏ ପ୍ରସାଦ ପାଇଥିଲୁ, ଗଙ୍ଗା ବି ଟିକିଏ ପାଇଥିଲା । ଶ୍ୟାମୁ ସେଠି ପହଞ୍ଚି ଭାତ ଡାଲି ପେଟେ ଖାଇ ସେତକ ବେଳୁ ଗଙ୍ଗାକୁ କନ୍ଦାଉଛି । ଲାଜ ଟିକିଏ ଭଲା ଥାନ୍ତା । ସେଠି ବଶନୁକୁ ଗୁଡ଼ାଏ ଗାଲିଗୁଲଜ କରି ଅସିଲା ।"

ଭିକ୍ଷୁର ପାଟି ଶୁଣି ଗଙ୍ଗା ବର୍ତ୍ତମାନ ଖୁବ୍ ପାଟି କରି କାନ୍ଦିଲା, ତା ପାଟି ଶୁଣି ଛୁନକୀ ଘରୁ ଧାଇଁ ଆସି ତା ହାତଧରି ପକାଇ କହିଲା, "ଏଡ଼କି ବକଟେ ପିଲା, ତାକୁ କ'ଣ ଏମିତି ଗାଳି ଦିଅନ୍ତି ! ଚାଲ ଚାଲ, ହସ ଖୁସି ଦିନରେ ଆସି ପିଲାଟାକୁ କନ୍ଦାଉଛି ।" ତାପରେ ଛୁନକୀ ଗଙ୍ଗାପ୍ରସାଦକୁ ଚୁପ କରାଇ ଘରଭିତରକୁ ନେଇ ଚାଲିଗଲା । ତା ପଛେ ପଛେ ଭିକ୍ଷୁ ମିଠାଇ ଡାଲା ଧରି ଚାଲିଗଲା ।

ଛୁନକୀ ଓ ଭିକ୍ଷୁ ଚାଲିଯିବା ପରେ ଶ୍ୟାମଲାଲ କହିଲା, "ଭାଇ, ତମେ ଏ ଲୋକ

ଗୁଡ଼ାଙ୍କୁ ଏମିତି ମୁଣ୍ଡରେ ବସେଇଛ ଯେ ଏଗୁଡ଼ା ଆମ ସଙ୍ଗେ ଯା ଇଚ୍ଛା ତା କଥାବାର୍ତ୍ତା କରୁଛନ୍ତି ।"

ରାଧେଲାଲ ତାଙ୍କ ପୁଅକୁ ବୁଝାଇ କହିଲେ, "ଛାଡ଼ ସେ କଥା । ଜ୍ୱାଲା ବଡ଼ ସାଧାସିଧା ଭୋଳା ଲୋକ ନା ! ମୁଁ ତ ବର୍ତ୍ତମାନ ଘରର ମୁଖିଆ ଆସିଗଲଣି, ସେମାନଙ୍କର ଅକଲ ଠିକ୍ କରି ଦେଉଛି, ରହ ।"

ଜ୍ୱାଲାପ୍ରସାଦ ସେ ବାପ ପୁଅଙ୍କ କଥା ମୋଟେ ନ ଶୁଣିଲା ପରି ଶ୍ୟାମଲାଲକୁ ପଚାରିଲେ, "ହଁ ଶ୍ୟାମୁ, ତୁ ଫତେପୁର ଜମିର କ'ଣ ବ୍ୟବସ୍ଥା କଲୁ ? ଏଥର ତ ଫସଲ ଖୁବ୍ ଭଲ ହୋଇଥିଲା ?"

"କ'ଣ କହିବ ଭାଇ, ଏଥର ଯେଉଁ ସୁନ୍ଦର ଫସଲ ହୋଇଥିଲା; କିନ୍ତୁ ଲୋକଗୁଡ଼ା ବିଲ୍‌କୁଲ ବେଇମାନ ହୋଇ ଗଲେଣି । ଯେଉଁ ଲୋକଙ୍କୁ ଜମି ପଟ୍ଟା ଦେଇଥିଲି ସେମାନେ ଅସତ୍ୟକରି ଭାଗ ଦେଉନାହାନ୍ତି । ଭାବୁଛି ସେମାନଙ୍କ ନାଁରେ ମକଦ୍ଦମା କରିବାକୁ ପଡ଼ିବ ।"

"ଆଉ ଯେଉଁ ସତରବିଘା ହାତଚାଷ ହୋଇଥିଲା, ସେ କଣହେଲା ?"

"ହଁ, ସେ ଜମିତ ଭାଗକୁ ଦେଇଥିଲି । କିନ୍ତୁ ସେ କେଶୋ ସିଂହଟା ଏତେ ଚୋରବୋଲି ମୁଁ ଜାଣି ନ ଥିଲି । ରାତାରାତି ଫସଲ କାଟିନେଇ ଲୁଚାଇ ଦେଲା । ମୋତେ କହିଲା ଫସଲ ଆଦୌ ଭଲ ହୋଇନି । ମୋଟେ ଦେଢ଼ଶହ ମହଣ ଗହମ ଓ ଶହେ ମହଣ ଚଣା ହୋଇଛି । ସେଥିରୁ ବିହନ ଦାବଦକୁ ସତୁରି ମହଣ ଗହମ ଓ କୋଡ଼ିଏ ମହଣ ଚଣା ମହାଜନଙ୍କୁ ଦେବାକୁ ପଡ଼ିଲା । ଆମକୁ ଶେଷରେ ମୋଟରେ ତିରିଶ ମହଣ ଗହମ ଓ ତିରିଶ ମହଣ ଚଣା ମିଳିଲା । ସେ ସବୁ ବିକାକିଣା କରି ସବୁଟଙ୍କା ଖଜଣା ଦେଇଦେଲି, ମୋ ନିଜ ହାତରୁ ଆହୁରି ପନ୍ଦରଟଙ୍କା ବାଜିଲା ।"

ଏହା ଶୁଣି ଜ୍ୱାଲପ୍ରସାଦ ଟିକିଏ ହସିଦେଇ କହିଲେ, "ଚାଷ କାମ ଖାଲି ପାଟିରେ ହାକିମି କରି ହୁଏନାହିଁ; ନିଜେ କ୍ଷେତରେ ଲାଗିଲେ ହୁଏ ।"

"ହଁ ଭାଇ, ଆପଣ ଠିକ୍ କହୁଛନ୍ତି; କିନ୍ତୁ ହଳ ଧରିବା ତ ମୋ ହାତରେ ହୁଏ ନାହିଁ, ତହିଁକି ଘରର ମାନ ସମ୍ମାନର କଥା । ତାଛଡ଼ା ଏତିକି ଟିକିଏ ଜମିପାଇଁ ଫତେପୁରରେ ପଡ଼ି ରହିବାରେ କୌଣସି ଫାଇଦା ନାହିଁ । ରହିମପୁର ମୌଜା ଯଦି ହାତରେ ପଡ଼ିଯାନ୍ତା, ତାହେଲେ ଅବା କିଛି ହୁଅନ୍ତା, ନଚେତ୍ ଏହି ହାତଚାଷ ଜମିରେ ଗୁଜରାଣ ମେଣ୍ଟାଇବା କଷ୍ଟ !"

ଜ୍ୱାଲପ୍ରସାଦ ପଚାରିଲେ, "ତାହେଲେ ଏ ଜମି ବିକି ଦେଉନା କାହିଁକି ?"

ବର୍ତ୍ତମାନ ରାଧେଲାଲଙ୍କର କହିବା ପାଳି ପଡ଼ିଲା । ସେ କହିଲେ, "ବାବା ଜ୍ୱାଲ,

ଜମି ବିକିବା କଥା ତୁଣ୍ଡରେ ଧରନାହିଁ, ବରଂ ଅଧିକ ଜମି କିଣିବା ଦରକାର, ଭାଇଙ୍କର ଶ୍ରାଦ୍ଧ ପରେ ପରେ ଶ୍ୟାମୁକୁ ନେଇ ମୁଁ ଫତେପୁର ଯିବି । ହାତରେ କିଛି ଟଙ୍କା ଅଛି, କିଛି ନ ହେଲେ ବୀରପୁର ମୌଜାର ଯେଉଁ ଛଅଣା ଭାଗ ବିକ୍ରୀ ହେବାର ଅଛି ତାକୁ ନେଇଯିବା । ଯାହା ହେଲେବି ନିଜର ଯୋଗ୍ୟତା ପୁଣି ଆମକୁ ରକ୍ଷା କରିବାକୁ ପଡ଼ିବ ।"

ସେତିକି ବେଳକୁ ଘର ଆଡ଼କୁ ଗୋଟାଏ ଘୋଡ଼ାଗାଡ଼ି ଆସୁଥିଲା । ଏତେବେଳେ କିଏ ଆସୁଛନ୍ତି ଭାବି ରାଧେଲାଲ ସେଇଠୁ ଏକ ଡାକ ମାରିଲେ, "କିଏ ସେ ?"

ଘର ଆଗରେ ଘୋଡ଼ାଗାଡ଼ି ରହିଲା । ଗାଡ଼ି ଉପରେ ପରଦା ପଡ଼ିଥିଲା । ରାଧେଲାଲଙ୍କ ବଡ଼ପୁଅ ରାମଲାଲ ପରଦା ବାହାରୁ ଜବାବ ଦେଲା, "ମୁଁ, ବାପା ! ସ୍କୁଲ ଛୁଟି ହୋଇ ଯିବାରୁ ପିଲାଛୁଆ ସମସ୍ତଙ୍କୁ ନେଇ ଚାଲି ଆସିଲି ।" ଜ୍ୱାଲାପ୍ରସାଦ ଦେଖିଲେ ଗାଡ଼ିରୁ ରାମଲାଲ ଓ ଶ୍ୟାମଲାଲର ସ୍ତ୍ରୀ ଓ ଛଅଟି ପିଲା ଓହ୍ଲାଉଛନ୍ତି ।

ଶ୍ୟାମଲାଲ ଧାଇଁ ଯାଇଁ ଗାଡ଼ିରୁ ଜିନିଷପତ୍ର ସବୁ ଉତାରି ପକାଇଲା । ଘରେ ଖୁବ୍ ଚହଳ ପଡ଼ିଗଲା । ବୋହୂ ଦୁହେଁ ଶାଶୁଙ୍କ ପାଦଛୁଇଁ ନମସ୍କାର କଲେ । ଛୁଆଙ୍କୁ ଆଦରରେ କୋଳକଲେ । ଦୁଆରେ ଦୁଇଚାରିଟା ଖଟିଆ ପଡ଼ିଗଲା, ସ୍ତ୍ରୀ ଲୋକମାନେ; ଖଟିଆରେ ବସି ଭଲମନ୍ଦ କଥା ପଚାରିଲେ । ରାମଲାଲ ପଦାକୁ ବାହାରି ଆସି ପୁରୁଷ ଲୋକମାନଙ୍କ ପାଖରେ ବସିଗଲା ।

"କ'ଣ ଜ୍ୱାଲା, ଭଲ ଅଛତ ? ଭାବିଲି ବଡ଼ବାପାଙ୍କ ଶ୍ରାଦ୍ଧ ହେଉଛି, ଏଣେତ ସ୍କୁଲ ଛୁଟି ଅଛି, ତେଣୁ ସମସ୍ତଙ୍କୁ ଧରି ଚାଲି ଆସିଲି ।" ତାପରେ ସେ ଶ୍ୟାମଲାଲକୁ ଚାହିଁ କହିଲା, "ଶ୍ୟାମୁ, ଏମିତ କ'ଣ ଜମିବାଡ଼ି କାମ ହୁଏ ! ତୁ ଏଠି ବସିଛୁ, ତେଣେ ହାତଗୃଷ ଜମିରେ ଫଉଜଦାରୀ ହେବାଉପରେ । ବାପା, ଶ୍ୟାମୁ ଯଦି ଟିକିଏ ପରିଶ୍ରମ କରନ୍ତା, ତାହେଲେ ଭଲ ଆମଦାନି ହୁଅନ୍ତା । କିନ୍ତୁ ତାରତ ସେଥିରେ ମନନାହିଁ ମୋଟେ । ଖାଲି ସୋରାଂବ, ଫତେପୁର ଓ ଆଲ୍ଲାହାବାଦ ବୁଲିବାରେ ସେ ଅଛି, ଠିକ୍ ସମୟରେ ଜମିଉପରେ ନ ରହିଲେ କେମିତି କାମ ହେବ ?"

ରାମଲାଲ ବସି ବସି ଏ ସବୁ କଥା ଉଠାଇବାରୁ ଶ୍ୟାମଲାଲ ବିଗିଡ଼ି ଯାଇ କହିଲା, "ଆପଣତ ସେଠି ଅଛନ୍ତି, ସେ ଜମି କଥା ବୁଝୁନାହାନ୍ତି !"

ଏ କଥା ଶୁଣି ରାମଲାଲ ଗର୍ବରେ ମୁହଁ ଫୁଲାଇ କହିଲା, "ତୁ କ'ଣ ଭାବିଛୁକି ? ମୁଁ ଚାଷୀମାନଙ୍କ ଠାରୁ ପୂରାଭାଗ ଟଙ୍କା ଆଦାୟ କରି ନେଇଛି । ଖାଲି ସେତିକି ନୁହେଁ, ଆମ ଜମିକୁ ଲାଗିଥିବା ବଚୁସିଂହର ଆଠବିଘା ଜମି ମଧ୍ୟ ମୁଁ କିଣି ନେଇଛି । ଅଧା ଟଙ୍କାତ ଦେଇ ଦେଇଛି । ବାକି ଛଅଶ ଟଙ୍କା ଯୋଗାଡ଼ କରିବା କଥା । ସେହି ଟଙ୍କା ଜ୍ୱାଲା,

ତମେ ଯୋଗାଡ଼ କରିଦେବ ।"

"ସେ ଟଙ୍କା କାକା ଯୋଗାଡ଼ କରିଦେବେ, ଜମି କିଣିବାପାଇଁ ତାଙ୍କ ପାଖରେ କିଛି ଟଙ୍କା ଅଛି ।"

ଏ ସବୁ କଥାଶୁଣି ଜ୍ୱାଲା ମନରେ ଏକ ପ୍ରକାର ଦ୍ୱନ୍ଦ୍ୱ ଆସି ପହଞ୍ଚି ଯାଇଥିଲା, ଏ ପ୍ରକାର କଥାକୁ ଏଡ଼ି ଦେବାପାଇଁ ସେ ହଠାତ୍ ଡାକ ପକାଇଲେ, "ଭିକ୍ଷୁ" !

"ହଁ, ଭାଇ କ'ଣ ?" କହି ଭିକ୍ଷୁ ଘରୁ ବାହାରି ଆସିଲା ।

"ଖୁଡ଼ୀଙ୍କୁ ପଚାରି ଖାଇବାକୁ ହେଲାଣି କି ନାହିଁ ? ବହୁତ ରାତି ହୋଇଗଲାଣି, ମୋତେ ବହୁତ ଭୋକ ବି ଲାଗୁଛି । ପୁଣି ଏମାନେ ବି ଆସିଗଲେଣି । ମୋତେ ବଡ଼ କ୍ଳାନ୍ତ ଲାଗିଲାଣି, ମୁଁ ଖାଇକରି ଶୀଘ୍ର ଶୋଇବି ।"

"ଖାଇବାକୁ କେତେବେଳ ହେବ ଠିକଣା ନାହିଁ, ରୋଷେଇଣୀ ଚାଲି ଗଲାଣି । ଖୁଡ଼ୀ କେଇଖଣ୍ଡ ପୁରି ଛାଣୁଛନ୍ତି । ରାମଲାଲ ଗାଧୋଇ ଆସୁ ଆସୁ ତମେ ଖାଇଦେଇଥା । କାଲି ସକାଳେ ପୁଣି ତମେ ଟୁରରେ ଯିବଟି ?"

"ହଁ, ଠିକ କଥା ମନେ ପକାଇ ଦେଲୁ" କହି ଜ୍ୱାଲାପ୍ରସାଦ ଉଠି ଠିଆହେଲେ ।

ମୁନ୍‌ସି ଶିବଲାଲଙ୍କ ଶ୍ରାଦ୍ଧଦିନ ବଡ଼ି ପାହାନ୍ତାରୁ ପରିବାରର ସବୁଲୋକ ଘୋଡ଼ା-ଗାଡ଼ିରେ ବସି ସୋରୀବରୁ ଫାଫାମଉ ଚାଲିଗଲେ ଓ ସେଠି ଗଙ୍ଗା ସ୍ନାନସାରି ପ୍ରାୟ ଦୁଇ ପ୍ରହର ବେଳକୁ ଘରକୁ ଫେରି ଆସିଲେ । ସେମାନେ ଆସି ପହଞ୍ଚିଲା ବେଳକୁ ଦେଖିଲେ କିଶନଲାଲ ତହସିଲ ଅଫିସଘରେ ସେମାନଙ୍କୁ ଅପେକ୍ଷା କରି ବସି ରହିଛି । ତାକୁ ଦେଖି ରାଧେଲାଲ ଚମକି ପଡ଼ି ପଚାରିଲେ, "କିରେ କିଶନୁ, ତୁ କେମିତି ଆସିଲୁ ? ତୁତ ଆଗରୁ କୌଣସି ଖବର ଦେଇ ନ ଥିଲୁ । ଯଦି ଫାଫାମଉ ଦେଇ ଆସିଲୁ, ତେବେ ସେଇଠିତ ଆମ ସଙ୍ଗେ ଦେଖାକରି ପାରିଥାନ୍ତୁ । ହଠାତ୍ କେମିତି ଚାଲି ଆସିଲୁ ? ଆରେ ଏମିତି କ'ଣ ହୋଇଛୁ, କେଉଁଠି ପଡ଼ି ଯାଇଥିଲୁ କି ?"

"ହଁ, ବଡ଼ ବାପାଙ୍କର ଶ୍ରାଦ୍ଧ ଥିଲା ନା ! ଲମ୍ବରଦାରଣୀ ତ ଛାଡ଼ି ଦେଉ ନ ଥିଲେ । ସେଥିପାଇଁ ମୁଁ ଆଗରୁ ଖବର ଦେଲି ନାହିଁ । କିନ୍ତୁ ପାଞ୍ଚଦିନ ଆଗରୁ ବଡ଼ବାପାଙ୍କୁ ସପନରେ ଦେଖିଲି । ସେ ବଡ଼ ଦୁଃଖିତ ହୋଇ ମୋତେ କହିଲେ, "ଆରେ କିଶନୁ, ଘରେ ସମସ୍ତେ ରହିବେ । ତୁ ଏକା ନ ରହିଲେ ମୋ' ମନରେ ଦୁଃଖ ହେବ ।" ବାପା, ଏହି ସପନ ଯୋଗୁ ମତେ ଭାରି କଷ୍ଟ ଲାଗିଲା । ମୋତେ ଖାଲି ପାଗଳ ପରି ଲାଗିଲା । ତେଣୁ ମୁଁ ସିଧା ଲମ୍ବରଦାରଣୀଙ୍କ ପାଖକୁ ଗଲି । ଲକ୍ଷ୍ମୀଚନ୍ଦ ବି କାନପୁରରୁ ଆସି ଯାଇଥିଲେ । ମୁଁ ତାଙ୍କୁ ସପନ କଥା ଯେତେବେଳେ କହିଲି ଲମ୍ବରଦାରଣୀତ କିଛି ନ କହି ଚୁପ ରହିଲେ, କିନ୍ତୁ ଲକ୍ଷ୍ମୀଚନ୍ଦ ବଡ଼ବାପା ଓ ଜ୍ୱାଲାଭାଇଙ୍କୁ ବହୁତ ବେଇଜତ କଲେ । ମୁଁ ବି

ସମ୍ଭାଳି ନ ପାରି ମୋ ପାଟିରେ ଯାହା ଆସିଲା କହିଲି । ମୋ ଜବାବ ଶୁଣି ଲକ୍ଷ୍ମୀଚନ୍ଦ ଗୁଣ୍ଡାଜଣ ଲୋକଆଣି ମୋତେ ପିଟେଇଲେ । ତିନିଦିନ ଯାଏଁ ଘରୁ ଉଠି ପାରିଲି ନାହିଁ । ପଥଖର୍ଚ୍ଚ ନ ଥିବାରୁ ରାତିରେ ଘାଟମପୁରରୁ ଚାଲି ଆସିଲି ।''

କିଶନଲାଲର ଦେହଯାକ ମାଡ଼ ଦାଗ ଦେଖାଯାଉ ଥିଲା ଓ କେତେକ ଜାଗାରେ ପଟି ମଧ୍ୟ ବନ୍ଧା ହୋଇଥିଲା । ରାଧେଲାଲ ଜ୍ୱାଲାପ୍ରସାଦଙ୍କୁ କହିଲେ, ''କ'ଣ ଶୁଣୁଛ ଜ୍ୱାଲା ?''

ଜ୍ୱାଲାପ୍ରସାଦ ମୁଣ୍ଡ କୁଣ୍ଡାଇ ହେଉ ହେଉ କହିଲେ, ''ହଁ, ସବୁ ଶୁଣିଲି । କିନ୍ତୁ ବିଶ୍ୱାସ ହେଉନାହିଁ । ମୁଁ ଜାଣେ ଲକ୍ଷ୍ମୀଚନ୍ଦ ଏକଥା କେବେ କରିପାରିବ ନାହିଁ । କିଶନ୍ରୁ କଥା କେବେ ସତ ନୁହେଁ ।''

କିଶନଲାଲ ସେଠି ପାଖରେ ଠିଆ ହୋଇ ଚୁପ୍‌ଚାପ୍ ସବୁ ମନ ଦେଇ ଶୁଣୁଥିଲା । ବର୍ତ୍ତମାନ ସେ ଆଉ ସମ୍ଭାଳି ନ ପାରି ଫେଁ କରି ହସି ଦେଇ କହିଲା, ''ଆରେ କିଶନ୍ରୁ, ଭାଇରତ ସତ ସଙ୍ଗେ ମୋଟେ ପଡ଼େ ନାହିଁ । ମାଡ଼ ତ ଖାଇଛୁ ନିଶ୍ଚୟ, କେଉଁଠି କ'ଣ ବଦ୍‌ମାସୀ କରି ମାଡ଼ ଖାଇଛୁ, ଅଥଚ ଲକ୍ଷ୍ମୀଚନ୍ଦଙ୍କର ବଦନାମ କରୁଛୁ ।''

ରାଧେଲାଲ କିଶନଲାଲକୁ ଏକ ଚାପୁଡ଼ା ଦେଇ କହିଲେ, ''ଚୁପ ହେଉଛୁ ନା ଦେଖିବୁ ! ନିଜଭାଇଙ୍କ ସଙ୍ଗେ ଶତ୍ରୁତା, ଯେତେବେଳେ ଦେଖିବ ସେହିମାନଙ୍କୁ ଦୋଷ ଦେଉଥିବ ।''

ରାମଲାଲ ଓ ଶ୍ୟାମଲାଲ କିଶନଲାଲକୁ ଆହୁରି କ'ଣ ଗାଳି ଦେବାକୁ ଯାଉଥିଲେ, ଏତିକିବେଳେ ଜ୍ୱାଲାପ୍ରସାଦ କହିଲେ, ''କିଶନଲାଲ, ତୁ ଏଠୁ ଯା' । କେତେଥର ମୁଁ କହିଛି ପରକଥାରେ କଥା କହିବା ଖରାପ । ତାପରେ ସେ କିଶନଲାଲକୁ କହିଲେ, ''ଆଚ୍ଛା ତୁ ଆଗ ଗାଧୋଇ ପାଧୋଇ ଲୁଗାପଟା ବଦଳି ଖିଆ ପିଆ କର । ତାପରେ ଦେଖିବା କଣ କରିବା ।''

ସେଦିନ ଜ୍ୱାଲାପ୍ରସାଦ କୁଟିରେ ଥିଲେ । ତହିଁ ଆର ଦିନ କଚେରୀରେ ପହଞ୍ଚିବା ପରେ ଜେଦେଇଙ୍କଠାରୁ ସେ ଖଣ୍ଡେ ଚିଠି ପାଇଲେ, ସେଥିରେ ସେ ଲେଖିଥିଲେ କେତେକ କାରଣରୁ ସବୁକଥା ସେ ଚିଠିରେ ଖୋଲି ଲେଖି ପାରିବେ ନାହିଁ । କିଶନ ଲାଲକୁ ଚାକିରିରୁ ବାହାର କରି ଦିଆଯାଇଛି । ସେ ଯାହା ସବୁ କହିବ ସେଥିରେ ଯେମିତି ଜ୍ୱାଲାପ୍ରସାଦ ବିଶ୍ୱାସ ନ କରନ୍ତି । ଶ୍ରାବଣ ମାସରେ ସେ ଏହ୍ଲାବାଦ ଆସିବେ । ସେଇଠୁ ସୋରାବ ଆସି ତାଙ୍କ ସଙ୍ଗେ ଦେଖା କରିବେ ।

ମୁନସି ଶିବଲାଲଙ୍କ ଶ୍ରାଦ୍ଧ ପରେ ଜ୍ୱାଲାପ୍ରସାଦ ଯେତେବେଳେ ଘରଆଡ଼କୁ ଚାହିଁଲେ, ସବୁ ତାଙ୍କୁ କେମିତି ଖାପଛଡ଼ା ଲାଗିଲା । ନିଜ ଜନ୍ମ ରାଧେଲାଲଙ୍କର ପୁରା ପରିବାର ଆସି

ତାଙ୍କ ଘରେ ଯୁଟି ଯାଇଥିଲେ । ତହସିଲଦାରଙ୍କର ଏତେ ବଡ଼ ଘରଟା ତାଙ୍କୁ ଖୁବ୍ ଶ୍ରେଟିଆ ଜଣା ପଡ଼ୁଥିଲା । ସତେ ଯେମିତ ତାଙ୍କ ନିଜ ଘରେ ତାଙ୍କ ନିଜର କୌଣସି ଅସ୍ତିତ୍ୱ ନ ଥିଲା ।

ଦିନେ ଜ୍ୱାଲାପ୍ରସାଦ କାମସାରି କଚେରୀରୁ ଉଠିବା ବେଳକୁ ପଣ୍ଡିତ ବେଚୁ ମିସିର ଆସି କହିଲେ, "ଜଣା ପଡ଼ୁଛି ଏବର୍ଷ ବହୁତ ଆଗରୁ ବର୍ଷା ହୋଇଯିବ । ଆଷାଢ଼ ମାସର ପ୍ରଥମ ପକ୍ଷ ଶେଷ ନ ହେଉଣୁ ଦୁଇପ୍ରହରୁ ଚାରିଆଡ଼େ ବାଦଲ ଘେରି ରହିଲାଣି । ଲୁ' ବନ୍ଦ ହୋଇ ପବନ ପୁରେଇ ବହିଲାଣି ।"

ଜ୍ୱାଲାପ୍ରସାଦ ଆକାଶକୁ ଚାହିଁ କହିଲେ, "ହଁ, ଆଜିତ ପାଗ ଖୁବ୍ ବଢ଼ିଆ ହୋଇ ଯାଇଛି । କିନ୍ତୁ ଆଷାଢ଼ ଅଧାରୁ ତ ସାଧାରଣତଃ ବର୍ଷା ଆରମ୍ଭ ହୋଇ ଯାଇଥାଏ । ଏବର୍ଷ ବହୁତ ଗରମ ବି ପଡ଼ୁଛି ।"

ବେଚୁ ମିସିର ଟିକିଏ ମୁରୁକି ହସା ଦେଇ କହିଲେ, "ମନେ ହେଉଛି ଏବର୍ଷ ହନୁମାନଜୀ ମନ୍ଦିର ତୋଟାରେ ବହୁତ ଆମ୍ବ ହୋଇଥିବ । କାଲି ଏଠୁ ପାଞ୍ଚ ଗାଡ଼ି ଆମ୍ବ ବିକ୍ରୀ ହେବା ପାଇଁ ଆହ୍ଲାବାଦ ଯାଇଛି । ଯାହାହେଉ ଆପଣଙ୍କ ଭାଇ ଶ୍ୟାମଲାଲ ତ ଏକପ୍ରକାର ଭଲ ରୋଜଗାର ଆରମ୍ଭ କରି ଦେଇଛନ୍ତି ।"

ଜ୍ୱାଲାପ୍ରସାଦ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇ ବେଚୁ ମିସିରଙ୍କୁ ଚାହିଁ କହିଲେ, "ଶ୍ୟାମୁର ପାଞ୍ଚ ଗାଡ଼ି ଆମ୍ବ ପୁଣି ଆହ୍ଲାବାଦ ବିକ୍ରୀ ହେବା ପାଇଁ ଯାଇଛି । ମୋତେ ତ କିନ୍ତୁ କିଛି ଜଣାନାହିଁ । ସେହି ପୁରୁଣା ଉଜୁଡ଼ା ତୋଟାଟାରେ ଏତେ ଆମ୍ବ କୁଆଡ଼ୁ ଆସିବ ଯେ ଥରକେ ପାଞ୍ଚ ଗାଡ଼ି ବାହାରିବ ?"

"ମୁଁ ବି ଜାଣେ ନାହିଁ, ମୋତେ ବି ତ ଆଶ୍ଚର୍ଯ୍ୟ ଲାଗୁଛି । ତୁମରୁ ତ କହୁଥିଲା ଖୁବ୍ କମ୍ ଆମ୍ବ ଆସିଥିଲା । ଚାଲନ୍ତୁ, ଭଲ ପାଗ ହୋଇଛି, ଟିକିଏ ବୁଲି ଆସିବା । ଶନିବାରଟା ହାଟ ବଜାର କିଛି ନାହିଁ । ଚାଲନ୍ତୁ ଆଜି ମହାବୀର ଦର୍ଶନ କରି ଆସିବା ।"

ବେଚୁ ମିସିରଙ୍କ ମୁହଁରେ ବ୍ୟଙ୍ଗଭରା ହସ ଦେଖି ଜ୍ୱାଲାପ୍ରସାଦ ଟିକିଏ ବିରକ୍ତ ହେଲା ପରି କହିଲେ, "କ'ଣ କଥା କଣ ? ଆପଣ ସଫା ସଫା କହୁ ନାହାନ୍ତି କାହିଁକି ?"

"କ'ଣ କହିବା ଜ୍ୱାଲାବାବୁ, କଥା ତ ସେମିତି କିଛି ନାହିଁ । ଖାଲି ଆପଣଙ୍କର ବଦନାମ ହେଉଛି ବୋଲି କହିବା କଥା । ଏବେ ଖବର ଆସୁଛି ମହାବୀରଜୀ ମନ୍ଦିର ତୋଟାର ଆଖପାଖ ତୋଟାମାନଙ୍କରୁ ଆମ୍ବ ଚୋରି ହେଉଛି । କେହି କିଏ କରୁଛି ଲୋକେ ସନ୍ଧାନ ପାଇ ସାରଲେଣି, ସମସ୍ତେ ଶ୍ୟାମଲାଲଙ୍କ ନାଁ କହୁଛନ୍ତି । ତା'ଛଡ଼ା ଶ୍ୟାମଲାଲ ଯେତେବେଳେ ଆହ୍ଲାବାଦରେ ବିକିବା ପାଇଁ ପାଞ୍ଚ ଗାଡ଼ି ଆମ୍ବ ପଠାଇ-ଦେଲେ, ସେତେବେଳେ ଲୋକଙ୍କର ସନ୍ଦେହ ପକ୍କା ହୋଇଗଲା । ଯଦ୍ୱାରା ଥାନାବାବୁ

ଶାହ୍ବାବୁଦ୍ଦିନ ଘଟଣାକୁ ଚପାଇ ଦେଇଛନ୍ତି, ତଥାପି ସେ ଶ୍ୟାମଲାଲଙ୍କୁ ଜଣାଇ ସବୁକଥା ପତ୍ରରେ ଦେଇଛନ୍ତି । ଶ୍ୟାମଲାଲ କହୁଛନ୍ତି ଯେତେ ଆମ୍ବ ସେ ଆହ୍ଲାବାଦ ପଠାଇଛନ୍ତି ସବୁ ତାଙ୍କ ମଧ୍ଵର ତୋଟା ଆମ୍ବ ।

ଏକଥା ଶୁଣି ଜ୍ୱାଲାପ୍ରସାଦଙ୍କ ମୁଣ୍ଡରେ ପଥର ପଡ଼ିଲା ପରି ଲାଗିଲା । ସେ କହିଲେ, "ଆଚ୍ଛା, ଏମିତି କଥା, ତାହେଲେ ଅନୁସନ୍ଧାନ କରି ବୁଝିବ ।"

ହନୁମାନଙ୍କ ମନ୍ଦିର ପଛପଟ କୂଅ ପାଖ ଆମ୍ବଗଛ ତଳେ ଧୂଣ୍ଡୀ ସ୍ୱାମୀଙ୍କର ଧୂନି ଲାଗିଥିଲା । ସ୍ୱାମୀଙ୍କ କଥାରେ କିଶନଲାଲ ସେଠି ଖଣ୍ଡିଏ ଗୁଳ ଗୁଣ୍ଡି କରି ଦେଇଥିଲା । ସେ ଥିଲା ସ୍ୱାମୀଙ୍କର ପ୍ରଧାନ ଶିଷ୍ୟ । ତା ସଙ୍ଗରେ ଗାଁର ଆଉ ଦୁଇ ଚାରିଜଣ ଯୁବକ ଲୋକ ବି ଥିଲେ । କିଶନଲାଲ ଗଞ୍ଜେଇ ଚିଲମ ଭର୍ତ୍ତି କରି ସ୍ୱାମୀଜୀଙ୍କୁ ଦେଲା । ସ୍ୱାମୀଜୀ ଏତେ ଜୋରରେ ଚିଲମ ଟାଣି ଦେଲେ ଯେ ନିଆଁ ହାତେ ଉଚ୍ଚ ଉଠିଗଲା ଓ ତାଙ୍କ ଆଖି ରଡ଼ ନିଆଁ ପରି ଲାଲ ହୋଇଗଲା । ତାପରେ ସେ "ନିଅ ଭକ୍ତ, ପ୍ରସାଦ ପାଅ" ବୋଲି କହି କିଶନଲାଲ ହାତକୁ ଚିଲମ ବଢ଼ାଇ ଦେଲେ ।

ଠିକ୍ କିଶନଲାଲ ଚିଲମ ଟାଣୁଛି ଏହି ସମୟରେ ସ୍ୱାମୀଜୀ ଦେଖିଲେ ଜ୍ୱାଲାପ୍ରସାଦ ଓ ବେଚୁ ମିସିର ଦୁହେଁଯାକ ଆସୁଛନ୍ତି । ପାଖ ଲୋକ ବି ତହସିଲଦାର ବାବୁଙ୍କୁ ଚିହ୍ନିପାରି ଉଠି ଛିଡ଼ା ହେଲେ । ସ୍ୱାମୀଜୀ ଧୂନିରେ ଖଣ୍ଡେ କାଠ ପକାଇ ଚୁପ ଚୁପ୍ କହିଲେ, "ଆରେ ଦେଖ, ତୋ' ବଡ଼ ଭାଇ ଆସୁଛନ୍ତି ।" ତା'ପରେ ସେ ବଡ଼ ପାଟିରେ ଶୁଣାଇଲା ପରି କହିଲେ, "ବଡ଼ ପ୍ରତାପୀ ଲୋକ ସେ, ଧର୍ମ, କର୍ମ, ନ୍ୟାୟ ବୁଝିବା ଲୋକ ମଧ୍ୟ । କିନ୍ତୁ ଟଙ୍କା ପଇସାର ଟିକିଏ ଅଭାବ । କିନ୍ତୁ ଟଙ୍କା, ସୁନା, ହୀରା, ନୀଳା ବହୁତ ଧନ ତାଙ୍କୁ ମିଳିବ ।" ଯା ଭିତରେ ଜ୍ୱାଲାପ୍ରସାଦ ଓ ବେଚୁ ଦୁହେଁଯାକ ଧୂନି ପାଖରେ ପହଞ୍ଚି ଯାଇଥିଲେ । ଧୂଣ୍ଡୀ ସ୍ୱାମୀ ଜ୍ୱାଲାପ୍ରସାଦଙ୍କୁ ଚାହିଁ କହିଲେ, "ବିଭୂତି ନିଅ ।" ତାପରେ ନିଆଁରୁ ଟିକିଏ ବିଭୂତି ଆଣି ତାଙ୍କ ହାତରେ ଦେଇ କହିଲେ, "ମୁଠା ବନ୍ଦ କର । ଆଚ୍ଛା ବର୍ତ୍ତମାନ ମୁଠା ଖୋଲି କରି ଦେଖ ।"

ଜ୍ୱାଲାପ୍ରସାଦ ନିଜର ହାତମୁଠା ଖୋଲି ଦେଇ ଅବାକ୍ ହୋଇ ରହିଗଲେ । ଦେଖିଲେ ପାଉଁଶ ଜାଗାରେ ହାତମୁଠାରେ ଏକ ଲାଲ ପଥର, ବେଚୁ ମିସିର ଟିକିଏ ଆଗେଇ ଯାଇଁ ପଥର ଦେଖି କହିଲେ, "ଆରେ ଇଏ ତ ଗୋମେଦ ।"

ଧୂଣ୍ଡୀ ସ୍ୱାମୀ ହସି ଦେଇ କହିଲେ, "ତୋର ବର୍ତ୍ତମାନ କେତୁ ଖରାପ ଅଛି, ସେଥି-ପାଇଁ ଭୋଳାନାଥ ତୋତେ ଏହି ଗୋମେଦ ଦେଇଛନ୍ତି । ଯାକୁ ମୁଦି ଦେହରେ ପିନ୍ଧିଲେ ଛଅମାସ ଭିତରେ ତୋତେ ଗୁପ୍ତ ଧନ ମିଳିବ ।"

ଏ ସବୁ ଦେଖି ବେଚୁ ମିସିରଙ୍କର ଜ୍ୱାଲାଙ୍କ ପ୍ରତି ମନେ ମନେ ଈର୍ଷା ହେଲା । ସେ

ସେ ଜ୍ୱାଲାପ୍ରସାଦଙ୍କୁ ତୋଟା ଦେଖାଇବା ପାଇଁ ଆଣିଥିଲେ ସେ କଥା ଭୁଲିଗଲେ । ସେ ମନେ ମନେ ଅପେକ୍ଷା କରୁଥିଲେ ଧୂର୍ଣ୍ଣୀ ସ୍ୱାମୀ ତାଙ୍କୁ କେମିତି କିଛି ବିଭୂତି ଦେବେ । ଏହି ସମୟରେ ଦେଖାଗଲା ତୋଟାର ଦକ୍ଷିଣ ପଟେ ଜୁମନ ମିଆଁର ଯେଉଁ ଆମ୍ବ ବଗିଚା ଥିଲା ସେହି ତୋଟାରୁ ଜୁମନ ମିଆଁ ଓ ଦୁଇ ତିନିଜଣ ଲୋକ ଶ୍ୟାମଲାଲକୁ ଘୋଷାରି ଘୋଷାରି ଆଣୁଛନ୍ତି ଓ ଜୁମନ ମିଆଁ ଖୁବ୍ ପାଟିକରି କହୁଛି "ଚୋର କାହିଁକା, ଆଜି ଧରା ପଡ଼ିଛୁ । ବଡ଼ ତହସିଲଦାରଙ୍କ ଭାଇ ହୋଇ ବୁଲୁଛୁ, ଆଉ ଥରେ ବଗିଚାରେ ଦେଖିଲେ ତୋ ହାତ ଗୋଡ଼ ଭାଙ୍ଗି ଗୁଣ୍ଡା କରିଦେବି । ସମ୍ଭାଳି ସ୍ୱାକୁ ହାମଦୁ, ବଗିଚାର ଆମ୍ବ ଅଧା ହୋଇ ଗଲାଣି ।" ସ୍ୱା ଭିତରେ ଜ୍ୱାଲାପ୍ରସାଦ ଓ ବେଚୁ ମିସିରଙ୍କ ଉପରେ ନଜର ପଡ଼ି ଯିବାରୁ ଶ୍ୟାମଲାଲକୁ ଘୋଷାରି ଘୋଷାରି ତାଙ୍କ ପାଖକୁ ନେଇ ଯାଇ କହିଲା, "କ'ଣ ତହସିଲଦାର ସାହେବ; ମୋ ଆମ୍ବକୁ ଜଗିବାକୁ ସରକାର କ'ଣ ସ୍ୱାକୁଇ ରଖିଛନ୍ତି ? ଇଏ ଦିନଯାକ ଆମ୍ବର ସନ୍ଧାନ କରି ରାତିରେ ଚୋରି କରୁଛି । ଆଜି ସ୍ୱାକୁ ଧରିଛୁ । ଏଇ ଚୋର ମୋ କଲମି ବଗିଚାକୁ ପୂରା ଉଜାଡ଼ି ଦେଲାଣି ।"

ଏଇ ପାଟି ତୁଣ୍ଡ ଶୁଣି ମନ୍ଦିରର ସବୁ ଲୋକ ଆସି ଏକାଠି ଜମିଗଲେ । ଜ୍ୱାଲାପ୍ରସାଦ ଓ ବେଚୁ ମିସିର ବର୍ତ୍ତମାନ ସନ୍ନ୍ୟାସୀଙ୍କୁ ଛାଡ଼ି ଏହି କଥାରେ ଦୃଷ୍ଟି ଦେଲେ । କାରଣ ଏହି କଥାର ମତ ମିଛ ବୁଝିବା ପାଇଁ ବେଚୁ ମିସିର ଜ୍ୱାଲାପ୍ରସାଦଙ୍କୁ ସେଠିକି ନେଇ ଆସିଥିଲେ । ବେଚୁ ମିସିର ଜୁମନ ମିଆଁକୁ କହିଲେ, "ଶୁଣ ଜୁମନ ମିଆଁ, ଏତେ ରାଗିବାର କ'ଣ ଅଛି ? ତୁମେ ତ ଶ୍ୟାମଲାଲକୁ ଆମ୍ବ ତୋଳିବାର ଆଖିରେ ଦେଖି ନାହିଁ । ଆଚ୍ଛା ତମେ ଯାଅ, ଭବିଷ୍ୟତରେ ତମର ଆଉ କୌଣସି କ୍ଷତି ହେବ ନାହିଁ । ଏହି କଥାକୁ ବୁଝିବା ପାଇଁ ତହସିଲଦାର ସାହେବ ନିଜେ ଏଠିକି ଆସିଛନ୍ତି ।" ତାପରେ ସେ ଜମା ହୋଇଥିବା ଲୋକଙ୍କୁ ଗାଳି ଦେଇ କହିଲେ, "କାହିଁକି ଏଠି ସବୁ ଜମା ହୋଇଛ ? ଯା' ଏଠୁ ପଳା ।"

ଜୁମନ ମିଆଁ ନିଜ ଲୋକଙ୍କୁ ସାଙ୍ଗରେ ଧରି ବଗିଚାକୁ ଫେରିଗଲା ଓ ତା' ପରେ ପରେ ସବୁ ଲୋକ ଚାଲିଗଲେ । ଜ୍ୱାଲାପ୍ରସାଦ ମୁହଁକୁ ତଳକୁ କରି ନିସ୍ତବ୍ଧ ହୋଇ ଠିଆ ହୋଇଥିଲେ । ଧୂର୍ଣ୍ଣୀ ସ୍ୱାମୀ କହିଲେ, "କ'ଣ ଭାବୁଛ ବାବୁ, ଏଥିରେ ଏତେ ଚିନ୍ତା କରିବାର କ'ଣ ଅଛି ? ସଂସାରରେ ତ ଏମିତି ସବୁ ଚାଲିଛି । ଯାହା ଭାଗ୍ୟରେ ଯାହା ଅଛି ତାକୁ ତାହାହିଁ ମିଳିବ । ଏହି ଶ୍ୟାମଲାଲର ଭାଗ୍ୟ ବହୁତ ଉଚ୍ଚ । ସମ୍ପତ୍ତି ତ ତା ପାଖକୁ ଧାଇଁ କରି ଆସିବ ।" ତାପରେ ସ୍ୱାମୀ ବେଚୁ ମିସିରଙ୍କୁ କହିଲେ, "ତୁ ବି କ'ଣ କହିବୁ, ଆଚ୍ଛା ତୁ ପ୍ରସାଦ ନେ । ଭାବୁଛୁ କଣ ବାବାଜୀ ତୋ ପ୍ରତି ପକ୍ଷପାତ କରୁଛନ୍ତି ବୋଲି ?" ଏମିତି କହି ଧୂନିରୁ ଟିକିଏ ପାଉଁଶ ଆଣି ତାଙ୍କ ହାତ ମୁଠାରେ ରଖି ମୁଠା

ବନ୍ଦ କରିଦେଲେ । ମୁଠା ଖୋଲିଲା ବେଳକୁ ହାତରେ ଗୋଟାଏ ମଣି । ତାପରେ ଧୂର୍ଣ୍ଣୀ ସ୍ୱାମୀ ହସି ହସି କହିଲେ, "ମଙ୍ଗଳ ଗ୍ରହ ଖରାପ ଅଛି, ମଙ୍ଗଳ ! ସାନଭାଇକୁ ହନୁମାନଜୀଙ୍କ ସେବାରେ ରଖି ଦେଇ ଭଲ କରିଛୁ । ନୋହିଲେ ତୋର ସବୁ ନଷ୍ଟ ହୋଇଯାଇଥାଆନ୍ତା । ଏହି ମଣିକୁ ପିନ୍ଧି ମଙ୍ଗଳ ବ୍ରତ କର ଓ ପ୍ରତିଦିନ ସନ୍ଧ୍ୟାରେ ଆସି ମହାବୀରଙ୍କ ଦର୍ଶନ କର ।"

ଏ ପର୍ଯ୍ୟନ୍ତ ବିଶନଲାଲ ସେଠି ଛିଡ଼ା ହୋଇଥିଲା । ସେ କହିଲା ସ୍ୱାମୀଜୀ ତ ବଡ଼ ଇନ୍ଦ୍ରଜାଲ କରୁଛନ୍ତି । ମଣି, ମୁକ୍ତା, ହୀରା, ନୀଳା ବାଣ୍ଟୁଛନ୍ତି, ହାତ ମୁଠାରୁ ବାହାର କରୁଛନ୍ତି । ତାପରେ ସେ ଜ୍ୱାଲାପ୍ରସାଦଙ୍କୁ କହିଲା, "ଭାଇ, ଆପଣ କ'ଣ ଏ ଜାଲିଆ କଥାରେ ପୁଣି ପଡ଼ୁଛନ୍ତି ? ଶ୍ୟାମୁ ଭାଇ ଓ କଣ୍ଟନ ଭାଇଙ୍କୁ ହାତମୁଠାରେ ରଖି ଇଏ ଏଠି ଆମ ଟୋଟା ଭିତରେ ଗୋଟାଏ ଆଡ୍ଡା ଜମେଇଛି । ଦିନ ରାତି ବସି ଗଞ୍ଜେଇ ଟାଣୁଛି, ଏବେ ତ ସ୍ତ୍ରୀ ଲୋକମାନେ ଏଠିକି ଆସିବାକୁ ଆରମ୍ଭ କଲେଣି । କ'ଣ ଘୁମରୁ ପଣ୍ଡିତେ—, ମୁଁ ଠିକ୍ କହୁଛି କି ନାହିଁ ?"

ଘୁମରୁ ମହାବୀରଙ୍କ ସେବାରେ ଆଉ ଜଣକୁ ଲଗାଇ ଦେଇ ମଜା ଦେଖିବା ପାଇଁ ସେଠି ଆସି ଠିଆ ହୋଇଥିଲା । ସେ କହିଲା, "ଭାଇ, ଏ ଲୋକ ଆମକୁ ଏଠି ବଡ଼ ବିପଦରେ ପକାଇ ଦେଇଛି । ଏଠି ଦିନକୁ ଦିନ ଗୁଣ୍ଡା ସବୁ ଆସି ଜମା ହେଉଛନ୍ତି । ଆମକୁ ମହାବୀରଜୀଙ୍କ ଭୋଗରୁ ଅଧା ମାଗୁଛି ।"

ଜ୍ୱାଲାପ୍ରସାଦ ହତବୁଦ୍ଧି ଓ ମର୍ମାହତ ହୋଇ ଏ ସବୁ ଶୁଣୁଥିଲେ । କିନ୍ତୁ ମହାବୀରଜୀଙ୍କ ଭୋଗ ପ୍ରଶ୍ନ ଯେତେବେଳେ ଉଠିଲା, ବେଚୁ ମିସିର ଚମକି ପଡ଼ି ସ୍ୱାମୀଜୀଙ୍କୁ ପଚାରିଲେ, "ଆପଣ ଏଠି ଆଉ କେତେକାଳ ରହିବେ ବୋଲି ଭାବୁଛନ୍ତି ସ୍ୱାମୀଜୀ ?"

"ଭୋଳାନାଥଙ୍କ ଯେତେଦିନ ଇଚ୍ଛା । ଯେତେବେଳେ ସେ ଆଦେଶ ଦେବେ ଧୂର୍ଣ୍ଣୀ ଏ ସ୍ଥାନ ଛାଡ଼ି ଯା, ସେତେବେଳେ ମୁଁ ଚାଲିଯିବି । ମୁଁ ବିଷପାନ କରିବା ଲୋକ, ଏମାନେ ଯାହା ସବୁ କହୁଛନ୍ତି ମୁଁ ତାକୁ ହଜମ କରି ଦେଉଛି । କିନ୍ତୁ ଶଙ୍କର ଜାଣନ୍ତି କେତେବେଳେ ପୁଣି ମୋର ତୃତୀୟ ନେତ୍ର ଖୋଲିବ ଓ ଏ ଟୋକାଏ ସବୁ ସେଥିରେ ଭସ୍ମ ହେବେ ।"

ସ୍ୱା ଭିତରେ ଜ୍ୱାଲାପ୍ରସାଦ ପ୍ରକୃତିସ୍ଥ ହୋଇ ଯାଇଥିଲେ । ସେ କଠୋର କଣ୍ଠରେ କହିଲେ, "ଭଗବାନ ଶଙ୍କରଙ୍କ ଇଚ୍ଛା ତମେ କାଲି ସକାଳ ଭିତରେ ଏଠୁ ବାହାରି ଯିବ । କାଲି ସନ୍ଧ୍ୟାବେଳେ ମୁଁ ପୁଣି ଏଠିକି ବୁଲି ଆସିବି । ଯଦି ଦେଖିବି ତୁମେ ଏଠୁ ନ ଯାଇଛ ତା ହେଲେ ତୁମକୁ ହାଜତରେ ଢୁକାଇ ଦେବି । ନାଏବ ସାହେବ, ଥାନା ବାବୁ ଶାହାବୁଦ୍ଦିନଙ୍କୁ କହି ଦେବେ ଆଜି ଦୁଇଜଣ ପୋଲିସ ଏଠି ଜଗାଇ ଦେବେ ।"

## ତେର

ଛନକା ବସି ଧକେଇ ହେଉଥାଏ, ପାଟିରୁ ତାର କଥା ବାହାରୁ ନ ଥାଏ । ଯମୁନା ଗୋଡ଼ ପାଖରେ ବସି ଏଣୁ ତେଣୁ ଗୁଡ଼ାଏ କ'ଣ ସେ କହିଲା, "ହେ ଭଗବାନ, କ'ଣ ହେଲା ସତେ । ସେଇ ପରା ସବୁ କରିବା ଲୋକ ? ହେ ଗଙ୍ଗା ମାଈ ! ମୋ ଜ୍ୱାଲକୁ ଓ ଗଙ୍ଗାକୁ ତୁ ରକ୍ଷାକର ।"

ଯମୁନା ବ୍ୟସ୍ତ ହୋଇ ପଚାରିଲା, "କ'ଣ ହେଲା, କେଉଁ ବିପଦ ଆସି ପଡ଼ିଛି ? ଆରେ କହ ଭଲା, କାହିଁକି ଏତେ ବ୍ୟସ୍ତ ହେଉଛୁ ?"

"ଆଖି ଖୋଲି କରି ଦେଖୁନ, ଚାରିଆଡ଼େ କେମିତି ବିପଦ ଘେରି ରହିଛି । ତମେ ତ ପାଟରାଣୀ ହୋଇ ଆଖିବୁଜି ଶୋଇଛ, ତମ ରାଜ୍ୟ ତେଣେ ଲୋକେ ଲୁଟି କରୁଛନ୍ତି । ମୁଁ ତ ସେଗୁଡ଼ା ସହି ପାରୁନାହିଁ, ମୋତେ ସବୁ ଅନ୍ଧାର ଦିଶୁଛି ।

ଛନକା ଯେଉଁ ଭୂମିକାରେ କଥା କହିଲା, ଯମୁନାକୁ ତାହା ଅଜଣା ନ ଥିଲା । ସେ ମୁହଁ ଫୁଲାଇ କହିଲା, "ଛନକା ଖୁଡ଼ି, ତମେ ତ ନିତି ଏଇକଥା କହୁଛ । ମୁଁ ବି ତାଙ୍କୁ ସେଇକଥା କହୁଛି । କିନ୍ତୁ ସେ କହୁଛନ୍ତି, ସମସ୍ତେ ନିଜ ନିଜ ଭାଗ ଖାଉଛନ୍ତି । କିନ୍ତୁ ତମେ ସବୁଦିନ ନୂଆ ନୂଆ କଥା କହୁଛ । ବଡ଼ ହଇରାଣ ସତେ ।"

ଛନକା ରାଗରେ ଛିଡ଼ା ହୋଇପଡ଼ି କହିଲା, "ହଁ ରାଣୀ, ମୁଁ କ'ଣ ମନରୁ ଗଢ଼ି କହୁଛି । ତମ ବଡ଼ ଯା'ଙ୍କର ପରା ଆଜି ସେରେ ଓଜନର ହାର, ପାଞ୍ଚପା ଓଜନର ଗୋଡ଼ ବଳା ବଣିଆ ଘରୁ ତିଆରି ହୋଇ ଆସିଛି । ମୁଁ ଆଉ ମନରୁ ଗଢ଼ୁଛି କ'ଣ ? ତମେ ଆଖି ବୁଜିକରି ବସ, ସେମାନେ ଖୁବ୍ ଲୁଟିକରି ଖା'ନ୍ତୁ । ଏହି ଗଙ୍ଗାକୁ କାଙ୍ଗାଳ କରି ଛାଡ଼ି ଦିଅନ୍ତୁ ।"

ଯମୁନା ଚମକି ପଡ଼ି ଖଟ ଉପରୁ ଓହ୍ଲାଇ ପଡ଼ି କହିଲା, "ଛନକା ଖୁଡ଼ି, ତମକୁ ହାତ ଯୋଡ଼ି କହୁଛି, ତମେ ମୋ କଥାକୁ ଭୁଲ ବୁଝନାହିଁ । ତମେ ସତ କହୁଛ ଦାଦା ଏମିତି ଗହଣା ଗଢ଼େଇ ଆଣିଛନ୍ତି ? କେବେ ଗଢ଼େଇ କରି ଆଣିଲେ, ତମେ କ'ଣ ଆଖିରେ ଦେଖିଛ ?"

ଛନକା ଏ ପ୍ରଶ୍ନର ଉତ୍ତର କିଛି ଦେଲା ନାହିଁ । କାରଣ ସେ ଦେଖିଲା ଶ୍ୟାମଲାଲର ସ୍ତ୍ରୀ ସେହି ଘର ଆଡ଼କୁ ଚାଲି ଆସୁଛି । ବରଂ ସେଠୁ ଚାଲିଯିବା ଭଲ ବୋଲି ସେ

ଭାବିଲା । ଛୁନକୀ ଚାଲିଯିବା ପରେ ଶ୍ୟାମଲାଲର ସ୍ତ୍ରୀ କହିଲା, "ନାନୀ, ବଡ଼ ଅପାଙ୍କର ଗୋଡ଼ର ବଳା ଏବଂ ହାର ଏଇ ବର୍ତ୍ତମାନ ତିଆରି ହୋଇ ଆସିଲା । ମୁଁ ତ ସେହି ଦୁଇ ଟାସ୍କ ବଖରାରେ ରହେ, ଦରଜା ପାଖରେ ଦାଦା କହୁଥିଲେ ଶୁଣିଲି ହାର ସେରେ ଓଜନର ଓ କଡ଼ା ପାଞ୍ଚ ପା'ର । କିନ୍ତୁ ଏ ଗହଣା କାହାପାଇଁ ଆସିଛି ମୁଁ ଜାଣିନାହିଁ ।"

ଶ୍ୟାମଲାଲ ସ୍ତ୍ରୀର କିଛି ପିଲାପିଲି ନ ଥିଲା, ତେଣୁ ପରିବାର ଭିତରେ ତା'ପ୍ରତି କାହାରି ବେଶି ଆଦର ନ ଥିଲା । ତା ଛଡ଼ା ସେ ହୃଷ୍ଟପୁଷ୍ଟ ହେଲେ ବି ଟିକିଏ ତେଙ୍ଗେଇ, କାଳୀ ମଧ୍ୟ ଓ ଦେଖିବାକୁ ମୋଟେ ସୁନ୍ଦର ନୁହେଁ । ତା ଛଡ଼ା ଖୁବ୍ ମୁହଁ-ଖୋର ବି । କିନ୍ତୁ କାମ ଦାମ ବିଷୟରେ ଖୁବ୍ ପରିଶ୍ରମୀ, ଖୁବ୍ ନିପୁଣ । ସାରା ପରିବାର ପାଇଁ ସେ ଏକା ରୋଷାଇ କରୁଥିଲା । ଏକା ଏକା ଘରଦ୍ୱାର, ବାସନ ପତ୍ର ସଫା କରୁଥିଲା । ସବୁ ସତ୍ତ୍ୱେ ଘରର ସବୁ ଅପମାନ, ସବୁ ଅନାଦର ତାକୁଇ ସହିବାକୁ ପଡ଼ୁଥିଲା । କେବଳ ଯମୁନାଠାରୁ କେତେବେଳେ କେମିତି ସହାନୁଭୂତି ଟିକିଏ ମିଳିଯାଏ ବୋଲି ସେ ଯାଇ ଯମୁନାକୁ କହିଲା, "ନାନୀ, ମୋ ଗୋଡ଼ରେ ଗହଣା ନାହିଁ । ସେ ଦୁଇଟା ପାକୁଆ ହୋଇ ଭାଙ୍ଗିଗଲା । ବାକି ଦୁଇଟା ଭାଙ୍ଗିବା ଉପରେ ଅଛି । ତମେ ଟିକିଏ ଦାଦାଙ୍କୁ କହି ମୋ ପାଇଁ ଗୋଡ଼ କଡ଼ା ତିଆରି କରାଇ ଦେବ । ବଡ଼ ଅପାଙ୍କ ଉପରେ ଗହଣା ଲଦା ହେଉଛି । କିନ୍ତୁ ଆମ ଦି ଖଣ୍ଡ କଥାରେ ଭାଙ୍ଗି ପଡ଼ିଲାଣି । ଏଗୁଡ଼ା ତ ବଡ଼ ଅନ୍ୟାୟ କଥା ଅପା !"

ସେତେବେଳେ ଯମୁନା ସ୍ୱୀଠୁ ତେର ବଡ଼ ଅନ୍ୟାୟ କଥା ଭାବୁଥିଲା । ପ୍ରକୃତରେ ଛୁନକୀ ଯାହା କହୁଥିଲା ଓ ଏବେ ବି ଯାହା କହୁଛି, ସବୁ ତ ଅକ୍ଷରେ ଅକ୍ଷରେ ସତ । ତାରି ଆଖି ଆଗରେ ତାର ସବୁ ସତ୍ୟାନାଶ ହୋଇଯାଉଛି । ଏହି ସମୟରେ ଖୁବ୍ ବର୍ଷା ହେଉଥିଲା । ଜ୍ୱାଲାପ୍ରସାଦଙ୍କର ଅଫିସରୁ ଫେରିବା ସମୟ ହୋଇ ଯାଇଥିଲା । ଅଫିସ ଘର ପାଖରେ ହେଲେ ବି ଏତେ ଜୋରରେ ବର୍ଷା ହେଉଥିଲା ଯେ ସେ ଯଦି ଆସିବାକୁ ଚାହିଁଥାନ୍ତେ ତା'ହେଲେ ପୁରାପୁରି ତିନ୍ତି ଯାଇଥାନ୍ତେ । ଯମୁନା ଶ୍ୟାମଲାଲ ସ୍ତ୍ରୀକୁ କହିଲା, "ମୁଁ ତାଙ୍କୁ କହିବି । କିନ୍ତୁ, ସବୁ ପଇସାତ ସେ କାକାଙ୍କ ହାତରେ ଧରାଇ ଦେଉଛନ୍ତି । ତମେ ଯାଇ କାକାଙ୍କୁ କହ । ମୁଁ ବି ତମ ସାଙ୍ଗରେ ଯାଇ କହିବି ।"

ଶ୍ୟାମଲାଲର ସ୍ତ୍ରୀ ଟିକିଏ ବିରକ୍ତ ହୋଇ କହିଲା, "ତମେ କାହିଁକି ମୋତେ ଗାଳି ଶୁଣାଇବା ପାଇଁ ଚାହୁଁଛ ? ବାପାଙ୍କ କଥାତ ତମେ ଜାଣ, ମା'ତ ମୋତେ ଆଡ଼ ଆଖିରେ ବି ଦେଖି ପାରନ୍ତି ନାହିଁ ।"

ଯମୁନା ଟିକେ ମୁରୁକି ହସା ଦେଇ କହିଲା; ରାମ ରାମ, ହଇଲେ ମହିଆଣ , ଶାଶୁଙ୍କୁ

ଏମିତ କଏ କହେ ?"

ଶ୍ୟାମଲାଲର ସ୍ତ୍ରୀ କାନ୍ଦ ପକାଇ କହିଲା, "କ'ଣ କରିବ ଅପା, ମଣିଷ ଏବେ କେତେ ସହିବ ? ଏ ଘରଲୋକଙ୍କ କଥାରେ ଜୀବନ ଦହି ହୋଇଗଲାଣି । ଯେଉଁଦିନ ହେଲେ କରୋସିନୀ ଢାଳିହୋଇ ନିଆଁ ଲଗାଇ ମରିବି । କିନ୍ତୁ ଏକଥା ଜାଣିଥା, ମୁଁ ଯିବା ଆଗରୁ ବୁଢ଼ୀର ଜୀବନ ନେଇକରି ଯିବି ।"

ଶ୍ୟାମଲାଲ ସ୍ତ୍ରୀର ମନକଥା ଜାଣି ଯମୁନା ଟିକିଏ ଡରିଗଲା । କହିଲା, "ନାହିଁ ଏସବୁ କରିବା କିଛି ଦରକାର ପଡ଼ିବ ନାହିଁ । ଶୁଣ, ଭଲ କଥାଟିଏ ମନେ ପଡ଼ିଲା । ମୁଁ ଛୁନକୀ ଖୁଡ଼ୀଙ୍କୁ କାକାଙ୍କ ପାଖକୁ ପଠାଇ ଦେବି । ତମ ଶାଶୂଶଶୁର ଯଦି କାହାକୁ ଡରୁଥାନ୍ତି, ତା ହେଲେ ଛୁନକୀ ଖୁଡ଼ୀଙ୍କୁ ।"

ଠିକ୍ ଏହି ସମୟରେ ଛୁନକୀ ଆସି ଘର ଭିତରେ ପହଞ୍ଚିଲା । ସେ ଭାରି ବ୍ୟସ୍ତ ଥିଲା । ଘରେ ପଶୁ ପଶୁ ସେ ଯମୁନା କଥା ଶୁଣି କହିଲା, "ନାହିଁ, ଶ୍ରେଷ୍ଠ ମାଲିକଙ୍କୁ କିଛି କହିବା ଦରକାର ନାହିଁ । ମୁଁ ଜ୍ୱାଲାକୁ କହିବି । ତାର ଆସିବା ସମୟ ହୋଇଗଲାଣି । ଭିକ୍ଷୁ ଘରଯାକ ଖୋଜି ସାରିଲାଣି, ତା ଛତାଟା ତ ମିଳୁ ନାହିଁ । କିଏ ଜାଣେ ଛତାଟା କୁଆଡ଼େ ଉଭେଇ ଗଲା !"

ଯମୁନା କହିଲା, "ଦୁଇ ପ୍ରହରେ ତ କାକା ମୋଠାରୁ ଛତା ମାଗି ନେଇଥିଲେ ! କହିଥିଲେ ଅଧ ଘଣ୍ଟାରେ ଫେରି ଆସିବେ । ଯାଇ ତାଙ୍କୁ ପଚାରିତ !"

"କାହାକୁ ପଚାରିବ, ଭୂତକୁ ନା ପ୍ରେତକୁ । ଶ୍ରେଷ୍ଠ ମାଲିକ ନାହାନ୍ତି କି ତାଙ୍କ ପିଲାଏ କେହି ଦିଶୁନାହାନ୍ତି । ଏବେ କ'ଣ ହେବ, ମେଘ ତ ଖୁବ୍ ଜୋରରେ ବର୍ଷୁଛି ।'

ଏଣେ ଛତା ଖୋଜା ଚାଲିଛି ତେଣେ ବେଚ୍ ମିସିରଙ୍କ ଛତା ଧରି ଜ୍ୱାଲାପ୍ରସାଦ ଆସି ଘରେ ପହଞ୍ଚିଲେ । ଭିକ୍ଷୁ ହାତରେ ଛତା ଫେରାଇ ଦେଇ ସେ ଯମୁନାକୁ ପଚାରିଲେ, "ମୁଁ ଏତେବେଳଯାଏ ଅଟକାଇ ବସିଲି । ତମେ କେହି ଛତା ପଠାଇଲ ନାହିଁ କାହିଁକି ?"

"କାକା ତ ଦୁଇ ପ୍ରହରେ ଛତା ମାଗି ନେଇଥିଲେ । କହିଥିଲେ ଘଣ୍ଟାକରେ ଫେରି ଆସିବେ । କାହିଁ, ତାଙ୍କର ତ ଦେଖା ନାହିଁ । ଭାଇ ସାହେବ ବୋଧହୁଏ ତାଙ୍କ ସାଙ୍ଗରେ ଯାଇଛନ୍ତି ।"

ଜ୍ୱାଲାପ୍ରସାଦ ଲୁଗାପଟା ବଦଳାଇଲେ । ସେତେବେଳକୁ ମେଘବର୍ଷା ଥମି ଯାଇଥିଲା ଏବଂ ବର୍ଷା ପରେ ହଠାତ୍ ଗରମ ବଢ଼ିଯାଇଥିଲା । ଜ୍ୱାଲାପ୍ରସାଦ ଅଫିସ କାଗଜ ପତ୍ର କାଢ଼ିଲେ । କିନ୍ତୁ ଗରମରେ ଘରେ ବସି କାମ କରିବା ସମ୍ଭବ ହେଲା ନାହିଁ । ସେ ଯମୁନାକୁ କହିଲେ, "ଅନେକ ଦିନ ହେଲା ଆମେ ଠାକୁର ବୀରଭାନୁ ସିଂହଙ୍କ ଘରକୁ

ଯାଇ ନାହିଁ । ସେଥିପାଇଁ ସେ ଅଭିଯୋଗ କରୁଥିଲେ । ଭାବୁଛି ଯିବା, ତାଙ୍କର ଘରଆଡ଼େ ଟିକିଏ ବୁଲି ଆସିବା । ତାଙ୍କ ସ୍ତ୍ରୀ ବ କେତେ ଥର ଖବର ଦେଲେଣି । ତମେ ବ ଯାଇନାହଁ । ଆଚ୍ଛା, ମୁଁ ଘୋଡ଼ାଗାଡ଼ି ଠିକ୍ କରୁଛି, ତମେ ଘଣ୍ଟା ଭିତରେ ପ୍ରସ୍ତୁତ ହୋଇଯାଅ ।"

"ଆଚ୍ଛା, ମୁଁ ଅଧଘଣ୍ଟାରେ ବାହାର ପଡ଼ୁଛି । ତମେ ଘଣ୍ଟା ଭିତରେ ଜଳଖିଆ ଖାଇଦଅ ।"

ଯମୁନା ଘେଷାଇ ଘରକୁ ଯାଇ ଆମ୍ବ ଓ ପୁରି ତରକାରି ଜ୍ୱାଲାପ୍ରସାଦଙ୍କ ପାଇଁ ପଠାଇଦେଲା । ଜ୍ୱାଲାପ୍ରସାଦ ଖାଇ ବସିବାବେଳେ ଛୁଟନକା ଯାହା କହିବା ପାଇଁ ଶ୍ୟାମଲାଲର ସ୍ତ୍ରୀକୁ କହିଥିଲା ସେହି କଥା ଆରମ୍ଭ କରିଦେଲା । କହିଲା, "ଶ୍ୟାମ ବୋହୂର ପାଦବଲା ପାକୁଆ ହୋଇଗଲାଣି । ସେଥିପାଇଁ ବଗୃହୀ କାନ୍ଦୁଛି । ରାମ ବୋହୂ ପାଇଁ ଆଜ ସେରେ ଓଜନର ହାର ଓ ପାଞ୍ଚ ପା' ଓଜନର ବଲା ଗଢ଼ାହୋଇ ଆସିଛି; କିନ୍ତୁ ଏ ବଗୃହୀ ପାଇଁ ଗୁରିପଟ ବଲା କେହି ତିଆରି କରି ଦେଉ ନାହାନ୍ତି । ତତେ ଏ କଥା କହିବ ବୋଲି ତାକୁ ମୁଁ କହିଛି ।"

ପରିବାର ଭିତରେ ଶ୍ୟାମଲାଲ ସ୍ତ୍ରୀର ସ୍ଥାନ ଯାହା, ଜ୍ୱାଲାପ୍ରସାଦ ତାହା ଭଲ କରି ଜାଣିଥିଲେ । ତା' ପାଇଁ ଜ୍ୱାଲାପ୍ରସାଦଙ୍କ ମନରେ ସବୁବେଳେ ସହାନୁଭୂତି ଥିଲା । ସେ କହିଲେ, "ହଉ, କାଲି ତାଙ୍କ ପାଇଁ ପାଉଁଜି ଆଣିଦେବା । ମୁଁ ବଣିଆକୁ ଡକାଇ ଗଢ଼ାଇଦେବି । ସତରେ କ'ଣ ଭାଉଜଙ୍କ ପାଇଁ ବଲା ଓ ହାର ତିଆରି ହୋଇଛି ?"

"ସତରେ ନୁହେଁ କ'ଣ ମିଛରେ ? ଆଜି ସକାଳେ ରାମୁ ଗହଣା ଆଣି ତା' ମା' ଓ ଭାରିଜାଙ୍କୁ ଦେଇଛି, ଆଉ କହିଛି କାହାକୁ କହିବ ନାହିଁ । ଲୁଚାଇ କରି ରଖିବ । ମୁଁ ପାଖରେ ଥିଲି ବୋଲି ଦେଖିନେଇଥିଲି ।"

ଜ୍ୱାଲାପ୍ରସାଦଙ୍କ ମନ ଟିକିଏ ଝଟକା ଲଗିଲା; କିନ୍ତୁ ସେ କଥାକୁ ଆଉ ନ ବଢ଼ାଇ ଚୁପ୍ ରହିଲେ ।

ଯମୁନାକୁ ସାଂଗରେ ନେଇ ଜ୍ୱାଲାପ୍ରସାଦ ବୀରଭାନୁସିଂହଙ୍କ ଘରେ ପହଞ୍ଚି ଦେଖିଲେ ତାଙ୍କ କାକା ମୁନ୍‌ସି ରାଧେଲାଲ ଓ ତାଙ୍କ ପୁଅ ରାମଲାଲ ସେଠାରେ ବସିଛନ୍ତି । ଯମୁନା ରାଣୀମହଲ ଭିତରକୁ ଚାଲିଗଲେ । ଜ୍ୱାଲାପ୍ରସାଦ ଠାକୁର ବୀରଭାନୁସିଂହଙ୍କ ସାଙ୍ଗରେ ଆସି ବାହାର ଚବୁତରାରେ ବସିଲେ । ଜ୍ୱାଲାପ୍ରସାଦ ଆସିଲାମାତ୍ରେ ମୁନ୍‌ସି ରାଧେଲାଲ କହିଲେ, "ଜ୍ୱାଲା, ତୁ ଆସିଗଲୁ ଭଲ ହେଲା । ଠାକୁର ସାହେବ ରାମୁକୁ ଗୋଟାଏ ସ୍କୁଲରେ ଚାକିରି ଦେବାପାଇଁ ଚେଷ୍ଟା କରୁଛନ୍ତି । ଘରର ପିଲାଗୁଡ଼ା ଏଣେତେଣେ ରହିଛନ୍ତି, ଏକା ଜାଗାରେ ରହି କାମ କଲେ ଭଲ ।"

ଜ୍ୱାଲପ୍ରସାଦଙ୍କ ମୁହଁରୁ ହଠାତ୍ ବାହାରି ପଡ଼ିଲା, "କିନ୍ତୁ କାକା ! ସମସ୍ତେ ଏଠାରେ ରହିଲେ ଆମ ଫତେପୁର ଘରକଥା କ'ଣ ହେବ ? ତା'ଛଡ଼ା ମୁଁ ଯେଉଁ ଘରେ ରହୁଛି ତାହା ଏକ ସରକାରୀ ଘର । ସେଠାରେ ଏତେ ଲୋକ ରହିବା ପାଇଁ ସୁବିଧା ନାହିଁ ।"

ଠାକୁର ବୀରଭାନୁସିଂହ ଜ୍ୱାଲପ୍ରସାଦଙ୍କର ଏହି କଥାର ଉତ୍ତର ଦେଇ କହିଲେ, "ତହସିଲଦାର ସାହେବ, ଘରପାଇଁ ଚିନ୍ତା କରନ୍ତୁ ନାହିଁ । ମୁଁ ଗୋଟାଏ ନୂଆ ଘର ତିଆରି କରୁଛି । ମୋ ସ୍ତ୍ରୀକୁ ଏ ଘରଟା ଭଲ ଲାଗୁନାହିଁ । ଆପଣମାନଙ୍କୁ ଏ ଘରଟା ମୁଁ ଛାଡ଼ିଦେବି । ଏ ଘରେ ତିନିଟା ଚଉତରା ଅଛି । ପୁରା ପରିବାରପାଇଁ ଏହା ଯଥେଷ୍ଟ ହେବ । ଆପଣମାନେ ଏଥିରେ ଆରାମରେ ରହିପାରିବେ ।"

ଜ୍ୱାଲପ୍ରସାଦ କହିଲେ, "ଠାକୁର ସାହେବ ! ବଡ଼ ଦୟା ଆପଣଙ୍କର, ହେଲେ ମୁଁ ଏଠାରେ ରହିବା ପାଇଁ ସରକାର ଆପତ୍ତି କରିବେ । ଆପଣ ଏ କଥା ବୁଝି-ପାରିବେ ନାହିଁ ଠାକୁର ସାହେବ !"

ଠାକୁର ବୀରଭାନୁସିଂହ ହସି ହସି କହିଲେ, "ମୁଁ ସବୁ ବୁଝିଛି ତହସିଲଦାର ସାହେବ ! କିନ୍ତୁ ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ଏହି କୋଠାକୁ ମୁଁ ଆପଣଙ୍କ ନାଁରେ କିମ୍ବା ଗଙ୍ଗାପ୍ରସାଦ ନାଁରେ ଲେଖିଦେବି । ଘର ତିଆରି ହେବାର ସତର ବର୍ଷ ହୋଇଗଲାଣି । ଆଉ ଏହାର କ'ଣ ଦାମ୍ ହେବ ଯେ ! ମୁଁ ଯଦି ଏ ଘର ସେମିତି ଛାଡ଼ିଦିଏ ତା' ହେଲେ ଦୁଇତିନି ବର୍ଷରେ ଘରଟା ଭାଙ୍ଗି ପଡ଼ିବ । ଖାଲି ଜମି ଦାମ୍ଟା ଦେଲେ ଆପଣଙ୍କୁ ଘରଟା ମିଳିଯିବ । ଛାଡ଼ନ୍ତୁ, ଆପଣଙ୍କର ସେଥିରେ ଚିନ୍ତା କରିବାର କିଛି ଦରକାର ନାହିଁ । ମୁନ୍‌ସି ରାଧେଲାଲ ସବୁ କରିନେବେ ।"

ଜ୍ୱାଲପ୍ରସାଦ ଏହି କଥାକୁ ଟାଳିଦେଇ କହିଲେ, "ଛାଡ଼ନ୍ତୁ ସେ ସବୁ କଥା । ଆପଣଙ୍କ ନୂଆ ଘର ଠିକ୍ ହେଉ ହେଉ ଆହୁରି ବର୍ଷେ ଦୁଇବର୍ଷ ଲାଗିବ । ଆପଣ ତ ବର୍ତ୍ତମାନ କେବଳ ନିଅଁ ପକାଇଛନ୍ତି ।"

ବୀରଭାନୁସିଂହ ଏହି କଥାକୁ ସ୍ୱୀକାର କରି କହିଲେ, "ହଁ, ସାତ ଆଠ ମାସ ତ ନିଶ୍ଚୟ ଲାଗିବ । ଧରନ୍ତୁ ବର୍ଷେ ହେବ ।"

ମୁନ୍‌ସି ରାଧେଲାଲ ଉତ୍ତର ଦେଲେ, "ହଁ, ଆମେ ସେହି ପର୍ଯ୍ୟନ୍ତ କୌଣସିମତେ କାମ ଚଳାଇନେବୁ । ଏବେ ତ ଯାହିତାହି କାମ ଚଳିଯାଉଛି ।" ତାହାପରେ ରାଧେଲାଲ ଯିବାପାଇଁ ଉଠି ଉଠି କହିଲେ, "ଆଚ୍ଛା ତମେ ବସି ଗପ କର, ମୁଁ ଯାଉଛି । ଦୁଇ-ପ୍ରହରେ ଠାକୁରସାହେବଙ୍କ ସାଙ୍ଗରେ ଆହ୍ଲାବାଦ ଯାଇଥିଲି । ସେଠାରେ ରାମୁକଥା ଠିକ୍ ହୋଇଛି । ପନ୍ଦର ଦିନ ଭିତରେ ସେ ନିଯୁକ୍ତି ପାଇବ । ଏହି ଦିନେ ଦୁଇଦିନରେ ରାମୁକୁ ସାଙ୍ଗରେ ନେଇ ଫତେପୁର ଯିବାକୁ ହେବ । ସେଠାରେ ତାକୁ ଇସ୍ତଫା

ଦେବାକୁ ହେବନା ! ତାହାଛଡ଼ା ଫତେପୁର ଘର ଓ ବଳବାଡ଼ିପାଇଁ ବନ୍ଦୋବସ୍ତ କରିବାକୁ ହେବ !" ଏତିକି କହି ରାଧେଲାଲ ରାମଲାଲଙ୍କୁ ସାଙ୍ଗରେ ନେଇ ଚାଲିଗଲେ ।

ଏମାନେ ଚାଲିଯିବାପରେ ଜ୍ୱାଲାପ୍ରସାଦ ଏବଂ ଠାକୁର ବୀରଭାନୁସିଂହ କିଛି ସମୟ ଚୁପଚାପ ବସି ରହିଲେ । ବୀରଭାନୁସିଂହ ପୁଣି ପଚାରିଲେ, "କଣ ତହସିଲଦାର ସାହେବ ! ଆପଣ କାହିଁକି ଏତେ ଆନମନା ହୋଇଗଲେ ? ଏ ଲୋକମାନେ ଆପଣଙ୍କ ସାଙ୍ଗରେ ରହିବାକୁ ଆପଣ କଣ ପସନ୍ଦ କରୁନାହାନ୍ତି କି ?"

ଜ୍ୱାଲାପ୍ରସାଦ ଟିକିଏ ଇତସ୍ତତଃ ହୋଇ କହିଲେ, "ନା············ସେମିତି କିଛି ନାହିଁ ଯେ !"

ଠାକୁର ସାହେବଙ୍କ ସ୍ତ୍ରୀଙ୍କ ଅନୁରୋଧରେ ସେଦିନ ଜ୍ୱାଲାପ୍ରସାଦ ଓ ଯମୁନାଙ୍କୁ ସେଠାରେ ଖାଇବାକୁ ପଡ଼ିଲା । ଖାଇବା ପୂର୍ବରୁ ଜ୍ୱାଲାପ୍ରସାଦ ବୀରଭାନୁ ସିଂହଙ୍କ ସାଙ୍ଗରେ ଟିକିଏ ମଦ ପିଇନେଲେ; ଫଳରେ ମନଟା ଟିକିଏ ହାଲୁକା ହୋଇଗଲା ଓ ମନଭିତରେ କିଛି ସାହସ ବି ଆସିଗଲା । ସେ ଠିକ୍ କଲେ ଏ କଥା ସେ କେବେ କରାଇଦେବେ-ନାହିଁ । ନରକ ସୃଷ୍ଟି କରିବାପାଇଁ ଯଦି ମଣିଷର ଅଧିକାର ଥାଏ, ତା'ହେଲେ ତାକୁ ବନ୍ଦ କରିବା ପାଇଁ ମଧ୍ୟ ତାର ଅଧିକାର ଅଛି ।

ଜ୍ୱାଲାପ୍ରସାଦ ଘରକୁ ଫେରିବା ବେଳକୁ ଅଧରାତି ହୋଇଯାଇଥିଲା । କେବଳ ଛୁନକୀ ଗଙ୍ଗାପ୍ରସାଦର ମୁଣ୍ଡ ପାଖରେ ଏକା ଏକା ଚେଇଁବସିଥିଲା । ଭିକ୍ଷୁ ବାହାର ଦରଜା ପାଖରେ ବସି ଘୁମାଉଥିଲା । ଯମୁନା ଓ ଜ୍ୱାଲାପ୍ରସାଦ ଘରେ ପଶିବାମାତ୍ରେ ଛୁନକୀ ଉଠିକରି ଚାଲିଯାଉଥିଲା; କିନ୍ତୁ ଜ୍ୱାଲାପ୍ରସାଦ ତାକୁ ଡାକି କହିଲେ, "ଛୁନକୀ ଖୁଡ଼ୀ, ଟିକିଏ ରହ । ତମଠାରୁ କିଛି ପରାମର୍ଶ ନେବାକୁ ଅଛି ।"

ଛୁନ୍‌କୀ ଏ କଥା ଶୁଣି ଚମକି ପଡ଼ିଲା । ଆଜିଯାଏ ତ କେହି କେବେ ତା'ର ପରାମର୍ଶ ଚାହିଁ ନାହାନ୍ତି; ଯାହା କେବଳ ସେ ଉପରେ ପଡ଼ି ଦେଇଥାଏ । ଏହି ପ୍ରଥମ ଥର ଜାଣି ତାକୁ ଜଣେ ପରାମର୍ଶ ମାଗିଥିଲେ । ସେ ସେହିଠାରେ ଭୂଇଁରେ ବସିପଡ଼ି କହିଲା, "କ'ଣ କହ ?"

ଜ୍ୱାଲାପ୍ରସାଦ କହିଲେ, "ଆମ୍ଭମାନଙ୍କ ପାଇଁ କାକା ଠାକୁର ବୀରଭାନୁସିଂହଙ୍କଠାରୁ ଗୋଟାଏ ଘର ମାଗିଛନ୍ତି । ତାଙ୍କର ଏବେ ନୂଆ ଘର ତିଆରି ହେଉଛି । ରାମୁଭାଇ ଫତେପୁର ଚାକିରି ଛାଡ଼ିଦେଇ ଏହି ସୋରବରେ ଗୋଟାଏ ସ୍କୁଲରେ କାମ କରିବେ । କାକା ଏସବୁ ଠିକ୍ କରି ନେଇଛନ୍ତି । ତାଙ୍କର ଇଚ୍ଛା, ଘରର ସବୁ ଲୋକ ଏକାଠି ରହନ୍ତୁ ।" .

"ଆହା କି ଦୟା ! ସ୍ୱେ ସମସ୍ତେ ପରା ତୋର ଛାତି ଉପରେ ମୁଗ ରଗଡ଼ି

ଆସିଛନ୍ତି । ଚୋର, ବେଇମାନ, ବାରବୁଲାଗୁଡ଼ାକ । ଏଗୁଡ଼ା ତୁ ପୁଣି କାହିଁକି କରିବୁ ?"

"ସେଥିପାଇଁ ତ ଖୁଡ଼ୀ, ତମଠୁ ବୁଝିବା ପାଇଁ ତମକୁ ଦେଖିଲି । କ'ଣ କରିବ କିଛି ବୁଝି ପାରୁନାହିଁ ।"

"କ'ଣ କରିବୁ ? ସ୍ରେଷ୍ଟ ମାଲିକଙ୍କୁ ସଫା କହିଦେ ସେ ତାଙ୍କ ପିଲାପିଲି ନେଇ ଫତେପୁରରେ ଯାଇ ରହନ୍ତୁ ।"

ଏତିକି ବେଳକୁ ଭିକ୍ଷୁର ଘୁମ ଭାଙ୍ଗି ଯାଇଥିଲା; କିନ୍ତୁ ମା'ର ଶେଷ କଥାଟା ସେ ବୁଝି ପାରିନଥିଲା । ଦରଜା ପାଖରୁ ଘରଭିତରକୁ ଘୁଞ୍ଚି ଆସି ସେ ପଚାରିଲା, "ଖୁଡ଼ି, କଥା କ'ଣ ? ମା' କ'ଣ କାହାଉପରେ ରାଗିଛି କି ?"

ଛୁନକୀ ଉତ୍ତର ଦେଲା, "ନାହିଁ, ରାଗି ନାହିଁ ଯେ ବାପଦର ମୂଳଦୁଆ ଦୃଢ଼ ହେବାକୁ ଯାଉଛି । ଏମାନେ ଜ୍ୱାଳା ଛାତି ଉପରେ ମୁଗ ରଗଡ଼ୁଛନ୍ତି । ଫତେପୁରର ଘରଦ୍ୱାର ଛାଡ଼ି ସେମାନେ ସମସ୍ତେ ଆସି ସୋରାବରେ ଏଠାରେ ରହିବେ ।"

ଭିକ୍ଷୁ କହିଲା, "ସେ ତ ବଡ଼ ମୁସ୍କିଲ କଥା । ମୋତେ ତ ଏଥିରେ ଭାରି ଡର ଲାଗୁଛି । ମୋ ମନକୁ ଏ କଥା ପାଉନାହିଁ ।"

ଜ୍ୱାଲାପ୍ରସାଦଙ୍କଠାରୁ ମଦନଶା ଯେତିକି ଛାଡ଼ି ଛାଡ଼ି ଯାଉଥିଲା, ସେତିକି ସେତିକି ସେ ସାହସରେ ଜବାବ୍ ଦେଉଥିଲେ । ସେ ସମସ୍ତ ସାହସ ଏକାଠି କରି କହିଲେ, "ଭିକ୍ଷୁ, ତୁ ସକାଳୁ ଯାଇ କାକାଙ୍କୁ କହିଦେବୁ ସେମାନଙ୍କର ସୋରାବରେ ରହିବା କଥାକୁ ମୁଁ ପସନ୍ଦ କରୁନାହିଁ । ସେ ସମସ୍ତଙ୍କୁ ନେଇ ଫତେପୁର ଚାଲିଯାନ୍ତୁ ।"

ଭିକ୍ଷୁ ଆଖି ମିଟିମିଟି କରି କହିଲା, "ଯଦି ସେମାନେ ସମସ୍ତେ ମିଶି ମୋତେ ପିଟନ୍ତି, ତମେ ମୋତେ ରଖିବଟି ? ନାହିଁ ଭାଇ, ମୋ ହାତରେ ଏହି ଖବର ଦିଅ ନାହିଁ । ତମେ ନିଜେ ଯାଇ କହ ।"

ଜ୍ୱାଲାପ୍ରସାଦ ମୁଣ୍ଡରେ ହାତଦେଇ କହିଲେ, "ହଁ, ଏଇ ତ ମୁସ୍କିଲ୍ । ବିଲେଇ ବେକରେ ଘଣ୍ଟି ପକାଇବ କିଏ ? ଆଚ୍ଛା, କୌଣସି ଚିନ୍ତା ନାହିଁ । କାଲି ସକାଳେ ମୁଁ ସବୁକଥା ଚିଠି ଲେଖିଦେବି, ତୁ ନେଇ କାକାଙ୍କୁ ଦେବୁ ।"

ଭିକ୍ଷୁ ହାଇମାରି କହିଲା, "ହଁ, ଏ କଥା ମୁଁ ନିଶ୍ଚୟ କରିଦେବି । ଆଲ୍ହାବାଦରୁ ଜଣେ ଲୋକ ତମପାଖକୁ ଗୋଟିଏ ଚିଠି ଧରି ଆସିଥିଲେ । ମୁଁ ତାକୁ ତମ ତକିଆତଳେ ରଖି ଦେଇଛି ।"

ଛୁନକୀ ଓ ଭିକ୍ଷୁ ଚାଲିଯିବାପରେ ଜ୍ୱାଲାପ୍ରସାଦ ତକିଆତଳୁ ଚିଠିକୁ କାଢ଼ିନେ । ତାହା ଜେଦେଇଙ୍କ ଚିଠି । ସେ ଆସି ଆଲ୍ହାବାଦରେ ବେମାର ପଡ଼ିଥିବାରୁ ସୋରାବ ଆସି

ପାରିବେ ନାହିଁ । ସେ ଚିଠିରେ ଲେଖାଥିଲି ଜ୍ୱାଲାପ୍ରସାଦଙ୍କର ଯଦି କିଛି ଅସୁବିଧା ନ ଥାଏ ତାହେଲେ ସେ ଯମୁନାକୁ ସାଙ୍ଗରେ ନେଇ କିଛିଦିନ ପାଇଁ ଆଲ୍‌ହାବାଦ ଯିବେ । ଯଦି ସେ ଦୁଇଗୃହଦିନ ଛୁଟି ନେଇ ଆସନ୍ତି ତା'ହେଲେ ଖୁବ୍ ଭଲ ।

ଜ୍ୱାଲାପ୍ରସାଦ ମୁରକିହସା ଦେଇ ଯମୁନାକୁ କହିଲେ, "ଏଇ ଲମ୍ବିରଦାରଣୀଙ୍କ ଚିଠି । ଆଲ୍‌ହାବାଦ ଆସି ସେ ବେମାର ପଡ଼ିଛନ୍ତି; ଆମକୁ ଯିବାପାଇଁ ଡକାଇଛନ୍ତି । ପଅର ଦିନ ଶନିବାର । କାଲି ସନ୍ଧ୍ୟାରେ ଆମେ ଆଲ୍‌ହାବାଦ ଯିବା । ସୋମବାର ଦିନ ବି ଅମାବାସ୍ୟା ଛୁଟି, ସୋମବାରଦିନ ରାତି କିମ୍ବା ମଙ୍ଗଳବାରଦିନ ସକାଳେ ଆମେ ଫେରିଆସିବା ।"

"ହଁ, ଆଲହାବାଦ ଯିବା କଥା ମୁଁ ବି କହିବାକୁ ଚାହୁଁଥିଲି; କିନ୍ତୁ ମୋତେ ଡର ଲାଗୁଥିଲା । ଏ ଘରଟା ଆମକୁ ଖାଇ ଗୋଡ଼ାଉଛି । ମନ ହେଉଛି କେଉଁଆଡ଼େ ପଳାଇଯିବା ପାଇଁ ।"

ଜ୍ୱାଲାପ୍ରସାଦଙ୍କ ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା । ସେ କହିଲେ, "ମୁଁ ଆଲହାବାଦ ଯାଇ ଧାମୁର ସୋଗିବ ଆସିବା ବନ୍ଦ କରିଦେବି ଏବଂ କିଏ ଲୁ କ'ଣ ସବୁ କରିଥିଲା ଲମ୍ବିରଦାରଣୀଙ୍କଠାରୁ ବୁଝିନେବି । କିନ୍ତୁ ମୁଁ ଲମ୍ବିରଦାରଣୀଙ୍କ ସାଙ୍ଗରେ ଦେଖାହେବାକୁ ଯାଉଛି ବୋଲି ଘରେ ଯେମିତି କେହି ନ ଜାଣନ୍ତି । ତମେ କହିଦେବ, ଡେପୁଟି ସାହେବଙ୍କ ଘରେ କାନଫୋଡ଼ା ହେଉଛି, ଆମେ ସେହିଠାକୁ ଯାଉଛୁ ।"

ଯମୁନା କହିଲା, "ହଁ, ହଁ, ସେ ବିଷୟରେ ତମେ ନିଶ୍ଚିନ୍ତ ରହ ।"

ଏଗାର ବାର ବର୍ଷ ତଳେ ଯେଉଁ ଜେଦେଇ ପଇଁତିରିଶ ବର୍ଷ ବୟସରେ ବି ପଚିଶ ବର୍ଷ ପରି ଦେଖାଯାଉଥିଲେ ଏବେ ସେ ଷାଠିଏ ବର୍ଷର ବୁଢ଼ୀପରି ଦିଶୁଥିଲେ । ତାଙ୍କର ଅଧିକାଂଶ ବାଳ ପାଚି ଯାଇଥିଲା ଓ ମୁହଁର ଚମଡ଼ା ବି ଶିଥିଳ ହୋଇଯାଇଥିଲା । ଦେହରେ ବିଶେଷ କିଛି ତଫାତ୍ ନ ଥିଲା; କିନ୍ତୁ ବଳ ହଟିଯିବା ସାଙ୍ଗେ ସାଙ୍ଗେ ଆଖିର ଚମକ ଅନେକ ପରିମାଣରେ କମିଯାଇଥିଲା ।

ଗତ ଦୁଇବର୍ଷ ହେଲା ଜେଦେଇଙ୍କୁ ବରାବର କମ୍ପଜ୍ୱର ହେଉଥିଲା । ବୈଦ୍ୟ, ଡାକ୍ତର ଯିଏ ଯେତେ ଦେଖିଲେ, ଝଡ଼ାଫୁଙ୍କା ଯେତେ ହେଲେ ବି ଜେଦେଇଙ୍କୁ ଜ୍ୱର ଛାଡ଼ିଲା ନାହିଁ । ମାସରେ ପନ୍ଦରଦିନ ଦେହ ଭଲ ରହେ, ବାକି ପନ୍ଦରଦିନ ଜ୍ୱର ହୁଏ । ଜ୍ୱାଲାପ୍ରସାଦ ଓ ଯମୁନା ଆଲହାବାଦରେ ପହଞ୍ଚିଲାବେଳକୁ ଜେଦେଇ ଜ୍ୱରରେ ବେହୋସ ହୋଇ ପଡ଼ିଥିଲେ । ଲକ୍ଷ୍ମୀଚନ୍ଦଙ୍କ ସ୍ତ୍ରୀ ତାଙ୍କ ମୁଣ୍ଡ ପାଖରେ ଜଗି ବସିଥିଲେ ।

ଲକ୍ଷ୍ମୀଚନ୍ଦ ଛ'ମାସ ପୂର୍ବରୁ ସିଭିଲ୍ ଲାଇନ୍‌ସରେ ଗୋଟାଏ ବଙ୍ଗଳା କିଣି ନେଇଥିଲେ ଓ ଆଲହାବାଦକୁ ଆସିଲାଦିନୁ ସେହିଠାରେ ରହୁଥିଲେ । ଜ୍ୱାଲାପ୍ରସାଦ ଆଲହାବାଦ ଗଲେ ସେଠାରେ ବରାବର ରହୁଥିଲେ । ଏବେ ଜ୍ୱାଲାପ୍ରସାଦଙ୍କ ଜିନିଷପତ୍ର ସବୁ

ଷ୍ଟକରମାନେ ଗାଡ଼ିକୁ କାଢ଼ି ନେଲେ ଓ ସେ ଯାଇ ବାହାର ଘରେ ବସିଲେ । ଯମୁନା ଭିତରକୁ ଚାଲିଯାଇ ଜେଦେଇଙ୍କ ଶୋଇବା ଘରେ ପହଞ୍ଚିଲେ ।

ରାଧା ଯମୁନାଙ୍କ ପାଦ ଛୁଇଁ ପ୍ରଣାମ କଲା ଓ ତାଙ୍କୁ ଗୋଟାଏ ଚୌକିରେ ବସାଇ ଦେଇ କହିଲା, "ଆଜିକି ପନ୍ଦରଦିନ ହେଲା ମା'ଙ୍କୁ ଜ୍ୱର ହେଉଛି, ସନ୍ଧ୍ୟାବେଳକୁ ଜ୍ୱର ଆସୁଛି ଓ ଅପରାହ୍ନକୁ ଝାଳ ବୋହି ଜ୍ୱର ଛାଡ଼ିଯାଉଛି । ସକାଳୁ ସଞ୍ଜଯାଏ ଖାଉଛନ୍ତି, ପିଉଛନ୍ତି ଓ କାମଦାମ କରୁଛନ୍ତି; କିନ୍ତୁ ତାଙ୍କ ଚେହେରା ଏକଦମ ମଇଳା ପଡ଼ିଗଲାଣି । ଗଲା ସପ୍ତାହ ତଳେ କାନପୁରରୁ ଘାଟମପୁରକୁ ଯାଉଥିଲେ । ସେ ମା'ଙ୍କର ଏ ଅବସ୍ଥା ଦେଖି ତାଙ୍କର ସୁବିଧା କରିବାପାଇଁ ଆମକୁ ଜବରଦସ୍ତ ଆଲହାବାଦ ନେଇ ଆସିଲେ । କିନ୍ତୁ ମା' ଡାକ୍ତରୀ ଚିକିତ୍ସା କରିବାପାଇଁ ମୋଟେ ରାଜି ହେଉ ନାହାନ୍ତି । ଗଲା କାଲି ଏକ ଜରୁରୀ କାମରେ କାନପୁର ଚାଲିଯାଇଛନ୍ତି ।"

ରାଧା ଓ ଯମୁନାଙ୍କ କଥାବାର୍ତ୍ତା ଶୁଣି ଜେଦେଇଙ୍କ ନିଦ ଭାଙ୍ଗିଲା । ସେ ଆଖି ବନ୍ଦକରି ପଚାରିଲେ, "କିଏ ସେ ?"

ରାଧା ଜବାବ୍ ଦେଲା, "ମା' ! ତହସିଲଦାର କାକା ଆସିଛନ୍ତି । ସେ ବାହାର ଘରେ ବସିଛନ୍ତି ।"

ଜେଦେଇ ବଡ଼ କଷ୍ଟରେ ଆଖି ଖୋଲି କହିଲେ, "ଦିଅର ସାହେବ ଆସିଛନ୍ତି !" ଯମୁନାକୁ ଦେଖି କହିଲେ, "ଆରେ ତମେ ବି ଆସିଯାଇଛ ? ଯାହାହେଉ ଖୁବ୍ ଭଲ ହେଲା । ଏ ବୋହୂ ! ଦିଅର ସାହେବଙ୍କୁ ଏହି ଘରକୁ ଡାକି ଆଣ ।"

ଜ୍ୱାଲାପ୍ରସାଦ ଘରେ ପଶିବାମାତ୍ରେ ରାଧା ଓଢ଼ଣା ଟାଣି ବସିଲା ।

ରାତି ବହୁତ ହୋଇଯାଇଥିଲା । ଦୂରରୁ ଘଣ୍ଟା ଏଗାର ବାଜିବାର ଶୁଭିଲା । ଜେଦେଇଙ୍କର ଜ୍ୱର ଛାଡ଼ିବା ସମୟ ହୋଇଯାଇଥିଲା । ସେ ରାଧାକୁ କହିଲେ, "ବୋହୂ, ତୁ ଯାଇ ଦିଅରବାବୁ ଓ ଯମୁନାଙ୍କପାଇଁ ଖିଆପିଆ ଯୋଗାଡ଼ କର । ଯମୁନାଙ୍କୁ ସାଙ୍ଗରେ ନେଇଯା । ସେ ବି ଟିକିଏ ସାହାଯ୍ୟ କରିବେ । ମୁଁ ଦିଅରଙ୍କ ସାଙ୍ଗରେ ଟିକିଏ କଥାବାର୍ତ୍ତା ହେଉଛି ।"

ଜେଦେଇ ଜ୍ୱାଲାପ୍ରସାଦଙ୍କ ସାଙ୍ଗରେ ଏକୁଟିଆ କଥାବାର୍ତ୍ତା ହେବାକୁ ଚାହୁଁଥିଲେ ବୋଲି ଜଣାଯାଉଥିଲା । ରାଧା ଯମୁନାର ହାତଧରି କହିଲା, "ଚାଲନ୍ତୁ ଖୁଡ଼ୀ ! ମା' କାକାଙ୍କ ସାଙ୍ଗରେ ଯାହା କଥାବାର୍ତ୍ତା ହେବେ ମୁଁ ତାହା ଜାଣେ । ମୁଁ ଟିକିନିଖି ତମକୁ ସବୁ ବତାଇଦେବି । ତମେ ଯାଇ କାକାଙ୍କୁ ସବୁ ବୁଝାଇ ଦେବ ।"

ରୋଷାଇ ଘରେ ପହଞ୍ଚି ରାଧା ଯମୁନାଙ୍କୁ କହିଲା, "ଶୁଣ ଖୁଡ଼ୀ ! କାକାଙ୍କର ଯେଉଁ ସାନଭାଇ ଘାଟମପୁରକୁ ଗୁମାସ୍ତା ହୋଇ ଆସିଥିଲେ ସେ ଏଡ଼େ ବଦମାସ ଓ ବାଉଳା

ବୋଲି ମୁଁ ଜାଣି ନ ଥିଲି ।"

ରାଧାକଥା ଶୁଣି ଯମୁନା ଚୁପ୍ ପଡ଼ିଗଲା । କିଶନଲାଲ୍ ଏତେ ନୀଚ ହୋଇପାରନ୍ତି, ସେ କଳ୍ପନା କରି ନ ଥିଲା ।

ଜେଦେଇ ମଧ୍ୟ କାନ୍ଦି କାନ୍ଦି ଜ୍ୱାଲାପ୍ରସାଦଙ୍କୁ ସେହି ଘଟଣା କହିଲେ । ଜ୍ୱାଲାପ୍ରସାଦ ସବୁ ଶୁଣିକରି ରାଗରେ ଲାଲ୍ ପଡ଼ିଗଲେ । କହିଲେ, "ଭଉଜ, ତମେ ସାତଦିନ ପାଇଁ ସୋରାବ ଗଲ । ତମରି ସାମନାରେ ଏସବୁ କଥା ତୁଟାଇ ଦେବାପାଇଁ ମୁଁ ଚାହେଁ । ଏ ଲୋକଗୁଡ଼ା ମୋତେ ନାକେଦମ୍ କରିସାରିଲେଣି ।"

"ଈଶ୍ୱର ବାବୁ ! ଆପଣ ତ ମୋର ଅବସ୍ଥା ଦେଖୁଛନ୍ତି । ଏ ଜ୍ୱର ଛାଡ଼ିବାର କୌଣସି ଲକ୍ଷଣ ଦେଖାଯାଉ ନାହିଁ ।"

"ଭଉଜ, ତମେ ଯଦି ମାନିବ ମୁଁ ଗୋଟିଏ କଥା କହିବି ।"

"ରାମ, ରାମ ! ଈଶ୍ୱର ବାବୁ, ତମ କଥା କେବେ ଭଲା ମୁଁ ମାନିନାହିଁ ?"

"କାଲି ସକାଳୁ ତମର ଡାକ୍ତରୀ ଚିକିତ୍ସା ଆରମ୍ଭ କରିବା । ମୁଁ ଡାକ୍ତର ବ୍ରାଇଟ୍‌ଙ୍କୁ ଜାଣେ । ସେ ଏଇଠାରେ ସବୁଠାରୁ ଭଲ ଡାକ୍ତର, ତମର ଏ ରୋଗକୁ ଠିକ୍ କରିଦେବେ ।"

"ଈଶ୍ୱରବାବୁ, ମୁଁ ଆପଣଙ୍କୁ ହାତ ଯୋଡ଼ୁଛି । ଆପଣ ମୋତେ ଏ ବିଲାତି ଔଷଧ ପିଇବାକୁ କହନ୍ତୁ ନାହିଁ । ମୋର ଧର୍ମ ଚାଲିଯିବ । ଆଲାହାବାଦର ସବୁଠାରୁ ବଡ଼ ବୈଦ୍ୟ ନିତ୍ୟାନନ୍ଦ ଚିକିତ୍ସା ଆରମ୍ଭ କରି ଦେଇଛନ୍ତି ।"

ଜ୍ୱାଲାପ୍ରସାଦ ଟିକିଏ ବିରକ୍ତ ହୋଇପରି କହିଲେ, "ଆରେ, ତମେ ତ ଏ ବୈଦ୍ୟମାନଙ୍କ ପାଲରେ ପଡ଼ି ତମର ଦୁଇବର୍ଷ ଚାଲିଗଲାଣି । ବର୍ତ୍ତମାନ ଏସବୁ ମୁଁ ଆଉ କରାଇ ଦେବିନାହିଁ । କାଲି ସକାଳୁ ଡାକ୍ତର ବ୍ରାଇଟ୍‌ଙ୍କୁ ମୁଁ ନେଇ ଆସିବି ।"

ଜେଦେଇ କ୍ଳାନ୍ତିରେ ଆଖି ବୁଜି କହିଲେ, "ଅଚ୍ଛା, ତମର ଯାହା ଇଚ୍ଛା । ଲକ୍ଷ୍ମୀ କଥା ତ ମୁଁ ମାନିଲି ନାହିଁ; କିନ୍ତୁ ତମକୁ ମୁଁ କିଛି କହି ପାରୁନାହିଁ । ତମେ ମୋତେ ଦୁଇଚାରି ଥର ଦେଖିଯିବ । ତୁମେ ଯାହା କହିବ ମୁଁ ତାହା କରିବି ।"

ତହିଁଆର ଦିନ ଡାକ୍ତର ବ୍ରାଇଟ୍ ଜେଦେଇଙ୍କୁ ଦେଖି ତାଙ୍କର ମ୍ୟାଲେରିଆ ହୋଇଛି ବୋଲି ସ୍ପଷ୍ଟ କହିଦେଲେ । ସେ ଔଷଧ ଲେଖି ଦେଇ କହିଲେ, "ଅବହେଳାରୁ ଅବସ୍ଥା ବେଶୀ ଖରାପ ହୋଇଯାଇଛି । ପ୍ଲୀହାଟା ବଢ଼ିଯାଇଛି । ଦୁଇ ତିନି ଦିନରେ ଜ୍ୱର କମିଯିବ; କିନ୍ତୁ ମାସେ ପର୍ଯ୍ୟନ୍ତ ଚିକିତ୍ସାରେ ରହିବାକୁ ହେବ ।"

ଜ୍ୱାଲାପ୍ରସାଦ ସୋମବାର ଦିନଟା ଘରେ ବସି ରହିଲେ । ଏକେ ତ ତୁହାକୁ ତୁହା ବର୍ଷା ହେଉଥିଲା, ତାଛଡ଼ା ତାଙ୍କ ମନଟା ଏତେ ଖରାପ ଥିଲା ଯେ କୁଆଡ଼େ ଯିବାପାଇଁ ତାଙ୍କର

ଇଚ୍ଛା ହେଉନଥିଲା । ସେହି ଦିନ ସନ୍ଧ୍ୟାରେ ସେ କେଦେଇଙ୍କଠାରୁ ବିଦାୟ ନେଇ ଯମୁନାକୁ ସାଙ୍ଗରେ ଧରି ସୋରାବ ଫେରିଗଲେ ।

ବର୍ତ୍ତମାନ ଜ୍ୱାଲାପ୍ରସାଦଙ୍କ ମନରେ ନିଶ୍ଚିତ ଭାବରେ ତାଙ୍କ ପରିବାରର ଲୋକମାନଙ୍କ ପ୍ରତି ଏକ ପ୍ରକାର ଘୃଣା ଆସିଯାଇଥିଲା । ଆଲ୍ଲାହାବାଦରୁ ଫେରି ସେ ଯମୁନାଙ୍କୁ ଘରେ ଛାଡ଼ିଦେଇ ସିଧା ଠାକୁର ବୀରଭାନୁସିଂହଙ୍କ ଘରକୁ ଚାଲିଲେ । ରାମଲାଲଙ୍କୁ ସୋରାବରେ ଚାକିରୀ ନ ଦେବା ପାଇଁ ସେ କହିବାକୁ ଯାଇଥିଲେ । ସେତେବେଳକୁ ସକାଳ ନଅ ବାଜିଥିଲା ଓ ରାଧେଲାଲ ବୀରଭାନୁସିଂହଙ୍କ ଘରଠାରେ ରହି ତାଙ୍କୁ ତୋଷାମଦ କରୁଥିଲେ ।

ଠାକୁର ବୀରଭାନୁସିଂହ ଉଠିକରି ଜ୍ୱାଲାପ୍ରସାଦଙ୍କୁ ସ୍ୱାଗତ କଲେ ଓ ତାଙ୍କ ପାଖ-ଲୋକେ ସବୁ ଉଠି ଛିଡ଼ା ହେଲେ । ମୁନ୍‌ସି ରାଧେଲାଲ ପଚାରିଲେ, "ଏ.ରେ ଜ୍ୱାଲା, ତମେ ସବୁ ଫେରିଆସିଲଣି । ତମେ ଆଜି ଫେରିଆସିବ ବୋଲି ମତେ କ'ଣ ଜଣାଥିଲା ? ନୋହିଲେ ରାଜା ସାହେବଙ୍କୁ ମୁଁ ଆଜି ରଖି ନେଇଥାନ୍ତି । ସେ ତୁମ୍ଭ ସହିତ ସାକ୍ଷାତ୍ କରିବାକୁ ବହୁତ ଚାହିଁଥିଲେ । ଶ୍ୟାମ ବି ତାଙ୍କ ସହିତ ଚାଲିଗଲା । ଏଠାରୁ କୋଡ଼ିଏ ମାଇଲ ଦୂରରେ ପ୍ରତାପଗଡ଼ ତାଙ୍କର ଇଲାକା ।"

ଜ୍ୱାଲାପ୍ରସାଦ ସତରେ ନ ଶୁଣିଲା ପରି ତାଙ୍କ କାକାଙ୍କୁ କୌଣସି ଜବାବ ଦେଲେ ନାହିଁ । ଏହା ଦେଖି ଠାକୁର ବୀରଭାନୁସିଂହ କହିଲେ, "ତହସିଲଦାର ସାହେବ ! ରାଜାସାହେବ ମୋର ମାମୁଁ; ପ୍ରତାପଗଡ଼ ଜିଲାର ଜମିଦାର । ବର୍ତ୍ତମାନ ସେ ଟିକିଏ ଅସୁବିଧାରେ ଅଛନ୍ତି । ସେ ମାଲିମକଦ୍ଦମାରେ ପଡ଼ି ହିସାବପତ୍ର ନ ରଖି ପଇସା ସବୁ ଖର୍ଚ୍ଚ କରି ଦେଇଛନ୍ତି । କେତେ ଜମି ତାଙ୍କର ବନ୍ଧକ ପଡ଼ିଛି ଓ କେତେ ବିକ୍ରୀ ହୋଇଯାଇଛି । କିନ୍ତୁ ସେ ବଡ଼ ଉଦାର ଲୋକ । ତାଙ୍କ ସାଙ୍ଗରେ ଦେଖାହେଲେ ଆପଣଙ୍କର ମନ ଆପେ ଖୁସି ହୋଇଯିବ ।"

ଜ୍ୱାଲାପ୍ରସାଦ କର୍କଶ ଭାବରେ ଜବାବ୍ ଦେଲେ, "ହଁ, ଦୁଃଖର କଥା ତାଙ୍କ ସହିତ ମୋର ଦେଖା ହୋଇପାରି ନାହିଁ । ତାଙ୍କର ପ୍ରଶଂସା ମୁଁ ଅନ୍ୟ ଜାଗାରୁ ମଧ୍ୟ ଶୁଣିଛି । ଛାଡ଼ନ୍ତୁ, ଆପଣଙ୍କ ବନ୍ଧୁବାନ୍ଧବ ତ ପୁଣି କେଉଁଠାରେ କେବେ ଦେଖାହୋଇଯିବ । ହଁ, ମୁଁ ଆପଣଙ୍କ ସାଙ୍ଗରେ ଗୋଟିଏ ଜରୁରୀ କଥାବର୍ତ୍ତା ହେବାପାଇଁ ଆସିଥିଲି । ଯଦି ଆପଣଙ୍କର ଅସୁବିଧା ନ ହୁଏ ତେବେ ପାଞ୍ଚ ମିନିଟ୍ ପାଇଁ ଟିକିଏ ପଦାକୁ ଆସନ୍ତୁ ।"

ବୀରଭାନୁସିଂହଙ୍କୁ ଗୋଟିଏ ଏକାନ୍ତ ଜାଗାକୁ ନେଇଯାଇ ଜ୍ୱାଲାପ୍ରସାଦ କହିଲେ, "ଆପଣ ରାମଲାଲଙ୍କୁ ସୋରାବରେ କୌଣସି ଚାକିରୀ ଦିଅନ୍ତୁ ନାହିଁ । ସେ ଫତେପୁର ଛାଡ଼ି ସୋରାବକୁ ଆସିବା ମୁଁ ଚାହେଁ ନାହିଁ ।"

ଠାକୁର ବୀରଭାନୁ ସିଂହ ମୁଣ୍ଡରେ ହାତଦେଇ କହିଲେ, "ସବୁ କାମତ ସରିଗଲାଣି । ଆପଣ ସିନା ମୋତେ ଆଗରୁ କହି ଦେଇଥାନ୍ତେ ! ମୁଁ କେବଳ ଆପଣଙ୍କ ଯୋଗୁଁ ଏତେ ଚେଷ୍ଟା କରୁଥିଲି ।"

"ତାହେଲେ ଆପଣ ମୋ ପାଇଁ ଆଉଥରେ ଚେଷ୍ଟା କରନ୍ତୁ । ଯେମିତି କୌଣସି ପ୍ରକାରେ ସେ ଏଠାକୁ ଆସି ପାରିବ ନାହିଁ ।" ଜ୍ୱାଲାପ୍ରସାଦ ଟିକିଏ ମୁରୁକି ହସା ଦେଇ କହିଲେ, "ଆପଣ ମୋର କାକାଙ୍କୁ ବି ବେଶୀ ପ୍ରଶ୍ରୟ ଦିଅନ୍ତୁ ନାହିଁ । ମୁଁ ଆପଣଙ୍କୁ ଏତିକି ଅନୁରୋଧ କରୁଛି ।"

ଠାକୁର ବୀରଭାନୁସିଂହ କିଛି ସମୟ ଚିନ୍ତାକରି ପୁଣି କହିଲେ, "ତହସିଲଦାର ସାହେବ, ଆପଣଙ୍କ ଘରର ଭିତରର କଥା ମତେ କିଛି ଜଣାନାହିଁ । ମୁଁ ତ ଏପର୍ଯ୍ୟନ୍ତ ଯାହା କରିଛି ବା କରୁଛି ସେ ସବୁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ କରିଛି, ନଚେତ୍ ସେହି ଲୋକମାନଙ୍କଠାରେ ମୋର କ'ଣ ଆଗ୍ରହ ଅଛି ? ଆପଣ ବର୍ତ୍ତମାନ ନିର୍ଭୟରେ ଯାଇ ଶୁଅନ୍ତୁ ।"

ଜ୍ୱାଲାପ୍ରସାଦ ଆଉ ଘର ଭିତରକୁ ନ ଯାଇ ସେହି ବାହାରୁ ଫେରିଗଲେ ।

ସେହିଦିନ ସନ୍ଧ୍ୟାବେଳେ ଜେଦେଇଙ୍କୁ ଦେଖିବା ପାଇଁ ଜ୍ୱାଲାପ୍ରସାଦଙ୍କର ଆଲହାବାଦ ଯିବାର ଥିଲା । ସେଦିନ ଅଫିସ କାମରେ ତାଙ୍କର ମନ ଲାଗୁ ନ ଥିଲା । ଘରକୁ ଫେରିଆସି ଦେଖିଲେ ଘରେ ଏକପ୍ରକାର ମହାଭାରତ ଲାଗିଛି । ଶ୍ୟାମଲାଲଙ୍କର ସ୍ତ୍ରୀ ଉପରେ ମାଡ଼ ବସୁଛି ଓ ସେ ଖୁବ୍ ପାଟିକରି କହୁଛି, "ମୁଁ କହିବି, ହଜାରବାର କହିବି, ଆମ ଗୋଡ଼ରେ ମୋଟେ ରୂପା ରୂପା ପଟ ବଳା ଘଷି ହୋଇ ପାକୁଆ ହୋଇଗଲାଣି । ଆମେ ଯେତେ କହିଲେ କେହି ଶୁଣୁ ନାହାନ୍ତି । କିନ୍ତୁ ବଡ଼ ଅପାଙ୍କ ପାଇଁ ଗହଣା ଉପରେ ଗହଣା ଗଢ଼ା ଚାଲିଛି ।"

ଜ୍ୱାଲାପ୍ରସାଦ ଯାଇ କାକାଙ୍କର ରହିବା ଘର ସାମ୍‌ନାରେ ପହଞ୍ଚି ଦରଜା ପାଖରେ କହିଲେ, "କାକା, ଏସବୁ କ'ଣ ହେଉଛି ? ଜଣେ ସ୍ତ୍ରୀଲୋକକୁ ଏତେ ଲୋକ ମିଶି ମାଡ଼ ଦେବା ଭାରି ଖରାପ । ବିଚାରୀର ଦେହ କେତେ ଜାଗାରେ ଖଣ୍ଡିଆ ହୋଇଯାଇଛି । ଅନ୍ୟାୟ ଅତ୍ୟାଚାରର ତ ପୁଣି ଗୋଟାଏ ସୀମା ଅଛି !"

ମୁନ୍‌ସି ରାଧେଲାଲ ଘର ଭିତରୁ ଗୁଁ ଗୁଁ ହୋଇ ଉତ୍ତର ଦେଲେ, "ବିଚାରୀ ନୁହେଁ ସେ, ସେ ଗୋଟାଏ ରାକ୍ଷସୀ । ଯେତେବେଳେ ଦେଖିବ ଗାଳି ଦେଉଥିବ, ଶାଶୁ ଓ ଯା' ମାନଙ୍କ ସାଙ୍ଗରେ ଲଢ଼ାଇ କରୁଥିବ । ଦୁଇ ଚାରି ମାସରେ ଥରେ ମାଡ଼ ନ ଖାଇଲେ ତାକୁ ଶାନ୍ତି ଲାଗେ ନାହିଁ । ଏକୁଟିଆ ତାକୁ କେହି ପାରିବେ ନାହିଁ ।"

ଜ୍ୱାଲାପ୍ରସାଦ ବଡ଼ ସାହସରେ କହିଲେ, "କାକା, ମୁଁ ଆପଣଙ୍କୁ କହିଦେବାକୁ

ସୁହେଁ ଯେ ଏଘରେ ଏସବୁ କଥା ହୋଇ ପାରିବ ନାହିଁ ।" ଏତିକି କହି ସେ ହଠାତ୍ ନିଜ ବଖରାକୁ ଚାଲିଗଲେ ।

ସେହିଦିନ ରାତିରେ ଜ୍ୱାଲାପ୍ରସାଦ ଯାଇ ଆହ୍ଲାବାଦରେ ପହଞ୍ଚି ଗଲେ । ଲକ୍ଷ୍ମୀଚନ୍ଦ ବି କାନପୁରରୁ ଆସି ଘରେ ପହଞ୍ଚିଥିଲେ । ତିନିଦିନ ପୂର୍ବରୁ ଜେଦେଇଙ୍କ ଜ୍ୱର ଛାଡ଼ି ଯାଇଥିଲା । ସେ ଖୁବ୍ ସୁସ୍ଥ ଦେଖା ଯାଉଥିଲେ । ମନେ ହେଉଥିଲା ସତେ ଯେମିତି ଜେଦେଇ ଜ୍ୱାଲାପ୍ରସାଦଙ୍କୁ ଅପେକ୍ଷା କରି ରହିଥିଲେ । କାରଣ ତାଙ୍କ ଘୋଡ଼ାଗାଡ଼ିର ଶବ୍ଦ ଶୁଣିଲା ମାତ୍ରେ ଜେଦେଇ ବାହାରକୁ ବାହାରି ଆସି କହିଲେ, "ଆସନ୍ତୁ ବଡ଼ଅର ସାହେବ, ଏଥର ଯମୁନାକୁ କାହିଁକି ସାଙ୍ଗରେ ଆଣିଲେ ନାହିଁ ?"

ତୃତୀୟ ଦିନ ସକାଳେ ଜ୍ୱାଲାପ୍ରସାଦ ଜେଦେଇ, ଲକ୍ଷ୍ମୀଚନ୍ଦ ଓ ତା'ର ସ୍ତ୍ରୀ ରାଧାଙ୍କୁ ସାଙ୍ଗରେ ଧରି ସୋରାବକୁ ଫେରି ଆସିଲେ । ଏହି ସମୟରେ କିଶନଲାଲ ବାହାର କୁଅମୂଳେ ବସି ଦାନ୍ତ ଘଷୁଥିଲା । ଲକ୍ଷ୍ମୀଚନ୍ଦ, ରାଧା ଓ ଜେଦେଇଙ୍କୁ ଦେଖିଲା ମାତ୍ରେ ଦାନ୍ତକାଠି ଫିଙ୍ଗିଦେଇ ପଳାଇଲା । ସେ ପଳାଇବାର ଦେଖି ଜ୍ୱାଲାପ୍ରସାଦ ପାଟିକରି ଡାକ ପକାଇଲେ, "କିଶନୁ, ତୁ କୁଆଡ଼େ ଯାଉଛୁ ? ଏଣ୍ଡାକୁ ଆ ।"

ଜ୍ୱାଲାପ୍ରସାଦଙ୍କର ଡାକ ନ ଶୁଣିଲା ପରି କିଶନଲାଲ ସେଠୁ ଧଳାଇବାକୁ ଆରମ୍ଭ କଲା । ଜ୍ୱାଲାପ୍ରସାଦ ଖୁବ୍ ପାଟି କଲେ, "କିଏ ଅଛ କିଶନୁକୁ ଧର ।"

ଏହି ସମୟରେ ବିଶନଲାଲ ଆଖଡ଼ାରୁ ଫେରୁଥିଲା । ଜ୍ୱାଲାପ୍ରସାଦଙ୍କର ପାଟି ଶୁଣି ସେ କିଶନଲାଲକୁ ଡାକିଲା । ତାହାପରେ ସେ ପୋଲିସମାନଙ୍କ ହାତରୁ କିଶନଲାଲକୁ ଛଡ଼ାଇ ଆଣି ଘୋଷାରି ଘୋଷାରି ଜ୍ୱାଲାପ୍ରସାଦଙ୍କ ସାମନାରେ ଠିଆ କଲା । ଏହି ସବୁ ପାଟିତୁଣ୍ଡ ଶୁଣି ରାଧେଲାଲ ଓ ରାମଲାଲ ଘର ଭିତରୁ ବାହାରି ଆସିଥିଲେ । ରାଧେଲାଲ ପଚାରିଲେ, "କିରେ ବିଶନୁ କଥା କ'ଣ ? ତୁ କିଶନୁକୁ ଏମିତି ଘୋଷାରୁଛୁ କ'ଣ ?"

"ଜ୍ୱାଲାଭାଇ ଏଣ୍ଡାକୁ ଡାକୁ ଡାକୁ ସେ ଆସିବ କ'ଣ—ପଳାଇ ଯାଉଥିଲା । କିଏ ଅଛ ତାକୁ ଧର ବୋଲି ଜ୍ୱାଲାଭାଇ ପାଟିକଲେ । ତହିଁପିଲା ପୋଲିସମାନେ ତାକୁ ଧରି ନେଇଥିଲେ । ମୁଁ ସେମାନଙ୍କ ହାତରୁ ତାକୁ ଛଡ଼ାଇ ଆଣିଛି ।"

ଜ୍ୱାଲାପ୍ରସାଦ କିଶନଲାଲକୁ କହିଲେ, "ଡରିବାର କିଛି ଅଛି ? ଲମ୍ବରଦାରଣୀ ତାଙ୍କ ପୁଅ ବୋହୂଙ୍କ ସାଙ୍ଗରେ ଆସିଛନ୍ତି । କିଶନଲାଲ ଯାହା କରିଛି ତାହାଠାରୁ ତାହାହିଁ ଆଶଙ୍କା କରାଯାଉଥିଲା । ସେଥିପାଇଁ ତ ସେ କିଛି ଦଣ୍ଡ ପାଇଛି । କିନ୍ତୁ ସେ ଲମ୍ବରଦାରଣୀ ଓ ଲକ୍ଷ୍ମୀଚନ୍ଦଙ୍କ ବିଷୟରେ ମିଛରେ ଯାହା କହିଛି, ତାହା ଖୁବ୍ ଖରାପ । ସେହି କଥା କହିବା ପାଇଁ ମୁଁ ତାକୁ ଡକାଉଥିଲି !"

ମୁନ୍‌ସି ରାଧେଲାଲ କାନ୍ଦ କାନ୍ଦ ହୋଇ କହିଲେ "କ'ଣ ଆଉ କହିବା । ସେ

ଟୋକାଟା ତ କୁଳର କଳଙ୍କ ହୋଇ ଜନ୍ମ ହୋଇଛି । ଲକ୍ଷ୍ମୀଚନ୍ଦ, ମୁଁ ହାତଯୋଡ଼ି କ୍ଷମା ମାଗୁଛି, ଏହି ଅଧମଟାକୁ ତମେ କ୍ଷମା କର ।''

ବାପାଙ୍କର ଏକଥା ଶୁଣି କିଶନଲାଲ୍ ଖୁବ୍ ଜୋରରେ ହସି କହିଲା, ''କାହାକୁ ଏବେ କେତେ କ୍ଷମା ମାଗିବ ବାପା ! କିଶନୁଭାଇ କ'ଣ କେବେ ବଦଳିବ ? ସେ ତ ଆମ ନାକ କାଟି ତଳେ ପକାଇବା ପାଇଁ ଜନ୍ମ ହୋଇଛି ।''

ଯମୁନା ବାହାରି ଆସି ଜେଦେଇ ଓ ରାଧାଙ୍କୁ ସ୍ୱାଗତ କରି ଘର ଭିତରକୁ ନେଇଗଲା ।

ସେହିଦିନ ସନ୍ଧ୍ୟାରେ ଲକ୍ଷ୍ମୀଚନ୍ଦ ରାଧାକୁ ନେଇ ଆହ୍ଲାବାଦ ଫେରିଗଲେ । ଯମୁନାର ଅନୁରୋଧରେ ଜେଦେଇ କିଛିଦିନ ସୋରାବରେ ରହିଗଲେ । ତହିଁଆରଦିନ ସକାଳେ ଜ୍ୱାଳାପ୍ରସାଦ ବି ଟୁର୍‌ରେ ଚାଲିଗଲେ ।

ତିନିଦିନ ପରେ ଜ୍ୱାଳାପ୍ରସାଦ ଯେତେବେଳେ ଟୁର୍‌ରୁ ଫେରିଲେ, ଦେଖିଲେ ଶ୍ୟାମଲାଲ୍ ସୋରାବରେ ଆସି ରହିଛି । ଶ୍ୟାମଲାଲ ତାଙ୍କୁ କହିଲା, ''ଭାଇ, ଆଜି ସକାଳେ ରାଜାସାହେବ ସରୋହନ ଠାକୁର ବୀରଭାନୁସିଂହଙ୍କ ଘରକୁ ଆସିଛନ୍ତି । ସେ ଆପଣଙ୍କ ସାଙ୍ଗରେ ବିଶେଷ ଭାବରେ ସାକ୍ଷାତ କରିବାକୁ ଚାହାନ୍ତି ।''

ଜ୍ୱାଳପ୍ରସାଦ କହିଲେ, ''ହଁ, ସେ ମୋତେ ବିଶେଷଭାବରେ ସାକ୍ଷାତ୍ କରିବାକୁ ଚାହାନ୍ତି ମୁଁ ଜାଣେ । ବିଜୁମୌଜାର ଅନାବାଦୀ ଜମି ସେ ତୋ ନାଁରେ କରିଦେଇଛନ୍ତିନା, ସେଥିପାଇଁ ମୋ ସାଙ୍ଗରେ ଦେଖାହେବାକୁ ଚାହୁଁଥିବେ !''

ଏତିକିବେଳକୁ ମୁନ୍‌ସି ରାଧେଲାଲ ଆସି ପହଞ୍ଚିଗଲେ । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ''ତୋତେ ଏ ଖବର ସବୁ କିଏ ଦେଲା ? ଶ୍ୟାମୁ ଆଉ ମୋ ଛଡ଼ା ତ ଆଉ କାହାକୁ ଜଣା ନଥିଲା । ଏମିତିକି ଠାକୁର ବୀରଭାନୁସିଂହ ବି ଏକଥା ଜାଣି ନଥିଲେ ।''

''ଗତ ରବିପାଞ୍ଚଦିନ ତଳେ ଆଲହାବାଦର ଲାଲ ଘନଶ୍ୟାମ ଦାସ ମୋ ପାଖକୁ ଆସିଥିଲେ । ତାଙ୍କ ପାଖରେ ରାଜା ସାହେବଙ୍କର ତିନିଟା ମୌଜା ବନ୍ଧକ ପଡ଼ିଛି । ସେଥିରୁ ଗୋଟାଏ ବିଜୁମୌଜା । ସେ ମୋତେ ସବୁକଥା କହି ସାବଧାନ କରି ଦେଇଛନ୍ତି, ମୁଁ ଯେମିତି ସେ ମକଦ୍ଦମାରେ ନପଡ଼େ ଓ ମୋର ବଦ୍‌ନାମ ନହୁଏ ।''

ରାଧେଲାଲ କହିଲେ, ''ଆରେ ମକଦ୍ଦମା କ'ଣ ? ମକଦ୍ଦମା ତ ଚାଲିଛି । ରାଜା-ସାହେବ ନିଜେ ମକଦ୍ଦମା ଲଢ଼ୁଛନ୍ତି । ସେ ମକଦ୍ଦମାରେ ଆମର କ'ଣ ସମ୍ପର୍କ ? ଯଦି କାଗଜପତ୍ର ଠିକ୍ ଥିବ ତାହେଲେ ଆର ଗାଁ ଦୁଇଟା ଯେମିତି ଗଲା ଏ ବିଜୁମୌଜା ବି ସେମିତି ଯିବ; ନହେଲେ ତ ବିନା କଷ୍ଟରେ ସେ ଜମିଦାରୀ ଆମ ହାତରେ ପଡ଼ିଯିବ ।''

ଜ୍ୱାଲାପ୍ରସାଦ ପଚାରିଲେ, "ତାହାହେଲେ ମୋ' ସାଙ୍ଗରେ ସେ ଦେଖା ହେବାକୁ ଚାହୁଁଛନ୍ତି କାହିଁକି ?"

"ହଁ, ଭୁ ଜଣେ ହାକିମ ଲୋକ, ତୋଭଳି ହାକିମହୁକୁମାଙ୍କ ସାଙ୍ଗରେ ଚାହ୍ନା ପରିଚୟ ହେବାକୁ ସେ ଚାହୁଁଛନ୍ତି । ଠାକୁର ବୀରଭାନୁସିଂହ ଆଜି ରାତିଭୋଜନ ପାଇଁ ତୋତେ ନିମନ୍ତ୍ରଣ କରି ଯାଇଛନ୍ତି । ସେଇଠାରେ ରାଜା ସାହେବଙ୍କ ସାଙ୍ଗରେ ସାକ୍ଷାତ୍ ହେବ ।"

ଜ୍ୱାଲାପ୍ରସାଦ କଥାକୁ ଆଉ ନ ବଢ଼ାଇ ସେଇଠିରେ ବନ୍ଦ କଲେ । ସେ ଗାଧୋଇ-ପାଧୋଇ ଖିଆପିଆ ସାରିଲା ବେଳକୁ ଦୁଇପ୍ରହର ହୋଇଯାଇଥିଲା । ସେଦିନ ରାତିରେ ଠାକୁର ବୀରଭାନୁସିଂହଙ୍କ ଘରେ ତାଙ୍କର ନିମନ୍ତ୍ରଣ ଥିଲା ବୋଲି ଯମୁନା ବୋଧହୁଏ ତାଙ୍କୁ କହିଲା । ସେ ଯମୁନାକୁ କହିଲେ, "ତମେ ଘୋଡ଼ାଗାଡ଼ି ନେଇ ଠାକୁର ବୀରଭାନୁ ସିଂହଙ୍କ ଘରକୁ ଚାଲିଯା' । ମୋତେ ଟିକିଏ ବେଚୁ ମିସିରଙ୍କ ଘରକୁ ଯିବାକୁ ହେବ । ମୁଁ ସେଇଠାରୁ ସିଧା ଚାଲିଯିବି । ଠାକୁର ବୀରଭାନୁସିଂହଙ୍କ ସ୍ତ୍ରୀଙ୍କୁ କହିଦେବ ।"

ଯମୁନା କହିଲା, "ଆଚ୍ଛା ହଉ, କିନ୍ତୁ ଶ୍ୟାମୁ ସ୍ତ୍ରୀ ପାଇଁ ବଳା ତିଆରି କରିବାକୁ ହେବ । ବିଚାରିକୁ ସମସ୍ତେ ହଇରାଣ କରୁଛନ୍ତି । ରାସ୍ତାରେ ବଣିଆ ଦୋକାନ ପଡ଼ିବ । ତାକୁ ଆଠଟା ପୁରୁଣା ବଳା ଦେଇ ଷୋଳଟା ତିଆରି କରିବାକୁ କହିବ । ବାକି ରୁପା ସେ ହାତରୁ ଦେଇଥିବ ।" ଏହି କଥା କହି ଯମୁନା ଶ୍ୟାମ ବୋହୂର ବଳାଗୁଡ଼ିକ ଜ୍ୱାଲାପ୍ରସାଦଙ୍କୁ ଦେଇଦେଲା ।

ସେଦିନ ଜ୍ୱାଲାପ୍ରସାଦ ଚାଲି ଚାଲି ବେଚୁ ମିସିରଙ୍କ ଘରକୁ ଗଲେ । ବେଚୁ ମିସିରଙ୍କ ଘର ରାସ୍ତାରେ ଦେବୀଦୟାଲଙ୍କ ସୁନା ଦୋକାନ । ଜ୍ୱାଲାପ୍ରସାଦ ସେହି ବାଟରେ ଗଲାବେଳେ ଦେବୀଦୟାଲଙ୍କ ଦୋକାନଠାରେ ଟିକିଏ ଅଟକିଯିବାରୁ ସେ ତାଙ୍କୁ ସ୍ୱାଗତ କରି କହିଲା, "ଆସନ୍ତୁ ସରକାର, ଆପଣ କାହିଁକି ଏତେ କଷ୍ଟ କରି ଏଠାକୁ ଆସିଲେ ? ରାମଲାଲ ଭାଇଙ୍କ ହାତରେ ମୁଁ ତ କହିଥିଲି କାଲି ତିଆରି ହୋଇଯିବ; ଆସି ନେଇଯିବେ ।"

ଜ୍ୱାଲାପ୍ରସାଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କ'ଣ ତିଆରି ହୋଇଯିବ ?

ଆପଣଙ୍କ ସ୍ତ୍ରୀଙ୍କର ବେକର ହାର ପରା ! ଦେଖନ୍ତୁ, କେଡ଼େ ସୁନ୍ଦର ହୋଇଛି । ବର୍ତ୍ତମାନ ପାଲିସ୍ ହୋଇନାହିଁ । ଦେଖିବେ, ପାଲିସ୍ ପରେ କେମିତି ଚମକିବ ।" ଏହି କଥା କହି ଦେବୀଦୟାଲ ଗୋଟାଏ ମଟରମାଳ ଆଣି ଜ୍ୱାଲାପ୍ରସାଦଙ୍କ ଆଗରେ ରଖିଦେଲା ।

ଜ୍ୱାଲାପ୍ରସାଦ ସେହି ମଟରମାଳକୁ ଏପାଖ ସେପାଖ କରି ଦେଖିଲେ ଓ ପଚାରିଲେ, "ଏଟା କେତେ ଓଜନ ହେବ ?"

"ସମୁଦାୟ ତୋଳାକରୁ ଟିକିଏ ବେଶୀ ହେବ; କିନ୍ତୁ ପାଞ୍ଚ ତୋଳାଭଳି ଦେଖା ଯାଉଛି । ମୋଠାରୁ ତ ଆଲାହାବାଦର ବଡ଼ଲୋକମାନେ ମଟରମୋଲ ତିଆରି କରାଇ ନେଉଛନ୍ତି । ଆମ ଏଠାକାର କାରିଗର ସାରା ପ୍ରଦେଶର ଭଲ କାରିଗର ।"

ଜ୍ୱାଲାପ୍ରସାଦ ଟିକିଏ ଭାବି ଭାବି ପଚାରିଲେ, "ଆଚ୍ଛା, ଆମ ଘର ପାଇଁ ତମେ ନିକଟରେ ଆଉ କିଛି ଗହଣା ଗଢ଼ିଛ କି ?"

"ଅଜ୍ଞା, ଏସବୁ ପଚାରିବା କ'ଣ ଦରକାର ? ଗହଣା ତ କେବଳ ବଡ଼ ବଡ଼ ଅଫିସର ଓ ରାଜା-ମହାରାଜାଙ୍କ ଘରେ ତିଆରି ହୁଏ । ଏଥିରେ ଚିନ୍ତା କରିବାର କ'ଣ ଅଛି ? ରାମଲାଲ ଭାଇଙ୍କ ହାତରେ ଏସବୁ ଜିନିଷ ଯାଇଛି । ହିସାବ-କିତାବ ବିଷୟରେ ସେ ଭାରି ପକ୍‌କା ।" ଏତିକି କହି ଦେବୀଦୟାଲ ହସିଦେଲେ ।

ଜ୍ୱାଲାପ୍ରସାଦ କହିଲେ, "ହଁ ଠିକ୍ କଥା । କିନ୍ତୁ ମୁଁ ଟିକିଏ ହିସାବ-କିତାବ ଦେଖିବାକୁ ଚାହେଁ । ଯାହା ହେଲେ ବି ତ ଟଙ୍କା ମୋତେ ଦେବାକୁ ହେବ । କ'ଣ କହୁଛନ୍ତି ?"

"ଆରେ ସରକାର, ଆପଣ ବି ଟଙ୍କା ପଇସା କଥା କହୁଛନ୍ତି; ବଡ଼ଲୋକଙ୍କ ଘରକୁ ବର୍ଷକେ ଥରେ ହିସାବ ଯାଏ । ଆପଣଙ୍କ ପାଖରେ ଦୀପାବଳୀ ପୂର୍ବରୁ ହିସାବ ପହଞ୍ଚିଯିବ । ମୋଟେ ଦୁଇ ଚାରି ଶହ ଟଙ୍କା, ଜାଣନ୍ତୁ ଆପଣଙ୍କ ହାତର ମଳି ।"

ଶ୍ୟାମୁ ସ୍ତ୍ରୀର ବଳାଗୁଡ଼ିକ ଜ୍ୱାଲାପ୍ରସାଦ ଦେବୀଦୟାଲଙ୍କୁ ଦେଇଦେଲେ ଓ କହିଲେ, "କାଲି ଦୁଇପ୍ରହର ସୁଦ୍ଧା ଯୋଳଟି ନୂଆ ବଳା ତିଆରି କରି ତା'ର ପୂରା ହିସାବ ଧରି ଆମ ଘରକୁ ଆସିବ । ଭୁଲିବ ନାହିଁ । ତମେ ତ ଜାଣ ମୋର ଉଧାର ଖାତା ଚଳେ ନାହିଁ ।"

## ଚଉଦ

ତହିଁ ଆରଦିନ ଜ୍ୱାଲାପ୍ରସାଦ ବହୁତ ଡେରିରେ ଉଠିଲେ । ଆଖି ଖୋଲିଲାବେଳକୁ ମୁଣ୍ଡ ଟିକିଏ ଟିକିଏ ବଥାଉଥିଲା । ରାତି ଚାରିଟାବେଳୁ ଯେଉଁ ବର୍ଷା ଆରମ୍ଭ ହୋଇଥିଲା, ତାହା ଥମିଯାଇଥିଲା । ପ୍ରକୃତରେ ଚାରିଆଡ଼େ ଉଲ୍ଲାସ ଖେଳିଯାଇଥିଲା । କେତେବେଳେ ପୂଜା କାମ ସାରି ଦେଇ ଯମୁନା ପାଖରେ ବସି ଭୋଜି କଥା ଶୁଣୁଥିଲେ ।

ସେ ଦିନ ରବିବାର ଯୋଗୁ କଚେରି ଛୁଟି ଥିଲା । ତେଣୁ ତହସିଲ ଅଫିସର ଚପ୍ରାସୀ ଡାକ ଧରି ଆସି ପହଞ୍ଚିଲା ।

ଜ୍ୱାଲପ୍ରସାଦ ସବୁ କାମ ସାରି ଗାଧୋଇଲାବେଳକୁ ଦଶ ବାଜିଯାଇଥିଲା । ସେତେବେଳକୁ ମେଘ ଅନେକାଂଶରେ ସଫା ହୋଇ ମଝିରେ ମଝିରେ ସୂର୍ଯ୍ୟ ଦେଖା ଯାଉଥିଲା । ଜ୍ୱାଲପ୍ରସାଦ ଜଳଖିଆ ଖାଇବା ପାଇଁ ମନା କରିଦେଇ ଅଫିସ ଘରେ ବସି ଡାକ ଦେଖିଲେ ଓ ଭିକ୍ଷୁ ହାତରେ କାକା ରାଧେଲାଲଙ୍କୁ ଡକାଇ ପଠାଇଲେ ।

ମୁନ୍‌ସି ରାଧେଲାଲ ଶ୍ୟାମଲାଲକୁ ନେଇ ରାଜା ସର୍ବେହନଙ୍କ ପାଖକୁ ଯିବାକୁ ବାହାରିଛନ୍ତି ଏହି ସମୟରେ ଭିକ୍ଷୁ ଯାଇ ଜ୍ୱାଲପ୍ରସାଦଙ୍କ ଖବର ଦେଲା । ରାଧେଲାଲ ଶ୍ୟାମଲାଲକୁ ସଙ୍ଗରେ ନେଇ ଜ୍ୱାଲାପ୍ରସାଦଙ୍କ ବୈଠକଘରେ ପହଞ୍ଚିଲେ । ଶ୍ୟାମଲାଲକୁ ଦେଖି ଜ୍ୱାଲାପ୍ରସାଦ କହିଲେ, "ତୁ ବି ଆସିଲୁ, ଭଲ କଲୁ । କାକା, ମୁଁ ବି କାଲି ରାଜାସାହେବ ସର୍ବେହନଙ୍କ ସହିତ ଦେଖା କରି ଆସିଛି । ତାଙ୍କ ଓକିଲ ବଟେଶ୍ୱରୀପ୍ରସାଦ ବି ତାଙ୍କ ପାଖରେ ଥିଲେ ।"

ମୁନ୍‌ସି ରାଧେଲାଲ କହିଲେ, "ହଁ, ବଟେଶ୍ୱରୀବାବୁ ଫତେପୁରର ଲୋକ । ସେ ବିଲାତ ଯାଇ ଅଜାତ ହୋଇଗଲେ; କିନ୍ତୁ ଖୁବ୍ ଜଣାଶୁଣା ଓକିଲ । ଆଲାହାବାଦରେ ତାଙ୍କର ଗୋଟାଏ ବଡ଼ କୋଠା ଅଛି ।"

"ହଁ, ମୋତେ ସେ ସବୁ କଥା କହୁଥିଲେ ଓ ବହୁତ ଆଦର ବି କଲେ । ବସନ୍ତୁ, ଏତେ ତରତର କାହିଁକି ?"

"ନାହିଁ ସେମିତି କିଛି ତରତର ନାହିଁ ଯେ, ଶ୍ୟାମୁକୁ ନେଇ ମୁଁ ରାଜା ସାହେବଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଯାଉଥିଲି । ଆଜି ସନ୍ଧ୍ୟାବେଳେ ସେ ଚାଲିଯିବେ; ତେଣୁ ସେ ଯିବା ପୂର୍ବରୁ ତାଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଭାବୁଥିଲି ।"

"ସନ୍ଧ୍ୟା ହେବାକୁ ତ ଆହୁରି ଅନେକ ବେଳ ଅଛି । ଆପଣଙ୍କ ସଙ୍ଗେ ମୋର ବହୁତ ଜରୁରୀ କଥା ଅଛି ।"

ମୁନ୍‌ସି ରାଧେଲାଲ ବସିଯିବାରୁ ଶ୍ୟାମଲାଲ ପଚାରିଲା, "ଭାଇ, ମୁଁ ଚାଲିଗଲେ କିଛି ଅସୁବିଧା ନାହିଁ ତ ? ମୋଠି ତ ଆପଣଙ୍କର କିଛି କାମ ନାହିଁ ।"

"ହଁ, ତୁ ଚାଲିଯା' । ମୋର କାକାଙ୍କ ସଙ୍ଗେ କଥାବାର୍ତ୍ତା ଅଛି ।"

ଶ୍ୟାମଲାଲ ଚାଲିଯିବା ପରେ ଜ୍ୱାଲପ୍ରସାଦ ରାଧେଲାଲଙ୍କୁ କହିଲେ, "କାକା, ଆପଣ ତ ଜାଣନ୍ତି, ବାପା କେମିତି ଓ କାହିଁକି ମଲେ ।"

ରାଧେଲାଲ ଟିକିଏ ଦୁଃଖ ପ୍ରକାଶ କରି କହିଲେ, "ହଁ, ତୁ ତ କହୁଥିଲୁ ସେ ଖସି-ପଡ଼ିଲେ ଓ ଭରିସୁରାଇ ତାଙ୍କ ମୁଣ୍ଡ ଉପରେ ମାଡ଼ି ବସିଲା ।"

"ନାଁ, ପ୍ରକୃତରେ ତା' ନୁହେଁ । ଭରିସୁରାଇକୁ ନିଜ ମୁଣ୍ଡରେ ପିଟି ସେ ଆତ୍ମହତ୍ୟା କରିଥିଲେ ।" ତାପରେ ସେ ଖୁବ୍ ଜୋରରେ ପାଟିକରି କହିଲେ, "ସେ କ୍ରୋଧରେ

ପାଗଳ ହୋଇ ସୁରେଇକୁ ନିଜ ମୁଣ୍ଡରେ ପିଟି ଦେଇଥିଲେ । ତାଙ୍କ କ୍ରୋଧର କାରଣ ହେଲା ଆପଣମାନଙ୍କ ଜାଲିଆତିରେ ପଶି ମୁଁ ମିଛ କହିବା ପାଇଁ ମୋଟେ ରାଜି ହୋଇ ନଥିଲି ।''

ମୁନ୍‌ସି ରାଧେଲାଲ କହିଲେ, ''ଯାହା ତ ଗଲାଣି ଗଲାଣି । ସେ ମକଦ୍ଦମାରେ ତ ଆମେ ହାରିଲେ; ଆଉ ସେ କଥା ପକାଇ ଲାଭ କ'ଣ ? ତୋତେ ଜବରଦସ୍ତି କରିବା ପ୍ରକୃତରେ ତାଙ୍କର ଭୁଲ ।''

''ନାହିଁ କାକା, ସେ କଥା ତ ଶେଷ ହୋଇନାହିଁ । ବର୍ତ୍ତମାନ ରାଜା ଦର୍ଶୋହନ ଶ୍ୟାମଲାଲ ନାଁରେ ଯେଉଁ ବକ୍ସମୌଜା କରି ଦେଇଛନ୍ତି, ସେଥିପାଇଁ ପୁଣି କଏ ବଳି ପଡ଼ିବ ସେହି କଥା ମୁଁ ପଚାରିବାକୁ ଚାହୁଁଛି ।''

''ସେଥିରେ ତୋର କ'ଣ ଅଛି, ସେକଥା ରାଜା ସାହେବ ଜାଣନ୍ତି ନୋହିଲେ ଶ୍ୟାମଲାଲ ଜାଣେ । ସେଥିରେ ମିଛ କହିବା ପାଇଁ ତୋତେ କଏ କହୁଛି ? ବିନା ବିପତ୍ତିରେ ସେ ଜମିଦାରୀ ତ ଆପେ ଆପେ ଆସିଯାଉଛି । ଶାସ୍ତ୍ରରେ ଅଛି, ଆସୁଥିବା ଧନକୁ ଗୋଡ଼ରେ ଆଡ଼େଇଦେବା ଉଚିତ ନୁହେଁ ।''

ଜ୍ୱାଲପ୍ରସାଦ ଆହୁରି କ'ଣ କହିବେ ବୋଲି ଭାବୁଥିଲେ, କିନ୍ତୁ କହୁ କହୁ ପୁଣି ବନ୍ଦ ହୋଇଗଲେ । ଦେବୀପ୍ରସାଦ ବଣିଆ ଘ୍ୱା' ଭିତରେ ଷୋଳପଟ ଦଳା ଓ ତାର ହିସାବ-ପତ୍ର ଧରି ଆସି ବୈଠକଖାନା ଆଗରେ ଠିଆହେଲା । ଜ୍ୱାଲପ୍ରସାଦ ବାହାରକୁ ଚାହିଁ ପଚାରିଲେ, ''କଏ ସେ ? ଦେବୀଦୟାଲ ! ଭିତରକୁ ଆସ ।''

ଜ୍ୱାଲପ୍ରସାଦ ଦେବୀଦୟାଲ ହାତରୁ ଗହଣା ନେଇ ଡାକ ପକାଇଲେ, ''ଆରେ ଭିକ୍ଷୁ !''

ଭିକ୍ଷୁ ବୋଧହୁଏ ବୈଠକଖାନାରୁ ଟିକିଏ ଦୂରରେ ଛିଡ଼ା ହୋଇଥିଲା । ସଙ୍ଗେ ସଙ୍ଗେ ଦୌଡ଼ି ଆସି କହିଲା, ''କ'ଣ ଭାଇ ?''

ଭିକ୍ଷୁ ହାତରେ ଗହଣା ଦେଇ ଜ୍ୱାଲପ୍ରସାଦ କହିଲେ, ''ଯା' ଭାଉଜଙ୍କୁ ଏ ଗହଣା ଦେଇ ଆ' । ଆଉ ରାମୁଭାଇଙ୍କୁ କହିବୁ, ମୁଁ ଡାକୁଛି, ଆସିବେ ।''

ମୁନ୍‌ସି ରାଧେଲାଲ ଟିକିଏ ଶଙ୍କିତ ହୋଇ ପଚାରିଲେ, ''କାହିଁକି, କ'ଣ କାମ ଅଛି ?''

ଜ୍ୱାଲପ୍ରସାଦ ବଡ଼ ଶାନ୍ତ ଭାବରେ କହିଲେ, ''ରାମୁଭାଇ ଦେବୀଦୟାଲଙ୍କ ପାଖରେ କେତେକ ଗହଣା ଗଢ଼ାଇଥିଲେ । ଏଇ ହିସାବ ବର୍ତ୍ତମାନ ସେ ଆଣିଛନ୍ତି ।''

ରାଧେଲାଲ ଦେବୀଦୟାଲଙ୍କୁ ଚାହିଁ କହିଲେ, ''କ'ଣ ବାବୁ ! ଇଏ ତ ରାମଲାଲର ନିଜ ହିସାବ । ଏଥିରେ ତହସିଲଦାରବାବୁଙ୍କର କ'ଣ ଅଛି ?''

ଦେବୀଦୟାଲ୍ କିଛି କହିବା ପୂର୍ବରୁ ଜ୍ୱାଲାପ୍ରସାଦ କହିପକାଇଲେ, "କାକା, ଦେବୀଦୟାଲ କ'ଣ ରାମୁଭାଇଙ୍କୁ ଜାଣେ ? ସେ ସିନା ମୋତେ ଜାଣେ । ତାଙ୍କଠୁ ଯାହା ନିଆଆଣ ହେଉଛି ସବୁ ତହସିଲଦାରଙ୍କ ଘର ହିସାବରେ ହେଉଛି । ସେଥିପାଇଁ ସବୁ ଦାୟିତ୍ୱ ମୋର ଉପରେ । ତା ଛଡ଼ା ହିସାବ ସେ ଆପେ ଆପେ ଆଣି ନଥିଲା । ମୁଁ ମଗାଇବାରୁ ଆଣିଛି ।" ଏତିକ କହି ଜ୍ୱାଲାପ୍ରସାଦ ହିସାବ କାଗଜ ଉପରେ ଆଖି ପକାଇଲେ ।

ଏହା ଭିତରେ ରାମଲାଲ ଘର ଭିତରକୁ ଚାଲି ଆସିଥିଲା । ସେ ଦେବୀଦୟାଲକୁ ଦେଖିଲାମାତ୍ରେ କହିଲା, "କୌଣ କଥା କ'ଣ ? ତମେ ତହସିଲଦାର ସାହେବଙ୍କ ପାଖକୁ ଏ ହିସାବ କାହିଁକି ଆଣିଲ ? ମୋ କଥାରେ କ'ଣ ତମର ବିଶ୍ୱାସ ହେଲ ନାହିଁ ?"

ଜ୍ୱାଲାପ୍ରସାଦ ହିସାବଚଟା ପଢ଼ି କହିଲେ, "ପାଦର ଦୁଇଟା ବଳାର ଓଜନ ଶହେ କୋଡ଼ିଏ ଭରି, ଗୋଟାଏ ହାରର ଓଜନ ପଞ୍ଚଚାଳିଶ ଭରି । ରୁପା ପାଇଛି ଚାଳିଶ ଭରି, ବାକି ଅଛି ଶହେ ପଚିଶ ଭରି । ଦାମ ପଞ୍ଚସ୍ତରି ଟଙ୍କା । ବାକି ବଳା ଓ ହାରର ଗଢ଼ାମୂଲ ଭରି ଦୁଇଅଣା ହିସାବରେ କୋଡ଼ିଏ ଟଙ୍କା ଦଶ ଅଣା । ମୋଟ ପଞ୍ଚାନବେ ଟଙ୍କା ଦଶଅଣା ।" ଜ୍ୱାଲାପ୍ରସାଦ ବର୍ତ୍ତମାନ ଦେବୀଦୟାଲକୁ ଚାହିଁ କହିଲେ, "ତମେ ମଟରମାଳ ହିସାବ କାହିଁକି ଲେଖିନାହଁ ?"

ଦେବୀଦୟାଲ ଉତ୍ତର ଦେଲା, "ଆଜ୍ଞା, ମଟରମାଳ ସନ୍ଧ୍ୟା ସୁଦ୍ଧା ତିଆରି ହୋଇଯିବ । କାଲି ହିସାବ କାଗଜ ସାଙ୍ଗରେ ତାକୁ ନେଇ ଆସିବି । ସେଥିପାଇଁ ପ୍ରାୟ ଷାଠିଏ ଟଙ୍କା ଲାଗିବ ।"

"ଆଚ୍ଛା ଠିକ୍ ଅଛି, ତମେ ବର୍ତ୍ତମାନ ଯାଅ । କାଲି ସକାଳେ ମୋତେ ମଟରମାଳ ଓ ତାର ହିସାବ ଦେଇଯିବ ।"

ଦେବୀଦୟାଲ ଚାଲିଯିବାପରେ ଜ୍ୱାଲପ୍ରସାଦ ରାମଲାଲକୁ କହିଲେ, "ସମୁଦାୟ ହିସାବ ମୋଟ ଶହେ ପଞ୍ଚାବନ ଟଙ୍କା ଦଶଅଣା ହୋଇଛି । କାଲି ସକାଳେ ଦେବୀଦୟାଲକୁ ଏ ଟଙ୍କା ଦେବାକୁ ହେବ । ତେଣୁ ମୋତେ ଶହେ ପଞ୍ଚାବନ ଟଙ୍କା ଦେଇଦିଅ ।"

ରାମଲାଲ ତା ବାପାଙ୍କ ଆଡ଼କୁ ଚାହିଁବାରୁ ସେ ଜବାବ ଦେଲେ, "ରାମୁ ପାଖରେ ଟଙ୍କା କାହିଁ ? ପ୍ରତି ମାସରେ ତାର ପୂରା ଦରମା ବାରଟଙ୍କା ଲେଖାଏଁ ମାସକୁ ମାସ ସେ ଦେବୀଦୟାଲକୁ ଶୁଝିବ । ବର୍ଷକ ଭିତରେ ଟଙ୍କା ଶୁଝିଯିବ ।"

ଜ୍ୱାଲାପ୍ରସାଦ ପଚାରିଲେ, "କିନ୍ତୁ ଏଠି ତାର ଚାକିରି କାହିଁ ?" ରାମଲାଲ କହିଲା, "ଦିନେ ଦୁଇଦିନ ମଧ୍ୟରେ ଚାକିରିପାଇଁ ନିଯୁକ୍ତି-କାଗଜ ଆସିଯିବ ।"

"ଏ ନିଯୁକ୍ତ କାଗଜ ତୋ ପାଖକୁ କେବେ ଆସିବ ନାହିଁ । ତୋର ଜାଣିବା କଥା, କାଲି ସନ୍ଧ୍ୟା ପୂର୍ବା ରୁ ତୋର ପିଲାପିଲି ଧରି ଫତେପୁର ଯିବୁ । ସେଠି ଯେଉଁ ଗୃହକର୍ମ ଅଛି, ତାକୁ ଯାଇ ଆଗ ସମ୍ଭାଳ ।"

ଜ୍ୱାଲାପ୍ରସାଦଙ୍କ କଥା ଶୁଣି ମୁନସି ରାଧେଲାଲ ଚୁପ୍ ରହିଗଲେ । କିନ୍ତୁ ଜ୍ୱାଲା-ପ୍ରସାଦଙ୍କର ଏପରି ବ୍ୟବହାର ରାମଲାଲକୁ ଭଲ ଲାଗିଲା ନାହିଁ । ସେ କହିଲା, "ତା'ମାନେ ତମେ ମୋତେ ଓ ମୋ ପିଲାପିଲିଙ୍କୁ ଏଠୁ ବାହାର କରିଦେବାକୁ ଚାହୁଁଛ ?"

ଜ୍ୱାଲାପ୍ରସାଦ ଉତ୍ତେଜିତ ହୋଇ କହିଲେ, "ମୁଁ ତମକୁ ତମ ନିଜ ଜାଗାକୁ ପଠାଇବାକୁ ଚାହୁଁଛି, କିନ୍ତୁ ତମେ ଭାବୁଛ ମୁଁ ତମକୁ ତଡ଼ି ଦେଉଛି । ତମେ ଫତେପୁରରେ ଗୃହକର୍ମ କରୁଛ, ସେଠି ଶ୍ୟାମଲାଲ ପାଖରେ ବହୁତ ଜମିବାଡ଼ି ଅଛି । କାକା ଘରେ ରହି ସବୁକଥା ବୁଝିବେ । ଯା ଭିତରେ ତମେ କିଶନଲାଲକୁ ବାହା କରାଇ ତାକୁ ଠିକ୍ ବାଟରେ ନେବାକୁ ଚେଷ୍ଟା କର ।"

ରାଧେଲାଲ ହଠାତ୍ ପାଟି କରି ଉଠିଲେ, "କ'ଣ ଭାଇ ଶୁଣୁଛନ୍ତି ! ତମେ ତ ଯାଇ ସ୍ୱର୍ଗରେ ରହିଲ, ଆମକୁ ଏଠି ଇଏ ନରକରେ ପକାଉଛି । ସର୍ବନାଶ ହୋଇଯିବ, ଏ ଜ୍ୱାଲାର କିଛି ରହିବ ନାହିଁ ।" ଏହି କଥା କହି ମୁନସି ରାଧେଲାଲ ନିଜ ହାତରେ ମୁଣ୍ଡ ପିଟିବାକୁ ଲାଗିଲେ ।

ଘରଭିତରେ ହାଲହୁଲ ପଡ଼ିଗଲା । ସବୁଆଡ଼ୁ ସମସ୍ତେ ଆସି ଜୁଟି ହୋଇଗଲେ । ଲୋକ ଯେତକ ବେଶୀ ଜମାହେଲେ ରାଧେଲାଲ ଜ୍ୱାଲାପ୍ରସାଦଙ୍କୁ ସେତିକି ସେତକ ବେଶି ଗାଳି ଓ ଅଭିଶାପ ଦେଲେ । ଏହି ସମୟରେ କେତେଜଣ ଘରୁ ବାହାରି ଆସି ଜ୍ୱାଲାପ୍ରସାଦଙ୍କ ବୈଠକଘରେ ପହଞ୍ଚିଲେ ଓ ଜ୍ୱାଲାଙ୍କର ହାତ ଧରି ତାଙ୍କୁ ଉଠାଇ କହିଲେ, "ଚାଲ ଭଉର ସାହେବ ! ଏଠୁ ଚାଲ, ସେମାନେ ପାଟି କରୁଥାନ୍ତୁ ।"

ଜ୍ୱାଲାପ୍ରସାଦ ନିଜ ଘରେ ପଶି ଭିତରୁ କବାଟ କିଲିଦେଲେ; କିନ୍ତୁ ମୁନସି ରାଧେ-ଲାଲଙ୍କର ଗାଳି ଓ ଅଭିଶାପ ଏଥିରେ କିଛି କମିଲା ନାହିଁ । ବର୍ତ୍ତମାନ ରାମଲାଲ ବି ବାପା ସାଙ୍ଗରେ ମିଶି ଆହୁରି ଗାଳିଗୁଲଜ କରିବାକୁ ଲାଗିଲା ।

ଭିକ୍ଷୁ ଦଶପନ୍ଦର ମିନିଟ ପର୍ଯ୍ୟନ୍ତ ଚୁପ୍ ରହି ଏହି ନାଟ ଦେଖୁଥିଲା । କିନ୍ତୁ ସେ ଆଉ ସମ୍ଭାଳି ନପାରି ଆଗକୁ ଧାଇଁଯାଇ ରାମଲାଲର ହାତକୁ ଧରି କହିଲା, "ନିଜ ବାପକୁ ନେଇ ଘର ଭିତରକୁ ଯା, ଏ ତାମସାରେ କିଛି ମୂଲ୍ୟ ନାହିଁ ।"

ରାମଲାଲ ଭିକ୍ଷୁକୁ ବହୁତ ଗାଳିଦେଇ ଆହୁରି ତେଜରେ କଥାବାର୍ତ୍ତା କଲା । ଭିକ୍ଷୁ ରାଗିଯାଇ କହିଲା, "ଚୁପ୍ ହୋଇ ଘର ଭିତରକୁ ଯାଉଛୁ ନା ଚପ୍ରାସୀ ହାତରେ ପିଟା ଖାଇବୁ । ଭାଇର ଅନ୍ନ ଖାଇ ପୁଣି ତାଙ୍କୁ ଗାଳି ଦେଉଛୁ, ନିମକହାରାମ କାହିଁକା ?"

ରାଧେଲାଲ୍ ଦେଖିଲେ ସତ ସତ ଭିକ୍ଷୁ ପଛରେ ଦୁଇଜଣ ପୋଲିସ ଛିଡ଼ା ହୋଇଛନ୍ତି । ରାଧେଲାଲ୍ ରାମଲାଲର ହାତ ଧରି କହିଲେ, "ଚାଲ ରାମୁ, ଏବେ ତ କିଛି ହୋଇନି । ଏହି ବଦମାସଙ୍କ ହାତରେ ଇଏ ଆମକୁ ମାଡ଼ ମରାଇବ । ଚାଲ, ଆମେ ଆଜି ଏଠୁ ଚାଲିଯିବା । ଏ ପାପୀ ଘରେ ଆମେ ଆଉ ଅନ୍ନଜଳ ଛୁଇଁବା ନାହିଁ । ମା' ଓ ବୋହୂଙ୍କୁ କହି ତାଙ୍କ ଜିନିଷପତ୍ର ବାନ୍ଧନ୍ତୁ । ଶ୍ୟାମୁ ଓ କଶନକୁ ଖୋଜି କରି ନେଇ ଆ ।" ତାପରେ ରାଧେଲାଲ ରାମଲାଲକୁ ନେଇ ଘର ଭିତରକୁ ଚାଲିଗଲେ ।

ରାଧେଲାଲ ଓ ରାମଲାଲ ଘର ଭିତରକୁ ଯିବାପରେ ବାହାର ଗଣ୍ଡଗୋଳ ତ କମିଗଲା; କିନ୍ତୁ ଘର ଗଣ୍ଡଗୋଳ ଖୁବ୍ ତେଜି ଉଠିଲା । ଜିନିଷ ଫିଙ୍ଗା-ଫୋପଡ଼ା ଓ ଗାଳିଗୁଲଜ ବରାବର ଚାଲିଲା । ଏସବୁ ଦେଖି ବିରକ୍ତ ହୋଇ ଜେଦେଇ ଜ୍ୱାଲାପ୍ରସାଦଙ୍କୁ କହିଲେ, "ଆଚ୍ଛା, ତମେ ଯାଇ କୁଆଡ଼େ ଟିକିଏ ବାହାରେ ବୁଲିଆସ, ଏଠି ତ ଘଟଣା ବେଳୁବେଳ ବଢ଼ୁଚି ।"

ଜ୍ୱାଲାପ୍ରସାଦ ପଚାରିଲେ, "କିନ୍ତୁ ଆଜି ଖିଆପିଆ କେମିତି ହେବ ଭାଉଜ !"

ଜେଦେଇ ମୁରୁକି ହସି ଦେଇ କହିଲେ, "ଖିଆପିଆ କ'ଣ, ଆଜି ଏକାଦଶୀ ବୋଲି ଭାବ । ସବୁଦିନ ପାଇଁ ଗଣ୍ଡଗୋଳ ଛୁଣ୍ଡାଇ ଦେବାକୁ ଦିନଟାଏ ଯଦି ଉପାସ ରହିବାକୁ ପଡ଼େ, ଖରାପ କ'ଣ ? ଆଜି ତ ପୁଣି ଘରେ ସମସ୍ତେ ଉପାସ ରହିବେ !"

ଜ୍ୱାଲାପ୍ରସାଦ ଟିକିଏ ହସିଦେଇ କହିଲେ, "ନାହିଁ ଭାଉଜ ! ଏଇ ଉପବାସ କ'ଣ ଗୋଟାଏ ବଡ଼ କଥା ।" ତାପରେ ସେ ଯମୁନାକୁ କହିଲେ, "ଛୁନକୀ ଓ ତୁମେ ଦୁହେଁଯାକ ଦୁଆରକୁ ଯାଇ ଦେଖ କ'ଣ ହେଉଛି । ଭାଉଜ, ତମେ ବି ତାଙ୍କ ସାଙ୍ଗରେ ଯା, ମୁଁ ଯାଉଛି ବୈଠକଘରେ ଆଜିର ଡାକ ଦେଖିଦିଏ ।" ଏହି କଥା କହି ଜ୍ୱାଲାପ୍ରସାଦ ବୈଠକଖାନାକୁ ଚାଲିଗଲେ ।

ରୋଷାଇ ଘରେ ଶ୍ୟାମଲାଲର ସ୍ତ୍ରୀ କିଛି ନ ଜାଣିଲା ପରି ରୋଷାଇରେ ଲାଗିଥାଏ । ରାଧେଲାଲ ଓ ରାମଲାଲର ସ୍ତ୍ରୀ ବହୁତ ପାଟିତୁଣ୍ଡ କରୁଥାନ୍ତି ଓ ରାଧେଲାଲ୍ ଖୁବ୍ ପାଟିକରି କହୁଥାନ୍ତି, "ମୁଁ ଖାଇବି ନାହିଁ କି ପିଇବି ନାହିଁ । ଲୋକ ଉପାସରେ ରହି ଏଇଠି ମରିବି । ଯାର ହାତରେ ଭାଇଙ୍କ ଜୀବନ ଗଲା, ଯାର ହାତରେ ମୁଁ ବି ମରିବି । ସିଏ ତାର ରାଜପଣ, ଅଫିସରପଣ, ତହସିଲଦାରପଣ ସବୁ ଭୋଗକରୁ । ତାକୁ ନରକରେ ବି ଠାବ ମିଳିବ ନାହିଁ ।"

ଏସବୁ ଦେଖି ଛୁନକୀ ସମ୍ଭାଳି ପାରିଲା ନାହିଁ । ସେ ରାଧେଲାଲ ପାଖକୁ ଲାଗିଯାଇ କହିଲା, "ମରିବାର ଯଦି ଏଇନେ ମରନ୍ତୁ, ଗାଳିଗୁଲଜରେ କିଏ କ'ଣ କେବେ ମଲାଣି । ଯାର ଗୁଣରୁ ଏସବୁ ଆଜି ଆଖି ଦେଖିଲା ସିନା ! ଏତେ ଲାଜ, ଏମିତିଆ

ମରଦ ଯଦ ଜୀବନ ମୂଲ୍ୟ ଦେଉନ୍ତୁ । ଦେଖିବା କେମିତ ଜୀବନ ଦେଇବାଲ !"

ରାଧେଲାଲର ସ୍ତ୍ରୀ ଦେଖିଲେ, ଘଟଣା ବେଲକୁବେଲ ଖରାପ ହୋଇଯାଉଛୁ—ଖାଲ ତ ଖରାପ ନୁହେଁ ସବୁ ଶେଷ ହୋଇଯାଉଛୁ । ମୁନ୍‌ସି ରାଧେଲାଲ ଖୁବ୍ ଜୋରରେ ପାଟିକର ଚୁନକୀକୁ ଗାଳ ଦେଉଥାନ୍ତ । ରାଧେଲାଲର ସ୍ତ୍ରୀ ଆଖିରୁ ଲୁହ ପୋଛୁ କହୁଥାନ୍ତ, "ଆଲୋ ଚୁନକୀ, ତୋର ପୁଣି ଏତେ ସାହସ, ତୁ ପୁଣି ଶ୍ରେଷ୍ଠ ମାଲକଙ୍କ ମୁହଁରେ କଥା କହୁଛୁ ?"

"କାହିଁକ ମ, ସ୍ୱାଙ୍କୁ କ'ଣ ଡର ପଡ଼ୁଛ ? ସ୍ୱାଙ୍କର କଏ ଖାଉଛ ନା ପିଉଛ ? ମୋ ପୁଅକୁ ଏତେ ଗାଳ ଦେଉଛୁ, ବନ୍ଦ ହେଉନାହିଁ, ଏପଟ ସେପଟ କର ଜ୍ୱାଲା ଗ୍ରୁହରେ ମୃଗ ଚଗାଡ଼ିବାକୁ ଚାହୁଁଛନ୍ତ । ସେ ସବୁ ଚଳବ ନାହିଁ । ଜ୍ୱାଲା କ'ଣ କହଲା କ ? ନଜର ଘରଦ୍ୱାର ଅଛୁ, ସେଇଠି ଯାଇ ଘରକର ଖା, ଏଇଟା କ'ଣ ଖରାପ କଥା କହଲା ? ଜମି କଣିଦେଲା, ସବୁମତେ ସାହାଯ୍ୟ କଲା, ତେବେବେ ରାଜ ନାହିଁ । ଏବେ ତା' ଜୀବନ ନେବାକୁ ବସିଛନ୍ତ ! ସେକଥା କେବେ ହୋଇ ପାରବ ନାହିଁ ।"

ରାଧେଲାଲଙ୍କର ସ୍ତ୍ରୀ ତାକୁ ଚୁପ୍ କରାଇ କହଲ, "ଏସବୁ ପାଟିଗୁଣ୍ଡରୁ କ'ଣ ମିଳବ ? ଆମର ଫତେପୁର ଚାଲିଯିବା ପାଇଁ ସଜ ହେବା ଦରକାର । ସାବଧାନରେ ସବୁ ସଜବାଜ ହେବା ଦରକାର । ଏମିତ ଜୀବନ ଦେଇ ଲଭ କ'ଣ ?"

ରାଧେଲାଲ ଗରଜ ଉଠି କହଲେ, "ମୁଁ କ'ଣ ଏତେ ସହଜରେ ଏ ଜୀବନଟାକୁ ଦେଇ ଦେବ । କନ୍ତୁ ଆଜ ଆମକୁ ଏ ପାପୀର ଘର ଛାଡ଼ିବାକୁ ହେବ । ମୁଁ କହୁଛୁ, ଏ ଘରେ ମୁଁ ଅନ୍ନ ଗ୍ରହଣ କରବ ନାହିଁ କ ତମକୁ କାହାକୁ କରେଇ ଦେବ ନାହିଁ । ଶ୍ୟାମୁ ସ୍ତ୍ରୀକୁ କହ ସେ ରୋଷାଇ ଘରୁ ବାହାରିଆସୁ ।"

ଶ୍ୟାମଲାଲର ସ୍ତ୍ରୀ ଶୀଘ୍ର ଶୀଘ୍ର ରୁଟି କରଦେଲ । ରାଧେଲାଲଙ୍କ ସ୍ତ୍ରୀଙ୍କର ଆଜ୍ଞା ପାଇବା ପୂର୍ବରୁ ସେ ଯମୁନା କାନରେ କହଲ, "ଅପା, ମୁଁ ତ ରୋଷାଇ କର ସାରଲଣି, ତମେ କଛୁ ଚନ୍ତା କର ନାହିଁ । ଯାଉଛ, ଫତେପୁର ଯିବାପାଇଁ ସେ ଗାଡ଼ କରବ ।"

ଶ୍ୟାମଲାଲ ସ୍ତ୍ରୀର ଗୋଡ଼ବଲା କଥା ହଠାତ୍ ଯମୁନାର ମନେ ପଡ଼ଲ । ସେ ଶ୍ୟାମଲାଲ ସ୍ତ୍ରୀକୁ କହଲ, "ତମର ଗୋଡ଼ ବଲା ତଆର ହୋଇ ଆସିଛୁ । ରହ, ମୁଁ ଆଣି ଦେଉଛୁ ।"

ଏହ ସମୟରେ ରାଧେଲାଲଙ୍କର ସ୍ତ୍ରୀ ରୋଷାଇ ଘର ପାଖକୁ ଆସି କହଲ, "ଆଲୋ ମହିଆଣୀ, ରୋଷାଇ ଛାଡ଼ିଦେଇ ଆ ବାହାର । ଯା ତୋ ଜନ୍ମସପନ ବାନ୍ଧ ।" ଏତକ କହ ସେ କେଉଁଠି ଚାଲିଗଲ ।

ଶ୍ୟାମଲାଲର ସ୍ତ୍ରୀ ଯମୁନାଙ୍କ ଅପେକ୍ଷାରେ ରହିଲା ଓ ଯମୁନାଠାରୁ ଷୋଳପଟ୍ଟ ବଳା ପାଇ ଖୁସି ହୋଇଗଲା । ଶୀଘ୍ର ଶୀଘ୍ର ବଳା ପିନ୍ଧି ପକାଇ କହିଲା, "ଯା ହେଉ ଅପା, ଏ ଗୁଣ୍ଡାଙ୍କଠୁ ତମେ ରକ୍ଷା ପାଇଲ ।"

ଏହି ସମୟରେ ପୁଣି ରାଧେଲାଲ ସ୍ତ୍ରୀଙ୍କର ପାଟି ଶୁଭିଲା, "କିଲୋ ମଳିଆଣୀ ! କ'ଣ କରୁଛୁ ? କହିଲ ପରି ରୋଷାଇ ଗୁଡ଼ି ଚାଲିଆ, ଇଆଡ଼େ ଜିନିଷ ବାନ୍ଧିବାକୁ ଅଛି ।"

ଶ୍ୟାମଲାଲ ସ୍ତ୍ରୀ ଜବାବ ଦେଲା, "ହଁ ଯାଉଛି ମା' ହାତଗୋଡ଼ ଧୋଇକରି ଯାଉଛି ।" ତା'ପରେ ସେ ଯମୁନାକୁ କହିଲା, "କ'ଣ କହିବି ଅପା, ତମକୁ ଛାଡ଼ିକରି ଯିବାପାଇଁ ଯେତିକି ଭୟ ଲାଗୁଛି, ସେତିକି ଦୁଃଖ ଲାଗୁଛି; କିନ୍ତୁ ଯାହା ହେଉ ପଛେ, ଆମେ ଚାଲିଗଲେ ତମର ଭଲ, ଏକଥା ମୁଁ ଭଲକରି ଜାଣେ ।" ଏହି କଥା କହୁକହୁ ତା' ଆଖିରୁ ଲୁହ ଝରିପଡ଼ିଲା ।

ଶ୍ୟାମଲାଲ ସ୍ତ୍ରୀର ଆଖିରେ ଲୁହ ଦେଖି ଯମୁନା ମନରେ ଭାରି ଦୟା ଆସିଲା । ସେ ଶ୍ୟାମଲାଲ ସ୍ତ୍ରୀକୁ କୁଣ୍ଢାଇ ପକାଇ ନିଜ ପାଦରୁ ପାଉଁଜି ଦୁଇଟା କାଢ଼ି ଦେଇଦେଲି ଓ କହିଲା, "ବୋହୂ, ତମପାଇଁ ମୁଁ କୌଣସି ଗହଣା ଗଢ଼ାଇ ପାରିଲି ନାହିଁ । ମୋର ଏଇ ପାଉଁଜି ନେଇଯା । ମୁଁ ପରେ ମୋ ପାଇଁ ଗଢ଼ାଇବି । ଏହାକୁ ସାବଧାନରେ ରଖିବ । ଏମାନେ ଯଦି ତମକୁ କେବେ କିଛି କଷ୍ଟ ଦିଅନ୍ତି ତା' ହେଲେ ମୋତେ ନିଶ୍ଚୟ ଖବର ଦେବ ।"

ଶ୍ୟାମଲାଲ ସ୍ତ୍ରୀ ପାଉଁଜିକୁ ଶୀଘ୍ର ନିଜ ଲୁଗାକାନିରେ ବାନ୍ଧିନେଲା ଓ ଯମୁନାର ପାଦ ଛୁଇଁ ନମସ୍କାର କରି ଶୀଘ୍ର ସେଠାରୁ ବାହାରିଗଲା ।

ଦୁଇପ୍ରହର ହୋଇଗଲା । ଜ୍ୱାଲାପ୍ରସାଦଙ୍କ ଦୁଆର ଶୂନଶାନ ପଡ଼ିରହିଥିଲା । ରାଧେଲାଲ ଓ ତାଙ୍କର ପରିବାରର ଲୋକେ କେହି ଖିଆପିଆ କରି ନଥିଲେ । ଜ୍ୱାଲାପ୍ରସାଦ ତାଙ୍କ ବୈଠକରେ ବସି ତାଙ୍କୁ ଭଲ ନଲାଗିବାରୁ ସେ ଘୋଡ଼ାଗାଡ଼ି ଧରି କୌଣସି ଏକ ଗାଁର ଜଣେ ବନ୍ଧୁଙ୍କ ପାଖକୁ ଚାଲିଯାଇଥିଲେ । ସେ ଫେରିଲା ବେଳକୁ ଡେରି ହୋଇଯାଇଥିଲା । ସେତେବେଳକୁ ଶ୍ୟାମଲାଲ ଓ କିଶନଲାଲ ମଧ୍ୟ ଆସିଯାଇଥିଲେ ଓ ସେମାନେ ସମସ୍ତେ ଜିନିଷପତ୍ର ବନ୍ଧାବନ୍ଧିରେ ଲାଗିଯାଇଥିଲେ ।

ଯମୁନା ଜ୍ୱାଲାପ୍ରସାଦଙ୍କୁ ଖାଇବାପାଇଁ ଡକାଇଲା । ଜ୍ୱାଲାପ୍ରସାଦ ଯାଇ ରୋଷାଇ-ଘରେ ଦେଖିଲେ ଯେ ଯମୁନା ଏକା ଅଛି; ଆଉ ଘରଦ୍ୱାର ସବୁ ଶୂନ୍‌ଶାନ୍ । ସେ ପଚାରିଲେ, "ଆଉ ଲୋକ ସବୁ କାହାନ୍ତି ? ସେମାନେ ସବୁ କ'ଣ ଖାଇବେ ନାହିଁ ?"

ଯମୁନା ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ରୋଷାଇଘର କବାଟ ପାଖରେ ଛିଡ଼ା ହୋଇ ଛୁନକୀ କହିଲା, "ତାଙ୍କର ସମସ୍ତେ ଏ ଘରେ ଖାଇବେ ନାହିଁ ବୋଲି ନିୟମ କରିଛନ୍ତି ।

ନିଜେ ତ ଖାଇବେ ନାହିଁ ବୋଲି ନିୟମ କରିଛନ୍ତି, ପୁଣି ପୁଅ ବୋହୂଙ୍କୁ ବି ନିୟମ କରାଇଛନ୍ତି । ସମସ୍ତେ ତାଙ୍କ ଜିନିଷ ବନ୍ଧାରେ ଲାଗିଛନ୍ତି ।’’

ଜ୍ୱାଳାପ୍ରସାଦ ଖାଇବା ଥାଳି ଛାଡ଼ି ଉଠି ଠିଆ ହେଲେ । ମୁହଁ ହାତ ଧୋଇ ଯାଇ ରାଧେଲାଲଙ୍କ ରହିବା ଘର ପାଖରେ ପହଞ୍ଚିଲେ । ସେ ରାଧେଲାଲଙ୍କୁ କିଛି ନ କହି ତାଙ୍କ ସ୍ତ୍ରୀଙ୍କୁ କହିଲେ, ‘‘ଖୁଡ଼ୀ, ଆପଣମାନେ କ’ଣ ଖାଇବେ ନାହିଁ ବୋଲି ନିୟମ କରିଛନ୍ତି ? ଏଗୁଡ଼ା କ’ଣ ଭଲ କଥା ?’’

ରାଧେଲାଲ ଉତ୍ତର ଦେଇ କହିଲେ, ‘‘ଏତେ ଗଣ୍ଡଗୋଳପରେ ଆମେ କ’ଣ ଏ ଘରେ ଆଉ ଖାଇବୁ ? ଆମ ଦୃଷ୍ଟିରେ ତମେ ମଲଣି ।’’

ଛୁନକା ଜ୍ୱାଳପ୍ରସାଦଙ୍କ ପଛେ ପଛେ ଆସୁଥିଲା, ସେ ଏହି କଥା ଶୁଣି ଖୁବ୍ ପାଟି କରି କହିଲା, ‘‘ତମେ ମରୁନ, ତମ ପୁଅମାନେ ମରୁନାହାନ୍ତି ! ମୁହଁଜଳା କେଉଁଠିକାର । ମୋ ପୁଅକୁ ଶାପ ଦେଉଛୁ, ଯାକୁ ଚଣ୍ଡୀ ଖାଉ ।’’

ଜ୍ୱାଳପ୍ରସାଦ ଛୁନକାକୁ ଗାଳିଦେଇ କହିଲେ, ‘‘ଛୁନକା ଖୁଡ଼ୀ, ତୁ ଏଠାରୁ ଯା’ । ଖବରଦାର, ଆଉ ପଦେ କଥା ମୁହଁରୁ ବାହାରିଲେ ପୁଣି ଦେଖିବୁ ।’’ ଏହାପରେ ସେ ରାଧେଲାଲଙ୍କ ସ୍ତ୍ରୀଙ୍କୁ କହିଲେ, ‘‘ଶୁଣିଲ ଖୁଡ଼ୀ, ତମ ଦୃଷ୍ଟିରେ ମୁଁ ଏବେ ମଲଣି । ଏଣିକି ନିଜ ଘରବାଡ଼ି, ନିଜ ପରିବାର କଥା ତମେ ବୁଝିବ, ମୁଁ ମରିକରି ଫତେପୁରର ସବୁ ଘର ଓ ଜମିବାଡ଼ି ତମ ନାଁରେ କରିଦେଇଛି । ମୋର ଏବେ ସେ ଘର ଆଉ ଜମିବାଡ଼ି ସହିତ କୌଣସି ସମ୍ପର୍କ ନାହିଁ ।’’ ରାଧେଲାଲଙ୍କ ସ୍ତ୍ରୀ ହଠାତ୍ ଦୌଡ଼ିଯାଇ ଜ୍ୱାଳାପ୍ରସାଦଙ୍କ ପାଦ ତଳେ ପଡ଼ି କହିଲା, ‘‘ହାଏରେ କପାଳ, ଏସବୁ ଦେଖିବା ପାଇଁ ପୁଣି ଆମର କପାଳରେ ଥିଲା ! ଆରେ ପୁଅ ଆମକୁ କ୍ଷମା କର । ଭଗବାନ ଆମ ଉପରେ କୌଣସି ବିପତ୍ତି ଦେବେ ବୋଲି ବୋଧହୁଏ ଏମାନଙ୍କର ମୁଣ୍ଡସବୁ ଖରାପ ହୋଇଗଲାଣି । ତତେ ଆମେ ନିଜ ପୁଅପରି ପାଳିଛୁ । ମୁଁ କହୁଛି ତୁ ସେମାନଙ୍କୁ କ୍ଷମା କର ।’’ ଏତିକି କହି ରାଧେଲାଲଙ୍କ ସ୍ତ୍ରୀ ଜ୍ୱାଳାର ଗୋଡ଼ ଧରି ପକାଇଲା ।

ରାଧେଲାଲଙ୍କର ପତ୍ନୀ ଜ୍ୱାଳାକୁ ନିଜ ପୁଅପରି ପାଳିଥିଲେ, ଜ୍ୱାଳାପ୍ରସାଦଙ୍କ ଆଖି ଏବେ ଲୁହରେ ଭରିଗଲା । ସେ ନଇଁ ପଡ଼ି ଖୁଡ଼ୀକୁ ଉଠାଇ କହିଲେ, ‘‘ରାମ ରାମ ଖୁଡ଼ୀ, ତମେ ମତେ ନରକକୁ କାହିଁକି ଠେଲି ଦେଉଛ ? ମୁଁ ରାଗରେ ଯାହା କହି ଦେଇଛି ସେଥିପାଇଁ ମୁଁ କ୍ଷମା ମାଗୁଛି । ଦେଖନ୍ତୁ କାକା, ଏ ରାଗ ହେଲେ କାମ ଚଳିବ ନାହିଁ । ମୁଁ ଆପଣଙ୍କୁ ଯାହା ସବୁ କହିଛି ସେ ସବୁ ଆପଣମାନଙ୍କ ଭଲ ପାଇଁ ଓ ମୋ’ ଭଲ ପାଇଁ ମଧ୍ୟ । ଏମାନେ ସଚ୍ଚୋଟଭାବରେ ପରିଶ୍ରମ କଲେ ମୁଁ ଏମାନଙ୍କୁ ସବୁମତେ ସାହାଯ୍ୟ କରିବା ପାଇଁ ତିଆରି । ମୋ ସାଙ୍ଗରେ ରହି ଏମାନେ ସବୁ ବାରବୁଲା, ଚୋର, ଠକ,

ବେଇମାନ ହୋଇପଡ଼ିଛନ୍ତି । ଯାହା ହେଲେ ବି ଏମାନଙ୍କୁ ମଣିଷ କରିବା ତ ଆପଣଙ୍କର କର୍ତ୍ତବ୍ୟ ।''

ବର୍ତ୍ତମାନ ରାଧେଲାଲ ଅନୁଭବ କଲେ ଯେ ସକାଳେ ସେ ଯାହା କରିଛନ୍ତି ସବୁ କ୍ରୋଧର ପାଗଳାମିରେ କରିଛନ୍ତି । ବର୍ତ୍ତମାନ ତାଙ୍କ ମନରେ ପଶ୍ଚାତ୍ତାପ ଆସିଛି । ସେ ଜ୍ୱାଲାପ୍ରସାଦଙ୍କୁ କୌଣସି ଉତ୍ତର ଦେଲେ ନାହିଁ । ତାଙ୍କ ଆଖିରୁ ଖାଲି ଲୁହଧାର ଝରିପଡ଼ିଲା ।

ଜ୍ୱାଲାପ୍ରସାଦ ରାଧେଲାଲଙ୍କୁ ଉଠାଇ ନେଇ କହିଲେ, ''ଚାଲନ୍ତୁ କାକା, ଖାଇଦିଅନ୍ତୁ । ଆପଣ ନଖାଇଲେ ଘରେ କେହି ଖାଇବେ ନାହିଁ । ଯଦି ଅଜାଣତରେ ମୋ ମୁହଁରୁ କୌଣସି କଟୁକଥା ବାହାରି ଯାଇଥାଏ ତାହେଲେ ମୋତେ କ୍ଷମା କରିବେ ।''

ରାଧେଲାଲଙ୍କର ଅଶ୍ରୁ ବନ୍ଦ ହୋଇଯାଇଥିଲା । ଜ୍ୱାଲାପ୍ରସାଦଙ୍କ ସାଙ୍ଗରେ ଫେରାଇ ଘରକୁ ଆସି ଦୁହେଁ ଏକାଠି ବସି ଭୋଜନ କଲେ । ଭୋଜନ କରିବା ସମୟରେ ସେ ଜ୍ୱାଲାପ୍ରସାଦଙ୍କୁ କହିଲେ, ''ଆରେ ପୁଅ, ତୁ ତ ଜାଣୁ ତୋ ଭାଇଗୁଡ଼ାକ ସମସ୍ତେ ବାରବୁଲା ନିକମା ହୋଇଗଲେ । ଭାବିଥିଲି ତୋହର ସାଙ୍ଗରେ ରହି ସେମାନଙ୍କର ଭାଗ୍ୟ ବଦଳିଯିବ । କିନ୍ତୁ ମୋର ସେ ଭାବନା ଭୁଲ । ବର୍ତ୍ତମାନ ପ୍ରଶ୍ନ ହେଉଛି ଏମାନେ କେମିତି ଚଳିବେ ?''

ଜ୍ୱାଲାପ୍ରସାଦ କହିଲେ, ''କାହିଁକି ଜମିବାଡ଼ି ତ ବହୁତ କିଣା ହୋଇଛି । ଦିମୁଭାଇ ତ ପୁଣି ଚାକିରି କରୁଛି । କିଶନଲାଲ ଓ ଶ୍ୟାମଲାଲକୁ ସଙ୍ଗରେ ନେଇ ଆପଣ ଜମିବାଡ଼ି ଦେଖନ୍ତୁ । ମୁଁ ଭାବୁଛି ଆପଣଙ୍କର କୌଣସିମତେ କିଛି ଅସୁବିଧା ହେବ ନାହିଁ । ଦରକାର ପଡ଼ିଲେ ମୋତେ ଲେଖିବେ । ମୋର ଶକ୍ତି ଭିତରେ ଯାହା ହେବ ମୁଁ ସାହାଯ୍ୟ କରିବି ।''

ରାଧେଲାଲ କାନ୍ଦି କାନ୍ଦି କହିଲେ, ''ବାପା, ତୁ ଗୋଟିଏ ବଡ଼ ଆଶ୍ରୟ, ତୁ ଯେମିତି ଆମକୁ ଛାଡ଼ି ନ ଯାଉ ।''

ତୃତୀୟ ପ୍ରହର ବେଳକୁ ରାଧେଲାଲଙ୍କର ପରିବାରର ସମସ୍ତଙ୍କର ଲୁଗାପଟା ବନ୍ଧା ସରିଥିଲା ଓ ସମସ୍ତେ ଖାଇପିଇ ସାରିଥିଲେ । ଶ୍ୟାମଲାଲ ତିନୋଟି ଘୋଡ଼ାଗାଡ଼ି ଡକାଇ ଆଣିଥିଲେ । ସେଦିନ କିଶନଲାଲ ପ୍ରତାପଗଡ଼ର ଗୋଟାଏ ମେଳାକୁ ଯାଇଥିଲା । ସବୁ ଜିନିଷ ଗାଡ଼ିରେ ଲଦା ହୋଇସାରିଲା ପରେ ରାଧେଲାଲଙ୍କ ସ୍ତ୍ରୀ ଜ୍ୱାଲାପ୍ରସାଦଙ୍କୁ ହାତଯୋଡ଼ି କହିଲା, ''ଆରେ ପୁଅ ଜ୍ୱାଲା, କିଶନୁ ସାଙ୍ଗରେ ଆଜି ଦେଖା ହେଲାନି । ସେ ତ ବିଚାରି ସାଦାସିଧା ଭୋଳା ପିଲାଟା । ଟିକେ ତାକୁ ଦେଖୁଥିବୁ, ତା କଥା ମନେରଖିଥିବୁ ।''

"କିଶନ ବିଷୟରେ କିଛି ଚିନ୍ତା କର ନାହିଁ ଖୁଡ଼ୀ ! ଏ ଦୁନିଆରେ ତା ବିରୁଦ୍ଧରେ କାହାରି କିଛି କହିବାର ନାହିଁ ।"

ଘୋଡ଼ାଗାଡ଼ି ସବୁ ଆଲ୍ହାବାଦକୁ ମୁହଁ କରି ଚାଲିଗଲେ । ଜ୍ୱାଲପ୍ରସାଦ ଫେରିଆସି ନିଜ ବୈଠକରେ ବସିଗଲେ । ମନ ତାଙ୍କର ହାଲୁକା ହୋଇ ଯାଇଥିଲି ସତ; କିନ୍ତୁ ଏକ ଅସାଧାରଣ କର୍ମ ବାୟୁମଣ୍ଡଳ ତାଙ୍କ ଚାରିପାଖରେ ଘେରି ରହିଲାପରି ତାଙ୍କୁ ଜଣାପଡ଼ିଲା । ଗତ ବର୍ଷେ ହେଲା ନାନାପ୍ରକାର ଗହଳ ଚହଳ ଓ ଗୋଳ ଘାଣ୍ଟ ସହିତ ସେ ଯେମିତି ଭାବରେ ଅଭ୍ୟସ୍ତ ହୋଇ ଯାଇଥିଲେ ତାହା ଆଉ ଆଉ ନ ଥିଲା । ବର୍ତ୍ତମାନ ବାତାବରଣମୁକ୍ତ ଅଥଚ ଭାରି ଶୁଷ୍କ ଓ ନିରସ ଜଣାପଡ଼ୁଥିଲା । ମନ ହାଲୁକା ହୋଇଯାଇଥିଲେ ବି ପ୍ରାଣରେ ଏକପ୍ରକାର ଆଘାତ ନିଷ୍ଟସ୍ୱ ଲାଗିଥିଲା । କେତେବେଳ-ଯାଏ ସେମିତି ଚୁପ୍‌ଚାପ୍ ହୋଇ ବସିଥିଲେ ଓ କେତେବେଳେ ଦିନ ଶେଷ ହୋଇ ପୁଣି ରାତି ହୋଇଗଲା ତାଙ୍କୁ ଜଣା ପଡ଼ିଲା ନାହିଁ । ହଠାତ୍ କାହିଁକି ସେ ଚମକି ପଡ଼ିଲେ, ଦେଖିଲେ ଜେଦେଇ ତାଙ୍କ କାନ୍ଧରେ ହାତ ପକାଇ ତାଙ୍କୁ ହଲାଇଦେଇ କହୁଛନ୍ତି "ଉଠ ଦିଅର ସାହେବ, ଏ ଅନ୍ଧାରୁଆ ଘରେ ବସି ବସି କ'ଣ ଭାବୁଛ ? ବାହାରକୁ ଆସ ।"

ଜେଦେଇ ଜ୍ୱାଲପ୍ରସାଦଙ୍କ ହାତ ଧରି ତାଙ୍କୁ ଅଗଣା ଭିତରକୁ ନେଇଗଲେ । ସେତେବେଳକୁ ଯମୁନା ରୋଷାଇ କରୁଥିଲେ ଓ ଛୁନକୀ ତାଙ୍କୁ ସାହାଯ୍ୟ କରୁଥିଲା । ଭିକ୍ଷୁ ଦୁଆରି ପଟ ଭିତର ବାରଣ୍ଡାରେ ଗଙ୍ଗାପ୍ରସାଦପାଇଁ ବିଛଣା କରିଦେଉଥିଲା । ଜେଦେଇ ଯମୁନାକୁ ଡାକି କହିଲେ, "ରାଣୀ, ରୋଷାଇ ଛାଡ଼ି ଆସି ସ୍ୱାମୀଙ୍କୁ ସମ୍ଭାଳ । ଏଇଠାରେ ଆସି ବସ । ଛୁନକୀକୁ କହ ସେ ତରକାରି କରିଦେଉ । ଆମେ ଦୁହେଁ ମିଶି ପୁରି ତିଆରି କରିଦେବା ।"

ଯମୁନା ରୋଷାଇ ଘରୁ ଉଠି ଆସିଲା । ସେତେବେଳକୁ ସେ ଅନେକ ଶାନ୍ତି ଅନୁଭବ କରୁଥିଲା । ଭିକ୍ଷୁ ଗଙ୍ଗାପ୍ରସାଦକୁ ନେଇ ବାହାରକୁ ଚାଲି ଯାଇଥିଲା । ଛୁନକୀ ରୋଷାଇ ଘରେ ତରକାରି କରୁଥିଲା । ଜ୍ୱାଲାପ୍ରସାଦ, ଯମୁନା ଓ ଜେଦେଇ ବାହାରେ ବସି କଥାବାର୍ତ୍ତା ହେଉଥିଲେ ।

ଜେଦେଇ କହିଲେ, "ଦିଅର ସାହେବ, ଲକ୍ଷ୍ମୀବୋହୂର ପାଞ୍ଚମାସ ହେଲାଣି । ଆମର ଇଚ୍ଛା ଆଲ୍ହାବାଦରେ ତାର ପିଲା ଜନ୍ମ ହେଉ । ସେଥିପାଇଁ ଆଲ୍ହାବାଦରେ ଘର ନିଆ ସରିଲାଣି । ଲକ୍ଷ୍ମୀ ଆଲ୍ହାବାଦ ଓ କାନପୁର ମଧ୍ୟରେ ଯିବା ଆସିବା କରୁଛି । ଘାଟମପୁରକୁ ଆସିବାକୁ ତାକୁ ବେଳ ମିଳୁ ନାହିଁ ।"

ଯମୁନା କହିଲା "ଅପା, ତମେ ଆଲ୍ହାବାଦରେ ଆସି ରହ; ଘାଟମପୁରରେ କ'ଣ

ଅଛୁ ଯେ ସେଠାରେ ପଡ଼ିରହିଛ । ଚାକରବାକରଙ୍କ ହାତରେ କିଛି ଘରକାମ ଚଳେ ?
ମୋ କଥା ମାନ, ଘାଟମପୁରର ଘରଦ୍ୱାର ଛାଡ଼ି ଆଲହାବାଦରେ ଆସି ରୁହ ।''

''ହଁ ରାଣୀ, ଲକ୍ଷ୍ମୀ ତ ଘାଟମପୁରରୁ ଘରବାଡ଼ି ସବୁ ହଟାଇ ନେବ ବୋଲି କହୁଛି ।
କହୁଛି ରହିବ କାନପୁରରେ ନ ହେଲେ ଆଲହାବାଦରେ । କାନପୁର ସହର ମଝିରେ ବି
ଗୋଟିଏ କୋଠା କିଣି ନେଇଛି । କିନ୍ତୁ ମୋତେ ସେ କୋଠା ଭଲ ଲାଗୁନାହିଁ । ପୁଣି
ଭାବୁଛି ଆଲହାବାଦ ଗୋଟିଏ ବଡ଼ ତୀର୍ଥ । ସେହି ପ୍ରୟାଗ ତୀର୍ଥରେ ଜୀବନର ବାକି
ସମୟ କଟାଇ ଦେବି ।''

''ହଁ ଅପା, ଏକେତ ତୀର୍ଥ ସ୍ଥାନ ପୁଣି ରାଜଧାନୀ । ତେବେ ଲକ୍ଷ୍ମୀବୋହୂକୁ କେଉଁ
ସ୍ଥାନଟା ଭଲ ଲାଗୁଛି ?''

''ତାକୁ ତ କାନପୁର ଭଲ ଲାଗୁଛି, ସେଠାରେ ତାର ବାପଘର ନା ! ତେବେ
ବୋହୂର ଗୋଟାଏ ଭଲମନ୍ଦ କ'ଣ ? ନିତାନ୍ତ ପିଲାଟା, ସରଳଆଟା ବି, ଦେଖ ରାଣୀ,
ଦୁଇ ତିନି ମାସ ପରେ, ଲକ୍ଷ୍ମୀଚନ୍ଦର ପିଲା ହେବା ପର୍ଯ୍ୟନ୍ତ ତମକୁ ଆସି ମୋ ପାଖରେ
ଆଲହାବାଦରେ ମାସେ ଖଣ୍ଡେ ରହିବାକୁ ପଡ଼ିବ । ହଅର ସାହେବ ! ଶୁଣୁଛନ୍ତି, ରାଣୀକୁ
ଆମ ଘରେ ଯାଇ ମାସେ ଖଣ୍ଡେ ରହିବାକୁ ହେବ ।''

ଜ୍ୱାଲାପ୍ରସାଦ ହସି ହସି କହିଲେ, ''ରହିଲେ ତ ବର୍ତ୍ତମାନ ବି ସେ ରହିଯିବେ ।
ତମର ଭାଉଜ ଆମ ଉପରେ ପୂରା ଅଧିକାର ନା !'' ଏହି ସମୟରେ ଗଙ୍ଗାପ୍ରସାଦ ଓ
ଭିକ୍ଷୁର ତୁଣ୍ଡ ଜ୍ୱାଲାପ୍ରସାଦଙ୍କୁ ଶୁଣାଗଲା । ଭିକ୍ଷୁ କହୁଥିଲା, ''ଏବେ ତ ସ୍କୁଲ୍ ଫିଟିଛି,
ମାସେ ଦୁଇମାସେ ତ କିଛି ସ୍କୁଲରେ ପଢ଼ା ହେବନାହିଁ । ତେଣୁ ଘରେ ପଢ଼ିବାର କିଛି
ଆବଶ୍ୟକତା ନାହିଁ, ଚାଲ ଖାଇପିଇ ଶୋଇ ପଡ଼ିବା । ଏହି ଘରେ ଏତେ ଗରମରେ
କେମିତି ବସି ପାଠ ପଢ଼ିବ ?''

ଏହାର ଉତ୍ତରରେ ଗଙ୍ଗାପ୍ରସାଦ କହିଲା, ''ନାହିଁ ଭିକ୍ଷୁ କାକା, ଏଥର କ୍ଲାସରେ
ମତେ ଭଲ କରିବାକୁ ହେବ । ମୁଁ ଚାରିନମ୍ବରରୁ ଦୁଇନମ୍ବର ହୋଇଗଲିଣି । ଏଥର
ଯେମିତି ମୋତେ କେହି ହଟାଇ ପାରିବେ ନାହିଁ—ସେହିପରି ପଢ଼ିବାକୁ ହେବ ।''

ଜେଦେଇ ହସି ଦେଇ କହିଲେ, ''ହଅର ସାହେବ, ଗଙ୍ଗା ତ ତମଠାରୁ ଆହୁରି
ବଡ଼ଲୋକ ହେବ । କିନ୍ତୁ ଏହି ସୋରବରେ ଲେଖାପଢ଼ାପାଇଁ ସୁବିଧା କାହିଁ ?''

ଜ୍ୱାଲାପ୍ରସାଦ ଟିକିଏ ଚମକି ପଡ଼ିଲେ । ଗଙ୍ଗାପ୍ରସାଦ ପଞ୍ଚମ ଶ୍ରେଣୀ ପାରହୋଇ
ଷଷ୍ଠ ଶ୍ରେଣୀରେ ପଢ଼ୁଥିଲାଣି । ସୋରବରେ କେବଳ ଷଷ୍ଠ ଶ୍ରେଣୀ ଯାଏ ଇଂରାଜୀ
ପଢ଼ାଯାଏ । ଏହାପରେ ଗଙ୍ଗାପ୍ରସାଦର ଅନ୍ୟ କେଉଁଠାରେ ପଢ଼ିବାପାଇଁ ଜ୍ୱାଲାପ୍ରସାଦଙ୍କୁ
ବ୍ୟବସ୍ଥା କରିବାକୁ ହେବ । ଏ କଥା ସେ ଆଜିଯାଏ କେମିତି ଭାବି ନଥିଲେ ଏଥିପାଇଁ

ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଗଲା ବର୍ଷେ ଦୁଇବର୍ଷ ହେଲା ସେ ଘର ବିଷୟରେ ଏମିତି ବ୍ୟସ୍ତ ଥିଲେ ଯେ ଏ କଥା ଭାବିବାକୁ ତାଙ୍କୁ ମୋଟେ ସମୟ ନ ଥିଲା । ସେ କହିଲେ, "ଭାଉଜ, ଭଲ କଥାଟି ମନେ ପକାଇଲେ । ଗଙ୍ଗାର ପଢ଼ା କଥା ମୁଁ କେବେ ଭାବି ନାହିଁ । ଏଠି ଘୋଡ଼ାବରେ ରହି ତାର ପାଠପଢ଼ା ହେବନାହିଁ କିମ୍ବା ଫତେପୁରକୁ ମୁଁ ତାକୁ ପଠାଇବି ନାହିଁ । ଏ ବିଷୟରେ ପୁଣି ଭାବିବାକୁ ହେବ ।"

ଜେଦେଇ ଟିକିଏ ହସିଦେଇ କହିଲେ, "ଦିଅର ବାବୁ, ତମର ଏଥିରେ ଭାବିବାର କ'ଣ ଅଛି ? ତୁମର ତ ଆଲ୍ଲାହାବାଦରେ ପୁଣି ଘର ଅଛି । ଗଙ୍ଗାକୁ ତମେ ମୋ ହାତରେ ଛାଡ଼ିଦିଅ, ଲକ୍ଷ୍ମୀଚନ୍ଦର ତ ବର୍ତ୍ତମାନ ମୁଣ୍ଡକୁ ହାତ ପାଇଗଲାଣି । ମୁଁ ଏହି ଛୋଟ ପିଲାଟିକୁ ନେଇ ପାଖରେ ରଖିବି ।"

ଏ କଥା ଶୁଣି ଜ୍ୱାଲାପ୍ରସାଦ ଯମୁନାକୁ ଓ ଯମୁନା ଜ୍ୱାଲାପ୍ରସାଦଙ୍କୁ ଅନାଇଁ ରହିଲେ । ସତେ ଯେମିତି ଆଖିରେ ସେମାନେ ସବୁକଥା ବୁଝି ଥିଲେ । ଯମୁନା ଜେଦେଇଙ୍କ କାନ୍ଧରେ ହାତ ପକାଇ କହିଲା, "ଅପା, ଗଙ୍ଗା ମୋର ଯେମିତି, ତମର ବି ସେମିତି, ତାକୁ ବହୁତ ପଢ଼ିବାକୁ ହେବ ଓ ତାର ବାପାଙ୍କଠାରୁ ବଡ଼ ହେବାକୁ ହେବ । ଯାହାହେଉ ଗଙ୍ଗା ତମର, ଇଏତ ଚାକିରିଆ ଲୋକ । ବର୍ଷେ ହେଲା ଯାଙ୍କର ପ୍ରମୋଶନ ଓ ବଦଳି ଶୁଣା ହେଉଛି, ଯାଙ୍କର ଚାକିରି ଦୌଡ଼ାଦୌଡ଼ିରେ ଗଙ୍ଗାର କି ପଢ଼ା ହେବ ?"

ଜେଦେଇ ଯମୁନାକୁ ନିଜ ଛାତିରେ ଜାବୁଡ଼ିଧରି କହିଲେ, "ରାଣୀ, ତମେ କେଡ଼େ ଭଲ ମଣିଷ । ତମେ ତ ମୋର ନିଜର । ମୋ ପାଇଁ ଲକ୍ଷ୍ମୀ ଯେମିତି ଗଙ୍ଗା ବି ସେମିତି । ମୁଁ ଆଉ ଆଲାହାବାଦ ଛାଡ଼ି କୁଆଡ଼କୁ ଯିବିନାହିଁ । ଲକ୍ଷ୍ମୀଙ୍କୁ କାନପୁର ବେଶି ଭଲ ଲାଗେ, ତେବେ ମୁଁ ଏହି ପ୍ରୟାଗରାଜରେ ହିଁ ରହିବି ।" ମନେ ହେଲା ସତେ ଯେମିତି ଜେଦେଇଙ୍କ ମୁହଁରୁ ସମସ୍ତ ଶିଥିଳତା ଲିଭିଯାଇଥିଲା ଓ ବୟସ ତାଙ୍କର ପୁଣି ଫେରି ଆସିଥିଲା ।

## ଏକ

ପଣ୍ଡିତ ସୋମେଶ୍ୱର ଦତ୍ତ କିଛି କାଳ ପର୍ଯ୍ୟନ୍ତ ଆକାଶକୁ ଏକ ଆଖିରେ ଚାହିଁ ରହିଲେ । ତାଙ୍କ ମୁଖରେ ଚିନ୍ତା ଓ କରୁଣାର ଚିହ୍ନ ଫୁଟିଉଠୁଥିଲା ଓ ଚକ୍ଷୁ ଖୁବ୍ ଚଞ୍ଚଳ ଜଣାପଡ଼ୁଥିଲା । ତାଙ୍କ ଗମ୍ଭୀରତାରୁ ଜଣାପଡ଼ୁଥିଲା ସତେ ଯେମିତି ସେ ମନେ ମନେ କହୁଥିଲେ—ଏବେ ଆମେମାନେ ସମ୍ପୂର୍ଣ୍ଣ ଗୋଲାମ ହୋଇଗଲେ, ଇଂଲଣ୍ଡର ବାଦଶା ଦିଲ୍ଲୀରେ ନଜର ଦରବାର କରିବାପାଇଁ ଆସୁଛନ୍ତି । ହିନ୍ଦୁସ୍ଥାନର ସବୁ ରାଜା ମହାରାଜା ତାଙ୍କ ନିକଟରେ ମୁଣ୍ଡନୁଆଁଇ ତାଙ୍କୁ କର ଦେବେ ଓ ତାଙ୍କର ଆଧିପତ୍ୟ ସ୍ୱୀକାର କରିବେ ।

ଶ୍ରୀ କିଶୋରୀରମଣ ପଣ୍ଡିତ ସୋମେଶ୍ୱର ଦତ୍ତଙ୍କୁ ନାସଦାନୀ ବଢ଼ାଇ ଦେଇ ପଚାରିଲେ, "ଆପଣଙ୍କର କ'ଣ ଏଥିପାଇଁ ଦୁଃଖ ହେଉଛି ?"

କିଶୋରୀ ରମଣ ବରେଲିର ଆସିଷ୍ଟାଣ୍ଟ ସିଭିଲ୍ ସର୍ଜନ । ଯେମିତି ଗୋରା ସେମିତି ଉଚା, ସେମିତି ମୋଟାସୋଟା ବି । ଯୌବନ ଯାଇ ପ୍ରୌଢ଼ାବସ୍ଥା ଆଗତପ୍ରାୟ । ଖୁବ୍ ଲୋକପ୍ରିୟ ଡାକ୍ତର ହୋଇଥିବାରୁ ଦରମା ଛଡ଼ା ପ୍ରାଇଭେଟ ପ୍ରାକ୍ଟିସରୁ ମାସକୁ ସେ ପ୍ରାୟ ଦୁଇତିନିଶ ଟଙ୍କା ରୋଜଗାର କରୁଥିଲେ ।

ପଣ୍ଡିତ ସୋମେଶ୍ୱର ଦତ୍ତ ଟିକିଏ ହସି ଦେଲେ । କିନ୍ତୁ ସେହି ହସରେ ତାଙ୍କର ଗମ୍ଭୀରତାର କୌଣସି ପରିବର୍ତ୍ତନ ହୋଇନଥିଲା । ତାଛଡ଼ା ତାଙ୍କ ଓଠ ଯେମିତି ଧଳାକଳା ଦାଢ଼ିରେ ଘୋଡ଼ାଇ ହୋଇ ରହିଥିଲା—ସେଥିରେ ତାଙ୍କର ମୃଦୁକ ହସ ପଦାକୁ ଫୁଟି ବାହାରି ପାରୁ ନ ଥିଲା । ସେ କହିଲେ, "ନାହିଁ ଡାକ୍ତର ସାହେବ, ଯାହା ହେଉଛି ସେ ଏକପ୍ରକାର ଭଲ । ଦେଶରୁ ମ୍ଳେଚ୍ଛ ଯବନମାନଙ୍କର ଶାସନ ଗଲା, ଅରାଜକତା ବି ଗଲା । ଚୋର ଜୁଲମରୁ ରକ୍ଷା ମିଳିଲା, ଘରିଆଡ଼େ ଶାନ୍ତି ବି ହେଲା । ଏ ସବୁକୁ ଆମେ ଖରାପ କହିବା କେମିତି ? କିନ୍ତୁ ଏ ସବୁ ସତ୍ତ୍ୱେ ଗୋଟିଏ କଥା ଆମକୁ ସ୍ୱୀକାର କରିବାକୁ ହେବ ଯେ ବିଦେଶୀ ସବୁବେଳେ ବିଦେଶୀ ହୋଇ ରହିବ, ସ୍ୱଦେଶୀ କେବେ ହେବନାହିଁ ।"

ପଣ୍ଡିତ ସୋମେଶ୍ୱର ଦତ୍ତ ବରେଲିରେ ଡେପୁଟି କଲେକ୍ଟର ଥିଲେ । ଶ୍ୟାମଳ ରଙ୍ଗ, ହୃଷ୍ଟ ପୁଷ୍ଟ ଚେହେରା । ବୟସ ପ୍ରାୟ ପଚାଶ ବର୍ଷ । ସେ ସଂସ୍କୃତ ଯେମିତି ଭଲ

ଜାଣିଥିଲେ ତାଙ୍କର ଆଗ୍ଯ୍ୟରବଗ୍ଯ୍ୟର ଜ୍ଞାନ ବି ସେମିତି ଥିଲା । କିନ୍ତୁ ସେ ଖାଲି ସ୍ପଷ୍ଟବାଦୀ; ଖାଲି ମୁଖର, ଟିକିଏ କଳହପ୍ରିୟ ମଧ୍ୟ । ପଣ୍ଡିତ ସୋମେଶ୍ୱର ଦାଶ ହଠାତ୍ ଖୁବ୍ ଜୋରରେ ହସିଦେଇ କହିଲେ; "ଡାକ୍ତର ସାହେବ, ବିଦେଶୀମାନେ ଆମକୁ କେତେ ବଦଳାଇ ଦେଇଛନ୍ତି ସତେ ! ଏହି ଯେଉଁ ମୀର ସାହେବ ଆସୁଛନ୍ତି ଏଙ୍କ ବାପାଙ୍କର ଲମ୍ବା ଦାଢ଼ି ଥିଲା, ସେ ସବୁବେଳେ ଗାଉନ ପିନ୍ଧୁଥିଲେ ଓ ମାଳା ଗଡ଼ାଉ ଥିଲେ । କିନ୍ତୁ ଏଙ୍କୁ ବର୍ତ୍ତମାନ ଦେଖ, ଇଏ କେମିତି କୋଟ୍ ପ୍ୟାଣ୍ଟ ପିନ୍ଧିଛନ୍ତି; କେମିତି ଟିକି ଟିକି ଫ୍ରେଞ୍ଚ ଦାଢ଼ି ରଖିଛନ୍ତି । ଦେଖିବା ଲୋକ ଦୂରେଇ ଛୁଡ଼ା ହେଉଛନ୍ତି । ମୁହଁରେ ତ ସିଗାରେଟ ସବୁବେଳେ ଲଗିଛି ।"

ପଣ୍ଡିତ ସୋମେଶ୍ୱର ଦାଶଙ୍କ କଥା ମୀରଜାଫର ଅଲ୍ଲୀଙ୍କ କାନରେ ପଡ଼ିବା ମାତ୍ରେ ସେ ଟିକିଏ ଆଗେଇ ଆସି ହସି ଦେଇ ପଚାରିଲେ, "ଆପଣ ମୋ କଥା କ'ଣ କହୁଛନ୍ତି, ନିଜ କଥା କହୁ ନାହାନ୍ତି ? ଡାକ୍ତର ସାହେବ, ଆପଣ ଗୋଟାଏ ନୂଆ କଥା ଶୁଣିଲେଣି ? ଆମ ପଣ୍ଡିତେ କୁଆଡ଼େ ଆର୍ଯ୍ୟସମାଜୀ ହୋଇଗଲେଣି । କ'ଣ ପଣ୍ଡିତେ, ମୁଁ ମିଛ କହୁଛି ?"

"ହଁ, ଏଥିରେ ଆପଣଙ୍କର ଦୁଃଖ କରିବାର କ'ଣ ଅଛି ? ଆମର ହିନ୍ଦୁମାନଙ୍କ ଆଗ୍ଯ୍ୟର ବ୍ୟବହାର ଆମ ଧର୍ମକୁ ଅନ୍ତଃସାର ଶୂନ୍ୟ କରିଦେଇଛି, ସେଥିପାଇଁ ମୁସଲମାନ ଓ ଖ୍ରୀଷ୍ଟିଆନମାନେ ଏହାର ସୁବିଧା ନେଇଛନ୍ତି ଓ ବହୁ ହିନ୍ଦୁ ବିଧର୍ମୀ ପାଲଟି ଯାଇଛନ୍ତି । ଆର୍ଯ୍ୟସମାଜ ବର୍ତ୍ତମାନ ହିନ୍ଦୁ ସମାଜକୁ ସଂଗଠିତ କରୁଛି, ମୁନି ଋଷି-ମାନଙ୍କର ପରମ୍ପରାକୁ ପୁନର୍ଜୀବିତ କରି ହିନ୍ଦୁ ଧର୍ମକୁ ବିଶ୍ୱବିଜୟୀ କରିବା ପାଇଁ ଚେଷ୍ଟା କରୁଛି ।"

ମୀରଜାଫର ଅଲ୍ଲୀ ବରେଲିର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ । ଏକପ୍ରକାର ଯୁବକ କହିଲେ ଚଳେ । ଯେମିତି ଡେଙ୍ଗା ସେମିତି ହୃଷ୍ଟପୁଷ୍ଟ, ଶ୍ୟାମଳରୁ ଟିକିଏ ସଫା । ସେ ନିଜକୁ ପଠାଣ ବଂଶର ବୋଲି ପରିଚୟ ଦେଉଥିଲେ । ଧର୍ମ କର୍ମରେ ତାଙ୍କର କୌଣସି ରୁଚି ନ ଥିଲା, ସେ ରୋଜା କରୁନଥିଲେ କିମ୍ବା ନମାଜ ପଢ଼ୁ ନ ଥିଲେ; କିନ୍ତୁ ଧର୍ମ କଥା ପଡ଼ିଲେ ଘଣ୍ଟା ଘଣ୍ଟା ଯୁକ୍ତି କରିବା ତାଙ୍କର ଏକପ୍ରକାର ଅଭ୍ୟାସ ହୋଇଯାଇଥିଲା, ମୀରସାହେବ ମୁହଁ ଫୁଲେଇ କହିଲେ, "ପଣ୍ଡିତଜୀ, ସ୍ମୃତି ବଢ଼ାଇବା ପାଇଁ ଔଷଧ ଖା'ନ୍ତୁ ।"

ମରିବା ପୂର୍ବରୁ ପିମ୍ପୁଡ଼ିର ଯେମିତି ପକ୍ଷୀ ବାହାରେ, ଠିକ୍ ସେମିତି ହିନ୍ଦୁମାନଙ୍କଠାରୁ ଏହି ଆର୍ଯ୍ୟ ସମାଜ ବାହାରିଛି ।" ସେତିକିବେଳେ ଜନାର୍ଦ୍ଦନ ଡେଭିଡ଼ ତାସ ଖେଳିବା ପାଇଁ ସାଥୀ ଖୋଜୁଥିଲେ । ତାଙ୍କୁ ଦେଖି ଅଲ୍ଲୀ ସାହେବ ଡାକ ପକାଇଲେ ।

ମିଷ୍ଟର ଜନାଥନ ଡେଭିଡ଼ ଦେଖିବାକୁ ଯେମିତି କଳା, ସେମିତି ଗ୍ରେଟିଆ, ସେମିତି ପତଳା ମଧ୍ୟ । ବୟସ ଗ୍ଳିଶ ହେଲେ ମଧ୍ୟ ପଗ୍ଶବର୍ଷ ପରି ଦେଖାଯାଉଥିଲେ । ସେ ବଟରଲାଉ ହବ୍‌ଲାକ୍ ଥିଲେ—ପ୍ୟାଣ୍ଟକୋଟ୍ ପୋଷାକ, ଦାଢ଼ିଦାଢ଼ି ସବୁ ସଫା । ମୀରସାହେବଙ୍କ ଡାକ ଶୁଣି ଡେଭିଡ଼ ଜନାଥନ କହିଲେ, "କ'ଣ ମୀରସାହେବ ଆସିଗଲେ, ମୁଁ ଆପଣଙ୍କୁହିଁ ଖୋଜୁଥିଲି । ହାଲୋ ଡାକ୍ତର ସାହେବ, ଆଜି କ'ଣ ବ୍ରିଜ୍ ଖେଳ ହେବ ନାହିଁ ? ତାପରେ ସେ ପାଖକୁ ଗ୍ଲଆସି ମୀରସାହେବଙ୍କୁ କହିଲେ, "ତମେ ମୋତେ ଡକାଇ ଥିଲ କି ନାହିଁ କହିଲ ?"

ମୀରସାହେବ ଖୁବ୍ ଜୋରରେ ହସି କହିଲେ, "ଆପଣଙ୍କ ଢଙ୍ଗଢାଙ୍ଗରେ ଆଉ ଟିକିଏ ଦେଶୀ ବାକି ରହିଯାଇଛି । ଅଳ୍ପ କିଛି ପରିବର୍ତ୍ତନ କରିଦେଲେ ଆପଣ ଆଙ୍ଗ୍ଲୋଇଣ୍ଡିଆନଙ୍କ ସହିତ ସମାନ ହୋଇଯିବେ ।"

"ମୀର, ତୁମେ କ'ଣ ଗୁଡ଼ାଏ ବାଜେ କଥା ଗପୁଛ ? ଆମେ ବିଶୁଦ୍ଧ ଇୟୁରୋପୀୟାନ । ଆମର ସାତପୁରୁଷ ପୂର୍ବେ ବଡ଼େ ବଡ଼େ ଭାରତକୁ ଆସି ଦକ୍ଷିଣରେ ବସତି ସ୍ଥାପନ କରିଥିଲେ । ବୁଝିଲେ ଡାକ୍ତର ସାହେବ, ସାତପୁରୁଷ ହେଲ ଏହି ଭାରତବର୍ଷରେ ଏହି ଦକ୍ଷିଣରେ ଆମେ ରହି ଆସିଛୁ ।" ଜନାଥନ ଡେଭିଡ଼ ନାଟକୀୟ ଢଙ୍ଗରେ ହାତ ମେଲେଇ କହିଲେ, "ଆଉ ଫଳ କ'ଣ ହୋଇଛି ?"

ଡାକ୍ତର କଣୋଇ ରମଣ ବଡ଼ ଗମ୍ଭୀର ହୋଇ କହିଲେ, "ଫଳ କଣ, ଫଳ ନିଜେ ଆପଣ । ଗୋଟିକ ପରେ ଗୋଟିଏ ହିନ୍ଦୁସ୍ଥାନର ସାତପରସ୍ତ କଳାରଙ୍ଗ ଚଢ଼ିଗଲଣି । ସାତ ପୁରୁଷରେ ସାତ ପୁରୁଷ ।"

"କିନ୍ତୁ ମୁଁ ଜଣେ ସଜ୍ଜନ । କଳାରଙ୍ଗ ଯେତେ ପରସ୍ତ ହେଲେ ମଧ୍ୟ ଆପଣଙ୍କ ଚମଡ଼ାତ ଅସଲ ଧଳାରଙ୍ଗ ମୁଁ ସଫା ଦେଖିପାରୁଛି । ଏହି ଯେଉଁ ମେକ୍‌ଗିଲ ସାହେବ, ବଡ଼ ସିଭିଲ ସର୍ଜନ, ସେ ଏବେ ଅନ୍ଧ ହୋଇ ଯାଇଛନ୍ତି, ତାଙ୍କୁ ଆଉ କିଛି ଦେଖାଯାଉ ନାହିଁ । ସେ ତମ ଗୋରି ଚମଡ଼ା ଦେଖିପାରୁ ନାହାନ୍ତି । ସେଥିପାଇଁ ତମକୁ ୟୁରୋପୀୟାନ କ୍ଲବରେ ପୂରାଇ ଦେଉନାହାନ୍ତି ।"

ଏ ପର୍ଯ୍ୟନ୍ତ ପଣ୍ଡିତ ସୋମେଶ୍ୱର ଦତ୍ତ ଚୁପ୍‌ଚାପ ରହି ଏକଥାର ମଜା ଉପଭୋଗ କରୁଥିଲେ । ବର୍ତ୍ତମାନ ସେ ଆଉ ସମ୍ଭାଳି ନ ପାରି କହିଲେ, "ଜନାଥନ ସାହେବ, ଏହି ଦୁଷ୍ଟ ୟୁରୋପୀୟାନ କେବେହେଲେ ଆପଣଙ୍କୁ ୟୁରୋପୀୟାନ କ୍ଲବରେ ପୂରାଇ ଦେବେ ନାହିଁ । କିନ୍ତୁ ଦେଖନ୍ତୁ, ଆପଣ ଯଦି ମୋ କଥା ମାନିବେ, ତେବେ ଆପଣ ପବିତ୍ର ହୋଇଯିବେ । ଯେଉଁ ହିନ୍ଦୁମାନେ ମାଡ଼ ଡରରେ ମୁସଲମାନ ହୋଇଯାଇଥିଲେ ଓ ଅନ୍ନ କଷ୍ଟରେ ଖ୍ରୀଷ୍ଟିଆନ ହୋଇଯାଇଥିଲେ ସେମାନଙ୍କୁ ବର୍ତ୍ତମାନ ପବିତ୍ର କରିବା ପାଇଁ

ଆମେ ଦାୟିତ୍ୱ ନେଇଛୁ । ତେଣୁ ଡେଭିଡ଼ ସାହେବ, ଆପଣ ଏ ସୁଯୋଗ ଛାଡ଼ନ୍ତୁ ନାହିଁ ।"

ମୀରଜାଫର ଅଲ୍ଲୀ କହିଲେ, "ଆପଣ ଜନାଥନ ସାହେବଙ୍କୁ କ'ଣ ଭାବିଛନ୍ତି କି ? ସେ ପରା ୟୁରୋପୀୟାନ କ୍ଲବରେ ପଶିବା ପାଇଁ ଗ୍ରେଟ ଲାଟସାହେବଙ୍କୁ ସ୍ମାରକପତ୍ର ଦେଇଛନ୍ତି ! ସ୍ତ୍ରୀଙ୍କ ମେମ୍ ସାହେବ ନିଜେ ଦରଖାସ୍ତ ନେଇ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ସହିତ ସାକ୍ଷାତ କରି ତାଙ୍କ ସାଙ୍ଗରେ ଘଣ୍ଟାଏକାଳ କଥାବାର୍ତ୍ତା କରିଛନ୍ତି ।

ପଣ୍ଡିତ ସୋମେଶ୍ୱର ଦତ୍ତ ଜନାଥନ ସାହେବଙ୍କୁ ଚାହିଁ ପଚାରିଲେ, "କ'ଣ ଡେଭିଡ଼ ସାହେବ, ମୀର ସାହେବଙ୍କ କଥା କଣ ସତ ?"

ଜନାଥନ ଡେଭିଡ଼ ଏକ ଦୟନୀୟ କରୁଣ ଦୃଷ୍ଟିରେ ସୋମେଶ୍ୱର ଦତ୍ତଙ୍କୁ ଚାହିଁ କହିଲେ, "ହଁ ପଣ୍ଡିତଜୀ, ସତ; କିନ୍ତୁ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ଇନ୍‌କ୍ୱାରୀ କରିବେ ବୋଲି ମୋ ସ୍ତ୍ରୀଙ୍କୁ କହିଛନ୍ତି । କଲେକ୍‌ଟର, କମିଶନର, ଜିଲାଜଜ୍ ସମସ୍ତେ ରାଜି ହୋଇଛନ୍ତି; କିନ୍ତୁ ଏ ବଦମାସ ସିଭିଲ ସର୍ଜ୍ଜନ କହୁଛି ମୁଁ କ୍ଲବକୁ ଗଲେ ମୋତେ ଟେକି ବାହାରକୁ ଫିଙ୍ଗିଦେବ । ତା' ସଙ୍ଗରେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ହାରାମଜାଦା କ୍ଲେମେଣ୍ଟସ୍ ମୀର ବି ଅଛି ।" ଏତିକି କହି ଜନାଥନ ନିଜପାଇଁ ଓ ମୀରସାହେବଙ୍କପାଇଁ ଦୁଇଟା ଗ୍ରେଟ ଗ୍ଲାସରେ ମଦ ଆଣିବା ପାଇଁ ଚାକର ପିଲାକୁ ଆଦେଶ ଦେଲେ ।

ଏସବୁ ଦେଖି ପଣ୍ଡିତ ସୋମେଶ୍ୱରଦତ୍ତଙ୍କ ହସ ତାଙ୍କ ଦାଢ଼ି ଫୁଟି ବାହାରି ଆସିଲା । ସେ କହିଲେ, "ମିଷ୍ଟର ଡେଭିଡ଼, ମୁଁ ଶୁଣୁଛି ପୁଲିସ ସାହେବ କାପ୍‌ଟେନ୍ କ୍ଲେମେଣ୍ଟସ୍ ଗଙ୍ଗାପ୍ରସାଦକୁ ପ୍ରତିଦିନ ଇଉରୋପୀୟାନ କ୍ଲବକୁ ଡକାଇ ତା ସାଙ୍ଗରେ ଟେନିସ୍ ଖେଳୁଛନ୍ତି । ଏକଥା କଣ ପ୍ରକୃତରେ ସତ ?"

କଣୋଗାରମଣ ଫେଁ କରି ହସିଦେଇ କହିଲେ, "ପଣ୍ଡିତଜୀ ଆମ ସିଭିଲ୍ ସର୍ଜ୍ଜନ ମିଷ୍ଟର ମାକ୍‌ଗିଲ୍ ତ ମୋତେ ପାଞ୍ଚ ଛ'ଥର କ୍ଲବ୍‌କୁ ନେଇ ଗଲେଣି । କିନ୍ତୁ ଆମ ଜନାଥନ ଡେଭିଡ଼ ସାହେବଙ୍କ ପ୍ରତି ତାଙ୍କର ଏତେ ବିରୋଧ କାହିଁକି କିଛି ଜଣାପଡ଼ୁ ନାହିଁ । ତାଙ୍କ ଚେହେରା ଦେଖିଲାମାତ୍ରେ ସେ ଚିଡ଼ି ଉଠୁଛନ୍ତି ।"

ସ୍ୱାଭିତରେ ବେହେରା ଡେଭିଡ଼ ଓ ମୀରସାହେବ ଦୁହିଁଙ୍କୁ ଦୁଇଗ୍ଲାସ ହ୍ୱିସ୍କି ଆଣି ଦେଇଗଲା । ଜନାଥନ ଥରକେ ଅଧଗ୍ଲାସ ଚଢ଼େଇ ଦେଇ କହିଲେ, "ବୁଝିଲେ ପଣ୍ଡିତଜୀ, ଆମ କପାଳ ଖରାପ । ମୁଁ ବିଲାତ ଯାଇ ବିଶୁଦ୍ଧ ସାହେବାଣୀ ବାହା ହୋଇଛି । ମୋର ବାପା ମୋତେ ଆଙ୍ଗ୍ଲୋଇଣ୍ଡିଆନ ଲେଖାଇଛନ୍ତି । କିନ୍ତୁ ଏହି ବଦମାସ ମାକ୍‌ଗିଲ ଓ କ୍ଲେମେଣ୍ଟସ୍ ମୋତେ ନେଟିଭ୍ ଖ୍ରୀଷ୍ଟିୟାନ ବୋଲି ଭାବନ୍ତି । ପଣ୍ଡିତଜୀ, ଇଏ କପାଳ ଖରାପ ନୁହେଁ ତ ଆଉ କଣ ? ଦେଖନ୍ତୁ ଏଇ ଗଙ୍ଗାପ୍ରସାଦ ଆସୁଛନ୍ତି ।

ବେଶ୍ ପ୍ରସନ୍ନ ଦେଖାଯାଉଛନ୍ତି । ହଲେ ମିଷ୍ଟର ଗଙ୍ଗାପ୍ରସାଦ, ତମେ ଆଜି ଟେନିସ ଖେଳିବା ପାଇଁ ୟୁରୋପୀୟାନ କ୍ଲବକୁ ଯାଉନାହଁ କି ? କ'ଣ କଥା କ'ଣ ?"

ଗଙ୍ଗାପ୍ରସାଦ ଟିକିଏ ଆଗେଇ ଯାଇ କହିଲେ, "କଥା ହେଉଛି ମୋତେ ଆଜି ରାତି କିମ୍ବା କାଲି ସକାଳ ଗାଡ଼ିରେ ଆଲ୍ହାବାଦ ଯିବାକୁ ହେବ । ଦିଲ୍ଲୀ ଦରବାର ପ୍ରସ୍ତୁତ କମିଟିରେ ମୋ ନାଁ ଅଛି । ଦିଲ୍ଲୀରେ ଦୁଇତିନି ମାସ ରହି ସବୁ ବୁଝାଶୁଝା କରିବାକୁ ହେବ ।"

ଜନାର୍ଥନ ଡେଭିଡ଼ ବଡ଼ ଆଶ୍ଚର୍ଯ୍ୟ ଦୃଷ୍ଟିରେ ଗଙ୍ଗାପ୍ରସାଦଙ୍କୁ ଚାହିଁ କହିଲେ, "ଗଙ୍ଗାପ୍ରସାଦ ବଡ଼ ଭାଗ୍ୟବାନ ତମେ ! ମୋଟେ ଦୁଇବର୍ଷ ଚାକିରିରେ ତମକୁ ଦିଲ୍ଲୀ ଦରବାର କାମ ମିଳିଯାଇଛି । ମୀର, ମୁଁ ଭାବୁଥିଲି ତମେ ଯିବ; କିନ୍ତୁ ଦେଖିଲିବେଳକୁ ଗଙ୍ଗାପ୍ରସାଦ ଯାଉଛନ୍ତି ।"

ଗଙ୍ଗାପ୍ରସାଦ ଦିଲ୍ଲୀ ଦରବାର କାମରେ ଯାଉଛନ୍ତି ଶୁଣି ମୀରସାହେବଙ୍କୁ ଏକପ୍ରକାର ଧକ୍କା ଲାଗିଲାପରି ଜଣାଗଲା । ସେ କହିଲେ, "ଜନାର୍ଥନ ସାହେବ, ଏ ସବୁ କ୍ଲିମେଣ୍ଟସଙ୍କ ବଦମାସୀ । ସେ ପ୍ରତିଦିନ ୟାଙ୍କ ସଙ୍ଗେ ଟେନିସ ଖେଳେ; ୟାଙ୍କୁ ଖୁସାମତ କରେ । ତେଣୁ ସେ ୟାଙ୍କୁ ପଠାଇବେ ନାହିଁ କ'ଣ ଆଉ ମୋତେ ପଠାଇବେ ?"

କଶୋରୀରମଣ କହିଲେ, "ଗଙ୍ଗାପ୍ରସାଦ, ତମର ତ ବାଦଶାହଙ୍କ ସହିତ ନିଶ୍ଚୟ ଦେଖା ହେବ । ତାଙ୍କୁ ଟିକିଏ ଆମ ଡେଭିଡ଼ ଜନାର୍ଥନଙ୍କ ସ୍ମାରକପତ୍ର କଥା କହିବ । ସେ ନିଜେ ଯେମିତି ଜନାର୍ଥନଙ୍କୁ ୟୁରୋପୀୟାନ ଓ ଆଙ୍ଗ୍ଲୋଇଣ୍ଡିୟାନ ଉଭୟ ଘୋଷଣା କରି ଦିଅନ୍ତି ।"

ଜନାର୍ଥନ ଟିକିଏ ଗମ୍ଭୀର ହୋଇ କହିଲେ, "ସେ ବାଦଶାହାଙ୍କୁ କ'ଣ କହିବେ ! କୌଣସି ଭାରତୀୟଙ୍କୁ ତ ତାଙ୍କ ପାଖକୁ ଯିବା ମନା । ମୁଁ ମୋର ମିସେସ୍‌ଙ୍କୁ ତାଙ୍କ ପାଖକୁ ପଠାଇବି ।"

ଗଙ୍ଗାପ୍ରସାଦ ଦେଖିବାକୁ ପତଳା ଓ ଡେଙ୍ଗା । ଆଲ୍ହାବାଦରେ ବି. ଏ. ପାଶ୍ କଲାପରେ ସେ ଡେପୁଟି ହୋଇଥିଲେ । କାଳିପ୍ରସାଦଙ୍କ ଖୁସାମତ ଓ ଲକ୍ଷ୍ମୀପ୍ରସାଦଙ୍କ ପ୍ରଭାବ ଛଡ଼ା ଗଙ୍ଗାପ୍ରସାଦଙ୍କ ଯୋଗ୍ୟତା ମଧ୍ୟ ସେହି ପଦବୀ ପାଇଁ ତାଙ୍କୁ ସାହାଯ୍ୟ କରିଥିଲା । ବି. ଏ. ରେ ତାଙ୍କୁ ଦ୍ୱିତୀୟ ଶ୍ରେଣୀ ମିଳିଥିଲେ ବି ଖେଳ କସରତ ଓ ଅନ୍ୟାନ୍ୟ ସାମାଜିକ କାର୍ଯ୍ୟରେ ସେ ବହୁତ ଆଗରେ ଥିଲେ । କେଜେଡ଼ିଙ୍କ ସାଙ୍ଗରେ ସିଭିଲ୍ ଲାଇନରେ ରହିବା ଫଳରେ ତାଙ୍କର ଅନେକ ସୁବିଧା ହୋଇଥିଲା । କ୍ରିକେଟ୍ ଓ ଟେନିସ୍ ଖେଳରେ ସର୍ବଭାରତୀୟ ସ୍ତରରେ ତାଙ୍କର ନାଁ ଥିଲା ।

ଗଙ୍ଗାପ୍ରସାଦ ନିଜ ଚିନ୍ତାରେ ମଗ୍ନଥିଲେ । ଜନାର୍ଦ୍ଦନ ଡେଭିଡ୍‌ଙ୍କ କଥାଶୁଣି ସେ ହସି ଦେଲେ ଓ ତାପରେ ସେମାନଙ୍କୁ ଗୁଡ଼୍ ବ୍ରିଜ ଖେଳିବା ପାଇଁ ଆଗେଇ ଗଲେ । ଗଙ୍ଗାପ୍ରସାଦ ସେଠାରୁ ଯିବା ମାତ୍ରେ ମୀରଜାଫର ଅଲ୍ଲୀ କହିଲେ, "କଣ ପଣ୍ଡିତ ସୋମେଶ୍ୱର ଦତ୍ତ ସାହେବ, ଦେଖିଲେଟି ବାବୁଙ୍କୁ ? କି ଚମକ, କି ଢଙ୍ଗ ! ପୂରା ଜମିଦାରୀ ଆଡ଼୍‌ଡ଼ା !"

ପଣ୍ଡିତ ସୋମେଶ୍ୱର ଦତ୍ତ କିଛି ସମୟ ଚୁପ ରହିବା ପରେ କହିଲେ, "ବାପ ପୁଅଙ୍କ ଭିତରେ ତଫାତ୍ ତ ଅନେକ, ହେଲେ ପୁଅ ଖୁବ୍ ବଡ଼ ଘରର । ମୀର ସାହେବ, ଆପଣଙ୍କୁ ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ଏହି ଗଙ୍ଗାପ୍ରସାଦ ଖୁବ୍ ହୃଦୟବାନ ଓ ଉଦାର । ଏହି ନୂତନ ଯୁଗର ଯୁବକ ସେ । ଏହି ଯୁଗରେ ସେ ଖୁବ୍ ଆଗେଇବେ, ଏଥିରେ ସନ୍ଦେହ ନାହିଁ ।"

ମୀରଜାଫର ଅଲ୍ଲୀ କହିଲେ, "ଆଗେଇବେ ଯାହା ଗୁଡ଼ । ଏଇଥିନ୍ତୁ ତ ତାଙ୍କ ନାଁରେ କେତେ ଆପତ୍ତି ଅଭିଯୋଗ ହେଲାଣି । ଭଗବାନ ଜାଣନ୍ତି ତାଙ୍କର ଏହି ଆଡ଼୍‌ଡ଼ା ଚୌଡ଼ା ଖରଚ ପାଇଁ ଏତେ ପଇସା କେଉଁଠୁ ଆସେ, କାରଣ ସେ ତ ଲାଞ୍ଚ ମିଛ ଖାଇବାର କେବେ କେଉଁଠୁ ଶୁଣାନାହିଁ । ମୁଁ ଆପଣଙ୍କୁ କହୁଛି ପଣ୍ଡିତଜୀ, ନିଶ୍ଚୟ ଦିନେ ସେ ଖାଲରେ ପଡ଼ିବେ । ଆପଣ ଜାଣିବା ଶୁଣିବା ଲୋକ । ଆପଣ ତାଙ୍କ ବାପାଙ୍କ ବନ୍ଧୁ ; ତେଣୁ ତାଙ୍କୁ ଟିକିଏ ସାବଧାନ କରି ଦିଅନ୍ତୁ ।"

କଣୋଗାରମଣ ଖୁବ୍ ଜୋରରେ ହସିଦେଇ କହିଲେ, "ଆଚ୍ଛା ମୀର୍ ସାହେବ, ଆପଣଙ୍କର ତାଙ୍କ ପ୍ରତି ହିଂସା ହେଉଛି କି ?"

"ତା ହେଲେ ଗଙ୍ଗାପ୍ରସାଦ ନିଶ୍ଚୟ ହଇରାଣରେ ପଡ଼ିବେ । କ'ଣ ପଣ୍ଡିତଜୀ, ଆପଣ କ'ଣ ଭାବୁଛନ୍ତି ?"

ପଣ୍ଡିତ ସୋମେଶ୍ୱର ଦତ୍ତ ଗମ୍ଭୀର ହୋଇ କହିଲେ, "ଡାକ୍ତରବାବୁ, ମୀର୍ ସାହେବ ଠିକ୍ କହୁଛନ୍ତି । ମୀରସାହେବ ଓ ଗଙ୍ଗାପ୍ରସାଦଙ୍କ ଭିତରେ ତଫାତ୍ ହେଉଛି ଗଙ୍ଗାପ୍ରସାଦ ଖୁବ୍ ସାହସୀ । ସେ ଇଂରେଜମାନଙ୍କ ସହିତ ସମାନସ୍କନ୍ଧ ଭାବରେ ମିଳାମିଶା କରିବାରୁ ସେମାନଙ୍କ ସହିତ ଚଳିବା ପାଇଁ ତାଙ୍କର ଏତେ ସାହସ ହୋଇଛି । କିନ୍ତୁ ଡାକ୍ତର ସାହେବ, ତାଙ୍କର ଗୋଟିଏ ଦୁର୍ଗୁଣ ହେଉଛି ସେ ସାହସୀ ହୋଇଥିବାରୁ କାହାକୁ ଖୁସାମତ କରି ପାରନ୍ତି ନାହିଁ । ଏକଥା ମଧ୍ୟ ସତ୍ୟ, ସାହସ ଯୋଗୁ ମଣିଷ ଅନେକ ଭୁଲ୍ ବି କରେ । କିନ୍ତୁ ଆମ ମୀରସାହେବ ନିତାନ୍ତ ଡରୁଆ ଗୁଡ଼ ପଡ଼ଲା ଲୋକ । ତାଙ୍କ ସୁପରିଣ୍ଟେଣ୍ଡେଣ୍ଟ ତାଙ୍କୁ ଏତେ ଗାଳି ଦିଅନ୍ତି; କିନ୍ତୁ ତାଙ୍କୁ ଏତେ ଟିକିଏ କିଛି ଲାଗେ ନାହିଁ । ମୀରସାହେବ ସମସ୍ତଙ୍କ ମନ ନେଇ ଚଳନ୍ତି । ଗଙ୍ଗାପ୍ରସାଦଙ୍କର ସବୁଠୁ

ବଡ଼ ଶତ୍ରୁ ତାଙ୍କ ଜିଦ୍ । ତାଙ୍କର ଆଉ ଗୋଟିଏ ବିପଦ ହେଉଛି, ତାଙ୍କର ଭିତର ବାହାର ସମାନ । ଅଥଚ ମୀରସାହେବଙ୍କ ଭିତର ଓ ବାହାର ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଡାକ୍ତର ସାହେବ, ଏ ସଂସାରର ଦୁଇଟା ରଙ୍ଗ । ଯାହାର ଭିତର ବାହାର ଦୁଇପ୍ରକାର ରଙ୍ଗ ଅଛି, ସେହି କେବଳ ଏ ସଂସାରକୁ ଜିତିବ ।''

ମୀରଜାଫର ଅଲ୍ଲୀ ପଣ୍ଡିତ ସୋମେଶ୍ୱର ଦତ୍ତଙ୍କ କଥାକୁ କିଛି ମନେ ନ କରି କହିଲେ, ''ଆରେ ପଣ୍ଡିତଜୀ, ଆପଣତ ଜଣେ ଖୁବ୍ ଅନୁଭବୀ ଲୋକ ! ଚାଲନ୍ତୁ ଜନାଥନ ସାହେବ, ଗୋଟାଏ ଅଧେ ପାଲି ପଡ଼ିଯାଉ ।''

ମୀରଜାଫର ଅଲ୍ଲୀ ଜନାଥନଙ୍କ ହାତ ଧରି ଯେତେବେଳେ ବ୍ରିଜ୍ ଖେଳ ଘରେ ପହଞ୍ଚିଲେ, ସେତେବେଳକୁ ଗଙ୍ଗାପ୍ରସାଦ ଖେଳ ସାରି ଉଠି ଆସୁଥିଲେ । ମୀରସାହେବଙ୍କ ପାଖକୁ ଆସି ସେ କହିଲେ, ''ମୀରସାହେବ, ଦୟାକରି ମୋ ସଙ୍ଗରେ ଟିକିଏ ଆସନ୍ତୁ । ଆପଣଙ୍କ ସଙ୍ଗେ ମୋର ଟିକିଏ ଜରୁରୀ କଥା ଅଛି । ମିଷ୍ଟର ଡେଭିଡ଼, ମୁଁ ଆପଣଙ୍କ ସାଥୀଙ୍କୁ ଆପଣଙ୍କ ପାଖରୁ ନେଇ ଯାଉଥିବାରୁ ମୋତେ କ୍ଷମା କରିବେ ।''

ଗଙ୍ଗାପ୍ରସାଦ ଯେତେବେଳେ ମୀରଜାଫର ଅଲ୍ଲୀଙ୍କୁ ସାଙ୍ଗରେ ନେଇ କ୍ଲବ କୋଠା ବାହାରକୁ ଗଲେ ସେତେବେଳେ ମୀରଜାଫର ପଚାରିଲେ, ''ତମେ ମୋତେ କୁଆଡ଼େ ନେଇଯାଉଛ ?''

ଗଙ୍ଗାପ୍ରସାଦ କହିଲେ, ''ମିଷ୍ଟର କ୍ଲିମେଣ୍ଟସଙ୍କ ବଙ୍ଗଳାକୁ । ଆପଣଙ୍କୁ ଦିଲ୍ଲୀ ଦରବାର ଯୋଗାଡ଼ କମିଟିରେ ରଖି ଦେବାକୁ ମୁଁ ତାଙ୍କୁ କହିଥିଲି । ସେ ପ୍ରାୟ ରାଜି-ହୋଇ ଯାଇଥିଲେ । ଆପଣ ନିଜେ ଯାଇ ତାଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତୁ । ମୋର ବିଶ୍ୱାସ ସେ ଆପଣଙ୍କୁ ଦିଲ୍ଲୀ ନେବାପାଇଁ ରାଜି ହୋଇଯିବେ ।''

ମୀର୍ ଜାଫର କୃତକୃତ୍ୟ ହୋଇପଡ଼ି ଗଙ୍ଗାପ୍ରସାଦଙ୍କର ହାତଧରି କହିଲେ, ''ସତ କହୁଛ, ତମେ ଯଦି ମୋତେ ଦିଲ୍ଲୀ ଦରବାରକୁ ପଠାଇଦିଅ, ତେବେ ଜୀବନସାରା ମୁଁ ତମର ଋଣୀ ହେବି ।''

ଏ ଦୁହେଁ କ୍ଲିମେଣ୍ଟସଙ୍କ ବଙ୍ଗଳାରେ ପହଞ୍ଚିଲା ବେଳକୁ ସେ ବାରଣ୍ଡାରେ ଦିଲ୍ଲୀ ଦରବାର ପ୍ଲାନ ପରୀକ୍ଷା କରୁଥିଲେ । ଦିଲ୍ଲୀ ଦରବାରର ସବୁ ବ୍ୟବସ୍ଥା ଉତ୍ତର ପ୍ରଦେଶର ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କ ଦାୟିତ୍ୱରେ ଥିଲା ଓ ନିଜେ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର କ୍ଲିମେଣ୍ଟସଙ୍କ କୃପାପାତ୍ର ଥିଲେ । ଗଙ୍ଗାପ୍ରସାଦ ଓ ମୀରଜାଫରଙ୍କୁ ଦେଖିଲା ମାତ୍ରେ କ୍ଲିମେଣ୍ଟସ ପଚାରିଲେ, ''ହଲୋ ଗଙ୍ଗାପ୍ରସାଦ, ତମେ ଦିଲ୍ଲୀରେ କେବେ ପହଞ୍ଚିବ, ମୁଁ ପଅରଦିନ ସେଠି ପହଞ୍ଚିବି ।''

''ସାର୍, ମୁଁ କାଲି ଆଲହାବାଦ ଯାଉଛି । ଏକ ସପ୍ତାହ ପରେ ସେଠୁ ଯାଇ

ଦିଲ୍ଲୀରେ ପହଞ୍ଚିବ । ପିଲାପିଲାଙ୍କୁ ଆଲାହାବାଦ ପଠାଇବାକୁ ଅଛି ନା !"

"ଆଚ୍ଛା ଠିକ୍ ଅଛି, ଗୋଟାଏ ସପ୍ତାହ ଭିତରେ ପହଞ୍ଚିବାକୁ ହେବ । ଆଉ ମୀର, ତମେ କେମିତି ଆସିଲ ? କିଛି କାମ ଅଛି କି ?"

ଗଙ୍ଗାପ୍ରସାଦ ଏହି ପ୍ରଶ୍ନର ଜବାବ୍ ଦେଇ କହିଲେ, "ସାର୍, ମୁଁ ତାଙ୍କୁ ସାଙ୍ଗରେ ନେଇ ଆସିଥିଲି । ସେ ବି ଦିଲ୍ଲୀ ଦରବାର କାମରେ ଯିବା ପାଇଁ ଚାହାନ୍ତି । ମୁଁ କହିଲି ଆପଣ କାହିଁକି କାପ୍ଟେନ ସାହେବଙ୍କ ସହିତ ନିଜେ ଯାଇଁ କଥାବାର୍ତ୍ତା କରୁନାହାନ୍ତି ? ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ସେ ଡରୁଛନ୍ତି । ତେଣୁ ମୁଁ ତାଙ୍କୁ ଜବରଦସ୍ତି ସଂଗରେ ନେଇ ଆସିଲି ।"

ଗଙ୍ଗାପ୍ରସାଦ କଥା ଶୁଣି ସାହେବ ଟିକିଏ ମୁରୁକି ହସା ଦେଇ କହିଲେ, "ଗଙ୍ଗାପ୍ରସାଦ, ତମେ କ'ଣ କହୁଛ ? ମୀରସାହେବ ମୋତେ ଡରୁଛନ୍ତି ? ଏ ଜଣେ ଖୁବ୍ ବଦମାସ ଲୋକ, ଯାଙ୍କ ପରି ପାଜି ତମେ ଆଉ କେଉଁଠି ପାଇବ ନାହିଁ । କ'ଣ ମୀର, ମୁଁ ତ କିଛି ଭୁଲ୍ କହିନାହିଁ । ତୁମେ କ'ଣ ଏକନମ୍ବର ଜଣା ଶୁଣା ବଦମାସ ନୁହଁ ?"

ମୀରଜାଫର ବଡ଼ ବିନୟ ଭାବରେ କହିଲେ, "ଆପଣଙ୍କ କଥାକୁ କାଟିବାର ଶକ୍ତି ମୋର କାହିଁ ? ଆପଣଙ୍କ କଥାକୁ ବାଦକରିବା ଅନୁଚିତ ହେବ ।"

ମିଷ୍ଟର କ୍ଲେମେଣ୍ଟସ୍ ଗଙ୍ଗାପ୍ରସାଦଙ୍କୁ ଚାହିଁ କହିଲେ, "ଶୁଣୁଛ ଗଙ୍ଗାପ୍ରସାଦ ! ଇଏ କେଡ଼େ ବଡ଼ ପାଜି ଲୋକ, ପୁଣି ଯାଙ୍କୁ ତମେ ଦିଲ୍ଲୀ ଦରବାର ଯୋଗାଡ଼ ପାଇଁ ପଠାଇବାକୁ କହୁଛ ?"

ମୀରସାହେବ ଆହୁରି ଅଧିକ ବିନୟ ପ୍ରକାଶ କରି କହିଲେ, "ହଜୁର, ଦୋଷ କ୍ଷମା କରିବେ । ଏହି ପୋଲିସ୍ ଅଫିସରେ ପ୍ରଥମନମ୍ବର ଲୋକଙ୍କୁ ମିଳେ । ହଜୁର ଆମ ପରି ଲୋକ ଆପଣଙ୍କ ସେବାରେ ନ ରହିଲେ, ଗୋଟାଏ ଦିନ ବି ବ୍ୟବସ୍ଥା ଚଳିବ ନାହିଁ । ଆମରି ପରି ଲୋକ ବିନା ସବୁ ବ୍ୟବସ୍ଥା କରନ୍ତୁ ।"

ଏ କଥା ଶୁଣି କ୍ଲେମେଣ୍ଟସ୍ ଖୁବ୍ ଜୋରରେ ହସି ଦେଇ କହିଲେ, "ଆଚ୍ଛା ମୀର, ତମେ ବହୁତ କହିଲ ଓ ଠିକ୍ ବି କହିଲ । ଆଚ୍ଛା ଗଙ୍ଗାପ୍ରସାଦ ମୁଁ ମୀରଙ୍କ ନାଁ ଦିଲ୍ଲୀ ଦରବାର ଯୋଜନା ଲିଷ୍ଟରେ ରଖି ଦେଇଛି, ତାଙ୍କୁ କହ ସେ ଯିବାପାଇଁ ପ୍ରସ୍ତୁତ ହୁଅନ୍ତୁ ।"

ମୀରସାହେବଙ୍କ ମୁହଁ ବର୍ତ୍ତମାନ ହସି ଉଠିଲା । ସେ ନଇଁପଡ଼ି କ୍ଲେମେଣ୍ଟସ୍ଙ୍କୁ ଏକ ଲମ୍ବା ଦଣ୍ଡବତ ପକାଇଲେ ।

ମୀରସାହେବଙ୍କୁ କ୍ଲବରେ ଛାଡ଼ି ଦେଇ ଗଙ୍ଗାପ୍ରସାଦ ଘରକୁ ଫେରିଗଲେ । ସେ

ଏତେ ଶୀଘ୍ର ଫେରି ଆସିବାର ଦେଖି ତାଙ୍କ ସ୍ତ୍ରୀ ରୁକ୍ମଣୀ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଡ଼ିଶାରେ ଥିବା ଜଣେ ଓକିଲ ଶ୍ରୀକୃଷ୍ଣବାବୁଙ୍କ ଘରକୁ ବୁଲିଯିବା ପାଇଁ ପ୍ରସ୍ତୁତ ହେଉଥିଲେ । ଗଙ୍ଗାପ୍ରସାଦଙ୍କର ଦୁଇ ବର୍ଷର ପୁଅ ନବଲକିଶୋରକୁ ବାରଣ୍ଡାରେ ବସାଇ ଭିକ୍ଷୁ ଖେଳାଉ ଥିଲା ଓ ପୂଜାରଣୀ ରୋଷାଇ ଘରେ ରୋଷାଇ କରୁଥିଲା । ଗଙ୍ଗାପ୍ରସାଦଙ୍କୁ ଭିକ୍ଷୁ ଦେଖିଲା ମାତ୍ରେ କହିଲା, "ବାବା, ଆଜିତ ତମେ ଭାରି ଚଞ୍ଚଳ ଲେଉଟି ଆସିଲ ? ବୋହୂତ ଓକିଲଙ୍କ ଘରକୁ ଯିବେ ବୋଲି ବାହାରିଛନ୍ତି ।"

ରୁକ୍ମଣୀ ଗଙ୍ଗାପ୍ରସାଦଙ୍କ ମୁହଁରେ ହସ ଦେଖି ଭାବିଲେ ସେ କିଛି ଭଲ ସମ୍ବାଦ ଆଣିଛନ୍ତି । ସେ ପଚାରିଲେ, "ଭାରି ପ୍ରସନ୍ନ ଦେଖା ଯାଉଛତ, କ'ଣ କିଛି ମିଳି ଯାଇଛି କି ?"

"ହଁ ମିଳି ଯାଇଛି ବୋଲି ଭାବ । ଦିଲ୍ଲୀ ଦରବାରରେ ସାଜସଜା କରିବା ପାଇଁ ଦିଲ୍ଲୀ ଯିବାକୁ ଅର୍ଡ଼ର ମିଳିଛି । ଚାଲ, ତମେ ବି ଦିଲ୍ଲୀ ଦରବାର ଦେଖି ଆସିବ । ଦିଲ୍ଲୀ ବହୁତ ପୁରୁଣା ସହର । ଲାଲକିଲା, କୁତବମିନାର, ତା ଛଡ଼ା ଦିଲ୍ଲୀ ଦରବାର ସବୁ ଦେଖି ଆସିବ ।"

ରୁକ୍ମଣୀ ଜିଭ କାମୁଡ଼ି ପକାଇ କହିଲେ, "ରାମରାମ, ତମ ସାଙ୍ଗରେ······ତମ ସାଙ୍ଗରେ ଦିଲ୍ଲୀରେ ଯାଇଁ ବୁଲିବ ? ଲୋକେ କ'ଣ କହିବେ ? ଦି'ହାତ ଓଢ଼ଣା ଟାଣି ତମ ସାଙ୍ଗରେ ବୁଲିଲେ ଲୋକେ ହସିବେ ନାହିଁ ?"

"ଆରେ ଓଢ଼ଣା ଟାଣିବା କ'ଣ ଦରକାର ? ସେ ସବୁ ପୁରୁଣା କାଇଦା ଛାଡ଼ । ଭିକ୍ଷୁ, ଆମ ଜିନଷ ପତ୍ର ସବୁ ଠିକ୍ କରିବା ଦରକାର । କାଲି ସକାଳ କିମ୍ବା ଦୁଇ ପ୍ରହର ଗାଡ଼ିରେ ଆମକୁ ଯିବାକୁ ହେବ । ମନେରଖ, ସେଠି ଛନମାସ ରହିବାକୁ ହେବ । ତେଣୁ ଶୀତ ଲୁଗାପଟା ବି ନେବା ଦରକାର ।"

ରୁକ୍ମଣୀ ଭିକ୍ଷୁକୁ କହିଲେ, "ନାହିଁ, ଭିକ୍ଷୁ କାକା, ଇଏ ତ ସବୁବେଳେ ଏମିତି ଓଲଟା ସିଧା କହନ୍ତି । ଆଚ୍ଛା କହିଲ ଭିକ୍ଷୁ କାକା, ଦିଲ୍ଲୀ ଦରବାରରେ ସ୍ତ୍ରୀ ଲୋକଙ୍କର କ'ଣ କାମ ଅଛି ?"

ଭିକ୍ଷୁ ମୁରୁକି ହସି ଦେଇ କହିଲା, "କାହିଁକି କାମ ନାହିଁ, ଶାୟା ପିନ୍ଧି କରି ତମେ ମେମ୍ ସାହେବ ହୋଇ ଯାଉନା, ସେଠି ଯାଇ ଇଂରେଜି ଶିଖିନେବ । ଆମ ପୁଅର ଗୋଟାଏ ଆଶା ପୂରଣ ହୋଇଯିବ । ନୂଆ ସଂସାରରେ ନୂଆ ନୂଆ କଥା ଶିଖିବାକୁ ହେବ ।"

"ହାୟ ରାମ, ଭିକ୍ଷୁ କାକା ତମେ ବି ଏମିତି କଥା କହୁଛ ?" ତାପରେ ରୁକ୍ମଣୀ ଗଙ୍ଗାପ୍ରସାଦଙ୍କୁ ଚାହିଁ କହିଲେ, "କ'ଣ ଛନମାସ ପାଇଁ ଯିବାକୁ ହେବ ? ତମକୁ ସେଠି କେବେ ପହଞ୍ଚିବାକୁ ହେବ ?"

ଗଙ୍ଗାପ୍ରସାଦ କହିଲେ, "ସପ୍ତାହ ଭିତରେ ଯିବାକୁ ହେବ । ସେମିତି ଦୁଇ ଚାରି ଦିନ ଡେରି ହେଲେ କିଛି ଯାଏ ଆସେ ନାହିଁ । କିନ୍ତୁ ମୋର ଅସଲ ଚିନ୍ତା ତମେ ତିନିମାସ ଏଠି ଏକା କେମିତି ରହିବ ?"

ରୁକ୍ମିଣୀ କହିଲେ, "ମୋତେ ବାପାଙ୍କ ଘରେ ବାନ୍ଦାରେ ଛାଡ଼ିଦିଅ ନଚେତ୍ ଆହ୍ଲାବାଦରେ ଖୁଡ଼ୀଙ୍କ ପାଖରେ ଛାଡ଼ିଦିଅ । ବର୍ଷେରୁ ବେଶୀ ହେଲାଣି ମାଆଙ୍କୁ ଦେଖିନାହିଁ କି ଖୁଡ଼ୀଙ୍କୁ ଦେଖିନାହିଁ । ଖୁଡ଼ୀଙ୍କ ପାଖରୁ ଚିଠି ଆସିଥିଲା ତାଙ୍କ ଦେହ ଭଲ ନାହିଁ ।"

ଗଙ୍ଗାପ୍ରସାଦ କହିଲେ, "ହଁ ମୁଁ ଭାବୁଥିଲି ତୁମକୁ ଆହ୍ଲାବାଦରେ ଛାଡ଼ି ଦେବି । କଥା ହେଉଛି ଭିକ୍ଷୁ ନ ଗଲେ ଦିଲ୍ଲୀରେ ମୋ କାମ ଚଳିବ ନାହିଁ । ତାକୁ ମୁଁ ସାଥିରେ ନେଇଯିବି । ତାହେଲେ ତମେ ଦୁହେଁ ମିଶି ସବୁ ବ୍ୟବସ୍ଥା ଶୀଘ୍ର କରିଦିଅ । କାଲି ସକାଳ ଗାଡ଼ିରେ ଆମେ ଆହ୍ଲାବାଦ ଚାଲିଯିବା । ମୁଁ ବାପାଙ୍କୁ ଚିଠି ଲେଖି ଦେଉଛି ସେ ଆହ୍ଲାବାଦ ଆସି ତୁମକୁ ବାନ୍ଦା ନେଇଯିବେ ।"

ସେହି ସମୟରେ ଗଙ୍ଗାପ୍ରସାଦ ଆହ୍ଲାବାଦ ଯିବା କଥା ଜେଦେଇଙ୍କୁ ଟେଲିଗ୍ରାମ ଦ୍ୱାରା ଜଣାଇ ଦେଲେ ।

ତୃତୀୟ ଦିନ ସକାଳେ ଗଙ୍ଗାପ୍ରସାଦ ସପରିବାରରେ ଆହ୍ଲାବାଦର ଷ୍ଟେସନରେ ପହଞ୍ଚି ଦେଖିଲେ ଜେଦେଇଙ୍କ ଘୋଡ଼ାଗାଡ଼ି ତାଙ୍କୁ ଅପେକ୍ଷା କରି ରହିଛି । ଗାଡ଼ିରେ ଜିନିଷପତ୍ର ଲଦି ସମସ୍ତେ ଯାଇଁ ଜେଦେଇଙ୍କ ବଙ୍ଗଳାରେ ପହଞ୍ଚିଲେ ।

ଗଙ୍ଗାପ୍ରସାଦ ଦେଖିଲେ ଘରେ ଜେଦେଇ ଏକା ନାହାନ୍ତି । ତାଙ୍କ ବାପା ଜ୍ୱାଳାପ୍ରସାଦ ବି ସେଠି ଅଛନ୍ତି । ଜ୍ୱାଳପ୍ରସାଦ ଜେଦେଇଙ୍କୁ ଦେଖିବା ପାଇଁ ଏକ ସପ୍ତାହ ଛୁଟି ନେଇ ଆହ୍ଲାବାଦ ଆସିଥିଲେ ।

ଜେଦେଇ ଭୀଷଣ ମେଲେରିଆରେ ପଡ଼ି ଭାରି ଦୁର୍ବଳ ହୋଇ ପଡ଼ିଥିଲେ । ପୂର୍ବରୁ ସେହି କବିରାଜ ଔଷଧ ଚାଲିଥିଲା । ଜ୍ୱାଲପ୍ରସାଦ ଆସିଲମାତ୍ରେ କବିରାଜ ଔଷଧ ବଦଳାଇ ଡାକ୍ତରୀ ଔଷଧ ଦେବାରୁ ଦୁଇଦିନ ଭିତରେ ଜର ଛାଡ଼ି ଯାଇଥିଲା । ରୁକ୍ମିଣୀକୁ ଦେଖି ଜେଦେଇ ଆନନ୍ଦରେ ଉଚ୍ଛୁଳି ପଡ଼ି କହିଲେ, "ଗଙ୍ଗା, ତୁ ବୋହୂକୁ ନେଇ ଆସିଲୁ ଭଲ କଲୁ । ମୁଁ ତ ବିଲ୍‌କୁଲ୍ ଏକୁଟିଆ ପଡ଼ି ରହିଥିଲି । ଲକ୍ଷ୍ମୀ ବୋହୂର ପିଲା ଛୁଆ ଘରଦ୍ୱାର ନେଇ ଏତେ ଜଞ୍ଜାଳ ଯେ ତା'ପକ୍ଷରେ ଆସିବା ସମ୍ଭବ ନୁହେଁ । ପୁଣି ଲକ୍ଷ୍ମୀ କଥା ତ ତାକୁ ବୁଝାଶୁଝା କରିବାକୁ ହେବ ।"

ଗଙ୍ଗାପ୍ରସାଦ ପଚାରିଲେ "ଖୁଡ଼ୀ, ତମେ ତାହେଲେ କାନପୁର ଚାଲି ଯାଉନ କାହିଁକି ?"

ଜେଦେଇଙ୍କ ମୁହଁରେ ଏକ ଅସ୍ପଷ୍ଟ ହସରେଖା ଫୁଟି ଉଠିଲା । ସେ କହିଲେ, "ଆରେ ପୁଅ, ମଲା ବେଳକୁ ଆଉ କ'ଣ ପ୍ରୟାଗ ଛାଡ଼ି କାନପୁର ଯିବି ? ଏହି ତ୍ରିବେଣୀ ତଟରେ ମୋର ଦେହ ପାଉଁଶ ହେବ । ଷାଠିଏ ବର୍ଷ ତ ହେଲାଣି, ଆଉ ଦୁ'ଚାରି ବର୍ଷର କଥା ।" ଏହି କଥା କହୁ କହୁ ଜେଦେଇଙ୍କ ଆଖିରେ ଲୁହ ଆସିଗଲା । "ଲକ୍ଷ୍ମୀ ମଧ୍ୟ ମୋ ଉପରେ ଭାରି ନାରାଜ, ସେ ଖାଲି ଲଗାଇଛି କାନପୁର ଚାଲ । କେତେବାର ମୁଁ ତାକୁ କହିଲିଣି, ଏହି ଆଲାହାବାଦରେ ତ ତୋର କାଠ କାରଖାନା ଅଛି, ତୁ ରାଧା ଓ ପିଲାପିଲିଙ୍କୁ ଆଣି ଏଠି ରହ । କିନ୍ତୁ କାନପୁରରେ ରାଧାର ବାପ ଘରନା, ସେଇଥିପାଇଁ ସେ ବାପଘର ମୋହ ଛାଡ଼ି ପାରୁନାହିଁ ।" ଜେଦେଇ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ହଁ, ସେ କାନପୁରରେ ରହୁ । ଭଗବାନଙ୍କୁ ପ୍ରାର୍ଥନା, ତା'ର ବଢ଼ତି ହେଉ ।"

ଜେଦେଇଙ୍କ ସ୍ୱରରେ ଏକ ଅସାଧାରଣ ବ୍ୟଥା, ନିରାଶା ଓ ଜ୍ୱଳନ ଥିବାର ସମସ୍ତେ ଅନୁଭବ କଲେ । ଗଙ୍ଗାପ୍ରସାଦ କହିଲେ, "ଏଥିରେ ଦୁଃଖ କରିବାର କ'ଣ ଅଛି ? ତମେ ଚାହିଁଲେ ମୁଁ ଆଲାହାବାଦ ବଦଳି ହୋଇ ଆସିବି । ହେଲେ ମୋର ତ ସରକାରୀ ଚାକିରି । ସେଥିରେ ବରାବର ବଦଳି ହୁଏ । ଏଠୁ ପୁଣି ଆଉ କୁଆଡ଼େ ବଦଳି ହୋଇଯାଇପାରେ ।"

ଗଙ୍ଗାପ୍ରସାଦଙ୍କର ଏହି କଥା ଶୁଣି ଜେଦେଇଙ୍କର ସବୁ ଦୁଃଖ ଦୂରେଇଗଲା । ସେ ଜ୍ୱାଲା-ପ୍ରସାଦଙ୍କ ଆଡ଼କୁ ଅନାଇ କହିଲେ, "ନାହିଁ ବାବା, ତୋର ଏ ସବୁ କରିବା ଦରକାର ନାହିଁ । ଦିଅର ତ ଅଛନ୍ତି, ମାସକେ ଥରେ ଅଧେ ଆସି ଦେଖି ଯାଉଛନ୍ତି । ତାଙ୍କର ପେନସନ୍ ପାଇବାକୁ ଆଉ ଛ ସାତ ବର୍ଷ ମାତ୍ର ବାକି ଅଛି । ମୁଁ ତାଙ୍କୁ କହୁଛି ସେ ଆଲାହାବାଦ ବଦଳି ହୋଇ ଆସନ୍ତୁ ଓ ଚାକିରିର ଏଇ ଛ ସାତ ବର୍ଷ ଏଇଠି କଟାଇ ଦିଅନ୍ତୁ । ଏଠିତ ଘର କରିବା ପାଇଁ ସେ ଜମି କିଣି ସାରିଛନ୍ତି । ଏହି ନୂଆଘର ଲୁକରଗଞ୍ଜରେ ହେବଟି ! ତାହେଲେ, ସେ ଏଠିକି ଆସି ତାଙ୍କ ନୂଆଘର ତିଆରି କରିନେବେ ।"

ବର୍ତ୍ତମାନ ଗଙ୍ଗାପ୍ରସାଦ ନିଜ ବାପାଙ୍କୁ ଚାହିଁ କହିଲେ, "ମୁଁ ପଅରଦିନ ଆପଣଙ୍କ ପାଖକୁ ବରେଲିରୁ ଚିଠି ଦେଇଛି । କଥା ହେଉଛି ଦିଲ୍ଲୀ ଦରବାର ସାଜସଜା କମିଟିରେ ମୋତେ ରଖା ଯାଇଛି । ତେଣୁ ମୋତେ ତିନିମାସ ଦିଲ୍ଲୀରେ ରହିବାକୁ ହେବ । ମୁଁ ଭିକ୍ଷୁକୁ ସାଙ୍ଗରେ ନେଇ ଯାଉଛି । କାରଣ ଭିକ୍ଷୁ ନ ଗଲେ ମୋର ବହୁତ ଅସୁବିଧା ହେବ ।"

ବର୍ତ୍ତମାନ ଜ୍ୱାଲାପ୍ରସାଦଙ୍କ ମୁହଁରେ ଆନନ୍ଦର ଏକ ରେଖା ଝଲସି ଉଠିଲା । ସେ କହିଲେ, "ଏମିତି କଥା, ତୋଠୁ ତା ହେଲେ ଖୁବ୍ ଭଲ ଖବରଟାଏ ଶୁଣିଲି ଆଜି ।

ସେଇଥିପାଇଁ ତୁ ବୋହୂକୁ ଆଣି ଏଠିକି ଆସିଛୁ । ଶୁଣିଲ ଭାଉଜ, ତମ ପୁଅ ଦିଲ୍ଲୀ ଦରବାର ବ୍ୟବସ୍ଥା କରିବା ପାଇଁ ଦିଲ୍ଲୀ ଯାଉଛି ।"

ଏ ଖବର ଶୁଣି ଜ୍ୱାଲାଙ୍କପରି ଜେଜେଇ ମଧ୍ୟ ଖୁବ୍ ଖୁସି ହେଲେ । କହିଲେ, "ଦିଅର ସାହେବ, ମୁଁ ତୁମକୁ କହି ଦେଉଛି, ଏହି ଗଙ୍ଗା ନିଶ୍ଚୟ ଦିନେ କଲେକ୍ଟର ହେବ । ବୋହୂତ ଏଠି ମୋ ପାଖରେ ଅନ୍ତତଃ ମାସେ ରହିବ, ନୋହିଲେ ଯମୁନାଙ୍କୁ କିଛି ସମୟ ପାଇଁ ଏଠିକି ପଠାଇଦିଅ ।"

ଜ୍ୱାଲାପ୍ରସାଦ ହସି ହସି କହିଲେ, "ଭାଉଜ, ବୋହୂଙ୍କୁ ବାନ୍ଧି ନେବା ପାଇଁ ମୁଁ କ'ଣ କେବେ କହୁଛି ? ଗଙ୍ଗାପ୍ରସାଦକୁ ତମେ ଲେଖାପଢ଼ା କରେଇଛ । ଆଡ଼ାଚୌଡ଼ାରେ ବାହା କରାଇଛ । ତା ଉପରେ ମୋଠୁ ତମର ଅଧିକାର ବେଶୀ ।"

ତୃତୀୟ ଦିନ ଜ୍ୱାଲାପ୍ରସାଦଙ୍କର ଛୁଟି ସରିଯିବାରୁ ସେ ବାନ୍ଦା ଚାଲିଗଲେ । ତାଙ୍କର ଯିବାର ଦୁଇଦିନ ପରେ ଗଙ୍ଗାପ୍ରସାଦଙ୍କର ଦିଲ୍ଲୀ ଯିବାର ଥିଲା । ଯିବାବେଳେ ସେ ଜେଜେଇଙ୍କ ପାଦଛୁଇଁ କହିଲେ, "ଖୁଡ଼ୀ, ମୋର ଗୋଟିଏ କଥା କହିବାର ଅଛି ।"

"ହଁ, ହଁ, ତୁ କ'ଣ କହିବୁ ମୁଁ ଜାଣିଛି । ଦିଲ୍ଲୀ ଯିବାପାଇଁ ତୋର ଟଙ୍କା ଦରକାର । କେତେ ଟଙ୍କା ହେଲେ ତୋର କାମ ଚଳିଯିବ ?"

"ଖୁଡ଼ୀ, ସେଠି ମୋତେ ତିନି ମାସ ରହିବାପାଇଁ ହେବ । ସମ୍ଭବତଃ ଆଉ ମାସେ ଅଧିକ ଲାଗିଯାଇପାରେ । ତେବେ ମୋ ଦରମା ତ ମୋତେ ମିଳିବ ।"

ଜେଜେଇ ତା କଥାକୁ କାଟି ଦେଇ କହିଲେ, "ହଁ, ତୋତେ କେତେ ଦରମା ମିଳୁଛି ମୁଁ ଜାଣେ । ତୋର ଆଉ ସବୁ ଯାହା ଖର୍ଚ୍ଚ ମୁଁ ଲକ୍ଷ୍ମୀଠାରୁ ଶୁଣିଛି । ତୁ ବର୍ତ୍ତମାନ ଜଣେ ଦାୟିତ୍ୱସଂପନ୍ନ ଅଫିସର; ତେଣୁ ତୋର ବୁଝି ବିଚାରି କାମ କରିବା ଦରକାର ।"

"ହଁ ଖୁଡ଼ୀ, ମୁଁ ବୁଝୁଛି । ଲକ୍ଷ୍ମୀ ଭଳିତ ବେଶୀ ଖର୍ଚ୍ଚ କରିବାକୁ ପସନ୍ଦ କରନ୍ତି ନାହିଁ; କିନ୍ତୁ ଦିଲ୍ଲୀରେ ତ ବଡ଼ ବଡ଼ ରାଜା ମହାରାଜା ସବୁ ଆସିବେ, ସେମାନଙ୍କ ସଙ୍ଗେ ଚଳିବାକୁ ହେବ । ସେମାନଙ୍କ ଆଗରେ ତ......।" ଏତିକି କହୁ କହୁ ଗଙ୍ଗାପ୍ରସାଦ ଚୁପ୍ ହୋଇଗଲେ ।

"ହଁ ବୁଝୁଛି । ତୁ କେଉଁ ରାଜାମହାରାଜାଙ୍କ ଠାରୁ କମ୍ ଯେ । ଜେଜେଇ ଅତି ଆଦରରେ ଗଙ୍ଗାପ୍ରସାଦଙ୍କ ମୁଣ୍ଡରେ ହାତ ବୁଲାଇ କହିଲେ, "ମୁଁ ତ କହୁଛି ତୋ ଆଗରେ ବଡ଼ ବଡ଼ ରଜା ମହାରଜା ଗୁଡ଼ା ଗୋଲାମପରି ଦିଶିବେ । କହ, କେତେ ଟଙ୍କା ହେଲେ ତୋର କାମ ଚଳିବ । ଦିଲ୍ଲୀରେ ଯାଇ ଜାକଜମକରେ ରହିବୁ, ନିଜ ମନକୁ କେବେ ଛୋଟ କରିବୁ ନାହିଁ ।"

ଗଙ୍ଗାପ୍ରସାଦ କହିଲେ, "ପ୍ରାୟ ପାଞ୍ଚଶହ ଟଙ୍କା ହେଲେ କାମ ଚଳିଯିବ ।"

"ପାଞ୍ଚଶହ ଟଙ୍କାରେ ତୋର କି କାମ ଚଳିବ ? ମୁଁ କଣ ତୋତେ ଚିହ୍ନି ନାହିଁ ।" ଏହା କହି ଜେଦେଇ ଟ୍ରେଜେରୀରୁ ଟଙ୍କା ଆଣି ସହେ ଟଙ୍କିଆ ଦଶଖଣ୍ଡ ନୋଟ ଗଙ୍ଗା-ପ୍ରସାଦଙ୍କୁ ଦେଇ କହିଲେ, "ତୋର ଦରକାର ପଡ଼ିଲେ ଆଉ ଟଙ୍କା ମାଗିନେବୁ । କିନ୍ତୁ ନିଜ ମନକୁ କେବେ ଗ୍ଲେଟ କରିବୁ ନାହିଁ, ବୁଝିଲୁ !"

ଗଙ୍ଗାପ୍ରସାଦ ହସି ହସି କହିଲେ, "ଖୁଡ଼ୀ, ତମେ ଏତେ ଭଲ ଲୋକ; କିନ୍ତୁ ମୋ ଅଭ୍ୟାସକୁ ତମେ ଖରାପ କରି ଦେଉଛ । ମୋ ରହିବାର ଜାକ ଜମକ ଦେଖି ଲୋକଙ୍କ ମନରେ ଈର୍ଷା ହେଉଛି ।"

ଜେଦେଇ ବି ହସି ଦେଇ କହିଲେ, "କୁଢ଼ିଆ ଗୁଡ଼ା, ଈର୍ଷାରେ ଜଳନ୍ତୁ ସେ ଶଳା-ଗୁଡ଼ା, ଭଲ ହେବ । ତା' ଛଡ଼ା ତୁ କେଉଁ ରାଜାମହାରାଜାଙ୍କ ଠାରୁ କମ୍ ଯେ । ହଁ, କ'ଣ କହୁଥିଲୁ ତୁ ? ଦିଲ୍ଲୀକୁ ରାଜା ମହାରାଜା ସବୁ ଆସିବେ । ହୀରାନୀଳାର ଆଲୁଅରେ ଦିଲ୍ଲୀ ସହର ଚମକି ଉଠିବ; କିନ୍ତୁ ତୋ ହାତ ତ ଖାଲି, ଆଚ୍ଛା ଟିକିଏ ରହ"—ଜେଦେଇ ଟ୍ରେଜେରୀରୁ ଗୋଟାଏ ହୀରାମୁଦି ଆଣି କହିଲେ, "ଜଣେ ରାଜା ଏହି ମୁଦିଟା ବନ୍ଧା ପକାଇଥିଲେ, ଏଥିରେ ଏଗାର ରତି ହୀରା ଅଛି । ସେ ପାଞ୍ଚହଜାର ଟଙ୍କା ନେଇଥିଲେ । କିନ୍ତୁ ବନ୍ଧକ ଫେରାଇ ନେବାପାଇଁ ସେ ଆଉ ଆସିଲେ ନାହିଁ । ନେ ତୁ ଏ ମୁଦି ପିନ୍ଧ । ବଡ଼ ବଡ଼ ରାଜାଙ୍କ ପାଖରେ ବି ଏମିତି ବଢ଼ିଆ ହୀରା ମୁଦି ନ ଥିବ ।"

ହୀରାମୁଦିର ଆଲୁଅରେ ଗଙ୍ଗାପ୍ରସାଦଙ୍କର ଆଖି ଝଲସି ଗଲା । ପ୍ରକୃତରେ ତାଙ୍କ ଜୀବନରେ ସେ ଏତେ ବଡ଼ ହୀରା କେବେ ଦେଖି ନ ଥିଲେ, ସାମାନ୍ୟ ନୀଳ ରଙ୍ଗ, ଖୁବ୍ ଉଜ୍ଜ୍ୱଳ, ବେଲ୍ଜିୟମ କଟା । ମାପି କରି ତିଆରି କଲାପରି ମୁଦିଟା ତାଙ୍କ ଆଙ୍ଗୁଠିକୁ ଠିକ୍ ହୋଇଗଲା ।

ଗଙ୍ଗାପ୍ରସାଦ ଜେଦେଇଙ୍କୁ କୁଣ୍ଢାଇ ପକାଇ କହିଲେ "ଖୁଡ଼ୀ, ତମେ ମୋ' ମାଠାରୁ ବି ବଡ଼ । ମୋ ପାଇଁ କେତେ ମମତା ତମର, କେତେ ସ୍ନେହ ଆଦର ତମଠାରୁ ମୁଁ ପାଇଛି ।" ଏତିକି କହୁ କହୁ ତାଙ୍କ ଆଖିରେ ଅଶ୍ରୁ ଆସିଗଲା ।

## ଦୁଇ

ଲକ୍ଷ୍ମୀଚନ୍ଦଙ୍କୁ 'ସାର୍' ଉପାଧି ମିଳିବ ଏକଥା କେହି କେବେ କଳ୍ପନା କରି ନ ଥିଲେ । ସରକାରୀ ଅଫିସମାନଙ୍କର ଖୁପରେ ପଡ଼ି ଲକ୍ଷ୍ମୀଚନ୍ଦ ଦିଲ୍ଲୀ ଦରବାରପାଇଁ ପଚିଶ-ହଜାର ଟଙ୍କା ଚାନ୍ଦା ଦେଇଥିଲେ । ଉତ୍ତର ଭାରତରେ ବିଦେଶୀ ଲୁଗାପଟା କାରବାରରେ ସେ ସବୁଠୁ ବଡ଼ ବ୍ୟବସାୟୀ; କିନ୍ତୁ ସେଥିରେ ତାଙ୍କ ମନ ସନ୍ତୁଷ୍ଟ ନ ଥିଲା । ବି.ଏ. ପର୍ଯ୍ୟନ୍ତ ଇଂରେଜି ଶିକ୍ଷା ପାଇଥିବାରୁ ସରକାରୀ ଅଫିସରେ ତାଙ୍କର ଖୁବ୍ ପ୍ରଭାବଥିଲା । କାନପୁରରେ ତାଙ୍କର ଗୋଟାଏ ଲୁଗାକଳ ଓ ଦୁଇଟା ତେଲକଳ ଥିଲା । ସ୍ୱାଛଡ଼ା ଆଲହାବାଦରେ ତାଙ୍କର ଗୋଟାଏ ବଡ଼ କାଠ କାରଖାନା ବି ଥିଲା । ଏତେ ବ୍ୟବସାୟ ଥିବାରୁ ବରାବର ମକଦ୍ଦମାରେ ପଡ଼ିବାକୁ ହେଉଥିଲା ଓ ସେଥିପାଇଁ ଟଙ୍କାପଇସାରେ ଖେଳ ଖେଳିବାକୁ ପଡ଼ୁଥିଲା । ଯେଉଁଠି କୋଟି କୋଟି ଟଙ୍କାର କାରବାର, ସେଠି ପଚିଶ ହଜାର ଟଙ୍କା ଦେଇ ଅଫିସରମାନଙ୍କ ଦୃଷ୍ଟିରେ ନିଜର ଟେକ ରଖିବା ନିଶ୍ଚୟ-ଶ୍ରେୟସ୍କର । ଜାନୁଆରୀ ପ୍ରଥମ ସପ୍ତାହରେ ହାଇକୋର୍ଟରେ ତାଙ୍କର ଦୁଇଟା ବଡ଼ ଅପିଲ୍ ଥିଲା । ତେଣୁ ସେ ଡିସେମ୍ବର ଶେଷ ସପ୍ତାହରେ ଆଲହାବାଦରେ ପହଞ୍ଚି ଯାଇଥିଲେ । ୧୯୧୨ ଜାନୁଆରୀ ପହିଲା ଦିନ 'ପାୟୋନିୟର' କାଗଜରେ ଉପାଧି ପାଇଥିବା ଲୋକମାନଙ୍କ ନାମ ତାଲିକାରେ ନିଜ ନାମ ଦେଖି ଲକ୍ଷ୍ମୀଚନ୍ଦ ଆନନ୍ଦରେ ଅଧୀର ହୋଇପଡ଼ିଲେ ।

ଲକ୍ଷ୍ମୀଚନ୍ଦଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ସକାଳୁ ଲୋକଙ୍କର ଧାଡ଼ି ଲାଗିଗଲା । ଅନେକ ଜାଗାରୁ ତାରବାର୍ତ୍ତାମାନ ଆସି ପହଞ୍ଚିଲା । କେଜଦେଇ ଲକ୍ଷ୍ମୀଚନ୍ଦଙ୍କର ଆରତି ସାରି ତାଙ୍କୁ ଗଙ୍ଗାସ୍ନାନ କରାଇ ଆଣିଲେ । ଗଙ୍ଗାସ୍ନାନ ପରେ ଦେବାଦେବୀଙ୍କ ପାଖରେ ଭୋଗରାଗ କରାଗଲା । ସବୁକାମ ସରୁସରୁ ଦୁଇପ୍ରହର ହୋଇଗଲା । ଲକ୍ଷ୍ମୀଚନ୍ଦ ଘରକୁ ଆସି କହିଲେ, "ମା, ପ୍ରଥମ ଗାଡ଼ିରେ ମୋତେ କାନପୁରରେ ପହଞ୍ଚିବାକୁ ହେବ, ସେଠି ଅନେକ ଲୋକ ମୋତେ ଅପେକ୍ଷା କରିଥିବେ । ଏଇ ବର୍ତ୍ତମାନ ମୁଁ କାନପୁରକୁ ତାର କରିଦେଇଛି ।" ପୁଣି ଟିକିଏ ରହିଯାଇ ସେ କହିଲେ, "ଏତେ ବଡ଼ ପଦ କେତେବେଳେ ମିଳିଛି, କାନପୁର ମିଲ୍‌ର ସବୁ ମଜୁରିଆ ଓ ବଜାରର ସବୁଲୋକ ଆମଘରକୁ ଆସିବେ । ତେଣୁ ତୁ ମୋ ସଙ୍ଗରେ ସପ୍ତାହକ ପାଇଁ କାନପୁର ଚାଲ, ତାପରେ ଫେରିଆସିବୁ ।"

ସେଦିନ ସନ୍ଧ୍ୟା ଗାଡ଼ିରେ ଲକ୍ଷ୍ମୀଚନ୍ଦ ଓ କେଦେଇ କାନପୁର ଚାଲିଗଲେ ।

ଗାଡ଼ି ସନ୍ଧ୍ୟା ନଅଟା ସମୟରେ କାନପୁର ଷ୍ଟେସନରେ ପହଞ୍ଚିଲା । ଲକ୍ଷ୍ମୀଚନ୍ଦଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ଷ୍ଟେସନରେ ବହୁତ ଲୋକ ଜମାହୋଇଥିଲେ । ସହରର ବଡ଼ ବଡ଼ ବେପାରୀ ଓ ଲକ୍ଷ୍ମୀଚନ୍ଦଙ୍କ କାରଖାନାର ବଡ଼ବଡ଼ ଅଫିସର ସବୁ ସେଠାରେ ଉପସ୍ଥିତ ଥିଲେ । ଗାଡ଼ି ଚଢ଼ିବା ମାତ୍ରେ ଜୟଜୟ ଧ୍ୱନିରେ ଲକ୍ଷ୍ମୀଚନ୍ଦଙ୍କୁ ସ୍ୱାଗତ କରାଗଲା ଓ ତାଙ୍କ ବେକରେ ଫୁଲମାଳ ସବୁ ପିନ୍ଧାଇ ଦିଆଗଲା । ଷ୍ଟେସନ ବାହାରେ ଲୋକମାନେ ପ୍ରୋସେସନ ପାଇଁ ବ୍ୟବସ୍ଥା କରୁଥିଲେ । ବ୍ୟାଣ୍ଡବାଜା, ଗ୍ୟାସ ଲାଇଟ ଓ ପଚିଶଟା ବଡ଼ ବଡ଼ ଘୋଡ଼ାଗାଡ଼ି ଲାଇନ ହୋଇ ରହିଥିଲେ । କେଦେଇ ଗୋଟାଏ ସ୍ୱତନ୍ତ୍ର ଘୋଡ଼ାଗାଡ଼ିରେ ବସି ଆଗରେ ଘରକୁ ଚାଲିଗଲେ । ଲକ୍ଷ୍ମୀଚନ୍ଦଙ୍କୁ ଫୁଲରେ ସଜା ଗୋଟିଏ ଘୋଡ଼ାଗାଡ଼ିରେ ବସାଇ ଷ୍ଟେସନଠାରୁ ପ୍ରୋସେସନ ଆରମ୍ଭ ହୋଇଗଲା ।

ରାଧା କେଦେଇଙ୍କ ପାଦଦ୍ୱୟରେ ପ୍ରଣାମ କରି ଅଭିନନ୍ଦନ ଜଣାଇଲେ । ସେତେବେଳକୁ ତାଙ୍କ ବଙ୍ଗଳାରେ ବହୁତ ଲୋକ ଜମା ହୋଇଥିଲେ । ଲକ୍ଷ୍ମୀଚନ୍ଦଙ୍କର ବନ୍ଧୁବାନ୍ଧବ ଘରର ସ୍ତ୍ରୀଲୋକମାନେ ମଧ୍ୟ ଆସି ପହଞ୍ଚିଥିଲେ । ଚାକରବାକରମାନେ ବ୍ୟସ୍ତ ହୋଇ ଏଣେତେଣେ ଧାଁ ଦୌଡ଼ ଲଗାଇଥିଲେ । ରାଧା ବଦଲୁକୁ କହିଲେ, "ଦେଖ ବଦଲୁ, ମା'ଙ୍କୁ ନେଇ ତାଙ୍କ ବଖରାରେ ଛାଡ଼ିଦେ ଓ ତାଙ୍କ ଖବର ବୁଝାବୁଝି କରିବାପାଇଁ ଭଗେଇକୁ ସେଠାରେ ରଖିଦେ ।" ତାହାପରେ ସେ ଶାଶୁଙ୍କ ଆଡ଼କୁ ଚାହିଁ କହିଲେ, "ସ୍ୱାଙ୍କ କାରଖାନା ଓ ଦୋକାନର ଲୋକମାନେ ଆମ ଜୀବନ ଖାଇସାରିଲେଣି । ପ୍ରୋସେସନ ବାହାର କରିବାପାଇଁ ବାରମ୍ବାର ଲଗାଇଲେ । ଦେଖୁ ଆଉ କ'ଣ କରିବ, ଶେଷରେ ହଁ କରିବାକୁ ହିଁ ପଡ଼ିଲା । ଆଜି ସମସ୍ତଙ୍କର ଏଇଠି ଭୋଜନ । ପ୍ରାୟ ଡାକଶହ ଚାରିଶହ ଲୋକ ଖାଇବେ । ମୋତେ ଏ ସବୁ ଯୋଗାଡ କରିବାକୁ ହେବ । ପ୍ରୋସେସନ-ବାଲା କେତେବେଳେ ପହଞ୍ଚିବେ କିଛି ଠିକ୍ ନାହିଁ । କିଏ ଜାଣେ ରାତିଅଧ ବି ହୋଇଯାଇପାରେ । ତମେ ଟିକିଏ ଖାଇଦେଇ ବିଶ୍ରାମ କର । କେତେବେଳଯାଏ ଆଉ ଚେଇଁବ ?"

କେଦେଇ ଉଦାସ ଦୃଷ୍ଟିରେ ସେହି ରାଧାକୁ ଚାହିଁଲେ—ଯେଉଁ ରାଧା ତାଙ୍କ ପୁଅକୁ ତାଙ୍କଠାରୁ ଛଡ଼ାଇ ନେଇ ଏବେ ଘରର ମାଲିକ ହୋଇବସିଛି । କେଦେଇ ଏକ ଦୀର୍ଘ ନିଶ୍ୱାସ ପକାଇ ଉଠି ଛିଡ଼ା ହୋଇ କହିଲେ, "ଠିକ୍ କହିଲୁ ବୋହୂ, ସମସ୍ତଙ୍କୁ ଭଲକରି ଖାଇବା ପିଇବାକୁ ଦେବ, ଯେମିତି ମୋ ପୁଅକୁ ସମସ୍ତେ ଆଶୀର୍ବାଦ କରିବେ । ମୋତେ ବର୍ତ୍ତମାନ ଭୋକନାହିଁ । ମୁଁ ବର୍ତ୍ତମାନ ବହୁତ ଥକି ପଡ଼ିଛି । ଦୁଧ ଟିକିଏ ପିଇ ଶୋଇଯିବି ।"

ରାଧା ଟିକିଏ ହସିଦେଇ କହିଲେ, "ନାହିଁ ମା, କିଛି ମିଠେଇ ଖାଇବାକୁ ହେବ । ଭୋଜଭାତ ବିଷୟରେ ତମେ ନିଶ୍ଚିନ୍ତ ରୁହ । ଭୋଜଭାତ ଓ ପ୍ରୋସେସନ ଇତ୍ୟାଦି ଏଠାକାର ନିତିଦିନିଆ କଥା, ବୁଦ୍ଧି ଓ ସାହସ ନ ଥିଲେ ମୁଁ କ'ଣ ରଜାଘର ପରି ଏତେ ବଡ଼ ଧନ୍ଦା ସମ୍ଭାଳି ପାରନ୍ତି !" ତାପରେ ସେ ଚାକରକୁ କହିଲେ, "ଯା' କିଛି ମିଠେଇ ଓ ଗିଲାସେ ଗଙ୍ଗାଜଳ ନେଇ ଆ, ଆଉ ଦେଖ, ତମ୍ବା ମାଠିଆରେ ମା'ଙ୍କ ବଖରାରେ ଗଙ୍ଗାଜଳ ରଖିଦେବୁ ।"

ଅଳ୍ପ କିଛି ଜଳଖିଆ ଖାଇଦେଇ ଜେଦେଇ ଚୁପ୍‌ଚାପ୍ ନିଜ ବଖରାକୁ ଚାଲିଗଲେ । ତାଙ୍କ ରହିବାପାଇଁ ତିନିମହଲା ଉପରେ ଘର ଦିଆଯାଇଥିଲା । ଖୁବ୍ ବଡ଼ ଘରଟାଏ, ବେଶ୍ ସାଜସଜା ହୋଇ ରହିଥିଲା । ଭଗ୍ରେସୀ ଆଗରୁ ସେଠାରେ ପଇଁଷି ବିଛଣାପତ୍ର ସଜାଡ଼ି ଦେଇଥିଲା, ଜେଦେଇ ବିଛଣାରେ ପଡ଼ିଯିବା ମାତ୍ରେ ଭଗ୍ରେସୀ ତାଙ୍କ ଗୋଡ଼ ଘଷିଦେବାକୁ ଆରମ୍ଭ କଲା । ଜେଦେଇ କହିଲେ, "ନାହିଁ ଲୋ ରହ, ମୁଁ ଏତେ ଥକି ଯାଇନାହିଁ । ତୁ ଯା ବୋହୂକୁ ସାହାଯ୍ୟ କରିବୁ ।"

ତହିଁଆରଦିନ ଜେଦେଇ ସ୍ନାନ ପୂଜା ସାରି ତଳମହଲାକୁ ଓହ୍ଲାଇଲାବେଳକୁ ଘରେ ଗହଳ ଆରମ୍ଭ ହୋଇ ଯାଇଥିଲା । ଲକ୍ଷ୍ମୀଚନ୍ଦଙ୍କ ପିଲାମାନେ ଜେଦେଇଙ୍କୁ ଘେରିଗଲେ ଓ ସେ ସେମାନଙ୍କ ସାଙ୍ଗରେ ସମୟ କଟାଇବାକୁ ଲାଗିଲେ ।

ଜେଦେଇ ଦେଖିଲେ ସେଠି ରାଧାର ବାପଘରର ଓ ତାଙ୍କ ଜ୍ଞାତି କୁଟୁମ୍ବର ବହୁତ ଲୋକ ଥିଲେ; କିନ୍ତୁ ଜେଦେଇଙ୍କ ଭାଇଙ୍କ ପରିବାରର କେହି ନ ଥିଲେ । ସୁବିଧା ଦେଖି ଜେଦେଇ ରାଧାକୁ ପଚାରିଲେ, "ବୋହୂ, ବୁଦ୍ଧୁ ଓ ମୁନ୍ନୁକୁ ଡାକି ନ ଥିଲ କି ? ସେମାନେ କେହିତ ଏଠି ଦେଖାଯାଉ ନାହାନ୍ତି ।"

ବୁଦ୍ଧୁଲାଲ ଓ ମୁନ୍ନୁଲାଲ ଜେଦେଇଙ୍କ ଭାଇଙ୍କର ଦୁଇ ପୁଅ । ସେମାନେ କାନପୁରରେ ଖୁବ୍ ଭଲ ବ୍ୟବସାୟ କରୁଥିଲେ; କିନ୍ତୁ ଗଲା କେତେବର୍ଷ ହେଲା ସେମାନଙ୍କର ଅବସ୍ଥା ଖରାପ ହୋଇ ଯାଇଥିଲା । ଲକ୍ଷ୍ମୀଚନ୍ଦ ଜେଦେଇଙ୍କ ଭାଇ ସୁଖୁଲାଲଙ୍କ ଘରେ ରହି ପାଠ ପଢୁଥିଲେ ଓ ସୁଖୁଲାଲ ଭଣଜା ଲକ୍ଷ୍ମୀଚନ୍ଦଙ୍କୁ ଆପଣା ପୁଅଠାରୁ ବଳି ସ୍ନେହ କରୁଥିଲେ । ସୁଖୁଲାଲଙ୍କର ମୃତ୍ୟୁ ହେବା ବେଳକୁ ବୁଦ୍ଧୁଲାଲକୁ ଅଠର ବର୍ଷ ଓ ମୁନ୍ନୁଲାଲକୁ ପନ୍ଦର ବର୍ଷ ହୋଇଥିଲା । ସୁଖୁଲାଲ ତାଙ୍କ ପୁଅ ଦୁହିଁଙ୍କୁ ଲକ୍ଷ୍ମୀଚନ୍ଦଙ୍କ ହାତରେ ସମର୍ପି ଦେଇ ଶେଷ ନିଶ୍ୱାସ ନେଇଥିଲେ ।

ଲୋକଙ୍କର ଧାରଣାଥିଲା ଯେ ସୁଖୁଲାଲଙ୍କ ପାଖରେ ନଗଦ କୋଡ଼ିଏ ପନ୍ଦର ଲକ୍ଷ ଟଙ୍କା ଥିବ । କିନ୍ତୁ ଲକ୍ଷ୍ମୀଚନ୍ଦ ସବୁ ହିସାବ କିତାବ କରି ଲୋକମାନଙ୍କୁ ସେମାନଙ୍କର ପାଉଣାପତ୍ର ଦେବାପରେ ନଗଦ ମାତ୍ର ସତର ହଜାର ଟଙ୍କା ବଳିଲା । ସୁଖୁଲାଲଙ୍କ

ମରିବାର ବର୍ଷକ ଭିତରେ ଲକ୍ଷ୍ମୀଚନ୍ଦ କାନପୁରରେ ଗୋଟାଏ ଚିନିକଳ ଓ ଗୋଟାଏ ତେଲକଳ ବସାଇଲେ । ଏହି ବିଷୟକୁ ନେଇ ବନ୍ଧୁବାନ୍ଧବଙ୍କ ଭିତରେ ବହୁତ ଫୁସଫାସ୍ ଚାଲିଲା ଓ ସୁଖୁଲାଲଙ୍କ ଶଳା ଗିରିଧାରୀଲାଲ ଏହି ଦୁଇ ପିଲାଙ୍କ ପକ୍ଷରୁ ଲକ୍ଷ୍ମୀଚନ୍ଦଙ୍କ ନାଁରେ ଏକ ମକଦ୍ଦମା ଆରମ୍ଭ କରିଦେଲେ । ଦୁଇବର୍ଷ ମକଦ୍ଦମା ଚାଲିଲା ଓ ସେଥିରେ ବୁଦ୍ଧୁଲାଲ ଓ ମୁନ୍ନୁଲାଲଙ୍କର ଅବସ୍ଥା ଆହୁରି ଖରାପ ହେଲା । ଗିରିଧାରୀଲାଲ ମକଦ୍ଦମାରେ ହାରିଯିବାର ଦେଖି ଏକ ପ୍ରକାର ମିଳାମିଶା କରିଦେଲେ । ଏହି ମକଦ୍ଦମା ଗଣ୍ଡଗୋଳରେ ତାଙ୍କର ପ୍ରାୟ ଲକ୍ଷେ ଟଙ୍କା ଲାଭ ହୋଇଗଲା । କିନ୍ତୁ ସୁଖୁ-ବୁଦ୍ଧୁଙ୍କର ଫାର୍ମର ଲକ୍ଷେ ଟଙ୍କା କରଜ ହୋଇଗଲା ।

ଏହି ବିଷୟରେ ଲକ୍ଷ୍ମୀଚନ୍ଦ ଯେଉଁ ଚାଲବାଜି କରିଥିଲେ ଜେଦେଇ ତାହା ଜାଣିଥିଲେ । ତାଛଡ଼ା ସେ ଆହୁରି ବି ଜାଣିଥିଲେ ଯେ ଗିରିଧାରୀଲାଲଙ୍କୁ ନଗଦ ପଚିଶ ହଜାର ଟଙ୍କା ଦେଇ ମକଦ୍ଦମା ଫଇସଲା କରି ଦେଇଥିଲେ । ଏହି ବିଷୟରେ ପୁତୁରାମାନଙ୍କର ପକ୍ଷ ନେଇ ଜେଦେଇ ଥରେ ଅଧେ ଲକ୍ଷ୍ମୀଚନ୍ଦଙ୍କ ସହିତ କଥାବାର୍ତ୍ତା କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଲକ୍ଷ୍ମୀଚନ୍ଦ ଓ ରାଧା ତାହା କରାଇ ଦେଇ ନ ଥିଲେ । ଜେଦେଇ ଯେ କାନପୁରରେ ରହୁ ନ ଥିଲେ ଏହା ତାର ଗୋଟିଏ ବଡ଼ କାରଣ ।

ସନ୍ଧ୍ୟାବେଳକୁ ଜେଦେଇ ନିଜ ବାପ ଘରକୁ ଗଲେ ଓ ସେଠାକାର ଅବସ୍ଥା ଦେଖି ସ୍ତମ୍ଭୀଭୂତ ହୋଇଗଲେ । ତାଙ୍କ ବାପାଙ୍କର ବଡ଼ଘର ଦୁଇଭାଗ ହୋଇ ଯାଇଥିଲା ଓ ତା' ମଝିରେ ଗୋଟାଏ ପାଚେରୀ ଛିଡ଼ା ହୋଇଥିଲା । ଜେଦେଇଙ୍କ ଭାଉଜ ଅବଶ୍ୟ ତାଙ୍କୁ ସ୍ୱାଗତ କଲେ; କିନ୍ତୁ ସେଥିରେ କୌଣସି ସହୃଦୟତା କିମ୍ବା ମମତା ନ ଥିଲା ।

ଜେଦେଇ ଦେଖିଲେ ଘରେ କଳି କଜିଆର ଏକ ଭୟଙ୍କର ବାତାବରଣ ଲାଗି-ରହିଛି । ବୁଦ୍ଧୁଲାଲ ଓ ମୁନ୍ନୁଲାଲ ଦୁଇଭାଗରେ ବାଣ୍ଟି ହୋଇ ଯାଇଛନ୍ତି । ସେଇଠି ସେ ଜାଣିଲେ ଯେ ଲକ୍ଷ୍ମୀଚନ୍ଦଙ୍କର ଲୁଗା କଳରେ ଦଲାଲି ମୁନ୍ନୁଲାଲଙ୍କୁ ମିଳିଥିଲା ଏବଂ ବୁଦ୍ଧୁଲାଲ ଓ ତାଙ୍କ ମା' ଏହି ବିଷୟରେ ଆପତ୍ତି ଉଠାଇଥିଲେ । ମାଲିମକଦ୍ଦମାରେ ପଡ଼ି ସୁଖୁଲାଲ-ବୁଦ୍ଧୁଲାଲ ଫାର୍ମର ଅବସ୍ଥା ବହୁତ ଖରାପ ହୋଇ ଯାଇଥିଲା ଓ ମୁନ୍ନୁଲାଲ ସେଥିରେ ବ୍ୟସ୍ତ ହୋଇ ପଡ଼ିଥିଲେ । ମୁନ୍ନୁଲାଲଙ୍କୁ ଦଲାଲି କାମରୁ ମାସକୁ ହଜାରେ ଟଙ୍କା ମିଳୁଥିବାରୁ ସେ ନିଜ ଭାଇଠାରୁ ଓ ସୁଖୁଲାଲ-ବୁଦ୍ଧୁଲାଲ ଫାର୍ମରୁ ଅଲଗା ହୋଇ ଯାଇଥିଲା ।

ଜେଦେଇ ନିଜ ବାପଘରେ ଦୁଇତିନି ଘଣ୍ଟା ରହି ଭୟଙ୍କର ତିକ୍ତତା ଅନୁଭବ କରିଥିଲେ । ସେଠାରେ ତାଙ୍କୁ ଏପରି ରୁଦ୍ଧଶ୍ୱାସ ଲାଗିଲା ଯେ ସେ ଯଥାଶୀଘ୍ର ନିଜ ପୁଅ ଘରକୁ ଫେରି ଆସିଲେ । ସେ ଘରେ ପହଞ୍ଚି ଦେଖିଲେ ଲକ୍ଷ୍ମୀଚନ୍ଦ ଖାଇ ବସିଛନ୍ତି । ସେ

ମାଙ୍କୁ ଦେଖିଲାମାତ୍ରେ ଟିକଏ ହସିଦେଇ କହିଲେ, "ପୁତୁରମାନଙ୍କୁ ଦେଖି ଆସିଲଟି ! ଏବେ ଆପଣା ଆପଣା ଭିତରେ ମକଦ୍ଦମା ଲଢ଼ୁଛନ୍ତି । ମୁଁ କିଛି ସାହାଯ୍ୟ ଦେବାକୁ କହିବାରୁ ବୁଢ଼ୀ, ସେଥିରେ ବିଗିଡ଼ି ଗଲା ଓ ମାଈଁ ତ ସହଜେ ଶତ୍ରୁ ହୋଇ ବସିଛନ୍ତି । ହଁ, ମୁନ୍ନୁଲାଲ ମୋ'ଠାରୁ ସାହାଯ୍ୟ ନେଲା ଓ ସେହି ସାହାଯ୍ୟ ପାଇଁ ଅନ୍ୟମାନେ ତାର ଶତ୍ରୁ ହୋଇ ବସିଛନ୍ତି ।"

ଜେଦେଇ ସ୍ୱାର ଖୁବ୍ କଡ଼ା ଉତ୍ତର ଦେଇ ପାରିଥାନ୍ତେ; କିନ୍ତୁ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ, "ଏସବୁ ଭଗବାନଙ୍କର ଲୀଳା, ଏଥିରେ ମଣିଷର କ'ଣ ହାତ ଅଛି ?"

ଲକ୍ଷ୍ମୀଚନ୍ଦ ଭାବିଥିଲେ ସବୁଥର ପରି ଜେଦେଇ ବୋଧହୁଏ ନିଜ ପୁତୁରଙ୍କ ପକ୍ଷ ନେଇ କଡ଼ାକଡ଼ି କିଛି କହିବେ । କିନ୍ତୁ ତାହା ହେଲା ନାହିଁ । ତାହାପରେ ସେ କହିଲେ, "ମା, ମୁଁ ମୋର ଆଲାହାବାଦ କାଠ କାରଖାନା ବିକି ଦେଉଛି । ସେଥିରେ ମୋତେ ସାଙ୍ଗେ ସାଙ୍ଗେ ଲକ୍ଷେ ଟଙ୍କା ଲାଭ ମିଳିବ ।"

ଜେଦେଇ ଚମକି ପଡ଼ି କହିଲେ, "କାହିଁକି ବିକିବୁ ? କାଠ କାରଖାନା ତ ଭଲ ଚାଲୁଛି ।"

"ହଁ ଚାଲିଛି ତ, ନ ହେଲେ ଅନ୍ୟ ଲୋକ ଲକ୍ଷେଟଙ୍କା ଦେଇ ନିଅନ୍ତେ କାହିଁକି ? କିନ୍ତୁ କାନପୁରରେ ରହି ମୁଁ ଏହି ବ୍ୟବସାୟ ଦେଖି ପାରିବି ନାହିଁ । ଟଙ୍କାଗୁଡ଼ା ବୃଥାରେ ପଡ଼ି ରହିଛି । ମୁଁ ଏଠାରେ ଆଉ ଗୋଟାଏ ଲୁଗାକଲ ଚଳାଇବି । କାଠ କାରଖାନା ଟଙ୍କାରେ ଆଉ କିଛି ଟଙ୍କା ମିଶାଇ ଦେଲେ ଏହି ସୂତାକଲ ହୋଇଯିବ । କାନପୁରରେ ରହିଥିବାରୁ ମୁଁ ସ୍ୱାକୁ ଭଲରେ ଚଳାଇ ପାରିବି ।"

ଜେଦେଇ ଡରି ଡରି ପଚାରିଲେ, "ଆଉ ସେ ଆଲାହାବାଦ ଘରଟା କ'ଣ ବିକି ଦେବୁ ?"

ଲକ୍ଷ୍ମୀଚନ୍ଦ ହସିଦେଇ କହିଲେ, "ନାହିଁ ମା, ଆଲାହାବାଦ ଘରଟା ତ ତୋର । ପୁଣି ଆଲାହାବାଦ ରାଜ୍ୟର ରାଜଧାନୀ । ସେଠି ହାଇକୋର୍ଟ ଅଛି । ମାଲିମକଦ୍ଦମା ତ ସେଠି ସବୁବେଳେ ଲାଗିଛି ଓ ସେହି ମକଦ୍ଦମା ପାଇଁ ଯିବାଆସିବା କରିବାକୁ ପଡ଼ୁଛି ।"

ଜେଦେଇଙ୍କଠାରେ ଜୀବନ ପଶିଲା ପରି ଲାଗିଲା । ସେ କିଛି ସମୟ ଚୁପ୍ ରହିଯାଇ କହିଲେ, "ସେ ତ ଠିକ୍ କଥା ଲକ୍ଷ୍ମୀ, କିନ୍ତୁ ଏବେ ତ ତୋର ଆଲାହାବାଦ ଯିବା ଆସିବା ମୋଟେ ନାହିଁ । ମୋତେ ଏକୁଟିଆ ରହିବା ପାଇଁ ପଡ଼ୁଛି । କଥା କ'ଣ ମୁଁ କିଛି ବୁଝି ପାରୁନାହିଁ ।"

ଲକ୍ଷ୍ମୀଚନ୍ଦ କହିଲେ, "ମୁଁ ତ ତୋତେ ଏତେ କହିଲି ତୁ କାନପୁରରେ ଆସି ରହି ।

କିନ୍ତୁ ତୁ ମୋ କଥା ମୋଟେ ବୁଝିଲୁ ନାହିଁ । କାନପୁରରେ ତ ଗଙ୍ଗାଜୀ ଅଛନ୍ତି । ତା'ହେଲେ ଆଲହାବାଦରେ ରହିବା କ'ଣ ଦରକାର ? ତୁ ଯଦି ଭାବୁଛୁ ପ୍ରୟାଗ ଗୋଟିଏ ବଡ଼ତୀର୍ଥ, ତାହେଲେ ତୋ ନାଁରେ ସେଠି ଧର୍ମଶାଳା ତୋଳାଇ ଦେବି ।"

ଜେଦେଇ ହସି ଦେଇ କହିଲେ, "ମୁଁ ମଲାପରେ ଧର୍ମଶାଳା ତୋଳିବୁ........"

ରାଧା ଚମକି ପଡ଼ି କହିଲା, "'ମା' ସେଠି ଏକୁଟିଆ ଅଛନ୍ତି କହିବା ଅର୍ଥ କ'ଣ ? ଚାକର ବାକର, ଗାଡ଼ି ଘୋଡ଼ା ସବୁତ ଅଛନ୍ତି, ଏତେବଡ଼ ବଙ୍ଗଳା ଅଛି । ତୀର୍ଥସ୍ଥାନ, ତ୍ରିବେଣୀ, ଆମେ ଚଳେ ଆସିଲେ ସେଠି ରହୁଛୁ । ମା' ଯଦି କାନପୁରରେ ଆସି ରହିବାକୁ ରାଜି ନ ହୁଅନ୍ତି ତେବେ ସେଥିରେ ଆପତ୍ତି କରିବାର କ'ଣ ଅଛି ?"

ବର୍ତ୍ତମାନ ଜେଦେଇ ରାଧାକୁ ଏକ ଉଦାସ କୃତଜ୍ଞତାଭରା ଦୃଷ୍ଟିରେ ଚାହିଁଲେ । ତାଙ୍କୁ ସ୍ପଷ୍ଟ ଜଣାଗଲା କାନପୁର ଘରର ମାଲିକ ରାଧା, ସେ ନିଜେ ନୁହନ୍ତି । ଜେଦେଇଙ୍କର କାନପୁରରେ ରହିବାର ଅର୍ଥ ରାଧାର ଅଧୀନରେ ରହିବା । ତାଛଡ଼ା ଘରେ ସବୁବେଳେ କଳି । ସେ ଲକ୍ଷ୍ମୀଚନ୍ଦଙ୍କୁ କହିଲେ, "ବୋହୂତ ଠିକ୍ କହୁଛି । ସେଠିତ ବହୁତ ଚାକର ବାକର ଅଛନ୍ତି । ମୁଁ ସେଠି ଭଲଅଛି । ତାଛଡ଼ା ବର୍ତ୍ତମାନ ମୋହମାୟା ଛାଡ଼ି ଭଗବାନଙ୍କ ଧ୍ୟାନ କରିବା କଥା । କିଏ ଜାଣେ କେତେବେଳେ ସେ ପାଖକୁ ନେବେ । ମୁଁ ସେଠି ଆଲହାବାଦରେ ରହି ପୂଜା କରିବି । ତୋର କେମିତି ବଢ଼ତି ହେବ ଓ ତୁ ଅଧିକରୁ ଅଧିକ ହେବୁ ସେଥି ପ୍ରାର୍ଥନା ମୁଁ କରିବି ।"

ଜେଦେଇ କାନପୁରରେ ସପ୍ତାହେ ରହି ଆଲହାବାଦ ଫେରିଗଲେ । ମାଘମେଳା ଆସି ମୁଣ୍ଡ ଉପରେ ପହଞ୍ଚି ଯାଇଥିଲା ।

## ତିନି

ଦିଲ୍ଲୀ ଦରବାରରୁ ଗଂଗାପ୍ରସାଦ ନିଜ ପିଲାପିଲି ନେଇ ବରେଲୀରେ ପହଞ୍ଚିଲା ବେଳକୁ ସେଠାରେ ଭାରି ଚହଳ ଲାଗିଥିଲା । ସେଠି ଆର୍ଯ୍ୟ ସମାଜର ପ୍ରଥମ ଅଧିବେଶନ ବଡ଼ ଧୂମଧାମରେ ଚାଲିଥିଲା । ପାରେଡ଼ ପଡ଼ିଆରେ ଖୁବ୍ ବଡ଼ ଚାନ୍ଦୁଆ ଟଣା ଯାଇଥିଲା ଓ ଖୁବ୍ ଜୋରରେ ଖେଳ କସରତ ଲାଗିଥିଲା । ସବୁଆଡ଼ୁ ବହୁତ ଭଲ ଭଲ ଭଜନମଣ୍ଡଳୀ ଆସିଥିଲେ । ଆର୍ଯ୍ୟସମାଜର ଉପଦେଷ୍ଟା ସ୍ୱାମୀ ଜଟିଳାନନ୍ଦ ଏଥିରେ ବହୁତ ଜୋର-ସୋରରେ ଲାଗିଥିଲେ । ତାଙ୍କ ଭାଷଣରେ ସେ ଖାଲି ଅଗ୍ନି ବର୍ଷା କରୁଥିଲେ । ସେ ଅନ୍ୟ

ଧର୍ମର ଲୋକମାନଙ୍କୁ ଶାସ୍ତ୍ରାର୍ଥ କରିବାପାଇଁ ଆହ୍ୱାନ କରୁଥିଲେ । ଅଲ୍ଲାମା ବହଣୀ ତାଙ୍କର ଏହି ଆହ୍ୱାନକୁ ସ୍ୱୀକାର କରି ନେଇଥିଲେ ।

ତୃତୀୟ ଦିନ ଅଲ୍ଲାମା ବହଣୀ ଓ ଜଟିଳାନନ୍ଦଙ୍କର ଧର୍ମବ୍ୟାଖ୍ୟା କରିବାର ବ୍ୟବସ୍ଥା ଥିଲା ।

ପେଣ୍ଡାଲରେ ବହୁତ ଲୋକ ଭିଡ଼ ହୋଇଥିଲା, ଅନେକ ପୋଲିସ୍ ମଧ୍ୟ ଆସି ରହିଥିଲେ । ମିଷ୍ଟର ପ୍ରେଟର ଥିଲେ ଶାସ୍ତ୍ରାର୍ଥର ନିର୍ଣ୍ଣାୟକ । ସେଦିନ ତାଙ୍କ ଘରେ କେତେକ ଅତିଥି ଆସି ପହଞ୍ଚିବାରୁ ସଭାକୁ ଆସିବାକୁ ତାଙ୍କୁ ଡେରି ହେଲା । କିନ୍ତୁ ସେ ଆସିଲାମାତ୍ରେ ମଞ୍ଚ ଉପରକୁ ଉଠିଗଲେ । ସେଠି ତାଙ୍କ ସଙ୍ଗରେ ମୀରଜାଫର ଅଲ୍ଲୀ, ପଣ୍ଡିତ ସୋମେଶ୍ୱର ଦତ୍ତ ଓ ମିଷ୍ଟର ଡେଭିଡ୍ ମଧ୍ୟ ଉପସ୍ଥିତ ଥିଲେ । ବାକି ଛ' ସାତଟା ଚଉକି ଖାଲି ପଡ଼ିଥିଲା । ବଡ଼ ମଞ୍ଚ ଆଗରେ ଜଣେ ଲୋକ ବସିଲାଭଳି ଆଉ କେତେକ ଛୋଟ ମଞ୍ଚ ତିଆରି ହୋଇଥିଲା । ସେଥିରୁ ମଝି ମଞ୍ଚରେ ବସିଥିଲେ ସ୍ୱାମୀ ଜଟିଳାନନ୍ଦ ଓ ତାଙ୍କ ଡାହାଣ ପାଖରେ ଅଲ୍ଲାମା ବହଣୀ ଓ ବାମ ପାଖରେ ଫାଦର ମସୀହ ।

ମିଷ୍ଟର ପ୍ରେଟର ଉଠି ଶାସ୍ତ୍ର ବ୍ୟାଖ୍ୟାନର ନିୟମ ବୁଝାଇଲେ । ପ୍ରଥମେ ଅଲ୍ଲାମା ବହଣୀ ଜଟିଳାନନ୍ଦଙ୍କୁ ପ୍ରଶ୍ନ କରିବେ ଓ ଜଟିଳାନନ୍ଦ ତାହାର ଉତ୍ତର ଦେବେ । ଯଦି ନିର୍ଣ୍ଣାୟକ ସେହି ଉତ୍ତରରେ ସନ୍ତୁଷ୍ଟ ନ ହୁଅନ୍ତି, ତାହେଲେ ପ୍ରଶ୍ନ ବିଷୟରେ ଉତ୍ତର ପ୍ରତ୍ୟୁତ୍ତରପାଇଁ ଉଭୟ ପକ୍ଷକୁ ସୁଯୋଗ ଦିଆଯିବ । ଏହାପରେ ଏହି କ୍ରମରେ ଫାଦର ମସୀହ ସ୍ୱାମୀ ଜଟିଳାନନ୍ଦଙ୍କୁ ପ୍ରଶ୍ନ ପଚାରିବେ । ସ୍ୱାମୀ ଜଟିଳାନନ୍ଦ ଉତ୍ତର ଦେଇସାରିବା ପରେ ଅଲ୍ଲାମା ବହଣୀଙ୍କ ଉପରେ ଉତ୍ତର ଦେବାର ଦାୟିତ୍ୱ ରହିବ । ଏହି କ୍ରମ ଚାଲିବ ଓ ଶେଷରେ ଉତ୍ତର ଦେବେ ମସୀହ ।

ମିଷ୍ଟର ପ୍ରେଟରଙ୍କ ଏହି ଘୋଷଣାପରେ ପେଣ୍ଡାଲରେ ସମସ୍ତେ ଏକପ୍ରକାର ନୀରବ ହୋଇଗଲେ । ସ୍ୱାମୀ ଜଟିଳାନନ୍ଦ ପଦ୍ମାସନରେ ବସି ଯେତେବେଳେ ଓଁକାର ଉଚ୍ଚାରଣ କଲେ ସେତେବେଳେ ତାଙ୍କ ସହଧର୍ମୀମାନେ ଆନନ୍ଦରେ ଧ୍ୱନି ଦେଲେ । ଅଲ୍ଲାମା ବହଣୀ ତକିଆରେ ଆଉଜି ବସିଥାନ୍ତି ଓ ହାତରେ ମାଳା ଧରିଥାନ୍ତି । ଆଖି ତାଙ୍କର ବନ୍ଦଥାଏ ଓ ହାତରେ ଥିବା ମାଳାକୁ ବଡ଼ ଜୋରରେ ଗଡ଼ାଉଥାନ୍ତି । ହଠାତ୍ ସେ ଚମକି ଉଠି ଆଖି ଖୋଲିଦେଲେ । ଆଖି ଦୁଇଟା ତାଙ୍କର ନିଆଁପରି ଜଳୁଥାଏ । ସେ ଦୁଇ ଆଣ୍ଠୁରେ ଭରା ଦେଇ ଖୁବ୍ ଉଚ୍ଚ ସ୍ୱରରେ କହିଲେ, "ଆଲ୍ଲାଙ୍କର ହୁକୁମ ଓ ରସୁଲଙ୍କ ଦୟା । ହେ ଲଣ୍ଡିତମୁଣ୍ଡ ସ୍ୱାମୀ; ମୋତେ କେବଳ ଏତିକି କହ, ତମେ କେବଳ ମୁଣ୍ଡ ଲଣ୍ଡା ହୋଇନାହଁ, ନିଶଦାଢ଼ି ସବୁ ବି ସଫା କରିଦେଇଛ । ତୁମର ପରମାତ୍ମା ତୁମ ମୁଣ୍ଡରେ ଓ ମୁହଁରେ ବାଳର ସୃଷ୍ଟି କରିଛନ୍ତି । କିନ୍ତୁ ତୁମେ ମୁଣ୍ଡର ବାଳ, ନିଶ, ଦାଢ଼ି, ସବୁ

କାଟିଦେଇ ପ୍ରମାଣ କରିବାକୁ ଚାହିଁ ଯେ ତୁମେ ତୁମ ପରମାତ୍ମାଙ୍କଠାରୁ ଅଧିକ ବୁଦ୍ଧିମାନ୍ ? ସେ ତୁମକୁ ନଖ, ଦାଢ଼ି, ବାଳ ଦେଇ ନିର୍ବୋଧତା କରିଛନ୍ତି ? ତୁମେ ତୁମର ଏହି ଅସୁବିଧା ଦେଖାଇ ତୁମ ପରମାତ୍ମାଙ୍କର ନିର୍ବୋଧତା ପ୍ରକାଶ କରୁଛ । ହେ ଲଣ୍ଡିତ ମସ୍ତକ ସ୍ୱାମୀ ଜଟିଳାନନ୍ଦ, ନିଜର ଅସୁବିଧାଦ୍ୱାରା ପରମାତ୍ମାଙ୍କର ନିର୍ବୋଧତାକୁ ଏହିପରି ବ୍ୟାଖ୍ୟା କରିବା କେବଳ ନିର୍ବୋଧତା ନୁହେଁ ବରଂ ଖୁବ୍ ଧୃଷ୍ଟତାର ପ୍ରମାଣ ।

ଏହି ପ୍ରଶ୍ନ ଶୁଣି ପଣ୍ଡିତ ସୋମେଶ୍ୱର ଦତ୍ତ ବହୁତ ଉତ୍ତେଜିତ ହୋଇ କଲେକ୍ଟରଙ୍କୁ କହିଲେ, "ହଜୁର, ଇଏ ତ ପ୍ରଶ୍ନ ନୁହେଁ; ଇଏ ଏକପ୍ରକାର ଗାଳିଗୁଲଜ ।"

ମିଷ୍ଟର ପ୍ରେଟର ମୁରୁକିହସା ଦେଇ ମୀର୍ ଜାଫର ଅଲ୍ଲୀଙ୍କୁ ପଚାରିଲେ, "ମୀର୍, ତୁମର ଏଥିରେ ମତ କ'ଣ ?"

"ହଜୁର୍ ତ ମୁନ୍‌ସଫ, ସମାଧାନ କରିବା କଥା ହଜୁରଙ୍କ ହାତରେ । ହିଁ, ପ୍ରଶ୍ନର ଢଙ୍ଗ ଟିକିଏ ଭୁଲ ହୋଇପାରେ; କିନ୍ତୁ ପ୍ରଶ୍ନ ତ ଏମିତି କିଛି ଖରାପ ନୁହେଁ ଯେ ସେଥିପାଇଁ ଆପଣଙ୍କୁ, ମୋତେ ଅର୍ଥାତ ସମସ୍ତଙ୍କୁ ଦୋଷୀ କରାଯିବ !"

ମିଷ୍ଟର ପ୍ରେଟର ବର୍ତ୍ତମାନ ଡେଭିଡ଼ ଜନାଥନଙ୍କୁ ଚାହିଁ ପଚାରିଲେ, "ମିଷ୍ଟର ଡେଭିଡ଼୍, ଆପଣ ଏ ବିଷୟରେ କ'ଣ ଭାବୁଛନ୍ତି ?"

ଜନାଥନ ଡେଭିଡ଼୍ ସଙ୍ଗେ ସଙ୍ଗେ ଜବାବ୍ ଦେଲେ "ଏଭଳି ପ୍ରଶ୍ନକୁ ମୂଳରୁ ମନା କରିଦେବା ଉଚିତ । ଇଏ ବଡ଼ ଅବାନ୍ତର ପ୍ରଶ୍ନ ।"

ବର୍ତ୍ତମାନ ମିଷ୍ଟର ପ୍ରେଟର ଗଙ୍ଗାପ୍ରସାଦଙ୍କୁ ତାଙ୍କ ମତ ପଚାରିଲେ । ଗଙ୍ଗାପ୍ରସାଦ ହସି ହସି କହିଲେ, "ପ୍ରଶ୍ନ ତ ଠିକ୍, ପୁଣି ପ୍ରଶ୍ନ ପଚାରିବାର ଢଙ୍ଗ ବି ବିଲ୍‌କୁଲ୍ ଠିକ୍ ।"

କିଛି ସମୟ ଚିନ୍ତା କଲାପରେ ମିଷ୍ଟର ପ୍ରେଟର କହିଲେ, "ଯଦିଓ ପ୍ରଶ୍ନର ଢଙ୍ଗ ଆମକୁ ଭଲ ଲାଗୁନାହିଁ, ତଥାପି ପ୍ରଶ୍ନ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଯେହେତୁ ଅଲ୍ଲାମ ବହିଶୀ ଗାଳି ଛଳରେ ପ୍ରଶ୍ନ ପଚାରିଛନ୍ତି, ତେଣୁ ସେହିପରି ଗାଳିଛଳରେ ଜବାବ ଦେବାର ପୂର୍ଣ୍ଣ ଅଧିକାର ଜଟିଳାନନ୍ଦଙ୍କର ଅଛି ।"

ଏହି ନ୍ୟାୟପୂର୍ଣ୍ଣ ଉଚିତ ସମାଧାନ ଶୁଣି ସଭାରେ ତାଳି ବର୍ଷା ହୋଇଗଲା ।

ସ୍ୱାମୀ ଜଟିଳାନନ୍ଦ ବର୍ତ୍ତମାନ ଜବାବ୍ ଆରମ୍ଭ କଲେ, "ମହର୍ଷି ଦୟାନନ୍ଦଙ୍କର ଜୟ ହେଉ । ଆମ ଧର୍ମ ଅନୁସାରେ ଏହି ସଂସାରରେ ତିନୋଟି ମୌଳିକ ତତ୍ତ୍ୱ କାର୍ଯ୍ୟ କରୁଅଛନ୍ତି । ସେଗୁଡ଼ିକ ହେଲେ ଆତ୍ମା, ପରମାତ୍ମା ଓ ପ୍ରକୃତି । ହେ ଅଲ୍ଲାମାବାଲ୍ ବହିଶୀ, ମୋର ଶରୀର ପ୍ରକୃତିର ଏକ ଅଂଶ, ମୋର ପ୍ରାଣ ଆତ୍ମାର ଏକ ଅଂଶ । ପରମାତ୍ମା ଏହି ଆତ୍ମା ଓ ପ୍ରକୃତିର ଅଧିକାରୀ, ପରମାତ୍ମା, ଆତ୍ମା ଓ ପ୍ରକୃତିର ଜନ୍ମଦାତା ହେଲେ ମଧ୍ୟ ସେମାନଙ୍କୁ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରିବାପାଇଁ ସେ ସ୍ୱାଧୀନତା ଦେଇଛନ୍ତି ।

ହେ ଅଲ୍ଲାମା ବିହାରୀ, ତମ ପ୍ରଶ୍ନ ଏକପ୍ରକାର ଡ୍ରାମା । ପ୍ରକୃତି ଯଦି ଅପୂର୍ଣ୍ଣ ନ ହୋଇଥାନ୍ତା, ମନେରଖ, ତମର ଜାମା, ପ୍ୟାଣ୍ଟ ପର୍ଯ୍ୟନ୍ତ ତିଆରି ହୋଇ ପାରୁ ନ ଥାନ୍ତା । ପ୍ରକୃତି ଜଙ୍ଗଲ ସୃଷ୍ଟି କରେ, ମନୁଷ୍ୟ ସୃଷ୍ଟି କରେ ଉଦ୍ୟାନ । ପ୍ରକୃତି ବରଫ ପକାଏ ଓ ଥଣ୍ଡା ହାଓ୍ୱା ଚଳାଏ ବୋଲି ସିନା ମଣିଷ ଘର ତିଆରି କରେ, ରେଜେଇ କମ୍ବଳ ଆଦି ଘୋଡ଼ି ହୁଏ । ଆମର ଆତ୍ମା ଏହି ପ୍ରକୃତିକୁ ସୃଷ୍ଟି କରେ ଓ ସଂସ୍କୃତ କରେ । ବର୍ତ୍ତମାନ ମୋର ଉତ୍ତର ଶୁଣ । ମୁଁ ଯେ ମୋର ବାଳ, ନିଶ, ଦାଢ଼ି କାଟି ଦେଇଛି ଏହାର କାରଣ ହେଉଛି ପ୍ରକୃତିର ଏହି ଜାଲରେ ପଡ଼ି ମୁଣ୍ଡରେ ତେଲ ଲଗାଇ ବାଳ କୁଣ୍ଡାଇବାକୁ ପଡ଼ୁଛି । ଏସବୁ ଭୁଲିଗଲେ ମୋର ଆତ୍ମା ପରମାତ୍ମାରେ ମନ ଦେଇପାରେ । କିନ୍ତୁ ହେ ଅଲ୍ଲାମା, ତୋର ଖୋଦା ବଣ, ପାହାଡ଼, ବାଘ, ବଲୁଆ, ଘୁଷୁରି, ସାପ ଇତ୍ୟାଦି ନିତାନ୍ତ ନୀଚ ପଦାର୍ଥ ସୃଷ୍ଟି କରିଛନ୍ତି । ଏସବୁ ତିଆରି କରି ସାରି ତୁମକୁ ତିଆରି କରି ତୁମ ଖୋଦା ଯେଉଁ ନିର୍ବୋଧତା ଦେଖାଇଛନ୍ତି ତାର କୌଣସି ପଟାନ୍ତର ନାହିଁ । ଖୋଦାଙ୍କୁ ମୂର୍ଖ କହିବା ତ ଭୁଲ, କିନ୍ତୁ ସବୁ ମୂର୍ଖତା ଅଲ୍ଲାମା ତମ ନିଜର ।"

ସ୍ୱାମୀ ଜଟିଳାନନ୍ଦଙ୍କର ଏହି ବ୍ୟାଖ୍ୟାନ ଶୁଣି ଗୋଟାଏ ପକ୍ଷରୁ ତାଳି ବର୍ଷା ହୋଇଗଲା ଓ ଅନ୍ୟପକ୍ଷରୁ ଗାଳି ବର୍ଷା ହୋଇଗଲା । "ମାର ସ୍ୱାକୁ—ଏ ବିଧର୍ମୀ; ଖୋଦାଙ୍କୁ ଏ ବିଦୂଷକ କହୁଛି ।" ପ୍ରେଟର ଉଠିପଡ଼ି ଏ ଗଣ୍ଡଗୋଳକୁ ଶାନ୍ତ କରି କହିଲେ, "ଯେମିତି ପ୍ରଶ୍ନକୁ ସେମିତି ଉତ୍ତର । ମାଡ଼ପିଟ୍ କଥା କହିଲେ ଆରେଷ୍ଟ କରି ନିଆଯିବ । ପୋଲିସ୍ ପାଖରେ ଛିଡ଼ା ହୋଇଛନ୍ତି । ଏହି ପ୍ରଶ୍ନରେ ସ୍ୱାମୀଙ୍କୁ ନମ୍ବର ମିଳିଲା । ବର୍ତ୍ତମାନ ଫାଦର ମସୀହ ଜଟିଳାନନ୍ଦଙ୍କୁ ପ୍ରଶ୍ନ କରିବେ ।"

ଫାଦର ରାମଇଲାହୀ ଚୌକିରେ ବସି ସବୁକଥା ସାବଧାନରେ ଦେଖୁଥିଲେ ଓ ଶୁଣୁଥିଲେ । ମିଷ୍ଟର ପ୍ରେଟରଙ୍କ ଆଦେଶ ପାଇବା ମାତ୍ରେ ଉଠି ଛିଡ଼ା ହେଲେ । ସେ ଆକାଶକୁ ଚାହିଁ ଇଂରାଜୀରେ ପ୍ରାର୍ଥନା କଲେ, "ହେ ପିତା, ଏହି ଦୁନିଆ ଲୋକଙ୍କୁ ତୁମର ଶକ୍ତି ବୁଝାଇ ଦେବାପାଇଁ ତୁମେ ମୋତେ ଶକ୍ତି ଦିଅ ।" ତାପରେ ସେ ପୁଣି ସ୍ୱାମୀ ଜଟିଳାନନ୍ଦଙ୍କ ଆଡ଼କୁ ଚାହିଁଲେ ।

ସ୍ୱାମୀ ଜଟିଳାନନ୍ଦ ନିଜ ବିଜୟରେ ଏମିତି ଉଲ୍ଲସିତ ହୋଇପଡ଼ିଥିଲେ ଯେ ବାଘ ଛେଳିକୁ ଚାହିଁଲାପରି ସେ ଫାଦର ମସୀହଙ୍କୁ ଚାହିଁଲେ । ଫାଦର ମସୀହ ପଚାରିଲେ, "ସ୍ୱାମୀଜୀ, ଆର୍ଯ୍ୟସମାଜରେ ମୂର୍ତ୍ତିପୂଜା ମନା, ମନ୍ଦିରଯିବା ମନା ବୋଲି ଯାହା କୁହା-ଯାଇଛି ତାହା କ'ଣ ସତ୍ୟ ? ସନ୍ଧ୍ୟା ସହିତ ଯଜ୍ଞ କରିବାର ଯେଉଁ ବିଧି ଆର୍ଯ୍ୟସମାଜରେ ପ୍ରଚଳିତ ଅଛି ତାହା କ'ଣ ଠିକ୍ ?"

ସ୍ୱାମୀ ଜଟିଳାନନ୍ଦ କହିଲେ, "ପାଦରୀ ସାହେବ, ପରମାତ୍ମା ନିରାକାର ଅଟନ୍ତି ।

ଆପଣଙ୍କ ଖ୍ରୀଷ୍ଟଧର୍ମରେ ତ ଏହି ବିଶ୍ୱାସ ଅଛି । ପରମାତ୍ମା ସବଂନ୍ଦ ଅଛନ୍ତି । ତେଣୁ ମନ୍ଦିର, ମସ୍‌ଜିଦ, ଗୀର୍ଜା ସବୁ ବୃଥା । ଆମ ମୁନିଋଷିମାନେ ଯଜ୍ଞ କରୁଥିଲେ—, ପରମାତ୍ମା ପୂଜାର ସେଇ ହେଉଛି ପ୍ରକୃତ ବାଟ ।''

ଫାଦର ମସୀହ ବର୍ତ୍ତମାନ ଅସଲ ଜାଗାରେ ଆଘାତ କରି କହିଲେ, ''ସ୍ୱାମିଜୀ, ହିନ୍ଦୁମାନେ ଶବଦାହ କରନ୍ତି । ଆପଣ ଯେଉଁ ଯଜ୍ଞକୁଣ୍ଡରେ ଅଗ୍ନି ଜାଳି ସ୍ୱାହା ସ୍ୱାହା କରନ୍ତି, ତାହା କ'ଣ ଏକପ୍ରକାର ଚିତା ନୁହେଁ ? ସେଥିରେ କ'ଣ ପରମାତ୍ମାଙ୍କୁ ଆପଣ ଦାହ କରନ୍ତି ନାହିଁ ? ତାହେଲେ ଆପଣଙ୍କ ପରମାତ୍ମା କ'ଣ ଏକ ମୁର୍ଦ୍ଦାର ? ଯାହାଙ୍କୁ ପୋଡ଼ିବା ପାଇଁ ଆପଣ ଯଜ୍ଞ କରନ୍ତି ?''

ଫାଦର ମସୀହଙ୍କ ଏହି ପ୍ରଶ୍ନ ଶୁଣି ଜଟିଳାନନ୍ଦ ଟିକିଏ ଉତ୍ତେଜିତ ହୋଇ ପଡ଼ିଲେ, କହିଲେ, ''ହେ ପାଦରି ! ତମେ ଜଣେ ବଡ଼ ମୂର୍ଖ । ଆମ୍ଭେମାନେ ଆତ୍ମାକୁ ପବିତ୍ର କରିବା ପାଇଁ ଯଜ୍ଞ କରୁ, ଅର୍ଥାତ ଯଜ୍ଞଦ୍ୱାରା ନିଜର ସମସ୍ତ ପାପକୁ ଆମେ ଜାଳିଦେଉ । ଆମେ ଏହିପରି ପାପ ଧ୍ୱଂସ କରି ପରମାତ୍ମାଙ୍କ ପୂଜା କରୁ ।''

ଫାଦର ମସୀହ ମୁରୁକିହସା ଦେଇ ପଚାରିଲେ, ''ହେ ସ୍ୱାମୀ, ପାପର ତ ରୂପ ନାହିଁ; ପରମାତ୍ମାଙ୍କର ତ ରୂପ ନାହିଁ । ତେବେ ଯଜ୍ଞକୁଣ୍ଡରେ ତୁମେ ପାପକୁ ଜାଳୁଛ ନା ପରମାତ୍ମାଙ୍କୁ ଜାଳୁଛ, ଏ କଥା ତୁମେ କେମିତି ଜାଣୁଛ ?''

ଏହି କଥା ଶୁଣି ସ୍ୱାମୀ ଜଟିଳାନନ୍ଦ ଚାଉଉଠିଲେ, କହିଲେ ''ହେ ପାଦରୀ ସାହେବ, ଏଣୁତେଣୁ କ'ଣ ଗୁଡ଼ାଏ ବକୁଛ ? ପରମାତ୍ମାଙ୍କୁ କେହି କେବେ କ'ଣ ଜାଳିପାରେ ? ସେ ପରା ଅଜର, ଅମର ! ଏଇ ବୁଦ୍ଧି ନେଇ ତମେ ବି.ଏ. ପାଶ୍ କଲ ?''

ଫାଦର ମସୀହ ଉତ୍ତର ଦେଲେ, ''ଆପଣ ତ ଭୁଲ୍ କଥା କହୁଛନ୍ତି ସ୍ୱାମିଜୀ ! ଯଦି ପାପର ଶରୀର ନାହିଁ ତାକୁ ଜଳାଯିବ କେମିତି ? ତାଛଡ଼ା ପାପର ଜଳିବା ଗୁଣ ନାହିଁ । ପାପ ନିଜେ ଏକ ଅଗ୍ନି ଯାହାର ଜ୍ୱାଳାରେ ସବୁ ଜଳିଯାଏ । ତେଣୁ ତମର ଯେଉଁ ଋଷିମୁନିମାନେ ଜାଗ, ଯଜ୍ଞ, ଆହୁତି ଇତ୍ୟାଦି ଚଳାଇଛନ୍ତି ସେମାନେ ମୂର୍ଖ । ହେ ସ୍ୱାମିଜୀ, କାହିଁ କେଉଁଠି ନିଆଁର ଶିଖା ଉଠାଇ ଲୋକେ ପିତାମାତାଙ୍କର ପୂଜା କରନ୍ତି ? ତେଣୁ ହେ ସ୍ୱାମିଜୀ ! ଏହି ଯଜ୍ଞ, ଆହୁତି, ସନ୍ଧ୍ୟାବନ୍ଦନ ଇତ୍ୟାଦି ସବୁ ମୂର୍ଖତା, ଛଳନା ମାତ୍ର ।''

ସ୍ୱାମୀ ଜଟିଳାନନ୍ଦ କିଛି କଡ଼ା ଉତ୍ତର ଭାବିବା ପାଇଁ କିଛିକ୍ଷଣ ଆଖି ବନ୍ଦକରି ନେଲେ । କିନ୍ତୁ ମିଷ୍ଟର ପ୍ରେଟର ଭାବିଲେ ବୋଧହୁଏ ତାଙ୍କର କୌଣସି ଉତ୍ତର ଦେବାର ନାହିଁ । ତେଣୁ ସେ ଉଠିକରି କହିଲେ, ''ଏହି ପ୍ରଶ୍ନରେ ଫାଦର ମସୀହଙ୍କୁ ନମ୍ବର ମିଳିଲା । ବର୍ତ୍ତମାନ ଅଲ୍ଲାମା ବହିଶୀଙ୍କ ପାଳି; ସେ ପ୍ରଶ୍ନର ଜବାବ ଦେବେ ।''

ମି ର ପ୍ରେଟର ଏହି କଥା କହିଲା ମାତ୍ରେ ଖୁବ୍ ଜୋରରେ ତାଳି ବାଜିଲା । ସ୍ୱାମୀ ଜଟିଳାନନ୍ଦ ଉଠିକରି କହିଲେ, "ମୁଁ ଏଠାରେ ଶାସ୍ତ୍ରବ୍ୟାଖ୍ୟା କରିବି ନାହିଁ । ଏଠାରେ ଅନ୍ୟାୟ କରାଯାଉଛି । ଖ୍ରୀଷ୍ଟଧର୍ମ ସପକ୍ଷରେ କାମ ହେଉଛି ।" ଏହା କହି ସ୍ୱାମିଜୀ ଶିଷ୍ୟମାନଙ୍କ ସାଙ୍ଗରେ ସେଠାରୁ ଉଠି ଚାଲିଗଲେ ।

ସ୍ୱାମିଜୀ ଚାଲିଯିବା ପରେ ପରେ କଲେକ୍ଟର କହିଲେ, "ସ୍ୱାମିଜୀ ଶାସ୍ତ୍ର ବ୍ୟାଖ୍ୟାନ ଛାଡ଼ି ଚାଲିଗଲେ । ତେଣୁ ଶାସ୍ତ୍ରବ୍ୟାଖ୍ୟା ବନ୍ଦ ରହିଲା ।" ଏହିପରି ଶାସ୍ତ୍ରବ୍ୟାଖ୍ୟା ସଭା ଶେଷ ହେଲା ।

ଗଙ୍ଗାପ୍ରସାଦ ଘରକୁ ଫେରିଲାବେଳେ ତାଙ୍କୁ ଜଣାପଡ଼ିଲା ସତେ ଯେମିତି ସେ ଏକ ନାଟକ ଯାତରୁ ଫେରି ଆସୁଥିଲେ । ଜଟିଳାନନ୍ଦ, ବହ୍ନିଶୀ, ମସୀହ, ପ୍ରେଟର ଏମାନେ ସମସ୍ତେ ମିଶି ଏକ ଅଜବ ନାଟକ ପ୍ରଦର୍ଶନ କରିଥିଲେ ।

## ଚୋର

ଆଲ୍ଲାହାବାଦ ଷ୍ଟେସନରେ ଗାଡ଼ି ପହଞ୍ଚିଲା ବେଳକୁ ଗଙ୍ଗାପ୍ରସାଦଙ୍କର ମନ ଟିକିଏ ଭାରାକ୍ରାନ୍ତ ଥିଲା । ସେ କେଦେଇଙ୍କ ବଙ୍ଗଳାରେ ପହଞ୍ଚି ସେଠାକାର ବାତାବରଣରେ ଏକପ୍ରକାର ରୁଦ୍ଧଶ୍ୱାସତା ଅନୁଭବ କଲେ । ଭିକ୍ଷୁ ବାରଣ୍ଡାରେ ବସିଥିଲା । ଗଙ୍ଗାପ୍ରସାଦଙ୍କ ଘୋଡ଼ାଗାଡ଼ି ଦେଖିଲାମାତ୍ରେ ସେଥିରୁ ଜିନିଷ ଓହ୍ଲାଇବା ପାଇଁ ଦୌଡ଼ିଲା । ଜିନିଷପତ୍ର ଓହ୍ଲାଉ ଓହ୍ଲାଉ ସେ କହିଲା, "ଆରେ ବାବା, କେଉଁଠାରେ ରହିଗଲ ? ତମ ଠିକଣା ତ ଆମକୁ ଜଣା ନଥିଲା । ନହେଲେ ଆମେ ତମ ପାଖକୁ ଖବର ପଠାଇଥାନ୍ତୁ । ଲମ୍ବରଦାରିଣୀ ଅନେକ ଦିନ ହେଲା ତମ ନାଁ ଘୋଷୁଛନ୍ତି ।"

"କାହିଁକି କ'ଣ ହେଲା କି ? ଖୁଡ଼ୀଙ୍କ ଦେହ ଭଲ ନାହିଁ କି ?"

"ନାହିଁ, ଖାଲି ତମକୁ ଦେଖିବା ପାଇଁ ତାଙ୍କର ପ୍ରାଣ ଅଟକି ରହିଛି ବୋଲି ଡାକ୍ତର କହୁଛନ୍ତି । ତମେ ସିଧା ତାଙ୍କ ଘରକୁ ଯାଅ । ଭାଇ ଛଅଦିନ ହେଲା ଏଇଠି ତାଙ୍କ ବଖରାରେ ବସିଛନ୍ତି । ଲକ୍ଷ୍ମୀଚନ୍ଦ ପଅରଦିନ ଆସିଛନ୍ତି ।"

ଗଙ୍ଗାପ୍ରସାଦ ସିଧା କେଦେଇଙ୍କ ବଖରାରେ ଯାଇ ପହଞ୍ଚିଲେ ।

କେଦେଇ ଚୁପଚାପ ଆଖି ବନ୍ଦକରି ପଡ଼ିଥାନ୍ତି; କିନ୍ତୁ ମନେ ହେଉଥାଏ ଅନ୍ତରର ବେଦନାକୁ ଚପାଇ ରଖି ରଖି ତାଙ୍କ ମୁହଁ ବିବର୍ଣ୍ଣ ହୋଇ ଯାଇଛି । ଜ୍ୱାଲାପ୍ରସାଦ ମଧ୍ୟ

ଆଖି ବନ୍ଦକରି ତାଙ୍କ ମୁଣ୍ଡ ପାଖରେ ବସିଥିଲେ । ମନେ ହେଉଥିଲା ଯତେ ଯେମିତି ସେ ଶୋଇ ପଡ଼ିଛନ୍ତି । ଗଙ୍ଗାପ୍ରସାଦଙ୍କର ପାଦଶବ୍ଦ ଶୁଣିଲା ମାତ୍ରେ ଜ୍ୱାଲାପ୍ରସାଦ ଆଖି ଖୋଲିଦେଇ କହିଲେ, "ଆରେ ତୁ ଆସିଗଲୁ ! ଭାଉଜ ଠିକ୍ କହୁଥିଲେ । ତୁ ନିଶ୍ଚୟ ଆସିବୁ ବୋଲି ସେ କାଲି ରାତିରେ କହୁଥିଲେ । ତୁ କ'ଣ ବରେଲୀରେ ନଥିଲୁ କି ? ମୁଁ ତୋତେ ଦୁଇଥର ତାର କରି ମଧ୍ୟ ଜବାବ୍ ପାଇଲି ନାହିଁ ।"

"ହଁ, ମୁଁ ନ ଥିଲି, କଲିକତା ଯାଇଥିଲି । ସେଠି ସପ୍ତାହେ ଜାଗାରେ ମୋତେ ସତର ଅଠର ଦିନ ଲାଗିଗଲା ।"

ଜ୍ୱାଲାପ୍ରସାଦ କହିଲେ, "କାଲିଠାରୁ ସେ ବେହୋସ ଅଛନ୍ତି । ମଝିରେ ମଝିରେ କେତେବେଳେ କେମିତି ଆଖିଖୋଲି ତୁ ଆସିଲୁଣି କି ନାହିଁ ପଚାରୁଛନ୍ତି; ତା'ପରେ ପୁଣି ବେହୋସ ହୋଇ ଯାଉଛନ୍ତି । ଏହା କହିସାରି ସେ ଖୁବ୍ ପାଟିକରି କହିଲେ, "ଭାଉଜ, ତମକଥା ଠିକ୍ ହେଲା । ଗଙ୍ଗା ଆସିଗଲାଣି ।"

ଜେଦେଇ ଆଖିଖୋଲି କିଛି ସମୟ ପର୍ଯ୍ୟନ୍ତ ଗଙ୍ଗାପ୍ରସାଦଙ୍କୁ ଏକ ଦୃଷ୍ଟିରେ ଚାହିଁ ରହିଲେ ଓ ତା'ପରେ କ୍ଷୀଣ କଣ୍ଠରେ କହିଲେ, "ଟିକେ ପାଖକୁ ଆ । ମୁଁ ତୋ ମୁଣ୍ଡଉପରେ ହାତ ରଖେ । ହଁ ଠିକ୍ ; ତୁ ଆଜିଯାଏ କୁଆଡ଼େ ବୁଲୁଥିଲୁ ? ତୋତେ ଦେଖିବାପାଇଁ ଆଜିଯାଏ ମୋର ଏ ପ୍ରାଣ ପଡ଼ିରହିଛି । ମୁଁ ଦିଅରଙ୍କୁ କହିଥିଲି ଗଙ୍ଗାକୁ ନ ଦେଖିଲେ ମୋର ପ୍ରାଣ ଛାଡ଼ିବ ନାହିଁ । ଯାହାହେଉ ଭଗବାନ ମୋ କଥା ଶୁଣିଲେ, ତୁ ଆସିଗଲୁ ।" ସେ ପୁଣି ଜ୍ୱାଲାପ୍ରସାଦଙ୍କୁ ପଚାରିଲେ, "ଦିଅର, ଲକ୍ଷ୍ମୀ କାହିଁ ?"

"ଏଇ ଅଧଘଣ୍ଟା ହେଲା କମିଶନରଙ୍କ ବଙ୍ଗଳାକୁ ଗଲି ବୋ'ଲି ମୋତେ କହିକରି ଯାଇଛି । ଦରକାର ହେଲେ ମୁଁ ତାକୁ ଲୋକ ପଠାଇ ନେଇଆସିବି । କାହିଁକି, କ'ଣ ବେଶି କାମ ଅଛି କି ?"

"ହଁ, କାମ ଅଛି ଯେ, ଥାଉ ସେ ଆସିଲେ ହୋଇଯିବ ।" ତାପରେ ସେ ପୁଣି ଗଙ୍ଗାପ୍ରସାଦଙ୍କୁ କହିଲେ, "ଆରେ ଯାହାହେଉ ଭଲ ବେଳରେ ଆସି ପହଞ୍ଚିଗଲୁ । ଆଉ ଦିନେ ଡେରି ହୋଇଥିଲେ ତୁ ମୋତେ ଦେଖି ପାରି ନ ଥାନ୍ତୁ କିମ୍ବା ମୁଁ ତୋତେ ଦେଖିପାରି ନ ଥାନ୍ତି ।"

ଜେଦେଇ ପୁଣି ଆଖି ବନ୍ଦ କରିନେଲେ, ସତେ ଯେମିତି ଗଙ୍ଗାପ୍ରସାଦଙ୍କ ମୁଣ୍ଡରେ ହାତ ରଖିବାରୁ ତାଙ୍କୁ ବହୁତ ଶାନ୍ତି ଲାଗୁଥିଲା । ତାଙ୍କ ମୁହଁରୁ ବର୍ତ୍ତମାନ ବିବର୍ଣ୍ଣତା ହଟିଯାଇ ବରଂ ସ୍ୱାଭାବିକ ଦେଖାଯାଉଥିଲା । ଯେତେବେଳେ ଜେଦେଇ ଗଙ୍ଗାପ୍ରସାଦଙ୍କ ମୁଣ୍ଡ ଉପରୁ ହାତ ନେଲେ ନାହିଁ କିମ୍ବା କିଛି କହିଲେ ନାହିଁ ସେତେବେଳେ ଗଙ୍ଗାପ୍ରସାଦ ତାଙ୍କ ହାତକୁ ଧୀରେ ଉଠାଇଦେଇ ଶେଯ ଉପରେ ରଖିଦେଲେ, "କିଣ

ହେଲା ବାପା, ଜଣାପଡ଼ୁଛି ସେ ବେହୋସ ହୋଇଗଲେ ।''

''ସେ ତ ଦୁଇଦିନ ହେଲା ବେହୋସ ଅଛନ୍ତି । ଡାକ୍ତରମାନେ ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ସେ ଆଜି ପର୍ଯ୍ୟନ୍ତ କେମିତି ବଞ୍ଚିଛନ୍ତି । ଯା' ତୁ ଲୁଗାପଟା ବଦଳାଇ ଧୁଆଧୋଇ ହୁଅ । ଯେତେବେଳେ ତାଙ୍କର ହୋସ ଆସିବ, ତୋତେ ଡାକିବେ, ସେତେବେଳେ ମୁଁ ତୋତେ ଡାକିଦେବି ।''

ସେହି ଘର ଭିତରୁ ବାହାରି ଆସି ଗଙ୍ଗାପ୍ରସାଦ ନିଜ ସ୍ତ୍ରୀ ଓ ମା'ଙ୍କ ସହିତ ସାକ୍ଷାତ୍ କଲେ । ମାତ୍ର ସେମାନଙ୍କ ସହିତ କୌଣସି ବିଶେଷ କଥାବାର୍ତ୍ତା ହୋଇ ପାରିଲେ ନାହିଁ । ସବୁଆଡ଼େ ଏକପ୍ରକାର ନୀରବ ବାତାବରଣ ଘେରିରହିଥିଲା । ଗାଧୋଇ-ପାଧୋଇ ଖାଇପିଇ ସେ ଯାଇ ଡ୍ରଇଁ ରୁମରେ ବସିଗଲେ ।

ଦୁଇପ୍ରହର ବେଳକୁ ଲକ୍ଷ୍ମୀଚନ୍ଦ୍ର ଲେଉଟି ଆସି ପହଞ୍ଚିଲେ । ଗଙ୍ଗାପ୍ରସାଦଙ୍କୁ ଦେଖି ସେ ପଚାରିଲେ, ''କ'ଣ ଆସିଗଲ; କିନ୍ତୁ ଥିଲ କେଉଁଠି ? ତମ ବିଷୟରେ ଏତେ ସନ୍ଧାନ କରାଗଲା, ଚିଠିପତ୍ର ଓ ତାର ପଠାଗଲା; କିନ୍ତୁ ତମର କୌଣସି ପତ୍ତା ମିଳିଲା ନାହିଁ । ମା' ଖାଲି ତମରି ନାଁ ଘୋଷୁଛି । ତାଙ୍କ ସାଙ୍ଗରେ ଦେଖା ହେଲାଣି ଟି ?''

''ହଁ, ଦେଖା ହେଲାଣି । ମିନିଟିଏ ଦୁଇମିନିଟ ଚେତା ଆସିଥିଲା । ପୁଣି ଅଚେତ ହୋଇଗଲେଣି । କିନ୍ତୁ ଆପଣ କ'ଣ ଏକା କାନପୁରରୁ ଆସିଛନ୍ତି ? ଭାଉଜ ଓ ପିଲାପିଲି ଆପଣଙ୍କ ସାଙ୍ଗରେ ଆସି ନାହାନ୍ତି ? ବର୍ତ୍ତମାନ ତ ଅବସ୍ଥା ବଡ଼ ଜଟିଳ ।''

ଲକ୍ଷ୍ମୀଚନ୍ଦ୍ର ଅଳପ ହସି କହିଲେ, ''ହଁ, ଏକା ଆସିଛି । ଦିନେ ଦୁଇ ଦିନରେ ପିଲାମାନେ ଆସିଯିବେ । ମୁଁ ତ ଏଠାକୁ ଆସି ବଡ଼ ହଇରାଣରେ ପଡ଼ିଗଲିଣି । ମୁଁ ଆସିବାର ତିନିଦିନ ହୋଇଗଲାଣି ! ମୁଁ ଭାବିଥିଲି ଦିନେ ଦୁଇଦିନ ଲାଗିବ ବୋଲି । କାନପୁରରେ ମୋର ବହୁତ କାମ ପଡ଼ିଛି । ବର୍ତ୍ତମାନ ଡାକ୍ତରଙ୍କଠାରୁ ବୁଝି ଆସିଲି, ସେ କହୁଛନ୍ତି କେତେବେଳେ ଯେ ତାଙ୍କର ଶେଷ ନିଶ୍ୱାସ ଯିବ କିଛି କହି ହେଉନାହିଁ । ତେବେ ଖୁବ୍ ହେଲେ ଆଉ ଦୁଇ ଚାରିଦିନ ଯାଇପାରେ । କ'ଣ କରିବି କିଛି ଭାବି ପାରୁନାହିଁ ।

''ଏଥିରେ ବୁଝିବାର କ'ଣ ଅଛି ଭାଇ ! ଯେମିତି ହେଲେ ତ ରହିବାକୁ ପଡ଼ିବ ।''

ଲକ୍ଷ୍ମୀଚନ୍ଦ୍ର ଅନ୍ୟମନସ୍କ ହେଲାପରି କହିଲେ, ''ହଁ ରହିବାକୁ ତ ପଡ଼ିବ । କାହାରି ମୃତ୍ୟୁକୁ ଅପେକ୍ଷା କରିବା କେଡ଼େ ଅଜବ କଥା; କିନ୍ତୁ ମୋତେ ତାହା କରିବାକୁ ପଡ଼ୁଛି । ମୋତେ ଏକା କାହିଁକି, ଘରର ସବୁ ଲୋକଙ୍କୁ । କିନ୍ତୁ ତମେ କୁଆଡ଼େ ଯାଇଥିଲ କହିଲ ନାହିଁ ଯେ !''

''କଲିକତା ଯାଇଥିଲି ।।ସେଠାରୁ ମୋର ଜଣେ ବନ୍ଧୁଙ୍କ ଘରୁ ନିମନ୍ତ୍ରଣ ଆସିଥିଲା ।

ଲଲ ରାଧାକଶନଙ୍କ ନାଁ ତମେ ବୋଧେ ଶୁଣିଥିବ; ତୁମେ ହୁଏତ ତାଙ୍କୁ ଜାଣିଥିବ । ତାଙ୍କର ବାପା ଗୋପୀକଶନ ଆଜକାଲି କାନପୁରରେ ରହୁଛନ୍ତି ।"

"ଆରେ ସେହି ଗୋପୀକଶନଙ୍କ ପୁଅ ରାଧାକଶନ ! ସେ ରାଜା ବାହାଦୁର ହୋଇଗଲା । କଲିକତାର ବଡ଼ ବଣିଆ ସେ । ହଁ, ହଁ, ବୁଝିଗଲି; ତମେ ତାଙ୍କର ଘରକୁ ଯାଇଥିଲ ? ରାଜଧାନୀ ତ ଉଠିଗଲାଣି । ଆଜିକାଲି କଲିକତା ଅବସ୍ଥା କେମିତି ?"

"ରାଜଧାନୀ ଉଠିଗଲେ କ'ଣ ହେଲା, ସେମିତି ଧୁମ୍‌ଧାମ୍, ସେମିତି ରାଗରଂଗ ସବୁ ସମାନ । ମୁଁ ତ କଲିକତା ଦେଖି ଘାବର ହୋଇଗଲି ।"

ଲକ୍ଷ୍ମୀଚନ୍ଦ ହସିଦେଇ କହିଲେ, "ଗଙ୍ଗାପ୍ରସାଦ ! ତମେ ଘାବର ହୋଇଗଲ, ବଡ଼ ଆଶ୍ଚର୍ଯ୍ୟ କଥା । ତମେ ତ ଏପରି ଘାବରରେ ପଡ଼ିବା ଲୋକ କେବେ ନ ଥିଲ !" ତାପରେ ଲକ୍ଷ୍ମୀଚନ୍ଦ ଗଙ୍ଗାପ୍ରସାଦଙ୍କ ହାତରେ ଥିବା ହୀରାମୁଦିକୁ ବହୁତ ସମୟରୁ ଲକ୍ଷ୍ୟ କରି କହିଲେ, "ବଡ଼ ସୁନ୍ଦର ମୁଦିଟାଏ । ଏଥିରେ ଖୁବ୍ ବଡ଼ ହୀରା ଲାଗିଛି । ମନେ ହେଉଛି ଏ ମୁଦିଟା ଅନ୍ୟ କେଉଁଠି ଦେଖିଛି । କଲିକତାରେ କିଣିଛ କି ?"

ଗଙ୍ଗାପ୍ରସାଦ ଟିକିଏ ଏପାଖ ସେପାଖ ହୋଇ କହିଲେ, "ଏ ମୁଦି ମୋତେ ଖୁଡ଼ୀ ଦେଇଥିଲେ ।"

ଏ କଥା ଶୁଣି ଲକ୍ଷ୍ମୀଚନ୍ଦର ମୁଣ୍ଡ ଗରମ ହୋଇଗଲା । ସେ କହିଲେ, "ସେଥିପାଇଁ ମୁଁ କହୁଥିଲି ଏ ମୁଦିଟା ମୁଁ କେଉଁଠି ଦେଖିଛି ।"

ଦୁହେଁଯାକ କିଛି ସମୟ ଚୁପଚାପ ବସିଗଲେ । ସେତିକିବେଳେ ଜ୍ୱାଲାପ୍ରସାଦ ଜେଦେଇଙ୍କ ବଖରାରୁ ବାହାରି ଅସୁଥିଲେ । ସେ ବୈଠକଖାନାକୁ ଆସି କହିଲେ, "ଲକ୍ଷ୍ମୀ, ଭାଉଜ ବର୍ତ୍ତମାନ ସଚେତ ଅଛନ୍ତି । ସେ ତୁମକୁ ଓ ଗଙ୍ଗାକୁ ଡାକୁଛନ୍ତି ।"

ହୀରାମୁଦି କଥା ଶୁଣି ଲକ୍ଷ୍ମୀଚନ୍ଦଙ୍କ ମୁହଁରେ ଯେଉଁ ଉତ୍କଣ୍ଠାଭାବ ଫୁଟି ଉଠୁଥିଲା, ତହିଁରେ କିଛି ପରିବର୍ତ୍ତନ ହୋଇ ନ ଥିଲା । ସେ ଉଠୁ ଉଠୁ କହିଲେ, "ହଉ ଚାଲନ୍ତୁ ।"

ଜେଦେଇ ସେମାନଙ୍କ ପ୍ରତୀକ୍ଷାରେ ଦ୍ୱାର ଆଡ଼କୁ ଅନାଇ ରହିଥିଲେ । ତାଙ୍କ ମୁଣ୍ଡ ପାଖରେ ଯେଉଁ ଚୌକୀ ପଡ଼ିଥିଲା ସେଥିରେ ଜ୍ୱାଲାପ୍ରସାଦ ବସିଗଲେ । ଜେଦେଇଙ୍କ ପଲଙ୍କ ପାଖରେ ଯେଉଁ ଦୁଇଟି ଚୌକି ପଡ଼ିଥିଲା ସେଥିରୁ ଗୋଟିକରେ ଲକ୍ଷ୍ମୀଚନ୍ଦ ଓ ଆଉ ଗୋଟିକରେ ଗଙ୍ଗାପ୍ରସାଦ ବସିଗଲେ । ଜେଦେଇ କିଛି ସମୟ ସେମାନଙ୍କୁ ଚୁପଚାପ ଚାହିଁ ରହିଲେ ଓ ଆଖିରେ ତାଙ୍କର ଅଶ୍ରୁ ଭରିଯାଇଥିଲା । ତଥାପି ସେ କ୍ଷୀଣ କଣ୍ଠରେ କହିଲେ, "ମୋର ଶେଷ ସମୟ ଆସିଗଲା । ଆରେ ପୁଅ ଲକ୍ଷ୍ମୀ; ମୋର ଶେଷ ଇଚ୍ଛା, ମୁଁ ତୋତେ କିଛି କହିବାକୁ ଚାହେଁ ।"

ଲକ୍ଷ୍ମୀଚନ୍ଦ କହିଲେ, "ହଁ ମା, କହ । ତୋର ଶେଷଇଚ୍ଛା ନିଶ୍ଚୟ ପୂରଣ ହେବ ।"

ଜେଦେଇ ସାମାନ୍ୟ ଟିକିଏ ହସି କହିଲେ, "ମୁଁ ଏହି ଗଙ୍ଗାକୁ ତୋହରି ପରି ଲାଳନପାଳନ କରିଥିଲି । ତାକୁ ମୁଁ କିଛି ଦେବାକୁ ଚାହେଁ । ତୋ' ପାଖରେ ତ ଏତେ ବଡ଼ ସମ୍ପତ୍ତି ଅଛି । ସେ ଜଣେ ସାମାନ୍ୟ ଚାକରିଆ । ମୋ'ପାଖରେ ଟ୍ରେଜେରୀରେ ଯେତେ ନଗଦ ଟଙ୍କା ଓ ସୁନା ଅଛି, ମୁଁ ଗଙ୍ଗାକୁ ଦେଇ ଦେଉଛି । ଗଙ୍ଗା ତ ନଥିଲା, କିନ୍ତୁ ଏ କଥା ମୁଁ ଯେତେବେଳେ ଧରଅରଙ୍କୁ କହିଲି, ପ୍ରଥମେ ତୋତେ ଜଣାଇବା ପାଇଁ ସେ କହିଲେ ।"

ଲକ୍ଷ୍ମୀଚନ୍ଦ ଏକପ୍ରକାର ରୁକ୍ଷ ହସ ହସି କହିଲେ, "ଓ, ଏଇଥିପାଇଁ ଗଙ୍ଗା ଗଙ୍ଗା ଘୋଷୁଥିଲୁ ? ହୁଏତ ଗଙ୍ଗା ଆଗରୁ ଚାଲିଆସିଥିଲେ ମୋତେ ଏ କଥା କହିବାକୁ କିମ୍ବା ଶୁଣିବାକୁ ପଡ଼ିନଥାନ୍ତା । ଗଙ୍ଗାକୁ ଏହି ମୁଦି ତୁ କ'ଣ ମୋତେ ପଚାରି କରି ଦେଇଥିଲୁ ? ମା, ତୁ ତ ବଡ଼ ମଜାକଥା କହୁଛୁ !"

ଜେଦେଇ ଆଖିବନ୍ଦ କରିଦେଲେ । ଏକପ୍ରକାର ଭୟଙ୍କର ପୀଡ଼ା ତାଙ୍କ ମୁହଁରେ ସ୍ପଷ୍ଟ ଦେଖାଯାଇ ପୁଣି ଲିଭିଗଲା । କିଛି ସମୟ ପରେ ସେ ଆଖି ବୁଜିରଖି କହିଲେ, "ମୋର ଯାହା ଥିଲା ମୁଁ ତାକୁ ଦେଇଛି । ସବୁକଥା ମୁଁ ତୋତେ କେତେ ପଚାରିଥାନ୍ତି ? ତୁ ବର୍ତ୍ତମାନ ଏଠାକୁ ଆସିଥିବାରୁ ମୁଁ ତୋତେ ପଚାରୁଛି ।"

ଲକ୍ଷ୍ମୀଚନ୍ଦ ଜବାବ ଦେଇ କହିଲେ, "ଭଲକଲୁ ମା, ମୋତେ ପଚାରିନେଲୁ । ନଚେତ୍ ତୁ ଚାଲିଗଲା ପରେ ଏମାନଙ୍କର ଅବସ୍ଥା ଖରାପ ହୋଇଥାନ୍ତା । ମୁଁ ଗଙ୍ଗାପ୍ରସାଦଙ୍କୁ ଚୋରିରେ ଗିରଫ କରିଥାନ୍ତି । କାକା ଏକଥା ଜାଣିଥିବାରୁ ସେ ତୋତେ ସେହିପରି ପରାମର୍ଶ ଦେଇଥିଲେ । ତେବେ ମା, ଏ ଜିନିଷ ଉପରେ କାହାରି ଅଧିକାର ନାହିଁ; ସେ ମୋର । ଆଉ ମନେରଖିଥା, ତୁ ଗଙ୍ଗାଙ୍କୁ କିଛି ଦେଇ ପାରିବୁ ନାହିଁ । ତୁ ତାଙ୍କୁ ଲେଖାଇଲୁ, ପଢ଼ାଇଲୁ । ଏଥିରେ ହଜାର ହଜାର ଟଙ୍କା ଖର୍ଚ୍ଚ କଲୁ, ପୁଣି ତାଙ୍କୁ ହୀରାର ମୁଦି ଦେଇଦେଲୁ । ବର୍ତ୍ତମାନ ମୋତେ କହ, ଆଉ କ'ଣ କ'ଣ ଜିନିଷ ତୁ ତାଙ୍କୁ ଦେଇଛୁ ?"

ଜେଦେଇ ବର୍ତ୍ତମାନ ଆଖି ଖୋଲି କହିଲେ, "ଆରେ ପୁଅ ଲକ୍ଷ୍ମୀ, ଏତେ ଚ୍ଛେଟ ହୁଅ ନାହିଁ । ମୋ'ପାଖରେ କ'ଣ ଅଛି ଯେ ମୁଁ ଦଉଛି ? ସବୁ ତ ତୋତେ ଓ ତୋ ବୋହୂକୁ ସମର୍ପି ଦେଇଛି । ମୋର ନିଜର କିଛି ଗହଣା ଅଛି, ଆଉ ଟ୍ରେଜେରୀରେ ଦଶ ପନ୍ଦର ହଜାର ନଗଦ ଟଙ୍କା ଅଛି । ଖୁବ୍ ବେଶୀ ହେଲେ ସବୁମିଶି ପଚିଶ ତିରିଶ ହଜାର ହେବ । ଭଗବାନ ତୋତେ କୋଟି କୋଟି ଦେଇଛନ୍ତି । ଏହି ସାମାନ୍ୟ କଥାରେ ତୁ ମନକୁ କାହିଁକି ଚ୍ଛେଟ କରୁଛୁ ?"

ଲକ୍ଷ୍ମୀଚନ୍ଦ ଟିକିଏ ଅଭିଭୂତ ହୋଇ କହିଲେ, "ଏହି ଯେଉଁ କୋଟି କୋଟି କଥା କହୁଛୁ ତାହା ଏହି ଶହ-ହଜାରରୁ ହୋଇଛି । ଗୋଟିଏ କନାରେ ପଇସାଟିଏ ଲାଭ ହେଲେ ମିଲ୍‌ରୁ ଲକ୍ଷେ ଦୁଇଲକ୍ଷ ଲାଭ ହୁଏ । ଯାହା ମୋ ନିଜର, ତାହା ମୁଁ ଛାଡ଼ିବି କେମିତି ? ଯାହା ଗଲାଣି ଗଲାଣି, ଜାଣିଥା, ଏଇ ଲୋକମାନଙ୍କୁ ଆଉ ମୁଁ ପଇସାଟିଏ ଦେବାକୁ ରାଜି ନୁହେଁ ।"

ଲକ୍ଷ୍ମୀଚନ୍ଦଙ୍କର ଏହି ଭାବାବେଶର ପ୍ରଭାବ ଜେଦେଇଙ୍କ ଉପରେ ପଡ଼ିବ ବୋଲି ନିଶ୍ଚିତ ଭାବରେ ଜଣାପଡ଼ୁଥିଲା । ସେ କହିଲେ, "ଲକ୍ଷ୍ମୀ, ତୁ ଠିକ୍ ନିଜ ବାପର ଗୁଣ ଆଣିଛୁ; କିନ୍ତୁ ତୁ ମୋତେ ବନ୍ଦ କରିପାରିବୁ ନାହିଁ ।" ଜେଦେଇ ନିଜର ଦୁର୍ବଳ ହାତରେ ସୁନାହାରରେ ଲାଗିଥିବା ଚେନ୍ଦ୍ରେଜେରୀ ଚାବିକୁ କାଢ଼ି ଗଙ୍ଗାପ୍ରସାଦଙ୍କ ଆଡ଼କୁ ବଢ଼ାଇଦେଇ କହିଲେ, "ମୋର ନିଜର ଯାହା ଅଛି ତାକୁ ଦେବାପାଇଁ ମୋର ପୂର୍ଣ୍ଣ ଅଧିକାର ଅଛି । ତୁ ମୋତେ ଏଥିରୁ ବାରଣ କରିପାରିବୁ ନାହିଁ । ନିଅ ଗଙ୍ଗାପ୍ରସାଦ ଏ ଚାବି·········।" କିନ୍ତୁ ମନେ ହେଲା ଲକ୍ଷ୍ମୀଚନ୍ଦ ଏସବୁପାଇଁ ଆଗରୁ ସତର୍କ ହୋଇଥିଲେ । ସେ ମା'ଙ୍କ ହାତରୁ ଚାବି ଝାମ୍ପି ନେଇ କହିଲେ, "ଗଙ୍ଗାପ୍ରସାଦଙ୍କୁ ଘର ଚାବି ଦେଇଲବାଲା, ହାରାମଜାଦୀ !"

ଜେଦେଇଙ୍କ ପ୍ରତି ଏହି ଗାଳି ଶୁଣି ଗଙ୍ଗାପ୍ରସାଦଙ୍କର ବର୍ତ୍ତମାନ ଚେତନା ଜାଗି-ଉଠିଲା । ସେ ଲକ୍ଷ୍ମୀଚନ୍ଦଙ୍କର ହାତ ଧରି କହିଲେ, "ଖୁଡ଼ୀଙ୍କୁ ଗାଳି ଦେଉଛ, ତୁମକୁ ଲାଜ ମାଡ଼ୁନାହିଁ !"

ଏତେବେଳକୁ ଲକ୍ଷ୍ମୀଚନ୍ଦ ନିଜ ଉପରୁ ସମସ୍ତ ଆୟତ୍ତ ହରାଇ ସାରିଥିଲେ, କହିଲେ, "ହଁ, ନିଶ୍ଚୟ ଗାଳି ଦେବି । ଏହି ବଦମାସକୁ ନିଶ୍ଚୟ ଗାଳିଦେବି । ସ୍ୱାର ଗୁଣ କ'ଣ ଆମେ ଜାଣୁନାହିଁ ?"

ଜେଦେଇଙ୍କ ମୁହଁରୁ ଏକ ଚିତ୍କାର ବାହାରି ଆସିଲା, "ହାୟ ଭଗବାନ !" ତାପରେ ସେ ବେହୋସ ହୋଇଗଲେ ।

ବର୍ତ୍ତମାନ ଜ୍ୱାଲାପ୍ରସାଦ ଏକ ପାଗଳପରି ଛିଡ଼ାହୋଇ କହିଲେ, "ଲକ୍ଷ୍ମୀଚନ୍ଦ ! ଏହି ଘରୁ ବାହାରି ଯାଅ; ସଂପୂର୍ଣ୍ଣ ବାହାରି ଯାଅ । ତମର ଯାହା ଧନସଂପତ୍ତି ତମ ପାଖରେ ଅଛି, ତାକୁ କେହି ଛୁଇଁବେ ନାହିଁ । କିନ୍ତୁ ଏହି ବିଗୃହୀକୁ ଶାନ୍ତିରେ ମରିବାକୁ ଦିଅ । ଯା' ଗଙ୍ଗା, ଏ ଘରୁ ତୁ ବାହାରି ଯା । ଆସ ଲକ୍ଷ୍ମୀଚନ୍ଦ ଆସ । ଏହି ଅଭାଗିନୀକୁ ଶାନ୍ତିରେ ମରିବାକୁ ଦିଅ ।" ଜ୍ୱାଲାପ୍ରସାଦ ପାଗଳପରି ପ୍ରଳାପ କରି ଉଠିଲେ ।

ଗଙ୍ଗାପ୍ରସାଦ ମୁହଁକୁ ତଳକୁ କରି ସେ ଘରୁ ବାହାରିଗଲେ । କିନ୍ତୁ ଲକ୍ଷ୍ମୀଚନ୍ଦଙ୍କର ହିଂସା ଖୁବ୍ ଜୋରରେ ଜାଗିଉଠିଲା । ସେ କହିଲେ, "ହଁ ଯାଉଛି । କିନ୍ତୁ ଏତିକି

ମନେରଖିବେ, ଯଦି ଏ ଘରର କୌଣସି ଜିନିଷ ଏପାଖ ସେପାଖ ହୁଏ, ତାହେଲେ ବାପ ପୁଅ ଦୁହିଙ୍କଯାକକୁ ଜେଲରେ ଭର୍ତ୍ତି କରିଦେବି ।'' ଏତିକି କହି ସେ ଘରୁ ଜଲଦି ପାଦ ପକାଇ ଚାଲିଗଲେ ।

ଏସବୁ କଥାବାର୍ତ୍ତା ଶୁଣି ଘରର ଚାକରବାକର ସମସ୍ତେ କେଦେଇଙ୍କ ବଖରାର ବାହାରେ ଜମା ହୋଇ ଯାଇଥିଲେ, ମୃତ୍ୟୁର ଏହି ଘର ଚାରିପାଖେ ହିଂସାର ବାତାବରଣ ଖେଳିଯାଇଥିଲା । ଜ୍ୱାଲପ୍ରସାଦ ମର୍ମାହତ ହେଲପରି ନିଜ ଚୌକିରେ ବସିରହିଥିଲେ । ସେ ଜୋରରେ ଡାକ ପକାଇଲେ, ''ଭାଉଜ, ଆଖି ଖୋଲ, ସେମାନେ ଗଲେଣି ।''

ଆସ୍ତେ ଆସ୍ତେ କେଦେଇଙ୍କ ମୁହଁରୁ ସେହି ଚିକ୍ରି ଭାବ ଅସ୍ପଷ୍ଟ ହୋଇଗଲା । ସେ ଯେମିତି ସେମିତି ବେହୋସ ହୋଇ ରହିଲେ ।

ସନ୍ଧ୍ୟା ଛଅ ବେଳକୁ ଡାକ୍ତର ଆସିଲେ ଓ କେଦେଇଙ୍କ ଅବସ୍ଥା ପରୀକ୍ଷା କରି କହିଲେ, ''ଅବସ୍ଥା ବହୁତ ଖରାପ ହୋଇଯାଇଛି । ଏହା ବୋଧହୁଏ ତାଙ୍କର ଶେଷ ବେହୋସ । ବର୍ତ୍ତମାନ ଔଷଧ ବନ୍ଦ କରି ଦିଅନ୍ତୁ । କେବଳ ଗଙ୍ଗାଜଳ ଦେଇ ରଖନ୍ତୁ ।''

ଜ୍ୱାଲପ୍ରସାଦ ଉତ୍ତର ଦେଲେ, ''ଡାକ୍ତର ସାହେବ, କେବଳ ଗଙ୍ଗାଜଳ ପିଇ ତ ସେ ତିନଦିନ ହେଲା ଅଛନ୍ତି । ଆପଣ ତ ସେଦିନୁ ଔଷଧ ବନ୍ଦ କରି ଦେଇଛନ୍ତି ।''

''ଆରେ ହଁ, ମୁଁ ତ ଭୁଲିଯାଇଥିଲି । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ସେ ଆଜି ପର୍ଯ୍ୟନ୍ତ କେମିତି ବଞ୍ଚିଛନ୍ତି !''

ବର୍ତ୍ତମାନ ଲକ୍ଷ୍ମୀଚନ୍ଦ କହିଲେ, ''ଡାକ୍ତର ସା'ହେବ ! ମୁଁ ୪୦'ରେ ତିନଦିନ ହେଲା ପଡ଼ିରହିଛି । ମୋର ବହୁତ କାମ ନେଣେ କ୍ଷତି ହେଉଛି । ସ୍ୱାଙ୍କର ଏହି ଅବସ୍ଥା ଆଉ କେତେ ସମୟ ରହିବ ?''

ଡାକ୍ତର ଟିକିଏ ବଗିଡ଼ି ଯାଇ କର୍କଶ ସ୍ୱରରେ କହିଲେ, ''ମୋର ତ ମନେ ହେଉଛି ତମେ ତାଙ୍କର କାଲି ଅନ୍ତ୍ୟେଷ୍ଟି କ୍ରିୟା ସାରି କାନପୁର ଯାଇପାରିବ ।'' ଡାକ୍ତରଙ୍କର ଏହି କର୍କଶ କଥା ଶୁଣି ସେ ଏକ କଷ୍ଟ ହସ ହସି କହିଲେ, ''ମୋର କାନପୁର ଯିବା କଥା ନୁହେଁ ଡାକ୍ତର ସାହେବ ! ମୋତେ ତ ଏଠାରେ ସ୍ୱାଙ୍କର ସବୁକାମ କରିବାକୁ ହେବ । ଏସବୁ କାମରେ ଅନ୍ତତଃ ମୋତେ ପନ୍ଦର ଦିନ ଲାଗିବ । ଅସଲ ହେଉଛି ଆଉ ଲୋକଙ୍କର ଯିବା କଥା । ମୁଁ ସେହିମାନଙ୍କ ପାଇଁ ଚିନ୍ତିତ ଥିଲି । ଆଚ୍ଛା, ଠିକ୍ ଅଛି ।''

ଡାକ୍ତରଙ୍କୁ ବାହାରେ ଛାଡ଼ି ଦେବାପାଇଁ ଲକ୍ଷ୍ମୀଚନ୍ଦ ଓ ଜ୍ୱାଲପ୍ରସାଦ ଉଭୟେ ଆସିଲେ । ଡାକ୍ତର ଯିବାପରେ ଲକ୍ଷ୍ମୀଚନ୍ଦ ଜ୍ୱାଲପ୍ରସାଦଙ୍କୁ କହିଲେ, ''କାକା, ଯଦି ବିରକ୍ତିରେ ମୁଁ କିଛି କହିଦେଇଥାଏ ତାହାହେଲେ ଆପଣ ଭୁଲ ବୁଝିବେ ନାହିଁ । କିନ୍ତୁ ଆପଣ ଏତିକି ବୁଝିବେ ଯେ ନିଜ ଆଗରେ ପରଷା ହୋଇଥିବା ଥାଳିକୁ ଅନ୍ୟ ଲୋକ ନେଇଯିବାପାଇଁ

କିଏ ଛାଡ଼ି ପାରିବ ? ହଁ ଆଉ ଗୋଟିଏ କଥା, ମୁଁ ମୋର ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ତାର କରି ଦେଇଛି । ସେ ମୋର ସ୍ତ୍ରୀ ଓ ପିଲାପିଲାଙ୍କୁ ଆଣି ଦିନେ ଦୁଇଦିନରେ ଆସି ପହଞ୍ଚିବେ । ସେଥିରେ ଆପଣମାନଙ୍କର ନିଶ୍ଚୟ ଟିକିଏ ଅସୁବିଧା ହେବ; କିନ୍ତୁ କ'ଣ କରିବ ? ଯାହା ହେଲେ ମଧ୍ୟ ଆମକୁ ତ ଏଠାରେ ମାସେ ପନ୍ଦର ଦିନ ରହିବାକୁ ହେବ ।"

ଜ୍ୱାଲାପ୍ରସାଦ ଆକାଶକୁ ଚାହିଁ କହିଲେ, "ଭଲ କଲ, ପିଲାପିଲାଙ୍କୁ ସବୁ ଡକାଇ ଆଣିଲ । ମୋର ମନେ ହେଉଛି ଭାଉଜ ଆଜି ରାତିରେ ଆଉ ବଞ୍ଚିବେ ନାହିଁ । କାଲି ସକାଳକୁ ସବୁକାମ ଶେଷ ହୋଇ ଯାଇଥିବ ।" ଏତିକି କହି ଜ୍ୱାଲାପ୍ରସାଦ ଜେଦେଇଙ୍କ ବଖରାକୁ ଚାଲିଗଲେ ।

ଦୁଇପ୍ରହର ସମୟରେ ଯେଉଁସବୁ ଦୁଃଖଦ ଘଟଣା ଘଟିଗଲା, ତା'ପରେ ଗଙ୍ଗାପ୍ରସାଦ ସହର ଭିତରକୁ ଚାଲି ଯାଇଥିଲେ । ସେ ପ୍ରାୟ ରାତି ନଅଟା ବେଳକୁ ଫେରିଲେ । ଫେରିବାମାତ୍ରେ ସେ ଜେଦେଇଙ୍କ ବଖରାକୁ ଯାଇ ଦେଖିଲେ ସେ ପୂର୍ବପରି ଅଚେତ ହୋଇ ପଡ଼ିଛନ୍ତି ଏବଂ ଜ୍ୱାଲାପ୍ରସାଦ ତାଙ୍କ ମୁଣ୍ଡ ପାଖ ଚୌକିରେ ଆଖିବୁଜି ଏକ ମୂର୍ତ୍ତିପରି ବସିରହିଛନ୍ତି । ଜ୍ୱାଲାପ୍ରସାଦ ଗଙ୍ଗାପ୍ରସାଦଙ୍କୁ କହିଲେ, "ବସ ଗଙ୍ଗା, କେଡ଼େ ଭୟଙ୍କର ଓ କେତେ ଲମ୍ବା ଏ ରାତି !"

ଗଙ୍ଗାପ୍ରସାଦ କହିଲେ, "ବାପା, ଆପଣ ତିନି ରାତି ଚେଇଁଲେଣି । ଟିକିଏ ଶୋଇଯାନ୍ତୁ । ମୁଁ ସେ ପର୍ଯ୍ୟନ୍ତ ବସିରହୁଛି ।"

ଜ୍ୱାଲାପ୍ରସାଦ ଟିକିଏ ହସି କହିଲେ, "ଆଉ ଗୋଟାଏ ରାତି । ବାସ୍, ଏ ଶେଷ ରାତି । ଏଥିରେ ବି ମୁଁ ଚେଇଁ ରହିବି । ବର୍ତ୍ତମାନ କେତେ ବାଜିଛି ।"

ଗଙ୍ଗାପ୍ରସାଦ ନିଜର ଘଣ୍ଟା ଦେଖି କହିଲେ, "ନଅ ବାଜି ଦଶମିନିଟ ହୋଇଛି ।"

"ଯା' ଖାଇଦେବୁ । ଆଉ ଦେଖ, ଲକ୍ଷ୍ମୀଚନ୍ଦଙ୍କ କଥାକୁ କିଛି କାନଦେବୁ ନାହିଁ । ପ୍ରତ୍ୟେକ ମନୁଷ୍ୟ ନିଜର ପ୍ରକୃତି ଅନୁସାରେ କାମ କରେ । ଏହି ଲକ୍ଷ୍ମୀଚନ୍ଦ ଓ ତାର ପିତା ପ୍ରଭୁଦୟାଳଙ୍କ ଭିତରେ କିଛି ତଫାତ୍ ନାହିଁ । ଦୁହେଁ ବିଲ୍‌କୁଲ୍ ସମାନ ।"

ସତେ ଯେମିତି ଜେଦେଇ ଏ କଥା ଶୁଣୁଥିଲେ । ସେ ଆଖି ଫିଟାଇ କହିଲେ, "ଠିକ୍ କହୁଛ ଦିଅର ! ଏ ବାପ-ପୁଅଙ୍କ ଭିତରେ କିଛି ତଫାତ୍ ନାହିଁ । ଭାବିଥିଲି ମୋ' ପେଟରୁ ଜନ୍ମ ହୋଇଛି, କିଛି ଅଲଗା ହୋଇଥିବ; କିନ୍ତୁ ନାହିଁ, ବିଲକୁଲ୍ ସମାନ ।"

ବର୍ତ୍ତମାନ ଜେଦେଇଙ୍କ ପାଟି ଖୁବ୍ ଜୋରରେ ଫିଟୁଥିଲା ଓ ମୁହଁର ସମସ୍ତ ବିଭଙ୍ଗ ଉଭେଇ ଯାଇଥିଲା । ଜ୍ୱାଲାପ୍ରସାଦ ପଚାରିଲେ, "ଭାଉଜ, ଦେହ କେମିତି ଲାଗୁଛି ?"

"ଖୁବ୍ ଭଲ ଲାଗୁଛି । ମନେ ହେଉଛି ରୋଗ ପୁରା ଭଲ ହୋଇଗଲାଣି । ଆରେ ସୁଅ

ଗଙ୍ଗା, ତୁ ବହୁତ ଡେରିରେ ଆସିଲୁ । ଭଗବଣ୍ଟା କଥା ନା ! ଯା' ତୁ ଖାଇ ଆସିବୁ, ମୋର ଡାକ୍ତରଙ୍କ ସଙ୍ଗେ କେତେକ କଥାବାର୍ତ୍ତା ଅଛି ।"

"ଆଚ୍ଛା ହଉ, ମୁଁ ଖାଇକରି ଆସୁଛି" ଏତିକି କହି ଗଙ୍ଗାପ୍ରସାଦ ବାହାରକୁ ଚାଲିଗଲେ ।

ଜେଦେଇ ହସି ଦେଇ କହିଲେ, "ଖାଇକରି ଆସିବ ବୋଲି କହୁଛି, ସତେ ଯେମିତି ମୁଁ ସେ ପର୍ଯ୍ୟନ୍ତ ଅପେକ୍ଷା କରି ବସିଥିବ !"

ଟିକିଏ ରହିଯାଇ ଜେଦେଇ ପୁଣି କହିଲେ, "ଭାରି ଶୋଷ ଲାଗୁଛି, ଡାକ୍ତର ! କିଛି ଗଙ୍ଗାଜଳ ମୋତେ ପିଆଇ ଦିଅ ।"

ଜ୍ୱାଳାପ୍ରସାଦ ରୂପାପାତ୍ରରେ ତୁଳସୀପତ୍ର ପକାଇ ଗଙ୍ଗାଜଳ ନେଇ ଆସିଲେ ।

"ଡାକ୍ତର ସାହେବ ! ମୋତେ ଟିକିଏ ଧରି ବସେଇ ଦିଅ । ଶେଷ ଥରଟା ମୁଁ ଶୋଇକରି ଗଙ୍ଗାଜଳ ପିଇବି ନାହିଁ ।"

ଜ୍ୱାଳାପ୍ରସାଦ ଜେଦେଇଙ୍କୁ ଧରି ବସେଇଦେଲେ । ଜେଦେଇ ଢୋକେ ଗଙ୍ଗାଜଳ ପିଇଲାମାତ୍ରେ ଗୋଟାଏ ହିକା ଆସିଲା । ସେ କହିଲେ, "ଡାକ୍ତର ସାହେବ ! ମୋତେ ବର୍ତ୍ତମାନ ଭୂଇଁରେ ଶୁଆଇ ଦିଅନ୍ତୁ; ମୋର ଯିବା ସମୟ ଆସିଗଲା ।"

ଜ୍ୱାଳାପ୍ରସାଦ ଜେଦେଇଙ୍କୁ ଯତ୍ନରେ ଆଉଜାଇ ଉଠାଇ ନେବାମାତ୍ରେ ତାଙ୍କର ଗୋଟାଏ ବଡ଼ ହିକା ଆସିଲା ଓ ସେହି ମୁହୂର୍ତ୍ତରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

## ପାଞ୍ଚ

ଜ୍ୱାଳାପ୍ରସାଦ ଜ୍ଞାନପ୍ରକାଶଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କିଓ, ତମେ ?"

"ହଁ ଭାଇ, ମୁଁ । ରବିବାର ଦିନ ବମ୍ବେଇରେ ଜାହାଜରୁ ଓହ୍ଲାଇ ସୋମବାର ଦିନ ଟ୍ରେନରେ ଚଢ଼ି ଏଇ ସିଧା ଆସି ଆଲ୍ଲାହାବାଦରେ ପହଞ୍ଚୁଛି ।"

"ତମେ ମୋତେ ଆଗରୁ ତାର କରି ଦେଇଥିଲେ ମୁଁ ଷ୍ଟେସନ ଯାଇଥାନ୍ତି ।" ତା'ପରେ ଜ୍ୱାଳାପ୍ରସାଦ ତାଙ୍କ ଚାକରକୁ ଡାକି କହିଲେ, "ଆରେ ଗିରିଧାରୀ, ଜ୍ଞାନଭାଇଙ୍କ ଜିନିଷପତ୍ର ଗାଡ଼ିରୁ ନେଇ ଆସ, ଆଉ ଘରେ କହିଦିଅ ଜ୍ଞାନପ୍ରକାଶ ଆସିଛନ୍ତି ।"

ଜ୍ଞାନପ୍ରକାଶ ମୁନ୍‌ସି ରାମସହାୟଙ୍କ ସାନପୁଅ । ସେ ବାରିଷ୍ଟରୀ ପଢ଼ିବା ପାଇଁ ୧୯୧୨ରେ ବିଲାତ ଯାଇଥିଲେ । ସେ ବିଲାତରେ ଥିବାବେଳେ ତାଙ୍କ ବାପା ମରିଗଲେ ।

ସେ ବିଲାତ ଯିବା ପୂର୍ବରୁ ମା' ବି ମରିଯାଇଥିଲେ । ତାଙ୍କ ବଡ଼ଭାଇ ସତ୍ୟପ୍ରକାଶ ରାଜ-ପୁରରେ ଜମିଦାରୀ ଦେଖାଶୁଣା କରୁଥିଲେ । ଦୁଇଭାଇଙ୍କର ସ୍ୱଭାବ ଭିନ୍ନ ହୋଇଥିବାରୁ ଜ୍ଞାନପ୍ରକାଶଙ୍କର ଘରେ ଆଦୌ ମନ ଲାଗୁ ନ ଥିଲା । ତେଣୁ ସେ ଘରକୁ ନ ଯାଇ ସିଧା ଆଲାହାବାଦ ଆସିଥିଲେ । ଏଠି ରହି ସେ ଓକିଲାତି କରିବା ପାଇଁ ଚାହୁଁଥିଲେ ।

ଜଳଖିଆ ପରେ ଜ୍ୱାଲାପ୍ରସାଦ ଓ ଜ୍ଞାନପ୍ରକାଶ ବୈଠକଖାନାରେ ବସିଲେ । ଜ୍ୱାଲାପ୍ରସାଦ ପଚାରିଲେ, "ରାଜପୁର ଯିବ ନାହିଁ କି ? ତମ ଆସିବା ଖବର ସତ୍ୟପ୍ରକାଶଙ୍କୁ ଦେଇଥିବ ନିଶ୍ଚୟ ।"

ଜ୍ଞାନପ୍ରକାଶ ଟିକିଏ ହସିଦେଇ କହିଲେ, "ହଁ, ବିଲାତ ଛାଡ଼ିବା ପୂର୍ବରୁ ଭାଇଙ୍କୁ ଲେଖିଥିଲି ସେଠିକି ଆଉ ଟଙ୍କା ପଠାଇବେ ନାହିଁ; ତେଣୁ ବର୍ତ୍ତମାନ ମୋର ରାଜପୁର ଯିବାର ବିଚାର ନାହିଁ । ବର୍ତ୍ତମାନ ଆଲାହାବାଦରେ ରହିବା କଥା । ଜାନୁଆରୀ ପହିଲା-ଠାରୁ ଓକିଲାତି ଆରମ୍ଭ କରିବାକୁ ହେବ ଓ ସେଥିପାଇଁ ହାଇକୋର୍ଟରେ ନାଁ ରେଜେଷ୍ଟ୍ରି କରିବାକୁ ହେବ । ବର୍ତ୍ତମାନ ଘରକୁ ଗଲେ ନାନା ଗଣ୍ଡଗୋଳ ହେବ । ଲୋକେ କହିବେ, ବିଲାତରୁ ଫେରିଛ, ପ୍ରାୟଶ୍ଚିତ୍ତ କର, ଯଜ୍ଞ କର, ତା' କର, ଏତେ ଜଞ୍ଜାଳରେ କିଏ ପଡ଼ୁଛି ?"

ଜ୍ୱାଲାପ୍ରସାଦ ଫେଁ କରି ହସିଦେଇ କହିଲେ, "ହଁ ଠିକ୍ କଥା, ଗାଁଗଣ୍ଡାରେ ଏସବୁ କୁସଂସ୍କାର ଢେର୍ ବେଶୀ । ମୋତେ ତ ଆଶ୍ଚର୍ଯ୍ୟ ଲାଗେ ଏ ବିଷୟରେ ସତ୍ୟପ୍ରକାଶ ବଡ଼ ବଡ଼ ବ୍ରାହ୍ମଣଙ୍କଠାରୁ ଅଧିକ ରକ୍ଷଣଶୀଳ ।" କିଛି କାଳ ଚୁପ୍‌ରହି ସେ ପୁଣି କହିଲେ, "କିନ୍ତୁ ଇଂଲଣ୍ଡରେ ତମେ ବେଶୀ ଦିନ ରହିଗଲ । ମାମୁ ଭାରି ବ୍ୟସ୍ତ ହେଉଥିଲେ ।"

ଟିକିଏ ଗମ୍ଭୀର ହୋଇ ଯାଇ ଜ୍ଞାନପ୍ରକାଶ କହିଲେ, "ଆପଣ ନିଜେ କହନ୍ତୁ, ମୁଁ ଆଉ କ'ଣ କରିଥାନ୍ତି ? ମୁଁ ବିଲାତରେ ପହଞ୍ଚିଲା ମାତ୍ରେ ଯୁଦ୍ଧ ଆରମ୍ଭ ହୋଇଗଲା । ଯୁଦ୍ଧ ସମୟରେ କେମିତି ଫେରିଥାନ୍ତି । ପୁଣି ଯୁଦ୍ଧ ଶେଷବେଳକୁ ମୁଁ ଆମେରିକାରେ ଥିଲି । ସେଠୁ ଲଣ୍ଡନ ଫେରିଲା ବେଳକୁ ଭାରତରେ ରାଜନୈତିକ ଗଣ୍ଡଗୋଳ ଆରମ୍ଭ ହୋଇ ଯାଇଥିଲା ଓ ଭିନ୍ନ ଭିନ୍ନ ରାଜନୈତିକ ପ୍ରତିନିଧିଦଳ ଇଂଲଣ୍ଡରେ ଯାଇ ପହଞ୍ଚୁଥିଲେ । ତେଣୁ ଫେରିବାକୁ ଆଉ ମନ ହେଲା ନାହିଁ ।"

"ଏହି ରାଜନୈତିକ ଗଣ୍ଡଗୋଳ ତ ଆହୁରି ବଢ଼ିବ । ଛାଡ଼, ତମେ ଆସିଗଲ ବଡ଼ ଭାଗ୍ୟର କଥା । ସତ୍ୟପ୍ରକାଶ ଭାବୁଥିଲେ, ତମେ ଖ୍ରୀଷ୍ଟିଆନ ହୋଇ କୌଣସି ମେମ୍‌କୁ ବାହା ହୋଇ ସେଠି ରହିଛ । ତମ ବିଷୟରେ ଏମିତି କେତେକ ଉଡ଼ା ଖବର ଆସିଥିଲା, ମୁଁ ବି ସେକଥା ଶୁଣିଥିଲି ।"

"ହଁ, ସେତମିତି ଉଡ଼ା ଖବର ତ ଆସେ । କିନ୍ତୁ ମୁଁ କେବେ ଖ୍ରୀଷ୍ଟିଆନ ହୋଇ-

ନାହିଁ । ସେଠିକାର ପାଦ୍ରୀମାନେ ଲୋକଙ୍କୁ ଖ୍ରୀଷ୍ଟିଆନ କରିବା ପାଇଁ ଏତେ ଆଗ୍ରହୀ ନୁହନ୍ତି । ସେଥିରୁ ପାଇଁ କେବଳ ଆମର ଦେଶରେ ହୁଏ । ହଁ, ଆଉ ବାହାଘର କଥା ଯାହା କହୁଥିଲି, ବାହାଘର ବହୁଦୂର ଆଗେଇ ଯାଇଥିଲା, ଶେଷରେ ଭାଙ୍ଗିଗଲା । ଯେଉଁ ଝିଅ ସଙ୍ଗେ ବାହାଘର କଥା ଉଠିଥିଲା ତାର ବର ଜର୍ମାନୀରେ ଯୁଦ୍ଧରେ ମରିଗଲା ବୋଲି ଘୋଷଣା ପ୍ରଥମେ କରାଗଲା । କିନ୍ତୁ ସେ ପ୍ରକୃତରେ ମରି ନଥିଲା, ଗିରଫ ହୋଇ-ରହିଥିଲା । ୧୯୧୯ ଫେବୃଆରୀ ଆଠ ତାରିଖରେ ଆମ ବାହାଘରର ଠିକ୍ ସପ୍ତାହକ ପୂର୍ବରୁ ସେ ଆସି ପହଞ୍ଚିବାରୁ ଆମ ବାହାଘର କଥା ଶେଷ ହୋଇଗଲା ।"

ଜ୍ୱାଲାପ୍ରସାଦ ସନ୍ତୋଷରେ ଏକ ନିଶ୍ୱାସ ପକାଇ କହିଲେ, "କିନ୍ତୁ ଯା ହେଉ ଭଲ ହେଲା । ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ । ହଉ, ଆସିଲଣି ତ, ଏଥର ଓକିଲାତି ଆରମ୍ଭ କର । ତମ ବାହାଘର ପ୍ରସ୍ତାବ ଅନେକ ଜାଗାରୁ ଆସିଲାଣି । ତମେ ତ ବିଲାତ-ଫେରନ୍ତା ଲୋକ । ତମେ ନିଜେ ନିଜେ ତମର କନ୍ୟା ଠିକ୍ କରିନେବ । ବନାରସର ରାୟବାହାଦୁର କନ୍ହେଇଲାଲ୍ ଆଜି ସକାଳେ ତମର କଥା ବୁଝାସୁଝା କରି ଯାଇଛନ୍ତି । ଝିଅ ସୁନ୍ଦର, ମାଟ୍ରିକ ପଢ଼ୁଛି । ମୁଁ ବି ତାଙ୍କୁ ଦେଖିଛି । ତାଙ୍କର ତ ପରଦା ଚଳେ ନାହିଁ । ମୁଁ ତାଙ୍କୁ ଆଜି ଖବର ଦେଇଦେବି; ତାଙ୍କ ଝିଅ କପାଳକୁ ତମେ ଆସି-ଗଲଣି ।"

"କିନ୍ତୁ ମୁଁ କାଲି ଅମୃତସର ଯାଉଛି । ଆଜି ୨୨; ୨୬ ଡିସେମ୍ବରରେ ସେଠି କଂଗ୍ରେସ ବସୁଛି ।"

ଜ୍ୱାଲାପ୍ରସାଦ ପଚାରିଲେ, "ତମର କ'ଣ କଂଗ୍ରେସକୁ ଯିବା ନିତାନ୍ତ ଦରକାର ?"

"ସେମିତି ଭାବିଲେ ତ ଦୁନିଆରେ କିଛି ଦରକାର ନାହିଁ । କିନ୍ତୁ ଆମ ଦେଶରେ ଯେଉଁ ନବଜାଗରଣ ଆସିଛି ମୁଁ ନିଜ ଆଖିରେ ତାହା ଦେଖିବାକୁ ଚାହେଁ । ଯେଉଁ ଜାଲିଆନାବାଗରେ ହତ୍ୟାକାଣ୍ଡ ଘଟିଥିଲା, ସେଇଠି କଂଗ୍ରେସ ବସୁଛି । ମୁଁ ତ କହୁଛି, ଆପଣ ବି ମୋ ସାଙ୍ଗରେ ଚାଲନ୍ତୁ ।"

ଜ୍ୱାଲାପ୍ରସାଦ ଜିଭ କାମୁଡ଼ି ପକାଇ କହିଲେ, "ନାହିଁ ଭାଇ, ମୋ' ପେନସନ ଗଣ୍ଡାକ ବୁଡ଼ାଅ ନାହିଁ । ଏମିତି କେତେ ରାଜନୈତିକ ଜାଗରଣ ଆସିବ, ଯିବ । କିନ୍ତୁ ବ୍ରିଟିଶ ସରକାର ଯେମିତି ଅଛି, ସେମିତି ରହିବ । ମୁଁ ମୋ ପେନସନ ଗଣ୍ଡାକ ବୁଡ଼ାଇବି କାହିଁକି ?"

ଏତିକିବେଳକୁ କାନ୍ଥଘଣ୍ଟାରେ ଦଶ ବାଜିଲା । ଜ୍ୱାଲାପ୍ରସାଦ କହିଲେ, "ଆରେ, ଚାଲ ଯିବା, ଖାଇବା । ରାତିରେ ତମେ ଆରାମରେ ଶୋଇବା ଦରକାର । ଆଜି ବାଇଶ ତାରିଖ, କାଲି ତେଇଶି; ତମେ ଯଦି ଚବିଶରେ ଏଠୁ ଯାଅ, ପଚିଶ ସକାଳେ

ଅମୃତସରରେ ପହଞ୍ଚିବ । କଂଗ୍ରେସ ତ ଛବଶରେ ହେଉଛି । କାଲି ଯିବା କିଛି ଦରକାର ନାହିଁ । କାଲି ଦିନଯାକ ତମେ ବିଶ୍ରାମ ନିଅ ।''

ଜ୍ୱାଲାପ୍ରସାଦ ଦୁଇବର୍ଷ ପୂର୍ବରୁ ପେନ୍‌ସନ୍ ପାଇ ଜର୍ଜ ଟାଉନରେ ନିଜର ଘର କରି ରହିଯାଇଥିଲେ ।

ତହିଁ ଆରଦିନ ଜ୍ଞାନପ୍ରକାଶ ଉଠିଲାବେଳକୁ ପ୍ରାୟ ନଅଟା ବାଜିଯାଇଥିଲା । ବାହାରେ ଏତେ କୁହୁଡ଼ି ହୋଇଥିଲା ଯେ ଅନ୍ଧାର ପରି ଲାଗୁଥିଲା । ଜ୍ୱାଲାପ୍ରସାଦ ଶୀଘ୍ର ଶୀଘ୍ର କାମ ସାରି ଲୁଗାପଟା ପିନ୍ଧି ବାହାରିଲେ । ସେତେବେଳେ ଖୁବ୍ ଥଣ୍ଡା ପବନ ବହୁଥିଲା । ଜ୍ଞାନ-ପ୍ରକାଶଙ୍କ ମନରେ ଏକପ୍ରକାର ଉତ୍ସାହ ଓ ଫୂର୍ତ୍ତି ପୂରିରହିଥିଲା । ଜ୍ୱାଲାପ୍ରସାଦ ଲୁଗାପଟା ପିନ୍ଧି ବାରଣ୍ଡାରେ ପ୍ରସ୍ତୁତ ହୋଇ ବସିଥିଲେ ଓ ଘୋଡ଼ାଗାଡ଼ି ପୋର୍ଟିକୋରେ ଠିଆହୋଇ ରହିଥିଲା । ଜ୍ଞାନପ୍ରକାଶଙ୍କୁ ଦେଖି ସେ କହିଲେ, ''ଆଜି ତ ବହୁତ ଶୋଇ ପଡ଼ିଲ ! ଯାଅ ଜଳଖିଆ କରିନିଅ । ମୁଁ ଷ୍ଟେସନ ଯାଉଛି । ବର୍ତ୍ତମାନ ଗଙ୍ଗାଠାରୁ ଟେଲିଗ୍ରାମ୍ ପାଇଲି, ସେ ଆଲାହାବାଦ ଆସୁଛି । ତାକୁ ଆଣିବାପାଇଁ ମୁଁ ଷ୍ଟେସନ ଯାଉଛି । ବଡ଼ଦିନ ଛୁଟୀ ନା; ସେଥିପାଇଁ ସେ ଆସୁଛି । ତା'ର ଗାଡ଼ି ଏଗାରଟାବେଳେ ପହଞ୍ଚିବ ।''

ଜ୍ଞାନପ୍ରକାଶ ବସୁ ବସୁ କହିଲେ, ''ହଉ, ଖୁବ୍ ଭଲ ହେଲା । ଅମୃତସର ଯିବାପୂର୍ବରୁ ତା' ସାଙ୍ଗରେ ଦେଖା ହୋଇଯିବ । ଆଜିକାଲି ସେ କେଉଁଠି ଅଛି ? ତା'ର ଖବର-ଅନ୍ତର କ'ଣ ?''

''ସେ ଜୌନପୁରରେ ଅଛି, ସେଇଠାରୁ ଆସୁଛି । ତା'ସାଙ୍ଗରେ ଦେଖାହେଲେ ସବୁକଥା ବୁଝିନେବ ।''

''ସେ ଏକା ଆସୁଛି ନା ତା'ଘରଲୋକେ ତା' ସାଙ୍ଗରେ ଆସୁଛନ୍ତି ?''

''ଆରେ ମୁଁ କାଲି କହିବାକୁ ଭୁଲିଗଲି, ତା ପିଲାପିଲି ଏଇଠି ଅଛନ୍ତି । ତା' ପୁଅ ଏଇଠି ପଢ଼ୁଛି । ବୋହୂ ବି ମାସେ ହେଲା ଏଇଠି ଅଛନ୍ତି । ବୋହୂ ତ ସେ ନୁହେଁ, ସାକ୍ଷାତ୍ ଲକ୍ଷ୍ମୀ ।''

ଜ୍ଞାନପ୍ରକାଶ ହସି ଦେଇ କହିଲେ, ''ଚାଲ, ତମେ ଏକା କାହିଁକି ଷ୍ଟେସନ ଯିବ, ମୁଁ ବି ତମ ସାଙ୍ଗରେ ଯିବି । ସେଇଠାରୁ ମୁଁ ସହର ଆଡ଼କୁ ଚାଲିଯିବି ।''

ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କଠାରୁ ପ୍ରାୟ ତିନିବର୍ଷ ବଡ଼; କିନ୍ତୁ ସେମାନଙ୍କ ଭିତରେ ଏକପ୍ରକାର ଘନିଷ୍ଠତା ଥିଲା । ଜ୍ଞାନପ୍ରକାଶ ଆଲାହାବାଦ ସେଣ୍ଟ୍ରାଲ କଲେଜରୁ ବି. ଏ. ଓ ବି. ଏଲ. ପାସ୍ କରିଥିଲେ । ଗଙ୍ଗାପ୍ରସାଦଙ୍କ ସହିତ ସେ ବହୁତ ବୁଲାବୁଲି କରିଥିଲେ । ଜ୍ଞାନପ୍ରକାଶଙ୍କୁ ଦେଖିଲାମାତ୍ରେ ଗଙ୍ଗାପ୍ରସାଦଙ୍କ ମୁହଁ ପ୍ରସନ୍ନ ହୋଇ ଉଠିଲା । ସେ ବାପାଙ୍କର ପାଦ ଛୁଇଁ ନମସ୍କାର କରିବା ପରେ ଜ୍ଞାନପ୍ରକାଶଙ୍କୁ କୁଣ୍ଢାଇ ପକାଇ କହିଲେ,

"ଭଲ ହେଲା ତମ ସଙ୍ଗରେ ଦେଖା ହେଲା । କ'ଣ ସବୁ ଖବର କୁହ ? ବିଲାତରେ ଖୁବ୍ ମଜାରେ ଥିଲ ଜଣା ପଡ଼ୁଛି; କାରଣ ତୁମେ ଆମମାନଙ୍କୁ ସବୁ ଭୁଲି ଯାଇଥିଲ । କ'ଣ ମେମ୍ ସାହେବଙ୍କୁ ସଙ୍ଗରେ ଆଣିଛ ନା ନାହିଁ ?"

ଜ୍ଞାନପ୍ରକାଶ ମୁହଁରେ ହାତ ଦେଇ କହିଲେ, "ସବୁ ପ୍ରଶ୍ନ କ'ଣ ଏକାବେଳେ ପଚାରିବୁ ? ଘରକୁ ଚାଲ, ଏକୁଟିଆ ସବୁ କହିବି । ମାତ୍ର କାଲି ରାତିରେ ମୁଁ ଫେରିଛି । ତମେ ସମସ୍ତେ ଆଗରେ ଚାଲ । ମୁଁ ଘଣ୍ଟାଏ ଦେଢ଼ଘଣ୍ଟା ଭିତରେ ଫେରିଯାଉଛି । ଖାଇସାରି ବୁଲିବାକୁ ଯିବା, ତୁ ମୋ କଥା ଶୁଣିବୁ, ଆଉ ମୁଁ ବି ତୋ କଥା ଶୁଣିବି ।"

ଜ୍ଞାନପ୍ରକାଶ ପ୍ରାୟ ଗୋଟାଏ ବେଳକୁ ଘରକୁ ଫେରିଲେ । ଜ୍ୱାଲାପ୍ରସାଦ ଓ ଗଙ୍ଗାପ୍ରସାଦ ତାଙ୍କୁ ଅପେକ୍ଷା କରି ରହିଥିଲେ । ଖାଇପିଇ ସାରି ଦୁଇ ବନ୍ଧୁ ଚାଲି ଚାଲି ବୁଲିବା ପାଇଁ ବାହାରି ପଡ଼ିଲେ । ଗଭର୍ଣ୍ଣମେଣ୍ଟ ହାଉସ ପାର ହୋଇ ଆଲଫ୍ରେଡ଼୍ ପାର୍କରେ ପଶିଲାବେଳେ ଜ୍ଞାନପ୍ରକାଶ ପଚାରିଲେ, "ହଁ ଗଙ୍ଗା, କୁଆଡ଼େ ଯିବା କହ ? ତୁ କେତେ ଦିନ ପାଇଁ ଏଠାକୁ ଆସିଛୁ ?"

"ଦୁଇ ତାରିଖରେ କଚେରି ଖୋଲିବ, ସେଦିନ ଦୁଇପ୍ରହର ବେଳକୁ ଜୌନପୁରରେ ପହଞ୍ଚିଗଲେ ହେଲା । ସେ ପର୍ଯ୍ୟନ୍ତ ମୋର କିଛି କାମ ନାହିଁ; ଅବଶ୍ୟ ଛୁଟିରେ ବି ମୁଁ ଜିଲ୍ଲା ଛାଡ଼ି ଯାଇ ପାରିବି ନାହିଁ । ତେବେ କଲେକ୍ଟରଙ୍କର ମୋ ପ୍ରତି ଖୁବ୍ ଦୟା, ସେ ମୋତେ ଏକପ୍ରକାର ଛୁଟି ଦେଇଛନ୍ତି । ଏବେ ତମ ପ୍ରୋଗ୍ରାମ କଣ ?"

"ମୋର ପ୍ରୋଗ୍ରାମ ତ ସବୁ ସାଦାସିଧା, ଆଜି ସନ୍ଧ୍ୟା ଭିତରେ ମୋତେ ଗୋଟାଏ ଭଡ଼ାଘର ଠିକ୍ କରିନେବାକୁ ହେବ । ଏହି ବର୍ତ୍ତମାନ କେତେଟା ବଙ୍ଗଳା ଦେଖି ଫେରି ଆସୁଛି । କାଲି ସକାଳ ଗାଡ଼ିରେ ମୋତେ ଅମୃତସର ଯିବାକୁ ହେବ । ସେଠାରେ କଂଗ୍ରେସର ସଭା ହେବ । ମୁଁ କଂଗ୍ରେସ ଦେଖିବାକୁ ଚାହେଁ ।"

ଗଙ୍ଗାପ୍ରସାଦ ଟିକିଏ ଗମ୍ଭୀର ହୋଇ କହିଲେ, "ଆରେ ଭାଇ, ମୋ କଥା ମାନି ସେ କଂଗ୍ରେସ-ପ୍ରପଞ୍ଚରୁ ଦୂରରେ ରହ । ସେଗୁଡ଼ାକରେ କିଛି ନାହିଁ ।"

ଜ୍ଞାନପ୍ରକାଶ ଖୁବ୍ ଜୋରରେ ଫେଁକନା ହସି ଦେଇ କହିଲେ, "ଆରେ ବନ୍ଧୁ, ତମଠାରୁ ଠିକ୍ ଏହି କଥା ଶୁଣିବି ବୋଲି ଆଶା କରିଥିଲି । ଡେପୁଟି କଲେକ୍ଟର ସାହେବ ନା, ମଜା କରୁଛ, ଆରାମ ଜୀବନ । କିନ୍ତୁ ମୁଁ ୟୁରୋପରୁ ଫେରିଆସିଛି, ମୋତେ ପଚାର । ମୁଁ କହିବି ଆମେ ସବୁ ଗୋଲାମ, ଅସଭ୍ୟ, ଅସ୍ପୃଶ୍ୟ । ଏସବୁ ତମେ ଅନୁଭବ କରି ପାରିବ ନାହିଁ; କାରଣ ତମେ ହିନ୍ଦୁସ୍ଥାନ ଛାଡ଼ି ବାହାରକୁ ଯିବାର ସୁବିଧା ପାଇନାହଁ । ତମକୁ ଲକ୍ଷ ଲକ୍ଷ ଲୋକଙ୍କର ଭାଗ୍ୟବିଧାତା କରିଦେଇ ତମକୁ କ୍ଷମତା-ମୋହରେ ବୁଡ଼ାଇ ଦିଆଯାଇଛି ।"

"ଆରେ ବନ୍ଧୁ, ତମେ ଠିକ୍ କଥା କହୁଛ ଯେ, କିନ୍ତୁ···କିନ୍ତୁ ମୁଁ ଯେଉଁ ଅବସ୍ଥାରେ ଅଛୁ ଏଥିରେ ମୋର ଆପତ୍ତି ଅଭିଯୋଗ କରିବାର କ'ଣ ଅଛି ? ମୁଁ ବା କାହିଁକି, ଯେକୌଣସି ଲୋକର କ'ଣ ଆପତ୍ତି ଅଛି ? ଅବସ୍ଥା ତ ଗୋଟାଏ ପ୍ରକାର ଭଲ ଅଛି । ଧନଜୀବନ ନିରାପଦରେ ଅଛି । ଗୋଟାଏ ଢଙ୍ଗରେ ସବୁ କଥା ଚାଲିଛି । ପୁଣି ଏ ବ୍ରିଟିଶ୍ ସାମ୍ରାଜ୍ୟ କେତେ ଶକ୍ତିଶାଳୀ ସାମ୍ରାଜ୍ୟ । ପୃଥିବୀର ପାଞ୍ଚଭାଗରୁ ଭାଗେ ଏହି ସାମ୍ରାଜ୍ୟରେ ରହିଛି । ଏହି ବ୍ରିଟିଶ୍ ସାମ୍ରାଜ୍ୟ ଜର୍ମାନୀକୁ ଧ୍ୱଂସ କରି ରଖିଦେଇଛି ।"

"ହଁ, ଜର୍ମାନ୍‌ମାନଙ୍କୁ ଏହି ସାମ୍ରାଜ୍ୟ ଧ୍ୱଂସକରି ଦେଇଛି ଯେ, କିନ୍ତୁ ତମେ କ'ଣ କେବେ ଭାବିଛ ଜର୍ମାନୀକୁ ପ୍ରକୃତରେ କିଏ ହରାଇଛି ? ତମେ ଜାଣିଛ, ଏହି ମହାଯୁଦ୍ଧରେ କେତେ ହିନ୍ଦୁସ୍ଥାନୀ ମରିଛନ୍ତି ? ଇଂରେଜମାନଙ୍କର ଏହି ଲଢ଼ାଇରେ ହିନ୍ଦୁସ୍ଥାନ ଲୋକେ କରିଛନ୍ତି । ଗୁର୍ଖା, ଶିଖ୍, ପଠାଣ, ବେଲୁଚ, ରାଜପୁତ୍, ଗଢ଼ବାଲୀ, ତେଲେଙ୍ଗାନା, ମରହଟ୍ଟା—ସବୁ ହିନ୍ଦୁସ୍ଥାନ ଲୋକେ ଏହି ସୈନ୍ୟବାହିନୀରେ ଥିଲେ । ଏହି ହିନ୍ଦୁସ୍ଥାନୀ ସେନାବାହିନୀରେ ପଚିଶ ଲକ୍ଷ ଲୋକ ଥିଲେ ବୋଲି ଜର୍ମାନୀ ହାରିଛି । ବୁଝିଲ ଗଙ୍ଗା, ଏସବୁ କଥା କହିଲେ ଚଳିବ ନାହିଁ । ଆମର ଡୋମିନିୟନ୍ ଷ୍ଟାଟସ୍ ଦରକାର ।"

ଆଲଫ୍ରେଡ୍ ପାର୍କ ପାରହୋଇ ସେମାନେ କଟ୍ରା ଦେଇ ସହର ଭିତରକୁ ପଶିଥିବା ମୁଖ୍ୟ ରାସ୍ତା ଉପରକୁ ଚାଲି ଆସିଥିଲେ । ସେମାନେ ବର୍ତ୍ତମାନ ସହରକୁ ନ ଯାଇ ସିଭିଲ୍‌ଲାଇନ ଆଡ଼କୁ ଚାଲିଲେ । ଗଙ୍ଗାପ୍ରସାଦ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ, "ହଁ କାକା, ତମେ ତ ଠିକ୍ କଥା କହୁଛ । ମୋ କଥା ଏବେ ଦେଖୁନା, ଜଣାପଡ଼ୁଛି ସାରା ଜୀବନଟା ଡେପୁଟି ମାଜିଷ୍ଟ୍ରେଟ ହୋଇ କଟିଯିବ । ଖୁବ୍ ହେଲେ ଜଏଣ୍ଟ ମାଜିଷ୍ଟ୍ରେଟ ହୋଇଯିବ । କିନ୍ତୁ ଇଂରେଜ ଟୋକାମାନେ ଆସି ଅଫିସର ହୋଇ ଆମ ଉପରେ ବସିଯାଉଛନ୍ତି ଓ ଆମ ଉପରେ ହାକିମି ଚଳାଉଛନ୍ତି । ଡୋମିନିୟନ୍ ଷ୍ଟାଟସ୍ ହୋଇଗଲେ ମୁଁ ତ ନିତାନ୍ତ ପକ୍ଷେ ଆଉ କିଛି ବଡ଼ ହେବାର ସ୍ୱପ୍ନ ଦେଖିପାରିବ !"

ଜ୍ଞାନପ୍ରକାଶ ହସିଦେଇ କହିଲେ, "ହଁ, ଏବେ ତୁ ରାସ୍ତାକୁ ଆସିଲୁ । ମୋ ସାଙ୍ଗରେ ତା ହେଲେ ଅମୃତସର ଯିବୁ ?"

ଗଙ୍ଗାପ୍ରସାଦ ଚମକି ପଡ଼ି କହିଲେ, "କାକା, ମୋତେ ଯେ ଅମୃତସର ଯିବାକୁ କହୁଛ ତମର ମୁଣ୍ଡ ଠିକ୍ ଅଛି ଟି ? ସରକାରଙ୍କ କାନରେ ଏ କଥା ପଡ଼ିଲେ ଯାହା କିଛି ଟିକିଏ ହବାର ଅଛି, ସେ ସବୁ ଚିରକାଳପାଇଁ ଲୋପ ହୋଇଯିବ । ଆଜିକାଲି ସି·ଆଇ.ଡ଼ି.ଙ୍କ ଧାଁ-ଦୌଡ଼ ତମେ ଜାଣ ତ ?"

"ଆରେ ବାବୁ, ଛାଡ଼ ସେ ସି. ଆଇ. ଡ଼ି. କଥା । ମୋ ନାଁ ଜ୍ଞାନପ୍ରକାଶ, ତୋ ନାଁ ରାମ ପ୍ରକାଶ । ତୁ ମୋର ସାନଭାଇ । ବହୁତ ଅଜଣା ଅଶୁଣା ଲୋକଙ୍କ ଭିତରେ ଆମକୁ

ଖୋଜୁଛି କିଏ ? ସି. ଆଇ. ଡ଼ି. ତ ଲାଗିବେ ବଡ଼ ବଡ଼ ନେତାଙ୍କ ପଛରେ, ଆଉ ଆମ ହିନ୍ଦୁସ୍ଥାନ ସି. ଆଇ. ଡ଼ି ଗୁଡ଼ା କେଡ଼େ ଗଧ। ତୁ ତ ନିଶ୍ଚୟ ଜାଣିଥିବୁ । ତାଛଡ଼ା ପଞ୍ଜାବ ପୋଲିସ ଆମକୁ ଚିହ୍ନିବେ କେମିତି ? ତେଣୁ ମୋ ସାଙ୍ଗରେ ଚାଲ, ସେଠାରେ ଦେଖିବୁ କ'ଣ ହେଉଛି । ଦେଶର ସବୁ ବଡ଼ଲୋକଙ୍କର ସ୍ୱରୂପ ଦେଖିବୁ, ବିଶେଷତଃ ଗାନ୍ଧିଙ୍କର । କେବେ କେଉଁଠି କଂଗ୍ରେସକୁ ଯାଇଛୁ ?"

"ଆଜିଯାଏ ତ ଯାଇନାହିଁ; କିନ୍ତୁ କାକା ! ଏଥର ତମେ ଯେମିତି ଲଗାଇଛ ଯିବା ପାଇଁ, ମୋର ଇଚ୍ଛା ହେଉଛି । କିନ୍ତୁ ବାପାଙ୍କୁ ଏସବୁ କଥା ଲୁଚାଇବାକୁ ପଡ଼ିବ, ମାନେ ତାଙ୍କ ପାଖରେ କିଛି ଛଳନା କରିବାକୁ ହେବ କିମ୍ବା ମିଛ କହିବାକୁ ହେବ । ତମେ ଠିକ୍ ଜାଣ, ସେ ମୋତେ କଦାପି କଂଗ୍ରେସକୁ ଯିବାକୁ ଛାଡ଼ିବେ ନାହିଁ ।"

"ଏଥିରେ ଭୟ କରିବାର କ'ଣ ଅଛି ? ତମେ ତ ଏପର୍ଯ୍ୟନ୍ତ ଭାଇଙ୍କୁ କୌଣସି କାର୍ଯ୍ୟକ୍ରମ କଥା କହିନାହିଁ । ଏବେ ଆଗ୍ରା, ମଥୁରା, ଆଲିଗଡ଼ ଓ ମିରଟର ଗୋଟାଏ ପ୍ରୋଗ୍ରାମ ତିଆରି କରିଦିଅ । ଦେଖ, ଯଦି ତମର ଆଲିଗଡ଼ରେ କୌଣସି ପୁରୁଣା ବନ୍ଧୁ ଥାନ୍ତି ।"

ଗଙ୍ଗାପ୍ରସାଦ କହିଲେ, "ହଁ ଆଲିଗଡ଼ରେ ପଣ୍ଡିତ ସୋମେଶ୍ୱର ଦତ୍ତ ଅଛନ୍ତି । ବାପା ତାଙ୍କୁ ଭଲ କରି ଜାଣନ୍ତି ।"

"କିଛି ନାହିଁ, ସେ ପଣ୍ଡିତଠାରେ କାମ ଚଳିବ ନାହିଁ; କାହିଁକି ନା ଭାଇ ତାଙ୍କୁ ଜାଣନ୍ତି । ସୁତରାଂ ଆମର ମିଛ ଧରାପଡ଼ିଯିବ । ଏମିତି କୌଣସି ବନ୍ଧୁଙ୍କ ନାଁ କୁହ ଯାହାଙ୍କୁ ଭାଇ ଜାଣି ନଥିବେ ।"

ଗଙ୍ଗାପ୍ରସାଦ କିଛି ଚିନ୍ତା କରି କହିଲେ, "ମିରଟରେ ଆସିଷ୍ଟାଣ୍ଟ ସର୍ଜନ କୃଷ୍ଣଚନ୍ଦ୍ର ମିଶ୍ର ଅଛନ୍ତି ।"

"ହଁ, ସେଇ କୃଷ୍ଣଚନ୍ଦ୍ର ମିଶ୍ର ଠିକ୍, ତାଙ୍କ ପୁଅର ବାଳ ପଡ଼ୁଛି, କିମ୍ବା କାନ ଫୋଡ଼ା ହେଉଛି, ଯାହି ହେଲେ ଗୋଟାଏ କାମରେ ଯିବବୋଲି କହ ।"

ଗଙ୍ଗାପ୍ରସାଦ କହିଲେ, "ଉଁ ହୁ, ଏ ପୁଷ ମାସରେ ସେ ସବୁ ଶୁଭକାର୍ଯ୍ୟ ହୁଏନାହିଁ ।"

"ଆଚ୍ଛା ଅଡୁଆରେ ପକାଇଲ ତମେ । ଆଚ୍ଛା, ପୁଷମାସରେ ତ ଲୋକ ମରିବାକୁ ମନା ନାହିଁ । ମନେକର ତମେ ତାଙ୍କ ବାପାଙ୍କର ଶ୍ରାଦ୍ଧ ପାଇଁ ଯାଉଛ । ଏଥିରୁ ତ କେହି କିଛି କଥା ବାହାର କରି ପାରିବେ ନାହିଁ ।"

"ହଁ, ଠିକ୍ । ତିନିବର୍ଷ ଆଗରୁ ତାଙ୍କ ବାପା ମରିଯାଇଛନ୍ତି ।"

"ବାସ୍ ବାସ୍, କହିବ ତାଙ୍କ ବାପାଙ୍କର ବାର୍ଷିକ ଶ୍ରାଦ୍ଧ ହେଉଛି । ସେଥିପାଇଁ ଯାଉଛି । ଛବିଶ ତାରିଖ ଦିନ ଶ୍ରାଦ୍ଧ । ଅନେକ ଦିନ ପରେ ଯାଇଥିବାରୁ ସତେଇଶ ତାରିଖ

ଦିନ ତମକୁ କେହି ଗ୍ଭଡ଼ିବେ ନାହିଁ, କିନ୍ତୁ ଅଠେଇଶ ତାରିଖରେ ଆସି ଅଣତିରିଶ ତାରିଖରେ ତମେ ଏଠି ପହଞ୍ଚି ପାରିବ । ଦିନେ ଅଧେ ବାଟରେ ଡେରି ହୋଇ ଯାଇ-ପାରେ ।"

ପଚିଶ ତାରିଖ ଦିନ ସକାଳେ ଦୁହେଁଯାକ ଯାଇ ଷ୍ଟେସନରେ ପହଞ୍ଚି ଅମୃତସରକୁ ଥାର୍ଡ଼ କ୍ଲାସ ଟିକେଟ୍ କାଟିଲେ । ଗଙ୍ଗାପ୍ରସାଦ ଆଶ୍ଚର୍ଯ୍ୟ ହୋଇ ପଗ୍ଭରିଲେ, "କାକା, ଆମେ କ'ଣ ଥାର୍ଡ଼ କ୍ଲାସରେ ଯିବା ? ଦେଖ କେମିତି ଭିଡ଼, କେତେ ଲମ୍ବା ରାସ୍ତା !"

"ହଁ, ହଁ, ଥାର୍ଡ଼ କ୍ଲାସରେ ଯିବା । ଆରାମରେ ଶୋଇକରି ଯିବାପାଇଁ ମୁଁ ଥାର୍ଡ଼ କ୍ଲାସ ଟିକେଟ୍ ନେଇଛି । ଇଣ୍ଟରକ୍ଲାସ ତ ଲୋକ ଭରିଥିବେ, ସେକେଣ୍ଡରେ ଜାଗା ମିଳିବ କି ନାହିଁ ସନ୍ଦେହ, ଫାଷ୍ଟ କ୍ଲାସ ତ ଆମ ଶକ୍ତିର ବାହାରେ । ଆମେ ଯଦି ଫାଷ୍ଟ କ୍ଲାସରେ ଯାଉଥିବା ଆଉ କୌଣସି ବଦରାଗୀ ସାହେବ ଯଦି ଆସି ଜୁଟେ, ତାହେଲେ ସେ ଆମର ଜିନିଷପତ୍ର ଫିଙ୍ଗିଦେବ ଓ ମାରପିଟ୍ କରିବ । ଏତେବେଳେ ସେଥିରେ ପଶିବା ଠିକ ନୁହେଁ; ବରଂ ଥାର୍ଡ଼ କ୍ଲାସରେ ଆରାମରେ ଶୋଇକରି ଯିବା ।"

## ଛଅ

ତ୍ରିବେଣୀ ଘାଟରେ ଚୁନକାର ଦାହକ୍ରିୟା ସାରି ଭିକ୍ଷୁ ଫେରିଲାବେଳକୁ ରାତି ହୋଇ ଯାଇଥିଲା । ଚୁନକାର ଚିତାରେ ନିଆଁ ଲାଗିଲା ମାତ୍ରେ ଜ୍ୱାଲାପ୍ରସାଦ ଘରକୁ ଲେଉଟି ଆସିଥିଲେ; କିନ୍ତୁ ଜାତିଭାଇଙ୍କ ସାଙ୍ଗରେ ଭିକ୍ଷୁକୁ ଶେଷ ପର୍ଯ୍ୟନ୍ତ ରହିବାକୁ ପଡ଼ିଥିଲା । ସେଦିନ ସକାଳୁ ବର୍ଷା ଆରମ୍ଭ ହୋଇଯାଇଥିଲା ଓ ବେଳେବେଳେ କୁଆପଥର ବି ପଡ଼ୁଥିଲା । ଜ୍ୱାଲାପ୍ରସାଦ ଅନ୍ୟମନସ୍କ ଭାବରେ ଯମୁନା ଓ ପିଲାଙ୍କ ସହିତ ଭିତର ବାରଣ୍ଡାରେ ବସିଥିଲେ । ଘରେ ଶୋକର ଗ୍ଭୟା ଲାଗିରହିଥିଲା । ଭିକ୍ଷୁ ଆସିଲାମାତ୍ରେ ଜ୍ୱାଲାପ୍ରସାଦଙ୍କୁ କହିଲା, "ଭାଇ, ସବୁ ତ ଏବେ ଶେଷ ହେଲା, ତମେ ଟ୍ରେଷାଇବାସ କର, ପିଲାଙ୍କ କଥା ଟିକିଏ ଦେଖ ।"

ଜ୍ୱାଲାପ୍ରସାଦ ପଗ୍ଭରିଲେ, "ଆଉ ତୁ ?"

"ମୁଁ ଆଜି ଉପାସ ରହିବି । ବାହାର କୋଠରିରେ ଯାଇ ଶୋଇବି ।"

"ବାହାର କୋଠରିରେ ଯାଇ କାହିଁକି ଶୋଇବୁ ଭିକ୍ଷୁ ? ଚୁନକା ଖୁଡ଼ୀଙ୍କ କୋଠରିରେ ତୋତେ ଶୋଇବାକୁ ହେବ ଓ ରାତିରେ ସେଠାରେ ଦୀପ ଜାଳିବାକୁ ହେବ ।

ଛନକା ଖୁଡ଼ୀ କ'ଣ କ'ଣ ଛାଡ଼ିଯାଇଛି ସେ ସବୁ ଦେଖିବାକୁ ହେବ । ତୁ ଆସିଲାବେଳକୁ ତାର ପାଟି ପଡ଼ିଯାଇଥିଲା । କିନ୍ତୁ ପାଟି ଫିଟୁଥିବାଯାକେ ସେ କେବଳ ତୋର ନାଁ ଘୋଷୁଥିଲା । ତା'ପାଖରେ ଯାହା ଥିଲା ସେ ସବୁ ତୋତେ ଦେବାକୁ ଚାହୁଁଥିଲା ।"

ଭିକ୍ଷୁ କହିଲା, "ତା' ପାଖରେ ଯାହାଥିଲା ସେ ସବୁ ତମର ରୋଜଗାର । ତମେ ସେ ସବୁ ତମ ପାଖରେ ରଖ । ମୋର ଆଗକୁ ପଛକୁ କେହି ନାହିଁ, କେବଳ ଗଙ୍ଗା ମୋର ସବୁ । ସେହି ଗଙ୍ଗା ତ ତୁମର ପୁଅ ।"

"ନାହିଁ ଭିକ୍ଷୁ, ଯେତେ ଦିନ ପର୍ଯ୍ୟନ୍ତ ତୁ ବଞ୍ଚିଛୁ, ସେ ସବୁ ତୋର । ମୋର ଯେତେଦୂର ମନେ ହେଉଛି ଛନକା ଖୁଡ଼ୀ ପାଖରେ ନଗଦ ହଜାରେ ଟଙ୍କା ଓ ଦୁଇ ଚାରିଶହ ଟଙ୍କାର ଗହଣା ଥିଲା । ସବୁବେଳେ ସେ କହୁଥିଲା ଭିକ୍ଷୁର ବାହାଘର ହେଲେ ବୋହୂକୁ ସବୁ ଦେଇଦେବ । ଗଲା ପର୍ଯ୍ୟନ୍ତ ସେ କହୁଥିଲା ଭିକ୍ଷୁକୁ ଟିକିଏ ବୁଝାଇ ଦିଅ, ସେ ବାହା ହେଉ ।"

ଭିକ୍ଷୁ ହସିଦେଇ କହିଲା, "ହଁ ଭାଇ, ମଲାବେଳକୁ ବାହାଘର ହେବ । ପଚାଶରୁ ଉପର ହେଲାଣି ଯେ ବାହା ହୋଇନାହିଁ, ଆଉ ପୁଣି କ'ଣ ବାହା ହେବ ? ମୁଁ ବାହା ନ ହେଲେ ମଧ୍ୟ ମୋତେ ଘର ମିଳିବ । ସେହି ଗଙ୍ଗା ସାଥିରେ ମୋର ଜୀବନ କଟିଯିବ ।" କିଛି ସମୟ ଚୁପ୍ ରହିବା ପରେ ସେ ପୁଣି ଜ୍ୱାଲାପ୍ରସାଦଙ୍କୁ କହିଲା, "ଭାଇ, ଯଦି ଭୁଲ ନ ବୁଝିବ ତେବେ ଗୋଟାଏ କଥା କହିବ ।"

"ହଁ ହଁ କହ । ଭୁଲ ବୁଝିବାର କ'ଣ ଅଛି ?"

"ମୁଁ କହୁଛି ତମେ ଓ ଭାଉଜ ଦୁହେଁଯାକ ଯାଇ କାହିଁକି ଗଙ୍ଗା ଘରେ ରହୁନାହଁ ? ଗଙ୍ଗାର ବୋହୂ ତ ବର୍ଷରେ ଛ ମାସ ଆଲାହାବାଦରେ ତମ ପାଖରେ ରହୁଛି । ଗଙ୍ଗାକୁ ଏକଲା ରହିବା ପାଇଁ ଛାଡ଼ିଦେବା ଉଚିତ ନୁହେଁ । ତମ ସାଙ୍ଗରେ ରହିଲେ ତାର ଚଞ୍ଚଳତା କିଛି ରହିବ ।"

ଗଙ୍ଗାପ୍ରସାଦଙ୍କ ବିଷୟରେ ଜ୍ୱାଲାପ୍ରସାଦଙ୍କୁ ଭଲ ଖବର ମିଳୁ ନ ଥିଲା । ଆଗେ ଗଙ୍ଗାପ୍ରସାଦଙ୍କର ଚରିତ୍ର ଦୁର୍ବଳତା ବିଷୟରେ ସ୍ଥାନୀୟ ଅଫିସରମାନଙ୍କଠାରୁ ଶୁଣାଯାଉଥିଲା । ଏବେ ସେହି କଥା ପ୍ରଦେଶର ଦୂରଦୂରାନ୍ତ ଅଫିସରଙ୍କଠାରୁ ଶୁଣାଯାଉଛି । ଏହି ବିଷୟରେ ଜ୍ୱାଲାପ୍ରସାଦ ଗଙ୍ଗାପ୍ରସାଦଙ୍କୁ ଯେତେ ବୁଝାଇଲେ ମଧ୍ୟ ତାଙ୍କ ଉପରେ କୌଣସି ପ୍ରଭାବ ପଡ଼ିଲା ନାହିଁ । ଯମୁନା ଜ୍ୱାଲାପ୍ରସାଦଙ୍କୁ କହିଲେ, "ଭିକ୍ଷୁ ଠିକ୍ କହୁଛି । ଏଠି ଆଲାହାବାଦରେ ଆମର କ'ଣ ଅଛି ଯେ ଆମେ ପୁଅକୁ ଛାଡ଼ି ଅଲଗା ରହିବା ? ଏହି ଘରକୁ ଭଡ଼ା ଦେଇଦେବା; ମାସକୁ ପଚାଶ ଷାଠିଏ ଟଙ୍କା ମିଳିଯିବ । ପୁଣି ଦୁଇଟା ଘରେ ଯେତେ ଖର୍ଚ୍ଚ ହେଉଛି ତାହା କମିଯିବ । ବୋହୂ ତ କେତେ ଥର କହିଲାଣି

ଜୌନପୁରରେ ଯାଇ ରହିବା ପାଇଁ । ବଡ଼ ବଙ୍ଗଳାଟାଏ ! ସେଠାରେ ଏକା ରହିବା ପାଇଁ ତା'ର ମନ ଲାଗୁନାହିଁ ! ଆମେ ତା' କଥା ଆଜିଯାଏ ଶୁଣିଲେ ନାହିଁ; କିନ୍ତୁ ଏବେ ତା କଥା ଠିକ୍ ବୋଲି ଜଣାପଡ଼ୁଛି ।''

ଜ୍ୱାଳାପ୍ରସାଦ ଉତ୍ତର ଦେଲେ, ''ହଉ, ମୁଁ ଟିକିଏ ସେ ବିଷୟରେ ଭାବେ ।''

''ଭାଇ, ଏଥିରେ କିଛି ଭାବିବାର ନାହିଁ । ଜୌନପୁରକୁ ଚାଲିଯିବା ଦରକାର । ଏଥିରେ ଗଙ୍ଗାର ଭଲ ହେବ ଓ ଘରର ବି ମଙ୍ଗଳ ହେବ । ଗଙ୍ଗା ମନଇଚ୍ଛା ଟଙ୍କା-ପଇସା ଉଡ଼ାଉଛି । ମୁଁ ଶୁଣିଛି, ଦୁଇ ତିନି ହଜାର ଟଙ୍କା କରଜ କରିଛି ।''

ଜ୍ୱାଳାପ୍ରସାଦ ଚମକି ପଡ଼ି ପଚାରିଲେ, ''କଣ କହୁଛୁ, ସେ କରଜ କରିଛି ! କରଜ କେମିତି ହେଲା ?''

''ଗଙ୍ଗାକୁ ଯଦି ନ କହିବ ତା' ହେଲେ ସବୁ କହିବି; ନଚେତ୍ ସେ ମୋତେ ଆଉ ରଖିବ ନାହିଁ । କ'ଣ କହିବି ଭାଇ, ତାକୁ ତ ମୋତେ ଭାରି ଡର ଲାଗୁଛି । ଗଙ୍ଗା ଗୋଟାଏ ସ୍ତ୍ରୀଲୋକ ରଖିଛି । ସେ ସ୍ତ୍ରୀଲୋକର ପୂରା ଖର୍ଚ୍ଚ, ତା ଛଡ଼ା ମଦ ପିଇବା ଖର୍ଚ୍ଚ ତାକୁ ଦେବାକୁ ପଡ଼ୁଛି । ଏଥିରୁ ବୁଝିବ ସେ କାହିଁକି କରଜ କରିଛି ।''

ଜ୍ୱାଳାପ୍ରସାଦ ଏସବୁ ଶୁଣି ଚୁପ୍ ରହିଗଲେ । କହିଲେ, ''କଥା ଏତେ ବାଟ ଚାଲି-ଗଲାଣି ?'' ପୁଣି ସେ ଯମୁନାଙ୍କୁ ଚାହିଁ ପଚାରିଲେ, ''ବୋହୂ, ତମକୁ ଏ ବିଷୟରେ କେବେ କିଛି କହିନାହିଁ ?''

ଯମୁନାର ଆଖିରେ ଲୁହ ଆସିଗଲା । ସେ କହିଲେ, ''ବୋହୂର ମୁହଁରୁ ତ ହସ ଲିଭିଯାଇଛି; କିନ୍ତୁ ମୁହଁ ଫିଟାଇ ସେ କେବେ କିଛି କହିନାହିଁ । ଏବେ ବୁଝିଲି ଜୌନପୁରରେ ରହିବା ପାଇଁ କାହିଁକି ତାର ମନ ଲାଗୁନାହିଁ ।''

ଏଣେ ତିନି ଚାରିଦିନ ହେଲା ଜ୍ଞାନପ୍ରକାଶ ଭାରି ବ୍ୟସ୍ତରେ ଥିଲେ । କଲିକତା କଂଗ୍ରେସ ପାଇଁ ଜୋରସୋର୍ ଯୋଗାଡ଼ ଚାଲିଥିଲା । ସମଗ୍ର ଦେଶର ଚେତନା ଏଥର ଏକ ସକ୍ରିୟ ଆନ୍ଦୋଳନ ପାଇଁ ଉତ୍ତେଜିତ ହୋଇ ଉଠିଥିଲା । ଜ୍ଞାନପ୍ରକାଶ ଏହି ଉତ୍ତେଜିତ ଚେତନାର ଏକ ଅଂଶ ଥିଲେ । ଏତେ କମ୍ ଦିନ ମଧ୍ୟରେ ଜ୍ଞାନପ୍ରକାଶ ଗାନ୍ଧିଙ୍କ ଚେଲାମାନଙ୍କ ମଧ୍ୟରେ ପ୍ରଧାନ ସ୍ଥାନ ଲାଭ କରି ପାରିଥିଲେ । ଜ୍ୱାଳାପ୍ରସାଦ ଜ୍ଞାନପ୍ରକାଶଙ୍କ ଘରେ ପହଞ୍ଚିଲାବେଳେ ଜ୍ଞାନପ୍ରକାଶଙ୍କୁ ସହରର ବଡ଼ ବଡ଼ କଂଗ୍ରେସ ଲୋକେ ଘେରି ବସିଥିବାର ଦେଖିଲେ । ଜ୍ଞାନପ୍ରକାଶ ସେମାନଙ୍କୁ ପରାମର୍ଶ ଦେଇ କହୁଥିଲେ, ''ବ୍ରିଟିଶ ସାମ୍ରାଜ୍ୟ ଆମ ଦେଶର ଶିକ୍ଷିତ ଏବଂ ମଧ୍ୟମ ଶ୍ରେଣୀ ଲୋକଙ୍କ ଉପରେ ନିର୍ଭର କରି ରହିଛି । ଜମିଦାରମାନଙ୍କ କଥା କହିବାକୁ ଗଲେ ସେମାନେ ରାଜାଙ୍କର ଗୋଲାମ ହୋଇ ରହିଛନ୍ତି ଓ ରାଜାମାନଙ୍କର ନିରଙ୍କୁଶ ଶାସନର ସହାୟକ

ହୋଇ ନିରୀହ ମୂର୍ଖ ଜନତାଙ୍କ ଉପରେ ଶାସନ ଚଳାଇ ଆସିଛନ୍ତି ଓ ଅତ୍ୟାଚାର କରି ଆସିଛନ୍ତି । ଏହି ଜମିଦାରମାନେ ବ୍ରିଟିଶ ଶାସନକୁ ସାହାଯ୍ୟ କରିବେ, ଏଥିରେ ସନ୍ଦେହ ନାହିଁ ।"

ରାଜବାହାଦୁରଙ୍କୁ ଜ୍ଞାନପ୍ରକାଶଙ୍କ କଥା ଭଲ ଲାଗିଲା ନାହିଁ; କାରଣ ସେ ନିଜେ ଜଣେ ବଡ଼ ଜମିଦାର ଥିଲେ । ସେ ବିଗିଡ଼ି ଯାଇ କହିଲେ, "ହିଁ, ଆପଣ ଏମିତି କ'ଣ କହୁଛନ୍ତି ? ଆପଣ ଜାଣନ୍ତି, ୧୮୫୭ରେ ଯେଉଁ ବିଦ୍ରୋହ ହୋଇଥିଲା ତାହା ଏହି ରାଜା-ମହାରାଜାମାନଙ୍କର ବିଦ୍ରୋହ; ଇତିହାସର ପ୍ରମାଣକୁ ଆପଣ ଓଲଟାଇବାକୁ ଚେଷ୍ଟା କରୁଛନ୍ତି ?"

ଜ୍ଞାନପ୍ରକାଶ ଶାନ୍ତ ଭାବରେ ଉତ୍ତର ଦେଲେ, "ରାଜବାହାଦୁର ବାବୁ, ଇତିହାସ ତ ସତ୍ୟ; କିନ୍ତୁ ଐତିହାସିକ ଘଟଣାମାନଙ୍କର ବିଶ୍ଳେଷଣ ସତ୍ୟ କିମ୍ବା ମିଥ୍ୟା ହୋଇ ପାରେ । ୧୮୫୭ ସାଲର ଯେଉଁ ବିଦ୍ରୋହ, ଯେଉଁ କ୍ରାନ୍ତି ଘଟିଥିଲା ସେ ବିଷୟରେ ଆପଣ ଯାହା କହନ୍ତୁ ପଛେ ଶେଷରେ ତାର ଦଶା କ'ଣ ହେଲା, ଆପଣ ତାହା ଜାଣନ୍ତି । ଜନସାଧାରଣ ଏଥିରେ କୌଣସି ଆଗ୍ରହ ନ ଦେଖାଇବାରୁ ତାହା ବିଫଳ ହୋଇଗଲା । ପୁଣି ୧୮୫୭ କଥାକୁ ଆଜି ସାଂଗରେ ତୁଳନା କରିବାର ଆବଶ୍ୟକତା ନାହିଁ । ଯେଉଁମାନେ ଭାବନ୍ତି ଇତିହାସ-ପୃଷ୍ଠାରୁ ଆମକୁ ଶିକ୍ଷା ମିଳୁଛି, ସେମାନେ ଭୁଲ୍ କରନ୍ତି; କାରଣ ଇତିହାସ ମରିଯାଇଛି । ପ୍ରତି ମୁହୂର୍ତ୍ତରେ ପରିସ୍ଥିତି ବଦଳୁଛି । ଆଦର୍ଶ ବଦଳୁଛି, ଲୋକ ବଦଳୁଛି, ଆଉ ସବୁଠାରୁ ବଡ଼ କଥା ହେଉଛି ପ୍ରତି ମୁହୂର୍ତ୍ତରେ ମାନବର ଚେତନା ବିକଶିତ ହେଉଛି ।"

ଜ୍ଞାନପ୍ରକାଶଙ୍କର ଏହି ଦର୍ଶନ ଶୁଣି ଜଗନ୍ନାଥ ପାଣ୍ଡେ ଏକପ୍ରକାର ବିରକ୍ତ ହୋଇ ଯାଇଥିଲେ । ସେ କହିଲେ, "ହଉ, ଛାଡ଼ନ୍ତୁ, ଏସବୁ ତଥ୍ୟ-ଫଥ୍ୟ ଛାଡ଼ି ଅସଲ କଥାକୁ ଆସନ୍ତୁ । ଆପଣ କ'ଣ ଠିକ୍ ବିଶ୍ୱାସ କରୁଛନ୍ତି ଯେ ଓକିଲାତି ଛାଡ଼ି, ସ୍କୁଲ କଲେଜ ଛାଡ଼ି, କାଉନ୍‌ସିଲ ଛାଡ଼ି ଚାଲିଆସିଲେ ଦେଶକୁ ସ୍ୱରାଜ୍ୟ ମିଳିଯିବ ?"

ଜ୍ଞାନପ୍ରକାଶ ଜବାବ ଦେଲେ, "ହଁ, ଠିକ୍ ଭାବରେ କରିପାରିଲେ ମିଳିଯାଇପାରେ । ଆପଣ ଭାବି ଦେଖନ୍ତୁ ତେତିଶ କୋଟି ଭାରତୀୟଙ୍କ ଉପରେ ମାତ୍ର ଦୁଇ ଲକ୍ଷ ଇଂରେଜ ଶାସନ ଚଳାଇଛନ୍ତି । ଏମାନଙ୍କ ଭିତରୁ ଦେଢ଼ଲକ୍ଷ ଇଂରେଜ ସୈନ୍ୟ, ବାକି ପଚାଶ ହଜାର ଇଂରେଜ ଲୋକ ଏ ଦେଶରେ ଶାସନ ଚଳାଇଛନ୍ତି । ଏହା କିପରି ସମ୍ଭବ ହୋଇଛି, ଆପଣଙ୍କ ନିକଟରେ ଏହାହିଁ ଅସଲ ପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର ହେଉଛି ଯେଉଁ ଦଶ କୋଡ଼ିଏ ଲକ୍ଷ ଭାରତୀୟ ଇଂରାଜୀ ଶିକ୍ଷା ପାଇଛନ୍ତି ଓ ଇଂରେଜ ସରକାରଙ୍କ ତଳେ ଚାକିରି କରୁଛନ୍ତି, ସେହିମାନେ ଏହି ଦେଶକୁ ଇଂରେଜମାନଙ୍କର ଗୋଲାମ କରି

ରକ୍ଷିବାରେ ସାହାଯ୍ୟ କରୁଛନ୍ତି । କିନ୍ତୁ ଏହି ଲୋକମାନେ ଯଦି ଇଂରେଜ ଲୋକଙ୍କୁ ସାହାଯ୍ୟ ଦେବା ବନ୍ଦ କରି ଦିଅନ୍ତେ, ତେବେ ଭାରତରେ ଶାସନ ଚଳାଇବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ନ୍ତା । ଖାଲି ସେତିକି ନୁହେଁ, ଏ ଦେଶରେ ରହିବା ପାଇଁ ମଧ୍ୟ ଅସମ୍ଭବ ହୁଅନ୍ତା ।"

ରାଜବିହାରୀ ବିରକ୍ତ ହୋଇ କହିଲେ, "ହିଁ, ଆପଣଙ୍କର କହିବାର ଉଦ୍ଦେଶ୍ୟ ହେଉଛି, ଯେତେ ଭାରତୀୟ ସରକାରୀ ଚାକିରି କରୁଛନ୍ତି ସେମାନେ ଯଦି ତାହା ଛାଡ଼ି ଦିଅନ୍ତେ ତାହେଲେ ସ୍ୱରାଜ୍ୟ ମିଳିଯାନ୍ତା । ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ ? ସରକାରୀ ଚାକିରିଆମାନେ ମଜାରେ ଅଛନ୍ତି; ବହୁତ ଦରମା ପାଉଛନ୍ତି । ସେମାନେ କେବେହେଲେ ସ୍ୱଦେଶୀ ଆନ୍ଦୋଳନରେ ଯୋଗଦେବେ ନାହିଁ । ଆଉ ବାକି ରହିଲେ ଓକିଲ, ମାଷ୍ଟ୍ରେ ଆଉ ଛାତ୍ର । ତା'ହେଲେ ଓକିଲ ଓକିଲାତି ଛାଡ଼ିଦେବେ, ପିଲାମାନେ ପଢ଼ା ଛାଡ଼ିଦେଇ ମୂର୍ଖ ହେବେ ! ଆଚ୍ଛା ଜ୍ଞାନପ୍ରକାଶ ବାବୁ, ଆପଣ ନିଜେ ଓକିଲାତି ଛାଡ଼ିବାପାଇଁ ପ୍ରସ୍ତୁତ ହେବେଟି ?"

ଲାଲା ଶୀତଳପ୍ରସାଦ ହସି ହସି କହିଲେ, "ସେ ତ ଓକିଲାତି ଆରମ୍ଭ କରି ନାହାନ୍ତି; ଛାଡ଼ିବାର ପ୍ରଶ୍ନ ଉଠୁଚି କେଉଁଠି ? କିନ୍ତୁ ଏସବୁ ଯାହା ହେଲେ ବି ମୁଁ ବୁଝୁଛି ଗାନ୍ଧିଙ୍କ ସହିତ ଆମକୁ ସହଯୋଗ କରିବାକୁ ହେବ । ମୋର ବିଶ୍ୱାସ, ଏହି ଅସହଯୋଗ ଆନ୍ଦୋଳନ ଥରେ ଆରମ୍ଭ ହୋଇଗଲେ ବ୍ରିଟିଶ ସରକାର ମିଳାମିଶା କରିବା ପାଇଁ ଚେଷ୍ଟା କରିବେ । ଜ୍ଞାନପ୍ରକାଶଙ୍କର ଏହି କଥାରୁ ମୋର ଠିକ୍ ମନେ ହେଉଛି ଯେ ଆମେ ଯଦି ସଂପୂର୍ଣ୍ଣରୂପେ ଅସହଯୋଗ କରିପାରିବା ତାହା ହେଲେ ଏଇ ଦୁଇ ଲକ୍ଷ ଇଂରେଜ ଜାହାଜରେ ଜିନିଷ ଲଦି ନିଜ ଘରକୁ ଫେରିଯିବେ ।"

କିଛି ସମୟ ସବୁଲୋକେ ଚୁପ୍ ରହିଗଲେ । କିଛିକ୍ଷଣ ପରେ ଜ୍ଞାନପ୍ରକାଶ କହିଲେ, "ଅସହଯୋଗ ତ ଏକପ୍ରକାର ଆରମ୍ଭ ହୋଇଗଲାଣି, ଖିଲାଫତ୍ ଆନ୍ଦୋଳନ ଯୋଗୁ ଅସହଯୋଗର ଶକ୍ତି ବଢ଼ିଗଲାଣି । ଦେଶର ମୁସଲମାନମାନଙ୍କ ଭିତରେ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରବଳ ଭାବନା ଏବେ ଜାଗିଉଠିଛି । ମାଦ୍ରାଜରେ ଯେଉଁ ଖିଲାଫତ୍ ପରିଷଦ ବସିଥିଲା, ସେଥିରେ ଦେଶର ମୁସଲମାନମାନେ ଅସହଯୋଗ ଆନ୍ଦୋଳନର ସିଦ୍ଧାନ୍ତକୁ ସ୍ୱୀକାର କରିନେଇଛନ୍ତି । ମୁସଲମାନମାନେ ଅନୁଭବ କରିଛନ୍ତି ଯେ ସେମାନେ ମୂଳତଃ ଭାରତୀୟ । ଏବେ ନିକଟରେ ଯେଉଁ ଖବର ମିଳିଛି, ଯେଉଁ ହଜାର ହଜାର ମୁସଲମାନ ବ୍ରିଟିଶ ଶାସନର ବିରୋଧ କରି ଭାରତ ଛାଡ଼ିଯାଇ ଆଫଗାନିସ୍ଥାନରେ ରହିବା ପାଇଁ ଯାଉଥିଲେ, ଆଫଗାନିସ୍ଥାନ ସରକାର ସେମାନଙ୍କୁ ସେହି ଦେଶରେ ପ୍ରବେଶ କରିବାକୁ ଅନୁମତି ଦେଇନାହାନ୍ତି । ବର୍ତ୍ତମାନ ଆପଣମାନେ ବୁଝିପାରିବେ ଅସହଯୋଗ

ପାଇଁ ଏହାଠାରୁ ଭଲ ସୁଯୋଗ କ'ଣ ଆଉ ମିଳିପାରିବ ? ଏହି ସୁଯୋଗ ଛାଡ଼ିଦେଲେ ହିନ୍ଦୁ ମୁସଲମାନମାନଙ୍କୁ ଏକାଠି କରିବା ବଡ଼ ମୁସ୍କିଲ ହୋଇ ପଡ଼ିବ । ଏହି ଅବସରର ଫାଇଦା ଉଠାଇବା ଦରକାର ଏବଂ ହିନ୍ଦୁ ମୁସଲମାନମାନଙ୍କର ଏକତାର ମୂଳକୁ ବର୍ତ୍ତମାନ ମଜବୁତ୍ କରିବା ଦରକାର ।

ରାଜବାହାଦୁର କହିଲେ, "ହଁ, ହଁ, ଆଜିକାଲି ହିନ୍ଦୁ ମୁସଲମାନ ଯେ ଏକା, ଏହା ସ୍ପଷ୍ଟ ଦେଖାଯାଉଛି; କିନ୍ତୁ ଏହି ଏକତା କେବଳ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼ାଇ କରିବା ପାଇଁ । ଏହାପରେ ତ ଏପରି ଏକତା ରହିବ ବୋଲି ମୁଁ ଭାବିପାରୁନାହିଁ । ତୁର୍କୀ ବିଷୟରେ ଇଂରେଜମାନେ ବିରୋଧ କରିଥିବାରୁ ମୁସଲମାନମାନେ ଆଜି ଆପଣଙ୍କ ପକ୍ଷରେ ରହିଛନ୍ତି ।"

ଜ୍ଞାନପ୍ରକାଶ ରାଜବାହାଦୁରଙ୍କର ଏହି ବ୍ୟଙ୍ଗ ବୁଝିପାରି ମୁରୁକିହସା ଦେଇ କହିଲେ, "ରାଜବାହାଦୁର ବାବୁ ! କାରଣ ଉପରେ ଏତେ ଧ୍ୟାନ ଦିଅନ୍ତୁ ନାହିଁ । କାରଣ ତ ଏକ ଅତୀତର କଥା । ବର୍ତ୍ତମାନ ଏ କଥା ନିଶ୍ଚୟ ଯେ ଇଂରେଜମାନଙ୍କ ବିରୁଦ୍ଧରେ ହିନ୍ଦୁ ଓ ମୁସଲମାନମାନେ ଏକମତ । ହୁଏତ ଏପରି ଏକମତ ହେବାର କାରଣ ଭିନ୍ନ ଭିନ୍ନ ଥାଇପାରେ; କିନ୍ତୁ ଏହି ବିରୋଧ ଏବଂ ଅସନ୍ତୋଷଜନିତ ବିଦ୍ରୋହ ହିନ୍ଦୁ ମୁସଲମାନ-ମାନଙ୍କ ମଧ୍ୟରେ ଥିବା ଭେଦଭାବକୁ ସଂପୂର୍ଣ୍ଣରୂପେ ନଷ୍ଟ କରିଦେବ । ଆମମାନଙ୍କୁ ଏକମନରେ ଗାନ୍ଧିଙ୍କ ସହିତ ସହଯୋଗ କରିବାକୁ ହେବ ।"

ରାଜବାହାଦୁର ବାବୁ ହସିଦେଇ କହିଲେ, "ଆମେ ତ ସମସ୍ତେ ଆଖି ବନ୍ଦ କରି ଗାନ୍ଧିଙ୍କ ପଛେ ପଛେ ଚାଲିଛୁ । ଆପଣ ବିଶ୍ୱାସ କରନ୍ତୁ, କଲିକତା କଂଗ୍ରେସରେ ଗାନ୍ଧିଙ୍କ ପ୍ରସ୍ତାବ ସପକ୍ଷରେ ମୁଁ ମତ ଦେବି ଓ ମୋର ବିଶ୍ୱାସ ଯେ ସବୁ ଲୋକ ଗାନ୍ଧିଜୀଙ୍କୁ ଅନୁସରଣ କରିବେ ।"

ଏହାପରେ ସବୁ ଲୋକ ଏକ ସ୍ୱରରେ ଗାନ୍ଧିଜୀଙ୍କ ପ୍ରତି ସେମାନଙ୍କର ଭକ୍ତି ପ୍ରଦର୍ଶନ କରିଥିଲେ ।

ସମସ୍ତେ ଚାଲିଯିବା ପରେ ଜ୍ଞାନପ୍ରକାଶ ଜ୍ୱାଲାପ୍ରସାଦଙ୍କୁ ପଚାରିଲେ, "କହନ୍ତୁ ଭାଇ, ଆପଣ ତ ବଡ଼ ଚିନ୍ତିତ ଦେଖାଯାଉଛନ୍ତି ।"

ଏକ ଦୀର୍ଘ ନିଶ୍ୱାସ ପକାଇ ଜ୍ୱାଲାପ୍ରସାଦ କହିଲେ, "ଜ୍ଞାନୁ ! ଗଙ୍ଗା ଏବେ ଆଉ ଆମ କଥାରେ ନାହିଁ । ତାକୁ କେମିତି ଭାବରେ ରକ୍ଷା କରିବାକୁ ହେବ, ସେହି କଥା ବିଚାର କରିବାପାଇଁ ମୁଁ ଆସିଛି ।" ଏତିକି କହି ଜ୍ୱାଲାପ୍ରସାଦ ସମସ୍ତ କଥା ତାଙ୍କୁ କହିଦେଲେ ।

ଜ୍ୱାଲାପ୍ରସାଦଙ୍କର ସବୁକଥା ଶୁଣିସାରି ଜ୍ଞାନପ୍ରକାଶଙ୍କ ମୁହଁରେ ଚିନ୍ତାର ଏକ ରେଖା ଫୁଟିଉଠିଲା । ସେ କହିଲେ- "ମୁଁ ତ ଭାଇ ଏହି କଥାକୁ ଡରୁଥିଲି । ଶିକ୍ଷା ଓ ସ୍ୱାଚ୍ଛନ୍ଦ୍ୟ

ସହିତ ଅଭିଶାପ ସର୍ବଦେଳେ ଲାଗିରହିଥାଏ । କାରଣ ଲୋକ ସୌଭାଗ୍ୟର ମୋହରେ ପଡ଼ି ନିଜର ବିବେକ ଓ ସଂଯମ ହରାଇ ଚରିତ୍ରହୀନ ହୋଇ ବସେ । ଯାହାହେଉ ଆପଣ ଏହି ବିଷୟରେ କିଛି ଚିନ୍ତା କରିଛନ୍ତି କି ?"

"ଜ୍ଞାନୁ, ମୁଁ ତ କିଛି ବୁଝିପାରୁନାହିଁ । ଆମେ ଯାଇ ଜୌନପୁରରେ ତା' ପାଖରେ ରହିବା ପାଇଁ ଭିକ୍ଷୁ କହୁଛି । ତୋ ଭାଉଜ ମଧ୍ୟ ଭିକ୍ଷୁ କଥାକୁ ପସନ୍ଦ କରୁଛନ୍ତି; କିନ୍ତୁ ମୁଁ ଜାଣେ ନାହିଁ ମୋତେ କାହିଁକି ଜୌନପୁର ଯିବାକୁ ଆଦୌ ଭଲ ଲାଗୁନାହିଁ । ଜୌନପୁରରେ ଯାଇ ରହିବା ପାଇଁ ଗଙ୍ଗା ମୋତେ ସାଧାରଣ ଶିଷ୍ଟାଚାରରେ ବି କହିନାହିଁ । ସେ ଆମଠାରୁ ଦୂରରେ ରହିବା ପାଇଁ କାହିଁକି ଚାହୁଁଥିଲା ଏବେ ମୁଁ ବୁଝୁଛି ।"

ଜ୍ଞାନପ୍ରକାଶ କିଛି ଚିନ୍ତା କଲାପରେ କହିଲେ, "ଆପଣ ହେଉଛନ୍ତି ଘରର ମାଲିକ, ଆପଣ ଗଙ୍ଗାପ୍ରସାଦଙ୍କର ପିତା । ଆପଣଙ୍କୁ ନିଜକୁ ଉପାସ୍ୟ କରିବାକୁ ହେବ । ମୁଁ ବୁଝି-ପାରୁନାହିଁ, ଗଙ୍ଗାପ୍ରସାଦ କ'ଣ କହିବ ସେଥିପାଇଁ କାହିଁକି ଆପଣ ଅପେକ୍ଷା କରୁଛନ୍ତି ?"

ବହୁତ ଉଦାସ ହୋଇ ଜ୍ୱାଲାପ୍ରସାଦ କହିଲେ, "ମୋର ଇଚ୍ଛା, ତା'ର ମୋ ପ୍ରତି ଯେଉଁ ଧାରଣା ଏବଂ ଯେଉଁ ମାନ-ସମ୍ମାନ ଅଛି ତାହା ସେହିପରି ରହୁ; କିନ୍ତୁ ମୁଁ ସେଠାକୁ ଯାଇ ଯଦି ଆମ ଭିତରେ କୌଣସି ସଂଘର୍ଷ ହୋଇଗଲା ତା'ହେଲେ ତା'ର ମୋ' ପ୍ରତି ଯେଉଁ ଖାତିର ଯେଉଁ ମାନସମ୍ମାନ ଅଛି ସେତକ ମୁଁ ହରାଇ ବସିବି । ତାକୁ ହରାଇ ବସିବାର ଅର୍ଥ ନିଜ ପୁଅ ଉପରୁ ସମସ୍ତ ଅଧିକାର ହରାଇ ବସିବା ।"

"କିନ୍ତୁ ଭାଇ, ଗଙ୍ଗାକୁ ଏପରି ଏକାକୀ ଓ ନିରାଶ୍ରୟ ଭାବରେ ଛାଡ଼ି ଆପଣ କ'ଣ ତାକୁ ରକ୍ଷା କରିପାରିବେ ? ଗଙ୍ଗାପ୍ରସାଦକୁ ରକ୍ଷାକରିବା ଆପଣଙ୍କ ନିକଟରେ ଏକ ଜୀବନ-ମରଣ ସମସ୍ୟା । ଯାହା ଖରାପ ହେବାର ତ ହେଲାଣି । ଆପଣ ଗଲେ ଅବସ୍ଥା ଅନେକ ସୁଧୁରିଯିବ । ମୁଁ ତ ଦୁଇଦିନରେ କଲିକତା ଯାଉଛି । ଆଜି ଅଗଷ୍ଟ ଉଣେଇଶ, ଚାରି ସେପ୍ଟେମ୍ବରକୁ କଲିକତାରେ କଂଗ୍ରେସର ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ହେବ । ସେହି ବିଷୟରେ ଏବେ ଆମର ପରାମର୍ଶ ଚାଲିଥିଲା । ଦଶ କିମ୍ବା ଏଗାର ସେପ୍ଟେମ୍ବରକୁ ମୁଁ ସିଧା ଜୌନପୁର ଚାଲିଆସିବି । ଆପଣ ସପ୍ତାହକ ଭିତରେ ସବୁ ପିଲାପିଲି ନେଇ ଜୌନପୁର ଚାଲିଯାଆନ୍ତୁ ।"

"ତା'ହେଲେ ଏଠି ଆଲାହାବାଦ ବଙ୍ଗଳା ପୁଣି କ'ଣ ହେବ ?"

"ଏଥିରେ କୌଣସି ଭଡ଼ାବାଲାକୁ ରଖି ଦିଅନ୍ତୁ । ମୋର ବନ୍ଧୁ ମନମୋହନ ବାନାର୍ଜୀଙ୍କର ଗୋଟାଏ ବଙ୍ଗଳା ଦରକାର । ସତୁରି ଅଶୀ ଟଙ୍କା ହେଲେ ହେବ ।

ଆପଣ ଯଦି କହିବେ ମୁଁ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବି ।''

ହରିଦାସ କଣ୍ଠରେ ଜ୍ୱାଲାପ୍ରସାଦ କହିଲେ, ''ନାହିଁ, ଭଡ଼ା ଦେବାପାଇଁ ମୁଁ ସେ ଘର କରିନାହିଁ । ତୁ କାହିଁକି ସେହି ବଙ୍ଗଳାକୁ ଚାଲି ଆସୁନୁ ? ତୋ ଘରଚୋଳାରେ ତ ଆହୁରି କଷ୍ଟ ଲାଗିବ । ସେ ପର୍ଯ୍ୟନ୍ତ ମୋ ବଙ୍ଗଳାରେ ରହ ଓ ତୋର ଏହି ବଙ୍ଗଳା ମନମୋହନ ବାନାର୍ଜୀଙ୍କୁ ଦେଇଦିଅ ।''

ଜ୍ୱାଲାପ୍ରସାଦ ଘରକୁ ଫେରିଲାବେଳେ ମନେ ହେଉଥିଲା ସତେ ଯେମିତି ପାଦ ଦୁଇଟା ତାଙ୍କର ଘୂରୁଛି । ଏସବୁ କ'ଣ ହେଉଛି, କାହିଁକି ହେଉଛି ଓ କେମିତି ହେଉଛି, ସେ କିଛି ଜାଣିପାରୁ ନଥିଲେ । ଘରସାରା ଏକ ଅସମ୍ଭବ ହରିଦାସ ଗ୍ରସ୍ତ ପୂରି ରହିଥିଲା । ଘରକୁ ଫେରିବା ମାତ୍ରେ ସେ ଗଙ୍ଗାପ୍ରସାଦକୁ ଗୋଟାଏ ଚିଠି ଲେଖିଲେ । ସେ ଚିଠିରେ ସେ ସମସ୍ତ ପରିବାର ନେଇ ଜୌନପୁରରେ ରହିବାପାଇଁ ଚାହୁଁଛନ୍ତି ବୋଲି ଲେଖି ଦେଇଥିଲେ ।

ଚିଠି ଦେବାର ଚାରିଦିନ ପରେ ଗଙ୍ଗାପ୍ରସାଦଙ୍କଠାରୁ ଉତ୍ତର ମିଳିଲା । ସେଥିରେ ସେ ବାପାଙ୍କ ପ୍ରସ୍ତାବକୁ ସ୍ୱାଗତ କରିବା ସାଙ୍ଗେ ସାଙ୍ଗେ ଖୁବ୍ ନିକଟ ଭବିଷ୍ୟତରେ ତାଙ୍କର ବଦଳି ହୋଇଯିବ ବୋଲି ସୂଚନା ଦେଇଥିଲେ । ଗଙ୍ଗାପ୍ରସାଦଙ୍କ ଭାଷାରେ ଜ୍ୱାଲାପ୍ରସାଦ କୌଣସି ଆଗ୍ରହ ଦେଖି ନ ଥିଲେ । ତଥାପି ସପ୍ତାହକ ପରେ ସେ ଯମୁନା, ରୁକ୍ମଣୀ ଓ ଗଙ୍ଗାପ୍ରସାଦଙ୍କର ଦୁଇଟି ପିଲାଙ୍କୁ ସାଙ୍ଗରେ ଧରି ଜୌନପୁର ଚାଲିଗଲେ । ତା'ର ତିନିଦିନ ପୂର୍ବରୁ ଭିକ୍ଷୁ ଜୌନପୁର ଚାଲିଯାଇଥିଲା ।

ଜ୍ୱାଲାପ୍ରସାଦ ଓ ପରିବାରର ଅନ୍ୟସବୁ ଲୋକ ଚାଲିଆସିବା ପରେ ଗଙ୍ଗାପ୍ରସାଦଙ୍କର ଜୀବନ ଏକପ୍ରକାର ରାସ୍ତାକୁ ଚାଲି ଆସିଥିଲା । ଏବେ ତାଙ୍କର ବେଶି ସମୟ ଘରେ କଟୁଥିଲା । ତାଙ୍କ ମଦ ପିଇବା ବିଷୟରେ ଏତିକି କୁହାଯାଇପାରେ ଯେ, ନିଜର ସାଙ୍ଗସାଥୀ ଜୁଟିଲେ କେତେବେଳେ କେମିତି ମଝିରେ ମଝିରେ ସେ ପିଉଥିଲେ । ଜ୍ୱାଲାପ୍ରସାଦ ଗଙ୍ଗାପ୍ରସାଦଙ୍କର ଗତିବିଧି ଦେଖି ବର୍ତ୍ତମାନ ଏକପ୍ରକାର ସନ୍ତୁଷ୍ଟ ଥିଲେ । ସେ ଜୌନପୁର ଆସି ଭଲ କରିଛନ୍ତି ବୋଲି ତାଙ୍କର ମନେହେଲା । ରୁକ୍ମଣୀଙ୍କ ରୂପରେ ପ୍ରସନ୍ନତା ଦେଖାଦେଇଥିଲା । ଘରସାରା ହସଖୁସିର ଏକ ବାତାବରଣ ଘେରି ରହିଥିଲା ।

କିନ୍ତୁ ଗଙ୍ଗାପ୍ରସାଦଙ୍କ ମୁହଁରେ ଏକପ୍ରକାର ମଳିନତା ଦେଖାଦେଇଥିଲା; ସତେ ଯେମିତି ତାଙ୍କ ମନ ଓ ମସ୍ତିଷ୍କ ଉପରେ ଏକ ଗୁରୁଭାର ଆସି ପଡ଼ିଥିଲା । ଜ୍ୱାଲାପ୍ରସାଦ ମଧ୍ୟ ଗଙ୍ଗାପ୍ରସାଦଙ୍କର ଗମ୍ଭୀରତା ଦେଖି ଆଶ୍ଚର୍ଯ୍ୟ ହେଉଥିଲେ; କିନ୍ତୁ ସେ ବିଷୟରେ ତାଙ୍କୁ କିଛି କହିବାପାଇଁ ସେ ଉଚିତ ମନେକରୁ ନ ଥିଲେ । ସେ ଠିକ୍ ଜାଣିଥିଲେ ଯେ

ମଳିନତା କ୍ଷଣିକ ଓ ଆସ୍ତେ ଆସ୍ତେ ତାହା ଉଭେଇଯିବ ।

ସେଦିନ ରବିବାର । ଶନିବାର ସନ୍ଧ୍ୟାରେ ଗଙ୍ଗାପ୍ରସାଦ ବନାରସର କୌଣସି ଜଣେ ବନ୍ଧୁଙ୍କ ସହିତ ସାକ୍ଷାତ୍ କରିବାପାଇଁ ଚାଲିଯାଇଥିଲେ । ଜ୍ୱାଲାପ୍ରସାଦ ବାହାର ବାରଣ୍ଡାରେ ବସି ତାଙ୍କ ନାତି ନବଲକିଶୋରଙ୍କୁ ପଢ଼ାଉଥିଲେ ଓ ତାଙ୍କର ନାତୁଣୀ ବିଦ୍ୟା ପାଖରେ ବସି ଗୋଟିଏ ସ୍ଲେଟ୍‌ରେ ଅଙ୍କ ଲେଖୁଥିଲା । ସେତେବେଳକୁ ନବଲ-କିଶୋରର ବୟସ ତେର ବର୍ଷ ଓ ସେ ଅଷ୍ଟମ ଶ୍ରେଣୀରେ ପଢ଼ୁଥିଲା ।

ଦୁଇପ୍ରହର ହୋଇଯିବାରୁ ଜ୍ୱାଲାପ୍ରସାଦ ପିଲାଙ୍କ ପଢ଼ା ବନ୍ଦ କରିଦେଲେ । ଅକ୍‌ଟୋବର ଦ୍ୱିତୀୟ ସପ୍ତାହ ଚାଲୁଥିଲେ ବି ସେ ପର୍ଯ୍ୟନ୍ତ ଗରମ ଛାଡ଼ି ନ ଥିଲା । ଜ୍ୱାଲାପ୍ରସାଦ ଗାଧୋଇବା ପାଇଁ କୂଅ ଆଡ଼କୁ ପାଦବଢ଼ାଇ ଦେଖିଲେ ପାଖରେ ଗୋଟାଏ ଘୋଡ଼ାଗାଡ଼ି ଆସୁଛି ଓ ଜ୍ଞାନପ୍ରକାଶ ସେଥିରେ ବସିଛନ୍ତି । ଜ୍ୱାଲାପ୍ରସାଦଙ୍କର ପାଦ ଅଟକିଗଲା ଓ ସେ ଜ୍ଞାନପ୍ରସାଦଙ୍କ ଆଡ଼କୁ ଆଗେଇ ଯାଇ ପଚାରିଲେ, "ଆରେ କିଏ ଜ୍ଞାନୁ ?"

ଜ୍ୱାଲାପ୍ରସାଦ ଜ୍ଞାନପ୍ରକାଶଙ୍କର କିଛିନି ଉତ୍ତର ଦେଇ ତାଙ୍କ ସାଙ୍ଗରେ ଯାଇ ବାରଣ୍ଡାରେ ବସିଲେ ଓ କହିଲେ, "ତୁ ତ କହିଥିଲୁ, ଦଶ ଏଗାର ବେଳକୁ ଆସିବୁ ବୋଲି; କିନ୍ତୁ ଦଶହରା ଶେଷକରି ଆସିଲୁ ବୋଧହୁଏ !"

"ହଁ, ଆପଣ ଜାଣନ୍ତି କଲିକତାରେ ଦୁର୍ଗାପୂଜା ବହୁତ ଜଣାଶୁଣା । କଂଗ୍ରେସ ପରେ ସେଠି ଟିକେ ଅଟକିଗଲି । ତା'ଛଡ଼ା ବଂଗାଳୀମାନଙ୍କ ଭିତରେ ବର୍ତ୍ତମାନ ବଡ଼ ରାଜନୀତିକ ପରିବର୍ତ୍ତନ ଚାଲିଛି । ବଙ୍ଗଳାର କଂଗ୍ରେସ ଲୋକେ ନିଜ ପରାଜୟ ପରେ ଆଉ ଗୋଟିଏ ସାମ୍ମୁଖ୍ୟ ଗଢ଼ୁଛନ୍ତି ନା, ତାହାକୁ ଦେଖିବା ପାଇଁ ମୁଁ ରହିଗଲି । ବର୍ତ୍ତମାନ କଲିକତାରୁ ମୁଁ ସିଧା ଚାଲିଆସୁଛି । ଅବଶ୍ୟ ବାଟରେ ବନାରସରେ ଟିକିଏ ରହିଯାଇଥିଲି । ସେଠି ସ୍ଥାନୀୟ କର୍ମୀମାନଙ୍କର ଗୋଟିଏ ସଭା ଥିଲା । ସେଥିରେ ଯୋଗ ଦେଇ ସେଇଠୁ ଜୌନପୁରକୁ ଚାଲିଆସିଲି ।"

"ଗଙ୍ଗା ମଧ୍ୟ ବନାରସରେ ତାହାର କୌଣସି ବନ୍ଧୁ ସହିତ ସାକ୍ଷାତ୍ କରିବା ପାଇଁ ଗତ ସନ୍ଧ୍ୟାରେ ଚାଲିଯାଇଛି । କାଲି ସକାଳେ ଫେରିଆସିବ ।"

ଜ୍ଞାନପ୍ରକାଶ ସତେ ଯେମିତି ଚୁପଚାପ ମନକୁ ମନ କହିଲେ, "ଗଙ୍ଗାପ୍ରସାଦ ତେବେ ବନାରସ ଯାଇଛି । ମୋ ଆଖି ତା ହେଲେ ଭୁଲ ଦେଖିନାହିଁ ।"

ଜ୍ୱାଲାପ୍ରସାଦ ପଚାରିଲେ, "ତୁ କ'ଣ ଗଙ୍ଗାପ୍ରସାଦକୁ ଦେଖିଥିଲୁ କି ?"

"ହଁ ଦେଖିଥିଲି; କିନ୍ତୁ ଖୁବ୍ ଦୂରରୁ ଦେଖିଥିଲି । ସେ ଧୋତି କାମିଜ ପିନ୍ଧିଥିଲା ନା, ସେଇଥିପାଇଁ ଚିହ୍ନି ପାରିଲି ନାହିଁ । ପୁଣି ରାତି ସମୟଟା, ଭଲ ଆଲୁଅ ବି ନଥିଲା ।

ସେଥିପାଇଁ ଭାବିଲି ମୋ ଆଖି ବୋଧହୁଏ ଭୁଲ ଦେଖୁଛି । ଆଚ୍ଛା, ସେକଥା ଛାଡ଼ନ୍ତୁ, ଏଠିକା ଅବସ୍ଥା କ'ଣ କୁହନ୍ତୁ ?"

"ମୋତେ ତ ସେମିତି ବିଶେଷ କିଛି ଦେଖାଯାଉ ନାହିଁ । ସେ ଟାଇମ୍‌ରେ ଆସି ଟାଇମ୍‌ରେ ଯାଉଛି । ବଡ଼ କାଇଦାରେ ରହୁଛି । ସମସ୍ତଙ୍କର ଭଲମନ୍ଦ ବି ବୁଝୁଛି ।" ଏହି କଥା କହୁ କହୁ ଜ୍ୱାଲାପ୍ରସାଦଙ୍କ ମୁଖରେ ସନ୍ତୋଷର ଛାୟା ସ୍ପଷ୍ଟ ହୋଇଉଠିଲା ।

ଜ୍ଞାନପ୍ରକାଶ ହସିଦେଇ କହିଲେ, "ମୁଁ ଆପଣଙ୍କୁ କ'ଣ କହୁଥିଲି ? ଆପଣ ଏଠାକୁ ଆସିବାରୁ ଫଳ ଭଲ ହେଲା । ସେଥିପାଇଁ ମୁଁ ଭାରି ଖୁସି । କିନ୍ତୁ ଆପଣ କାହିଁକି ଭାରି ଚିନ୍ତିତ ଦେଖାଯାଉଛନ୍ତି—, କଥା କ'ଣ ?"

"ଆଜି ସକାଳୁ ରୁକ୍ମଣୀର ବ୍ୟଥା ଆରମ୍ଭ ହୋଇଛି । ତାର ସମସ୍ତ ପୂରା ହୋଇଗଲାଣି । ଗଙ୍ଗାପ୍ରସାଦ ଏଠି ନାହିଁ । ଧାଇ ଆଣିବା ପାଇଁ ମୁଁ ଭିକ୍ଷୁକୁ ପଠାଇଛି । କଥା ହେଉଛି ଯେ କୌଣସି ମୁହୂର୍ତ୍ତରେ ପିଲା ଜନ୍ମ ହୋଇପାରେ ।"

"କ'ଣ ଧାଇ ଡକାଇଛନ୍ତି ! ଲେଡ଼ି ଡାକ୍ତର କିମ୍ବା ମିଡ୍‌ୱାଇଫ୍‌କୁ ଡକାଇ ନାହାନ୍ତି ? ଆପଣଙ୍କର ସେହି ପୁରୁଣା କଥା ଚାଲିଛି । ଆପଣ ରହନ୍ତୁ । ମୁଁ ବର୍ତ୍ତମାନ ସିଭିଲ୍ ହସ୍‌ପିଟାଲରୁ ଲେଡ଼ି ଡାକ୍ତର କିମ୍ବା ନର୍ସଙ୍କୁ ଡକାଇ ଆଣୁଛି ।" ଏହା କହି ଜ୍ଞାନପ୍ରକାଶ ଉଠି ଛିଡ଼ାହେଲେ ।

ଏହି ସମୟରେ ଭିକ୍ଷୁ ଧାଇକୁ ସଙ୍ଗରେ ଧରି ଆସୁଥିବାର ଦେଖାଗଲା ।

"ଆଚ୍ଛା ଭଲ ହେଲା, ଟିକିଏ ରହିଯା ! ଏହି ଧାଇ ଆସୁଛନ୍ତି, କ'ଣ କହୁଛନ୍ତି ଦେଖ । ସ୍ୱା ଭିତରେ ମୁଁ ଗାଧୋଇ ପଡ଼ୁଛି ଓ ତୁ ଲୁଗାପଟା ବଦଳି ଧୋଇଧାଇ ହୋଇପଡ଼ ।"

ଜ୍ୱାଲାପ୍ରସାଦ ଗାଧୋଇ ସାରି ଜ୍ଞାନପ୍ରକାଶଙ୍କ ପାଖରେ ଆସି ପହଞ୍ଚିଲେ । ସେହି ସମୟରେ ଭିକ୍ଷୁ ଭିତରୁ ବାହାରି ଆସି କହିଲା, "ଭାଇ, ବୋହୂଙ୍କର ପୁଅଟିଏ ହୋଇଛି । ଯାହା ହେଉ ଠିକ୍ ବେଳରେ ଆମେ ଧାଇଙ୍କୁ ନେଇ ଆସିଥିଲେ ।"

ଜ୍ୱାଲାପ୍ରସାଦଙ୍କ ମୁହଁ ପ୍ରସନ୍ନ ହୋଇଗଲା ଓ ସେ ଉଠି ଠିଆହେଲେ । ସେ ଦୁଇଟି ଟଙ୍କା କାଢ଼ି ଭିକ୍ଷୁକୁ ଦେଲେ ଓ କହିଲେ, "ପଇସା ଭଂଗାଇ ଆଣି ମା' ପୁଅ ଦୁହିଙ୍କୁ ଚୁଆଁଇ ଦେଇ ବାଣ୍ଟିଦିଅ । ମହୁରିବାଲାକୁ ଯାଇ ଡାକିଆଣ ଓ ସଙ୍ଗରେ ପଣ୍ଡିତଜୀଙ୍କୁ ମଧ୍ୟ ନେଇ ଆସିବୁ ।"

ଭିକ୍ଷୁ ହସି ଦେଇ କହିଲା, "ଏହି ବର୍ତ୍ତମାନ ଡାକିବି ! ସୁନିଆକୁ ପଠାଇଦିଅ ଗାଆଣକୁ ଡାକି ଆଣିବ ଓ ବାଟରେ ଆସିଲାବେଳକୁ ପଣ୍ଡିତଜୀଙ୍କୁ ନେଇ ଆସିବ । ମୁଁ ମହୁରିଆକୁ ଡାକି ଆଣିଲାବେଳେ ବଜାରରେ ପଇସା ଭଙ୍ଗାଇ ଆଣିବି ।"

ଗଙ୍ଗାପ୍ରସାଦ ପ୍ରାୟ ଅଧରାତ୍ରି ବେଳକୁ ବନାରସରୁ ଫେରିଲେ । ସେତେବେଳ ପର୍ଯ୍ୟନ୍ତ ବି ଘରେ ଗହଳ ଚହଳ ଶେଷ ହୋଇ ନ ଥିଲା । ଜ୍ୱାଲାପ୍ରସାଦ ଓ ଜ୍ଞାନପ୍ରକାଶ ଶୋଇବା ପାଇଁ ବାହାରୁଥିଲେ । ଜ୍ଞାନପ୍ରକାଶଙ୍କୁ ଦେଖିଲା ମାତ୍ରେ ଗଙ୍ଗାପ୍ରସାଦ କହିଲେ, "ବାଃ, କାକା, ତମେ ଆସିବ ବୋଲି ଆମେ କେତେ ଦିନୁ ଅନାଇଁ ବସିଛୁ । କଲିକତାରେ ତ ବହୁତ ଦିନ ରହିଗଲ, କେବେ ଆସିଲ ?"

"ମୁଁ ତ ଆଜି ଦୁଇପ୍ରହରେ ଆସି ପହଞ୍ଚିଲି । କାଲି ବନାରସରେ ଟିକିଏ ଅଟକି-ଗଲି । ତମକୁ ମୁଁ ବନାରସରେ ଦେଖିଥିଲି; କିନ୍ତୁ ଭଲକରି ଚହ୍ନି ପାରିଲି ନାହିଁ । ତମେ ବହୁତ ତରତରରେ ଯାଉଥିଲ ବୋଲି ଡାକିଲି ନାହିଁ । ପୁଣି ଭାବିଲି, କାଳେ ଆଉ କାହାକୁ ଭୁଲରେ ଦେଖିଥିବ ।" ଜ୍ଞାନପ୍ରକାଶ ଏକ ସାର୍ଥକ ଦୃଷ୍ଟିରେ ଗଙ୍ଗାପ୍ରସାଦଙ୍କୁ ଚାହିଁ କହିଲେ, "ମୋ ଆଖି କେବେ ଭୁଲରେ ପଡ଼େ ନାହିଁ, ତମେ ନିଶ୍ଚୟ ସେହି ଲୋକ ।"

ଗଙ୍ଗାପ୍ରସାଦ ମନେ ମନେ ଡରୁଥିଲେ । କାଳେ କେଉଁ କଥାରେ ଜ୍ଞାନପ୍ରକାଶ ଯୁକ୍ତିତର୍କ ଆରମ୍ଭ କରିଦେବେ । ଏହି ସମୟରେ ଜ୍ୱାଲାପ୍ରସାଦ ଉଠି ଠିଆହୋଇ କହିଲେ, "ଚାଲ ଶୋଇବା, ରାତ୍ରି ଗୋଟାଏ ବାଜିଲାଣି । ଦିନଯାକ ଲୋକ ଯା-ଆସ ଲାଗିଛି । ବହୁତ କ୍ଳାନ୍ତ ଲାଗିଲାଣି ।"

"ହଁ ଭାଇ, ତମେ ଯାଇ ଶୁଅ ।" ଏତିକି କହି ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କୁ ଅଭିନନ୍ଦନ ଜଣାଇଲେ, "ପୁତ୍ର ଭାଗ୍ୟବାନ ହେଉ । ଖୁବ୍ ଶୁଭଲଗ୍ନରେ ହୋଇଛି । ଘର ଭିତରକୁ ଯାଅ । ଏଇ ଅଳ୍ପ ସମୟ ହେଲା ଗାନବାଜଣା ଶେଷ ହୋଇଛି । ଲୁଗାପଟା ବଦଳି ଶୋଇଯାଅ । ବନାରସରେ ମୁଁ ଯାହା ଦେଖିଲି, ମୋତେ କିଛି ଭଲ ଲାଗିଲା ନାହିଁ । ସେ ବିଷୟରେ କାଲି କଥାବାର୍ତ୍ତା ହେବା ।"

"କିନ୍ତୁ ମୋର ଇଚ୍ଛା ବର୍ତ୍ତମାନ ଆମେ କଥାବାର୍ତ୍ତା ଶେଷ କରିଦେବା ଭଲ; କାରଣ ଏଠି ଆଉ କେହି ବାହାନ୍ତି । ଏଠି ମୋ ପାଖରେ ମଲ୍ଲିକା ଥିଲା । ବାପା ଓ ଘରର ଆଉ ସମସ୍ତେ ଆସିବାରୁ ମୁଁ ତାକୁ ଜୌନପୁରରୁ ବନାରସ ପଠାଇ ଦେଇଛି । ନଚେତ୍ ଏତେ ଝିନ୍‌ଝଟ, ଏତେ ମୁଣ୍ଡବ୍ୟଥାରେ ପଶନ୍ତା କିଏ ? କ'ଣ କହୁଛନ୍ତି, ମୁଁ ଯାହା କରିଛି କ'ଣ ଭୁଲ୍ କରିଛି ?"

"ନାହିଁ, ସବୁ ଠିକ୍ ଅଛି ଯେ, କିନ୍ତୁ ଏଥିରେ ତମର ଖର୍ଚ୍ଚ ଆହୁରି ବଢ଼ିଗଲା । ବନାରସରେ ମଲ୍ଲିକାର ଖର୍ଚ୍ଚ, ପୁଣି ତମର ବନାରସ ଯିବା ଆସିବା ଖର୍ଚ୍ଚ । ମୋର ଯେତେ ଦୂର ଧାରଣା, ତମର ପଇସାପତ୍ର ଅବସ୍ଥା ସେତେ ଭଲ ନୁହେଁ ।"

"ହଁ, ସତରେ ପଇସାପତ୍ର ଅବସ୍ଥା ଭଲ ନୁହେଁ । କିନ୍ତୁ ଆଲ୍ଲାହାବାଦ ଖର୍ଚ୍ଚ

ବର୍ତ୍ତମାନ କମିଯାଇଛି । ଏଠି ଜୌନପୁରରେ ବି ଲୋକେ ଫୁସ୍‌ଫାସ୍ ଆରମ୍ଭ କରି ଦେଇଥିଲେ; ତାକୁ ପୁଣି ବନ୍ଦ କରିବା ଦରକାର ତ !''

''ଜ୍ଞାନପ୍ରକାଶ ପ୍ରଥମେ କିଛିକାଳ ଚୁପରହି ପୁଣି ବଡ଼ ଆଗ୍ରହରେ ପଚାରିଲେ, ''ଗଙ୍ଗା, ତୁ କ'ଣ ସେ ରାସ୍ତା ଛାଡ଼ି ପାରିବୁ ନାହିଁ ? ମୁଁ ତୋତେ କହିବାକୁ ଚାହେଁ ଯେ ସେ ରାସ୍ତା ସର୍ବନାଶର ରାସ୍ତା ।''

ଗଙ୍ଗାପ୍ରସାଦ ବି ଗମ୍ଭୀର ହୋଇ କହିଲେ, ''କାକା ! ମୁଁ ବି ଜାଣେ ଏ ରାସ୍ତା ସର୍ବନାଶର ରାସ୍ତା । ବେଳେ ବେଳେ ମୁଁ ବି ମନେ ମନେ ଏମିତି ଅନୁଭବ କରେ; କିନ୍ତୁ ଠିକ୍ ସେହି ସମୟରେ ପୁଣି ଭାବେ, ଜୀବନର ରାସ୍ତାଇ ସର୍ବନାଶର ରାସ୍ତା । ଶେଷରେ ମରିବା ଯଦି ସତ, ତେବେ ଭବିଷ୍ୟତରେ କ'ଣ ହେବ ସେ ବିଷୟରେ ଏତେ ଚିନ୍ତା କରିବାର କିଛି ଲାଭ ନାହିଁ । ଆଜି ଯାହା ଘଟୁଛି ତାହାହିଁ ସତ; କିନ୍ତୁ କାଲି କ'ଣ ହେବ ତା କେହି ଜାଣନ୍ତି ନାହିଁ । ତେଣୁ ସେ ବିଷୟରେ ଚିନ୍ତା କରିବାର କିଛି ଫଳ ନାହିଁ ।''

ଜ୍ଞାନପ୍ରକାଶ ଟିକିଏ କ୍ଲାନ୍ତ ହେଲାପରି କହିଲେ, ''ଅବଶ୍ୟ ଗୋଟାଏ ଦୃଷ୍ଟିରୁ ଦେଖିଲେ ଏଥିରେ ଉପରୁ କିଛି ଭୁଲ ଦେଖାଯାଏ ନାହିଁ; କିନ୍ତୁ ସୌଭାଗ୍ୟବଶତଃ ହେଉ କିମ୍ବା ଦୁର୍ଭାଗ୍ୟବଶତଃ ହେଉ ମନୁଷ୍ୟକୁ ଭଲ ମନ୍ଦ ବିଚାର କରିବାର ଶକ୍ତି ମିଳିଛି । ଗଙ୍ଗାପ୍ରସାଦ, ମନୁଷ୍ୟର ଏହି ବିଚାର ବୁଦ୍ଧିକୁ ତମେ ନଷ୍ଟ କରି ପାରିବ କୁଆଡ଼ୁ ? ବର୍ତ୍ତମାନ ତମର ପରିବାର ବଢ଼ୁଛି । ସେମାନଙ୍କ ବିଷୟରେ ତମର ଚିନ୍ତା କରିବା କଥା । ମୁଁ ଜାଣେ ତମର ଖର୍ଚ୍ଚ ବହୁତ ବେଶୀ । ତା ସଙ୍ଗେ ସଙ୍ଗେ ମୁଁ ସ୍ପଷ୍ଟ ବି ଜାଣେ ଯେ ତମେ ଖୁବ୍ ସଚ୍ଚୋଟ, ଲାଞ୍ଚ ମିଛି କାହାଠାରୁ ନିଅ ନାହିଁ । ତେଣୁ ତୁମେ କରଜ କରୁଥିବ ଶୁଣିଲେ ମୁଁ ଆଦୌ ଆଶ୍ଚର୍ଯ୍ୟ ହେବିନାହିଁ ।''

''ଅଲ୍ଲାରଖା ଆସିଲା ଦିନୁ ଅନେକ କମିଯାଇଛି; ନୋହିଲେ ଖୁବ୍ ବଢ଼ିଯା'ନ୍ତାଣି ।''

''ହଁ, ସେ କଥା ସତ ଯେ; କିନ୍ତୁ ଅଲ୍ଲାରଖା ଏଠି କେତେ ଦିନ ରହିବେ ? ତା ଛଡ଼ା ତମେ ଦୁହେଁ କେତେ ଦିନ ଏକାଠି ରହି ପାରିବ ? ନାହିଁ, ଗଙ୍ଗା ସେ କଥା ନୁହେଁ, ତମକୁ ନିଶ୍ଚୟ ତମ ଅଭ୍ୟାସ ବଦଳାଇବାକୁ ପଡ଼ିବ, ଏସବୁ କଥା ଛାଡ଼ିବାକୁ ପଡ଼ିବ । ତମର ସ୍ତ୍ରୀ ଅଛନ୍ତି, ପିଲାଛୁଆ ଅଛନ୍ତି, ତମେ ବଡ଼ଘରର ପିଲା, ତମର ମାନମହତ, କୁଳ ସମାଜ ସବୁ ଅଛି ।''

ଗଙ୍ଗାପ୍ରସାଦ କିଛି ସମୟ ଚୁପ୍ ରହିଗଲେ, ତାପରେ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ ''ପୁଅଝିଅ, ସ୍ତ୍ରୀ, କୁଳ, ସମାଜ, ମାନମର୍ଯ୍ୟାଦା ପ୍ରଭୃତି ଏହି ସଂକୀର୍ଣ୍ଣ ବୃତ୍ତି ଭିତରେ ବାନ୍ଧି ହୋଇ ମନୁଷ୍ୟ ନିଜ ରୂପକୁ କେଡ଼େ ଅସୁନ୍ଦର, କେଡ଼େ ନୀରସ କରି ଦେଇଛି ସତେ ! କାକା, ଏସବୁ ବନ୍ଧନକୁ ନ ଭାଙ୍ଗିଲେ ମନୁଷ୍ୟ କିଛି କରି ପାରିବ

ନାହିଁ । ତମେ ଜଣେ ରାଜନୀତିଜ୍ଞ, ତମେ ଏସବୁ ଜାଣିବା ଉଚିତ୍ । ଆଜି ଯୁଗରେ ଲୋକ ଜେଲ୍ ଯିବା, ଛୁଆଁ-ଅଛୁଆଁ ବାରଣ ନ କରିବା, ପୁଅ ଝିଅ ସ୍ତ୍ରୀ ଏମାନଙ୍କ ଲୋଭରେ ପଡ଼ି କାପୁରୁଷ ନ ହେବା ଇତ୍ୟାଦି ସତ୍ୟକୁ ସ୍ୱୀକାର କରି ପାରିଲେ ଯାଇ ରାଜନୀତିରେ ହାତ ଦେଇପାରିବ । ତମେ ଏଣେ ମାନମର୍ଯ୍ୟାଦା, କୁଳ ସମ୍ଭ୍ରମ କଥା କହୁଛ; ତେଣେ କଲିକତାରେ ଖିଲାଫତ୍ ଆନ୍ଦୋଳନ ପାଇଁ ପ୍ରସ୍ତାବ ପାସ୍ କରି ଆସିଛ । ତମ ପରି ଲୋକଙ୍କ ମୁହଁରୁ ଏସବୁ କଥା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।''

ଗଙ୍ଗାପ୍ରସାଦଙ୍କର ଏ ଯୁକ୍ତି ଶୁଣି ଜ୍ଞାନପ୍ରକାଶ ମୁରୁକିହସା ଦେଇ କହିଲେ, ''ଦେଖୁଛି ତମେ ଜଣେ ବଡ଼ ବୁଝିବା ସୁଝିବା ଲୋକ ହୋଇଗଲଣି, ତମେ ଯାହା କହୁଛ ତାହା ଭୁଲ ନୁହେଁ; କିନ୍ତୁ ତା ସମ୍ପୂର୍ଣ୍ଣ ସତ୍ୟ ମଧ୍ୟ ନୁହେଁ । ତୁମେ ଅର୍ଦ୍ଧ-ସତ୍ୟର ଆଶ୍ରୟ ନେଇଛ । ତମେ ଯଦି କହୁଥାଅ ଯେ ବାସ୍ତବିକ ଜୀବନ ଓ ତାର ପ୍ରଗାଢ଼ ପ୍ରଚଳିତ ବିଧିବିଧାନର ବିରୋଧ କରୁଛି, ତାହା ସ୍ୱୀକାର କରିବା ପାଇଁ ମୁଁ ରାଜି; କିନ୍ତୁ ଏହି ବିରୋଧର ଦୁଇଟା ରୂପ ଅଛି—ଗୋଟାଏ ବିଶ୍ୱାସର ଓ ଆଉ ଗୋଟିଏ ଅବିଶ୍ୱାସର; ଅବିଶ୍ୱାସର ରାସ୍ତା ତମର ଓ ବିଶ୍ୱାସର ରାସ୍ତା ମୋର ।''

''ଆଚ୍ଛା, ତମେ ବର୍ତ୍ତମାନ ବିଶ୍ୱାସ ଅବିଶ୍ୱାସର ଯେଉଁ ଗଣ୍ଠି ପକାଇଚ, ଦୟାକରି ସେ ଗଣ୍ଠିକୁ ଟିକିଏ ଫିଟାଇ ଦିଅ ।''

''ହେଉ ହେଲା । ତମେ ଏବେ ମନ ଦେଇ ଶୁଣ । ଆମେମାନେ ପରିବାର, ପ୍ରତିଷ୍ଠା, ମାନ-ମର୍ଯାଦା କଥା ଯାହା କହୁଛୁ, ଏ ସଂସାରରେ ତାଠୁ ବଳି କରି ଆହୁରି ବଡ଼ ବଡ଼ କଥା ଅଛି, ଯଥା ତ୍ୟାଗ, ବଳିଦାନ ଇତ୍ୟାଦି । ଏପରି ବୁଝୁଥିବା ଲୋକଙ୍କର ମାର୍ଗ ବିଶ୍ୱାସର ମାର୍ଗ । ଏପରି ଲୋକମାନଙ୍କର ସତ୍ୟ, ତ୍ୟାଗ, ବଳିଦାନ ଉପରେ ଯେତିକି ବିଶ୍ୱାସ ଅଛି ଜୀବନର ପ୍ରଚଳିତ ବିଧିବିଧାନ ପ୍ରତି ତାଠୁ ଖୁବ୍ ବେଶୀ ଅବିଶ୍ୱାସ ନାହିଁ । କିନ୍ତୁ ଏମିତି ଅନେକ ଲୋକ ଅଛନ୍ତି ଯେଉଁମାନେ ତ୍ୟାଗ, ସତ୍ୟ ଇତ୍ୟାଦି ବଡ଼ ବଡ଼ କଥାକୁ ବିଶ୍ୱାସ କରନ୍ତି ନାହିଁ କିମ୍ବା ଜୀବନର ସାଧାରଣ ମାନ, ମର୍ଯ୍ୟାଦା, ପ୍ରତିଷ୍ଠା ଆଦି କଥାକୁ ମଧ୍ୟ ବିଶ୍ୱାସ କରନ୍ତି ନାହିଁ । ମୋ ଦୃଷ୍ଟିରେ ସେମାନଙ୍କର ମାର୍ଗ ହେଉଛି ଅବିଶ୍ୱାସର ମାର୍ଗ; ତେଣୁ ତମେ ଯେଉଁ ରାସ୍ତା ଧରିଛ ତାହା ଅବିଶ୍ୱାସର ରାସ୍ତା । ଆମର ରାସ୍ତା ହେଉଛି ବିଶ୍ୱାସର ରାସ୍ତା । ଆଚ୍ଛା ବହୁତ ହୋଇ ଗଲଣି, ତମେ ବି ବହୁତ ଥକି-ଯିବଣି, ଯା ଘରକୁ ଯା, ଲୁଗାପଟା ବଦଳି ଶୋଇପଡ଼ । ମୁଁ ବି ଶୋଇବାକୁ ଯାଉଛି । କିନ୍ତୁ ମୋ କଥା ତମେ ଟିକିଏ ଭଲକରି ଭାବ । କାଲି ପୁଣି କଥାବାର୍ତ୍ତା ହେବା ।''

ଗଙ୍ଗାପ୍ରସାଦ ନିଜ ଜାଲରେ ନିଜେ ବାନ୍ଧି ହୋଇ ଚକିତ ଓ ମ୍ଳାନ ହୋଇ ସେଇଠି ବସି ରହିଥିଲେ । ଜ୍ଞାନପ୍ରକାଶ ତାଙ୍କୁ ସେହି ଅବସ୍ଥାରେ ଛାଡ଼ି ଚାଲିଗଲେ ।

## ସାତ

ଅଲ୍ଲାରଜା ଧଇଁସଇଁ ହୋଇ ତାଙ୍କ ପାଖି ଖନ ବାଜଯାଉଥିଲା । ସେ ଆସିଲା ମାତ୍ରେ ଚଉକରେ ବସିପଡ଼ି ଖୁବ୍ ଜୋରରେ ଧକେଇବାକୁ ଲାଗିଲେ ଓ ମନେ ମନେ ଗୁଣୁ ଗୁଣୁ ହୋଇ କହିଲେ, "ହେ ଭଗବାନ୍, ଜଣାପଡ଼ୁଛି ଏବେ ଖୁବ୍ ଜୋରରେ ଗଣ୍ଡଗୋଳ ହେବ । ଜୌନପୁରରେ ଏତେ ବଡ଼ ଆନ୍ଦୋଳନ କେହି କେବେ କଳ୍ପନା କରି ନ ଥିଲେ । ଦୁନିଆ ଏବେ ପ୍ରକୃତରେ ଯାଉଛି କୁଆଡ଼େ ?"

ଗଙ୍ଗାପ୍ରସାଦ ହସି ଦେଇ କହିଲେ, "ଆଉ ଯାଉଛି କୁଆଡ଼େ, କହନ୍ତୁ ନରକକୁ ଯାଉଛି । ତେବେ ଆପଣ ତ ନିରାପଦ; ଆପଣ ଏତେ ବ୍ୟସ୍ତ କାହିଁକି ? କିଛି କହନ୍ତୁ, ମୁଁ ଆଗ ଶୁଣେ ।"

"ଆରେ ବାବୁ ଖାଲି ବ୍ୟସ୍ତ ତ ନୁହେଁ ! ଯାହା ଦେଖିଲି, ନିଜ ଆଖିକୁ ବିଶ୍ୱାସ କରି ହେଉନି । ଅଟାଲା ମସ୍‌ଜିଦଠାରୁ ଯେଉଁ ଶୋଭାଯାତ୍ରା ବାହାରିଲା ସେଥିରେ ମୋଟେ ପଚିଶ ଷାଠିଏ ଲୋକ ଥିଲେ । କିନ୍ତୁ ଭଗବାନ ଜାଣନ୍ତି ଏତେ ଲୋକ ପୁଣି କେଉଁଠୁ ଆସି ଜମାହେଲେ !"

ଗଙ୍ଗାପ୍ରସାଦ ହସି ହସି କହିଲେ, "ପଚିଶ ଷାଠିଏ ତ ନୁହନ୍ତି, ମୁଁ ଖବର ପାଇଛି ଦଶବାର ହଜାର ଲୋକ ଥିଲେ । ମାଘ-ପୂର୍ଣ୍ଣିମା ଯୋଗୁ ଗୋମତୀରେ ସ୍ନାନ କରିବା ପାଇଁ ଗାଁଗଣ୍ଡାରୁ ବହୁତ ଲୋକ ଆସିଥିଲେ । ସେମାନେ ସବୁ ଶୋଭାଯାତ୍ରାରେ ପଶିଯିବାରୁ ବହୁତ ଭିଡ଼ ହୋଇଯାଇଥିବ । ଏଥିରେ ଆଶ୍ଚର୍ଯ୍ୟ ହେବାର ତ ମୁଁ କିଛି ଦେଖୁନାହିଁ ।"

"ଆରେ ବାବୁ, ଏତକ ଶୁଣି ଏତେ ବ୍ୟସ୍ତ କାହିଁକି ? ଆଗକୁ ଶୁଣ, ଶୁଣିଲେ ଆଶ୍ଚର୍ଯ୍ୟ ହୋଇଯିବ । ମହାତ୍ମା ଗାନ୍ଧି ଓ କଂଗ୍ରେସର ହୁକୁମରେ ଫରହତୁଲ୍ଲା ଓକିଲାତି ଛାଡ଼ିଦେଲେ ବୋଲି ଘୋଷଣା କରି ଦେଇଛନ୍ତି । ଖାଲି ସେତିକି ନୁହେଁ, ବିକ୍ରମ ସିଂହ ମଧ୍ୟ ନିଜ ଚାକିରି ଛାଡ଼ି ଦେଇଛନ୍ତି । ଶୋଭାଯାତ୍ରା ଶେଷ ହେବା ପରେ ଗୋଟାଏ ମିଟିଂ ହେଲା । ସେହି ମିଟିଂରେ ଏହି ସବୁ କଥା ଘୋଷଣା କରାଯାଇଛି । ମୁଁ ତ ସେ ମିଟିଂ ଦେଖି ଲେଉଟି ପଳାଇ ଆସିଛି । ସେଠି ଯେଉଁ ଉତ୍ସାହ, ଯେଉଁ ସରଗରମ ବାତାବରଣ, ଆଉ ଅଳ୍ପ ସେଠି ରହିଲେ ମୁଁ ହୁଏତ ଇସ୍ତଫା ଦେଇଦେବି ।"

"କ'ଣ କହିଲେ, ଫରହତୁଲ୍ଲା ଓକିଲାତି ଛାଡ଼ିଦେଲେ ? ତାଙ୍କ ଓକିଲାତି ତ ଖୁବ୍ ଭଲ ଚାଲୁଥିଲା । ବିକ୍ରମ ସିଂହ ଆନାବାବୁଙ୍କ କଥା ଅବଶ୍ୟ ମୁଁ ଜାଣେ । ସେ

ଯେମିତ ଅଖାଡ଼୍ରୁ ମୁହଁଖୋର ଲୋକ, ତାଙ୍କ ହାତରେ ସରକାରୀ ଚାକିରୀ ହୁଅନ୍ତା ନାହିଁ । କିନ୍ତୁ ଫରହତୁଲ୍ଲା ଓକିଲାତ ଛାଡ଼ିଦେଲେ କାହିଁକି ? ମୋର ଧାରଣା ତାଙ୍କ ପାଖରେ ଟଙ୍କାପଇସା ବି ସେମିତ ବେଶୀ କିଛି ନାହିଁ ।''

"ଟଙ୍କାପଇସା ବେଶୀର ପ୍ରଶ୍ନ ନାହିଁ; ବରଂ ତାଙ୍କର ଆର୍ଥିକ ଅବସ୍ଥା ଖୁବ୍ ଖରାପ ବୋଲି ଜାଣନ୍ତି । ତାଙ୍କ ବାପାଙ୍କର ଲୁଗା ବ୍ୟବସାୟ ଥିଲା; କିନ୍ତୁ ସେ ଭାରି ଖର୍ଚ୍ଚୀ ଥିଲେ । ସେ ଯେତେ ଯାହା ରୋଜଗାର କରୁଥିଲେ ସବୁ ଏଇ ପୁଅଙ୍କ ପଢ଼ାରେ ଖର୍ଚ୍ଚ କରି ଦେଉଥିଲେ । ମୋର ଧାରଣା ମୃତ୍ୟୁବେଳକୁ ତାଙ୍କର ଅନେକ କରଜ ରହିଯାଇଥିଲା । ଫରହତୁଲ୍ଲାଙ୍କ ଓକିଲାତ ଭଲ ଚାଲିଛି; କିନ୍ତୁ ସେ ବହୁତ ମକଦ୍ଦମା ବିନା ପଇସାରେ ଲଢ଼ନ୍ତି । ଯେ ଯାହା ଦେଲା ତାହା ନିଅନ୍ତି । ନିଜ ଆଡ଼୍ରୁ ପଇସା ମାଗିବା ତାଙ୍କ ହାତରେ ମୋଟେ ହୁଏ ନାହିଁ । ତା' ଛଡ଼ା ନେତାଗିରିରେ ବି ବହୁତ ପଇସା ଖର୍ଚ୍ଚ ହୋଇଯାଏ । ସମୀଉଲ୍ଲାର ଚାକିରୀ ଗଲାଦିନୁ ସେ ଏଣେତେଣେ ବୁଲୁଛି ଓ ସବା ସାନଭାଇ ଆଲାହାବାଦ ସେଣ୍ଟ୍ରାଲ କଲେଜରେ ଟ୍ରେନିଂ ପାଉଛି । ନିଜର ପୁଅଝିଅ ତିନିଜଣ, ଦୁଇଜଣ ସେଥିରୁ ବଡ଼ ହୋଇ ସାରିଛନ୍ତି । ଇଏ ବର୍ତ୍ତମାନ ଓକିଲାତ ଛାଡ଼ି ଏହି ଫାଙ୍କା କାମରେ ବାହାରିଛନ୍ତି । ସବୁ ଜିନିଷର ପୁଣି ତ ଗୋଟାଏ ସୀମା ଅଛି ?''

ଗଙ୍ଗାପ୍ରସାଦ ପଚାରିଲେ, "ଆଚ୍ଛା, ସେ ମିଟିଂରେ ଆଉ ସବୁ କ'ଣ ହେଲା ?''

"ଆରେ ମିଟିଂ କ'ଣ ମ ? ଖାଲି ତ ଗଣ୍ଡଗୋଳ । ଘଟଣା ହେଉଛି ମୁଁ ପୁଷ୍ପଲାଲଙ୍କ ମଦ ଠିକା ଦେଖାଦେଖି କରି ଘରକୁ ଫେରୁଥିଲି । ଆଗରେ ଗୋଟାଏ ବଡ଼ ଶୋଭାଯାତ୍ରା ଦେଖି ଆମ ଗାଡ଼ି ଅଟକିଗଲା । ସେଠି ଅଧଘଣ୍ଟା ଅପେକ୍ଷା କଲାପରେ ଯାଇ ଶୋଭାଯାତ୍ରା ସରିଲା । ତାପରେ ଘରକୁ ଯାଇ ଲୁଗାପଟା ବଦଳି ଟିକିଏ ବିଶ୍ରାମ କରି ତମ ପାଖକୁ ଆସୁଥିଲି । ଅଟାଲା ମସ୍‌ଜିଦ ପାଖରେ ପହଞ୍ଚିଲା ବେଳକୁ ଗୋଟାଏ ମିଟିଂ ହେଉଛି ଦେଖିଲି । ଗାଡ଼ିରୁ ଓହ୍ଲାଇ ଟିକେ ଦେଖିବାପାଇଁ ଗଲି । ଦେଖିଲି ଫରହତୁଲ୍ଲା ମିଟିଂରେ ସଭାପତି ହୋଇଛନ୍ତି ଓ ଖଦଡ଼ପିନ୍ଧା ଦଶବାର ଜଣ ଲୋକ ତାଙ୍କ ଏପାଖ ସେପାଖ ଅଛନ୍ତି । ସେଥିରୁ କେତେକ ଲୋକ ଜମାୟତ୍ତ୍ ଉଲ୍‌ମାର ଓ ଆଉ କେତେକ କଂଗ୍ରେସର । ଫରହତୁଲ୍ଲା ଖଦଡ଼ ପୋଷାକରେ ସେଠି ବକ୍ତୃତା ଦେଉଥିଲେ । କଲିକତା କଂଗ୍ରେସରେ କ'ଣ ହେଲା, ସେହି କଥା କହୁ କହୁ କହିଲେ ଯେ ଗାନ୍ଧି କହିଛନ୍ତି ବର୍ଷକ ଭିତରେ ସେ ଦେଶପାଇଁ ସ୍ୱାଧୀନତା ଆଣିଦେବେ । ସେ ଆହୁରି ମଧ୍ୟ କହିଲେ ଯେ ଖିଲାଫତ୍ କମିଟି କଂଗ୍ରେସ ସଙ୍ଗରେ ମିଶିଗଲେଣି ଓ ମହମ୍ମଦ ଅଲ୍ଲୀ ଏବଂ ସୌକତ ଅଲ୍ଲୀ ମଧ୍ୟ କଂଗ୍ରେସର ନେତା ହୋଇଗଲେଣି । ସେ ପୁଣି କହିଲେ ଯେ ଗାନ୍ଧିଜୀଙ୍କ ଆଦେଶରେ ସେ ଦେଶସେବା ପାଇଁ ଓକିଲାତ ଛାଡ଼ି ଦେଲେଣି । ଲୋକେ ତାଙ୍କୁ ବହୁତ ପ୍ରଶଂସା କଲେ,

ବହୁତ ତାଳିମାରିଲେ, ବହୁତ ଫୁଲମାଳ ବି ପିନ୍ଧାଇଲେ । ତାଙ୍କ ପରେ ବିକ୍ରମସିଂହ ଆସିଲେ; ସେ ବି ଖଦଡ଼ ପିନ୍ଧିଥିଲେ । ସେ ମଧ୍ୟ ଅସହଯୋଗ ଆନ୍ଦୋଳନ ବିଷୟରେ ଏକ ଲମ୍ବା ବକ୍ତୃତା ଦେଇ ସରକାରୀ ଚାକିରି ଛାଡ଼ିଦେଲେଣି ବୋଲି କହିଲେ । ଏସବୁ ଦେଖି ମୁଁ ବି ଭାରି ବ୍ୟସ୍ତ ହେଲି । ମୋ ମନରେ ବି ଏମିତି ଇଚ୍ଛା ସୃଷ୍ଟି ହେଲା ଯେ ମୁଁ ଭାବିଲି ମୁଁ କାଲେ ବକ୍ତୃତା ଦେଇ ପକାଇବି । ସେଥିପାଇଁ ମୁଁ ସେଠୁ ପଳାଇ ଆସିଲି ।"

ଗଙ୍ଗାପ୍ରସାଦ ହସିଦେଇ କହିଲେ, "ଯାହାହେଉ ଅଲ୍ଲାରଖା ସାହେବ ! ଆପଣ ଖୁବ୍ ଭଲ କାମ କଲେ, ଝେଜ ଛାଡ଼ି ପଳାଇ ଆସିଲେ ।"

ଗଙ୍ଗାପ୍ରସାଦ ସେଦିନ ଘରେ ଏକା ଥିଲେ; କାରଣ ଜ୍ୱାଲାପ୍ରସାଦ ମାଘସ୍ନାନ ପାଇଁ ପିଲାପିଲି ସମସ୍ତଙ୍କୁ ନେଇ ପନ୍ଦରଦିନ ପାଇଁ ଆଲ୍ଲାହାବାଦ ଚାଲି ଯାଇଥିଲେ ।

ବଡ଼ ବିଚିତ୍ର ଢଙ୍ଗରେ ଓ ବଡ଼ ଜୋରସୋରରେ ଆନ୍ଦୋଳନ ଚାଲିଥିଲା—ହରତାଳ ବି ଚାଲିଥିଲା, ଚରଖାଚାଲି ହେଉଥିଲା, ଖଦୀ ଓ ସ୍ୱଦେଶୀ ପ୍ରଚାର ହେଉଥିଲା ଏବଂ ବିଦେଶୀ ବର୍ଜନ କରାଯାଉଥିଲା । ପ୍ରସେସନ ଚାଲିଥିଲା । ଖୋଲାଖୋଲି ସରକାରଙ୍କର ନିନ୍ଦା କରାଯାଉଥିଲା ଓ ସାହେବମାନଙ୍କୁ ବେଇଜ୍ଜତ କରାଯାଉଥିଲା । ଜୌନପୁରରେ ଏହି ଆନ୍ଦୋଳନକୁ ଦବାଇବାର ଦାୟିତ୍ୱ କଲେକ୍ଟର ସାହେବ ଗଙ୍ଗାପ୍ରସାଦଙ୍କ ହାତରେ ଦେଇଥିଲେ ଓ ସେ ନିର୍ଦ୍ଦୟ ଭାବରେ ନିଜର କର୍ତ୍ତବ୍ୟ ପାଳନ କରୁଥିଲେ । ଜୌନପୁରର ଜେଲ ପୂରିଯାଇଥିଲା ଓ ଲୋକମାନଙ୍କୁ ବହୁତ ଟଙ୍କା ଜୋରିମାନା କରାଯାଉଥିଲା । ଜୌନପୁରର ଅଧିକାଂଶ କର୍ମୀ ଜେଲରେ ପଡ଼ିରହିଥିଲେ ।

## ଆଠ

ନବଲ ଗାଉଥିଲା, "କହି ରହେ ହୈଁ କରାଚୀ କେ କୈଦୀ, ହମ୍ ତୋ ଜାତେ ହୈଁ ଦୋ-ଦୋ ବରସ କୋ ।"

ଏହାପରେ ବିଦ୍ୟା ଟେନେଇ ଖେନେଇ ଗାଉଥିଲା, "ବୋଲୋଂ···ଅମ୍ମା ମୁହମ୍ମଦ ଅଲ୍ଲୀ କୀ" କିନ୍ତୁ ଏହାର ପରପଦ ତା'ର ମନେ ପଡ଼ୁନଥିଲା; ତେଣୁ ନବଲ ତାଙ୍କୁ ପୂରଣ-କରି ଗାଇଲା, "ଜାନ ବେଟା ଖିଲାଫତ ପେ ଦେ ଦୋ ।"

ଜ୍ଞାନପ୍ରକାଶ କଂଗ୍ରେସ କମିଟି ଅଫିସକୁ ଯିବାପାଇଁ ଲୁଗାପଟା ପିନ୍ଧି ବାହାରୁଥିଲେ । ହସି ହସି ନବଲ ଗାଲରେ ଏକ କୋମଳ ଚାପୁଡ଼ା ଦେଇ କହିଲେ, "ବାପ ଜଏଣ୍ଟ-

ମାଜିଷ୍ଟ୍ରେଟ ହେଲଣି, ପୁଅ ବିପ୍ଳବର ଗୀତ ଗାଉଛି !'' ଏତିକବେଳେ ବିଦ୍ୟା ଧାଇଁଆସି ଜ୍ଞାନପ୍ରକାଶଙ୍କ ପାଦକୁ ଧରିପକାଇ କହିଲା, ''ଜେଜେ, ମୋ ପାଇଁ କଣ୍ଢେଇ ଆଣିବାକୁ ଭୁଲିବେ ନାହିଁ । ପଅରଦିନ ଆମ ପଡ଼ିଶାରେ ମାଲତୀର କଣ୍ଢେଇ ବାହାଘର ହୋଇ ଯାଇଛି । ମୁଁ ବି ମୋ କଣ୍ଢେଇ ବାହାଘର କରିବି ।''

ଏହି ସମୟରେ ଜ୍ୱାଲାପ୍ରସାଦ ପୂଜା ଶେଷକରି ଉଠୁଥିଲେ । ଜ୍ଞାନପ୍ରକାଶ ଯିବାପାଇଁ ବାହାରିଛନ୍ତି ଦେଖି କହିଲେ, ''ଆଜି କ'ଣ ଏତେ ଜଲଦି ବାହାରିଲଣି ! ମୋଟେ ତ ଦଶ ବାଜିଛି; କଥା କ'ଣ ?''

''କ'ଣ ଜାଣିବ ଭାଇ ! ଶୁଣୁଛି ସରକାର କୁଆଡ଼େ କଂଗ୍ରେସ ସ୍ୱୟଂସେବକଦଳକୁ ବେଆଇନ ଘୋଷଣା କରିବାକୁ ଯାଉଛନ୍ତି । ଆମକୁ ବର୍ତ୍ତମାନ ଏ ବିଷୟରେ ବିଚାର କରିବାକୁ ହେବ ଏବଂ କଂଗ୍ରେସ ଆନ୍ଦୋଳନ କେମିତି ଆଗେଇବ, ସେ କଥା ମଧ୍ୟ ଭାବିବାକୁ ହେବ ।''

ଜ୍ୱାଲାପ୍ରସାଦ ହସି ହସି ପଚାରିଲେ, ''ତମର ଏହି ଆନ୍ଦୋଳନ କେତେ କାଳ ଚାଲିବ ?''

''ଏବେ ତ ମୋଟେ ଆରମ୍ଭ ହୋଇଛି । ଭାଇ ମନେରଖ, ଇଏ ହେଉଛି ଆନ୍ଦୋଳନର ପ୍ରଥମ ଦୌଡ଼ । ଏଥିରେ ବି ସରକାରଙ୍କର ଜେଲ ପୂରିଗଲାଣି । ସରକାର ଆନ୍ଦୋଳନକୁ ଦବାଇବା ପାଇଁ ଯେତେ ଚେଷ୍ଟା କରୁଛନ୍ତି, ଆନ୍ଦୋଳନ ସେତିକି ଆଗେଇ ଯାଉଛି ।''

ଜ୍ୱାଲାପ୍ରସାଦ ଏହି କଥାକୁ ସ୍ୱୀକାର କରି କହିଲେ, ''ହଁ, ତମ ଆନ୍ଦୋଳନ ତ ଭଲ ଚାଲିଛି । ତମର ଏ ଆନ୍ଦୋଳନକୁ ମୁସଲମାନମାନେ ବହୁତ ସାହାଯ୍ୟ କରୁଛନ୍ତି । ଏ ବିଷୟରେ ମହାତ୍ମା ଗାନ୍ଧିଙ୍କର ବିଚାରକୁ ମୁଁ ସ୍ୱୀକାର କରୁଛି । ଅଲି ଭାଇମାନଙ୍କୁ ଗିରଫ କରିନେବା ଫଳରେ ଦେଶରେ ଏକପ୍ରକାର ନିଆଁ ଲାଗିଛି ।''

ଜ୍ଞାନପ୍ରକାଶ ଉତ୍ତର ଦେଲେ, ''ଲୋକମାନଙ୍କ ଭିତରେ ଜାଗରଣ ଖୁବ୍ ଜୋରରେ ବଢ଼ି ଚାଲିଛି ।''

ଏତିକବେଳକୁ ଗଙ୍ଗାପ୍ରସାଦ ଆସି ଚୁପ୍‌ଚାପ ଗୋଟାଏ ପାଖରେ ବସିଯାଇଥିଲେ । ସେ ସମ୍ଭାଳି ନପାରି କହିଲେ, ''କାକା, ଜନତା ପ୍ରକୃତରେ ଶୋଇ ନାହିଁ କି ଚେଇଁ ନାହିଁ । ଅଳ୍ପ କେତେକ ଅସନ୍ତୁଷ୍ଟ ଲୋକ ଏହି ଆନ୍ଦୋଳନରେ ଅଛନ୍ତି । ମୋତେ ତ ଜଣାପଡ଼ୁଛି ଏହି ଆନ୍ଦୋଳନ ଶେଷ ହେବାର ସମୟ ଆସିଗଲାଣି; କଂଗ୍ରେସ ସ୍ୱୟଂ-ସେବକଦଳ ଶେଷ ହେବା ଉପରେ । ଜେଲ ଯିବାପାଇଁ ଯୋଗ୍ୟ ସ୍ୱେଚ୍ଛାସେବକ ଆଉ ଆସୁନାହାନ୍ତି । ଦେଶରେ ଯେଉଁ ନିଆଁ ଲାଗିଛି ବୋଲି ଆପଣଙ୍କୁ ଦେଖାଯାଉଛି, ତାହା ତ ଇଂରେଜମାନଙ୍କ ସପକ୍ଷରେ ଅଛି ବୋଲି କହିବାକୁ ହେବ । କାରଣ ଏହି ନିଆଁରେ

ଉତ୍ତେଜିତ ହୋଇ ଲୋକେ ଯେତେବେଳେ ଧ୍ୱଂସାକାଣ୍ଡ କରିବାପାଇଁ ବାହାରିବେ, ସେତେବେଳେ ଆନ୍ଦୋଳନକୁ ଦମନ କରି ଦିଆଯିବ ।"

ଗଙ୍ଗାପ୍ରସାଦ ବାହାରୁ ବୁଲିବୁଲି କରି ଫେରିଆସିଥିଲେ । ତାଙ୍କର ଜୌନପୁରରୁ କାନପୁରକୁ ବଦଳି ହୋଇଯାଇଥିଲା । କୌଣସି ଭାରତୀୟ ଲୋକଙ୍କୁ କାନପୁରରେ ଜଏଣ୍ଟ ମାଜିଷ୍ଟ୍ରେଟ ହିସାବରେ ନିଯୁକ୍ତି ମିଳିବା କଷ୍ଟ; କିନ୍ତୁ ଗଙ୍ଗାପ୍ରସାଦଙ୍କୁ ଯେ ଏହି ନିଯୁକ୍ତି ମିଳିଥିଲା ତାହାର କାରଣ ସେ ଜୌନପୁର ଆନ୍ଦୋଳନକୁ ବହୁତ ଦବାଇ ଦେଇଥିଲେ । କାନପୁରରେ କଂଗ୍ରେସକୁ ବହୁତ ଟଙ୍କା ସାହାଯ୍ୟ ମିଳୁଥିଲା । ସେଥିପାଇଁ ସରକାର ଭାବୁଥିଲେ ଯେ ଗଙ୍ଗାପ୍ରସାଦଙ୍କୁ ସେଠାକୁ ପଠାଇଦେଲେ, ସେ ଏହି ଆନ୍ଦୋଳନକୁ ସମୂଳେ ନଷ୍ଟ କରିଦେବେ । ବର୍ତ୍ତମାନ ସେ କାନପୁରରେ ଚାର୍ଜ ନେବାପାଇଁ ଯାଉଥିଲେ । କାନପୁରରେ ଘର ନ ମିଳିବା ପର୍ଯ୍ୟନ୍ତ ତାଙ୍କ ପରିବାର ଆଲ୍ହାବାଦକୁ ଚାଲି ଆସିଥିଲେ ।

ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କୁ ପଚାରିଲେ, "ତମେ କ'ଣ କମିଶନରଙ୍କ ସାଙ୍ଗରେ ଦେଖା ହୋଇ ଆସିଲଣି ? କ'ଣ କଥାବାର୍ତ୍ତା ହେଲା ?"

ଗଙ୍ଗାପ୍ରସାଦ ହସିଦେଇ କହିଲେ, "କମିଶନରଙ୍କ ସଙ୍ଗରେ ଆଉ କଥାବାର୍ତ୍ତା କ'ଣ, ଖାଲି ଆନ୍ଦୋଳନକୁ ଦବାଅ । ବ୍ରିଟିଶ ସରକାର ଭାରତବର୍ଷରେ ଯେମିତି ହେଲେ ରହିବେ; ତେଣୁ ଏ ଆନ୍ଦୋଳନକୁ ନିର୍ମୂଳ କରିବାକୁ ହେବ । ଆଜି ସନ୍ଧ୍ୟାବେଳେ ଗାଡ଼ିରେ ମୋତେ ଯିବାକୁ ହେବ, କାଲି କାନପୁରରେ ମୁଁ ଚାର୍ଜ ନେବି । ଆନ୍ଦୋଳନ ପାଇଁ କାନପୁରରେ ଯେଉଁ ଲକ୍ଷ ଲକ୍ଷ ଟଙ୍କା ମିଳୁଛି ତାକୁ ବନ୍ଦ କରିବାପାଇଁ ମୋତେ ଉପାୟ କରିବାକୁ ହେବ ।"

ଜ୍ଞାନପ୍ରକାଶ ଟିକିଏ ଚିନ୍ତିତ ସ୍ୱରରେ କହିଲେ, "ଗଙ୍ଗା, ମୋର ଗୋଟାଏ କଥା ତମେ ମାନିବ ?"

"ଭାଇଜୀ, ରାଜନୀତି କଥାରେ ମୁଁ ସବୁବେଳେ ସରକାରଙ୍କ ପକ୍ଷରେ । ସେ ବିଷୟରେ କୌଣସି କଥା ଆପଣ ମୋତେ ମନାଇବା ପାଇଁ ଚେଷ୍ଟା କରିବେ ନାହିଁ ।"

ଏ କଥା ଶୁଣି ଜ୍ଞାନପ୍ରକାଶ କିଛି ନକହି ଚୁପଚାପ ବସିରହିଲେ । ସେ ଠିକ୍ ଜାଣିଥିଲେ ଗଙ୍ଗାପ୍ରସାଦଙ୍କଠାରୁ କୌଣସି ଆଶାଜନକ ଉତ୍ତର ମିଳିବ ନାହିଁ । ତେଣୁ ତାଙ୍କ ଆଖିରେ ଗମ୍ଭୀର ଉଦାସ ଭାବ ସ୍ପଷ୍ଟ ଦେଖାଯାଉଥିଲା ।

ତାପରେ ଗଙ୍ଗାପ୍ରସାଦ ଭିତରକୁ ଚାଲିଗଲେ । ସେଦିନ ଯିବାପାଇଁ ସବୁ ଠିକ୍ଠାକ୍ କରିବା ଦରକାର ଥିଲା । ଜ୍ୱାଲାପ୍ରସାଦ ମଧ୍ୟ ପୁଅଙ୍କ ପଛେ ପଛେ ଘର ଭିତରକୁ ଗଲେ । ଘରର ଗୋଟାଏ କୋଣରେ ଠିଆ ହୋଇ ନବଲ ଏସବୁ ଘଟଣା ଦେଖୁଥିଲା । ସେ

ଜ୍ଞାନପ୍ରକାଶଙ୍କ ପାଖକୁ ଆସି କହିଲ, "ଜେଜେ, ଆପଣ ଚିନ୍ତିତ ହୁଅନ୍ତୁ ନାହିଁ । ବଡ଼ ହେଲେ ଆମେ ବି ଜେଲ ଯିବୁ । ଭାରତ-ମାତାକି ଜୟ ।"

ଜ୍ଞାନପ୍ରକାଶ ମୃଦୁକହସା ଦେଇ କହିଲେ, "ନାହିଁରେ ବାପା ! ମୁଁ ଆଦୌ ଚିନ୍ତିତ ନୁହେଁ । ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା ତମମାନଙ୍କୁ ଯେମିତି ଜେଲ ଯିବାକୁ ନପଡ଼ୁ । ତୁମେ ସବୁ ଭାରତର ସ୍ୱାଧୀନତା ଭୋଗକର । ଆଚ୍ଛା, ତମର ବର୍ତ୍ତମାନ ସ୍କୁଲ୍ ଯିବା ସମୟ ହୋଇଗଲାଣି ।"

ନବଲ ଓ ବିଦ୍ୟା ଆପଣା ଆପଣା ଭିତରେ ପାଟିତୁଣ୍ଡ କରି ଘର ଭିତରକୁ ଚାଲିଗଲେ ଓ ଜ୍ଞାନପ୍ରକାଶ ଚୁପଚାପ ଚିନ୍ତିତ ହୋଇ ବସିରହିଲେ; ସତେ ଯେମିତି କାହା ଅପେକ୍ଷାରେ ସେ ସେଠାରେ ରହିଥିଲେ । ଏହି ସମୟରେ ପୋର୍ଟିକୋ ପାଖରେ ଗୋଟାଏ ଘୋଡ଼ାଗାଡ଼ି ଅଟକିଲା । ପଣ୍ଡିତ ଜୟନାଥ ପାଣ୍ଡେଙ୍କ ସହିତ ଜଣେ ଯୁବକ ସେହି ଗାଡ଼ିରୁ ଓହ୍ଲାଇଲେ । ଜ୍ଞାନପ୍ରକାଶ ବାରଣ୍ଡାରୁ ଓହ୍ଲାଇ ପଡ଼ି ସେମାନଙ୍କୁ ସ୍ୱାଗତ କରି କହିଲେ, "ଆସନ୍ତୁ ପାଣ୍ଡେଜୀ, ଆପଣ ବହୁତ ଡେରି କରିଦେଲେ ।"

"ହଁ ଆଜ୍ଞା, ସ୍ଥାଙ୍କୁ ଖୋଜିବାକୁ ବହୁତ ସମୟ ଲାଗିଗଲା । ଯେଉଁ ଶ୍ରୀ ଗେଁଦାଲାଲଙ୍କ ବିଷୟରେ ମୁଁ ଆପଣଙ୍କୁ କହୁଥିଲି, ଏ ହେଉଛନ୍ତି ସେହି ଭଦ୍ରଲୋକ । ଏହି ବର୍ଷ ସେ ଏମ.ଏ. ପାସ୍ କରିଛନ୍ତି । ସେ ଗୋଟାଏ ଚମଡ଼ା ଦୋକାନ ଖୋଲିବାକୁ ଚାହୁଁଛନ୍ତି ।"

ଗେଁଦାଲାଲ ଝୁକ୍ ନଇଁ ପଡ଼ି ଜ୍ଞାନପ୍ରକାଶଙ୍କୁ ପ୍ରଣାମ କଲେ ଓ ଜ୍ଞାନପ୍ରକାଶ ସେମାନଙ୍କୁ ଘର ଭିତରକୁ ସ୍ୱାଗତ କରି ନେଲେ ।

ଗେଁଦାଲାଲ ଧୋତି କାମିଜ୍ ଓ ଗୋଟାଏ ଖୋଲା ନେକ୍‌କୋଟ ପିନ୍ଧିଥିଲେ । ମଧ୍ୟମ ଧରଣର ଉଚ୍ଚ, ହୃଷ୍ଟପୁଷ୍ଟ, ଗୋଲଗାଲ ଶ୍ୟାମଳ ରଙ୍ଗର ଜଣେ ଯୁବକ ସେ । ମୁଣ୍ଡରେ ତାଙ୍କର ପଗଡ଼ି । ବୟସ ପ୍ରାୟ ପଚିଶ ଛବିଶ । ସେ ଟିକିଏ ସଙ୍କୁଚିତ ଭାବରେ ବୈଠକ-ଖାନାକୁ ପଶିଲେ । ଜୟନାଥ ଓ ଜ୍ଞାନପ୍ରକାଶ ବସିଗଲେ ମଧ୍ୟ ସେ ଠିଆହୋଇ ରହିଲେ । ସତେ ଯେମିତି ବସିବାକୁ ତାଙ୍କୁ ଡର ଲାଗୁଥାଏ । ଜ୍ଞାନପ୍ରକାଶ କହିଲେ, "ବସନ୍ତୁ ଗେଁଦାଲାଲଜୀ, ଠିଆହେଲେ କାହିଁକି ?"

"ଠିକ୍ ଅଛି ଆଜ୍ଞା, ଠିଆ ହେଲେ ମୋର କିଛି ଅସୁବିଧା ନାହିଁ । ପଣ୍ଡିତଜୀ ମୋତେ ସିନା ଘୋଡ଼ା ଗାଡ଼ିରେ ନେଇ ଆସିଲେ, ନଚେତ୍ ସାଧାରଣତଃ ମୁଁ ଚାଲିକରି ଆସେ ।"

ଜ୍ଞାନପ୍ରକାଶ ଉଠିପଡ଼ି ଗେଁଦାଲାଲଙ୍କର ହାତଧରି କହିଲେ, "ଆରେ ବସନ୍ତୁ । କିଛି ଭାବନ୍ତୁ ନାହିଁ । ଏଠି ଭେଦଭାବ ଛୁଆଁଛୁତ ଆମେ ଅନେକ ଦିନରୁ ଉଠାଇଦେଲୁଣି । ମହାତ୍ମା ଗାନ୍ଧି ତ ବହୁତ ଦିନରୁ ତାର ଦାୟିତ୍ୱ ନେଇ ଯାଇଛନ୍ତି ।"

ଜୟନାଥ ପାଣ୍ଡେ କହିଲେ, "ବୁଝିଲେ ଜ୍ଞାନପ୍ରକାଶ ! ସ୍ୱାମୀ ଦୟାନନ୍ଦ ଏହା ଆରମ୍ଭ

କରୁଥିଲେ । କିନ୍ତୁ ଏବେ ତାହା ଖୁବ୍ ଆଗେଇ ଚାଲିଛି । ବସ ଗେଁଦାଲାଲ, ଆମେ ତ ସମସ୍ତେ ସମାନ ।''

ଗେଁଦାଲାଲ ସଙ୍କୁଚିତ ହୋଇ ଗୋଟିଏ ଚଉକିରେ ବସିପଡ଼ିଲେ, ପୁଣି କଣ ଭାବି କହିଲେ, ''କଣ କହିବାର ଅଛି କୁହନ୍ତୁ ?''

ଜ୍ଞାନପ୍ରକାଶ ପଚାରିଲେ, ''ଶୁଣିଲି ଆପଣ କୁଆଡ଼େ ବିଦେଶୀ ଢଙ୍ଗରେ ଗୋଟିଏ ଚମଡ଼ା ଦୋକାନ ଖୋଲୁଛନ୍ତି ?''

''ଖୋଲି ନାହିଁ ଯେ ଖୋଲିବାର ଚେଷ୍ଟା କରୁଛି; କିନ୍ତୁ ପଇସାର ଅଭାବ । ସରକାରଙ୍କୁ ବର୍ଷେ ହେଲା ଦରଖାସ୍ତ କରିଛି; ହେଲେ କିଛି ଜବାବ ନାହିଁ । ଏଠୁସେଠୁ କରଜ ମାଗିଲେ ବହୁତ ସୁଧ ବତାଉଛନ୍ତି । ତା'ଛଡ଼ା ବ୍ୟବସାୟର ଲାଭରୁ ଅଧାଭାଗ ନେବାକୁ କହୁଛନ୍ତି ।''

ପଣ୍ଡିତ ଜଗନ୍ନାଥ ପାଣ୍ଡେ କହିଲେ, ''ଆହୁରି ଏମିତି ସର୍ତ୍ତ କରୁଛନ୍ତି ଯେ ଟଙ୍କା ଦେବେ, କାରଖାନା ଚାଲିଲେ ସେ ମାଲିକ ହେବେ ଓ ଗେଁଦାଲାଲ ସେଥିରୁ ବାହାରି ଆସି କାରଖାନାରେ କେବଳ ଚାକର କରିପାରିବେ । କ'ଣ ଗେଁଦାଲାଲ ! ମୁଁ ଠିକ୍ କହୁଚି ନା ନାହିଁ ? ମୁଁ ତେଣୁ ସ୍ୱାମୀଙ୍କୁ କହୁଛି ଏ ବର୍ତ୍ତମାନ କାରଖାନା ଖୋଲିବା କଥା ଛାଡ଼ିଦିଅନ୍ତୁ ।''

''ହଁ ପଣ୍ଡିତଜୀ, ସେକଥା ତ ଛାଡ଼ିଦେଲିଣି । କିନ୍ତୁ ବେଳେବେଳେ ପୁଣି ମନ ଉଠୁଛି । ବିଲାତି ଚମଡ଼ାଠାରୁ ଭଲ ଚମଡ଼ା ଆମେ ତିଆରି କରି ପାରିବୁ; କିନ୍ତୁ ଆମକୁ ସୁବିଧା ଦିଆଗଲେ ତ ! ସବୁଠି ତ ଆଜିକାଲି ଅଂଧାରି ଶାସନ ଚାଲିଛି ।''

ବର୍ତ୍ତମାନ ଜ୍ଞାନପ୍ରକାଶ ପଚାରିଲେ, ''ଏହି ଆନ୍ଦୋଳନ ବିଷୟରେ ଆପଣ କ'ଣ ଭାବୁଛନ୍ତି ?''

''ଆଜ୍ଞା, ଏ ଆନ୍ଦୋଳନ ବିଷୟରେ ମୁଁ କ'ଣ ଭାବିବି ? ଏତ ସବୁ ଆପଣମାନଙ୍କର କାରବାର । ଆମ ଅଛୁଆଁ ଜାତିଙ୍କର ଏଥିରେ କ'ଣ ଅଛି ? ଆମକୁ ତ ଜନ୍ମ-ଜନ୍ମାଧରି ଆପଣମାନଙ୍କର ଗୋଲାମୀ କରିବାକୁ ହେବ ।''

ଗେଁଦାଲାଲଙ୍କ କଥାରେ ଏକପ୍ରକାର କଟୁତା ଯେ ଥିଲା ଜ୍ଞାନପ୍ରକାଶ ବେଶ୍ ତାହା ଅନୁଭବ କରିପାରୁଥିଲେ । ସେ କହିଲେ, ''ନାହିଁ ଗେଁଦାଲାଲଜୀ, ଆପଣ ନିଜକୁ ନିଜେ ଅଛୁଆଁ ବୋଲି ମନେ କରନ୍ତୁ ନାହିଁ । ଆମ ଧବର୍ଣ୍ଣ ଲୋକେ ମନୁଷ୍ୟର ଯେପରି ଭଣ୍ଡି ଚପିଛନ୍ତି ଓ ଆପଣମାନଙ୍କ ଉପରେ ଯେପରି ଅତ୍ୟାଚାର କରିଛନ୍ତି, ତାର ଫଳସ୍ୱରୂପ ଆମେ ହଜାର ବର୍ଷ ହେଲା ଗୋଲାମ ହୋଇଆସୁଛୁ । ଏବେ ତ ଆମର ପ୍ରତ୍ୟେକ ଶିଶୁ ଅପମାନିତ ଓ ଅଛୁଆଁ ହୋଇ ରହିଛନ୍ତି ।''

ମନେହେଲା ଗେଁଦାଲାଲ ଜ୍ଞାନପ୍ରକାଶଙ୍କ କଥା ବୁଝିପାରିଲେ ନାହିଁ କିମ୍ବା ବୁଝିବାକୁ ଚେଷ୍ଟା ମଧ୍ୟ କଲେ ନାହିଁ । ସେ ପଚାରିଲେ, "ଆଜ୍ଞା ! ଆପଣ ମୋତେ କାହିଁକି ଡକାଇଥିଲେ ?"

"ଗେଁଦାଲାଲ, ଆପଣ ତ ଜାଣନ୍ତି ଦେଶରେ କେତେ ବଡ଼ ଆନ୍ଦୋଳନ ଚାଲିଛି । ଆପଣ ଏ ଆନ୍ଦୋଳନରେ କାହିଁକି ଯୋଗ ଦେଉନାହାନ୍ତି ?"

ଗେଁଦାଲାଲ କହିଲେ, "କି ଆନ୍ଦୋଳନ, କି ସହଯୋଗ ? ଆମେ ଅବଶ୍ୟ ଦେଖୁଛୁ ଦେଶରେ କିଛି ଗୋଟାଏ ଚାଲିଛି ! କିନ୍ତୁ ସେ କ'ଣ ଚାଲିଛି, ଆମକୁ କିଏ ବୁଝାଉଛି ନା ଆମେ କ'ଣ ବୁଝୁଛୁ ! ବୋଧହୁଏ ଆମେ ସେଥିରୁ କିଛି ବୁଝିପାରିବୁ ନାହିଁ । ତା'ଛଡ଼ା ଆମେ ବୁଝିବୁ କେମିତି ? ଆମେ ତ ପାଠଶାଠ କିଛି ପଢ଼ିନାହୁଁ । ମୋର ମନେ ହେଉଛି ପାଠ ପଢ଼ିଲେ ବି ଆମର ଲାଭ କ'ଣ ? ମୁଁ ଏତେ ପାଠଶାଠ ପଢ଼ିଛି; କିନ୍ତୁ ମୋତେ କେଉଁଠି ଚାକିରି ମିଳୁନାହିଁ ? ଲୋକେ ଯେତେବେଳେ ଆମକୁ ଛୁଇଁବାକୁ ଘୃଣା କରନ୍ତି, ସେମାନେ ତାଙ୍କ ସଙ୍ଗରେ ଆମକୁ କଚେରିରେ ବସିବାକୁ ଦେବେ କେମିତି ? ମୁଁ ମିଶନ ସ୍କୁଲରେ ପଢ଼ୁଥିଲି ବୋଲି ସେଥିରେ କାହାରି କିଛି ଅଧିକାର ନ ଥିବାରୁ ପଢ଼ିପାରିଲି । ନଚେତ୍ ମୋତେ ପଢ଼ିବାକୁ ବି ଦେଇ ନ ଥାନ୍ତେ !"

ଠିକ୍ ଏହି ସମୟରେ ଗଙ୍ଗାପ୍ରସାଦ ବୈଠକଖାନା ଭିତରକୁ ପଶିଆସିଲେ । ଦେହରେ କୋଟ୍, ପ୍ୟାଣ୍ଟ, ଟାଇ । ଗେଁଦାଲାଲ ଇତସ୍ତତଃ ହୋଇ ଉଠି ଛିଡ଼ା ହୋଇପଡ଼ି ଖୁବ୍ ନଇଁକରି ତାଙ୍କୁ ପ୍ରଣାମ କଲେ । ଗଙ୍ଗାପ୍ରସାଦ ମୁଣ୍ଡ ହଲାଇ ତାଙ୍କ ଅଭିବାଦନ ଗ୍ରହଣ କରି କହିଲେ, "ବସ, ଛିଡ଼ାହେବା କ'ଣ ଦରକାର ?"

ଗେଁଦାଲାଲ ପୁଣି ଚୁପ୍‌ଚାପ ସଙ୍କୁଚିତ ହୋଇ ବସିପଡ଼ିଲେ । ବର୍ତ୍ତମାନ ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କୁ କହିଲେ, "ଇଏ ଶ୍ରୀ ଗେଁଦାଲାଲ । ଏ ଏମ୍: ଏ: ପାସ୍ କରିଛନ୍ତି । ଜାତିରେ ଚମାର ବୋଲି ସେ ଚମଡ଼ା କାରଖାନା ଖୋଲିବାପାଇଁ ଚାହାନ୍ତି ।"

ଗଙ୍ଗାପ୍ରସାଦ ହଠାତ୍ ରାଗିଯାଇ କହିଲେ, "ତମେ ଚମାର, ଚମାରହୋଇ ଘର ଭିତରେ ପଶିଲ କେମିତି ? ବାହାର ଏଠୁ ବାହାର ।"

ଗଙ୍ଗାପ୍ରସାଦଙ୍କର ଏହିପରି ପ୍ରତିକ୍ରିୟା ହେବ ବୋଲି ଜ୍ଞାନପ୍ରକାଶ କେବେ କଳ୍ପନା କରି ନ ଥିଲେ । ସେ ଗଙ୍ଗାପ୍ରସାଦଙ୍କର ହାତ ଧରିପକାଇ କହିଲେ, "ଏମିତି କ'ଣ କଥାବାର୍ତ୍ତା କରୁଛ ଗଙ୍ଗା ? ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାପାଇଁ ତାଙ୍କୁ ଡକାଇଛି । ଆମ ଦେଶରେ ଅଛୁଆଁଙ୍କ ସଂଖ୍ୟା ଛଅକୋଟି; ଅଥଚ ସେମାନଙ୍କର ଏହି ଆନ୍ଦୋଳନରେ କୌଣସି ଭାଗ ନାହିଁ । ଏହି ଲୋକମାନଙ୍କର ସହଯୋଗ ଆମର ନିତାନ୍ତ ଦରକାର ।"

ଗେଁଦାଲାଲ ଠିଆ ହୋଇପଡ଼ି ଜ୍ଞାନପ୍ରକାଶଙ୍କ କଥାର ପ୍ରତିବାଦ କରି କହିଲେ, "ହଁ,

ଆମ୍ଭମାନଙ୍କର ସହଯୋଗ ନିଅନ୍ତୁ ଓ ଆମ୍ଭମାନଙ୍କୁ ଶୋଷଣ କରି ରଖିଦିଅନ୍ତୁ । ଯେଉଁଠି ଲୋକେ ଆମକୁ ବସିବାକୁ ବି ଦେଉନାହାନ୍ତି ସେଠି ପୁଣି କଥାବାର୍ତ୍ତା କ'ଣ ? ଆନ୍ଦୋଳନ କରନ୍ତୁ, ସ୍ୱରାଜ୍ୟ ପାଆନ୍ତୁ; କିନ୍ତୁ ଆମକୁ ବଞ୍ଚିରହିବାକୁ ଦିଅନ୍ତୁ । ଆମେ ତ ଆପଣମାନଙ୍କର ଗୋଲାମୀ କରିବାକୁ ଜନ୍ମ ହୋଇଛୁ ।'' ତାପରେ ଗେଁଦାଲାଲ କୌଣସି ଉତ୍ତରକୁ ଅପେକ୍ଷା ନ କରି ସେଠାରୁ ବାହାରି ଚାଲିଗଲେ ।

ଗେଁଦାଲାଲ ଚାଲିଯିବାପରେ ଜ୍ଞାନପ୍ରକାଶ ଗଂଗାପ୍ରସାଦଙ୍କୁ କହିଲେ, ''ମୁଁ ଭାବିଥିଲି ତମେ ନୂତନ ଯୁଗର ଲୋକ, ପାଠଶାଠ ପଢ଼ିଛ, ଉଦାରମନା ହେବା କଥା । ତମେ ଏସବୁ କେବେ କରିବ ନାହିଁ । କିନ୍ତୁ ଯାହା ଦେଖୁଛି ମୁଁ ଭୁଲ କରିଛି । କିନ୍ତୁ ଯା'ହେଲେ ବି ଏହି ଛଅ କୋଟି ଲୋକଙ୍କୁ ଆମେ କେବେ ଛାଡ଼ି ରହିପାରିବା ନାହିଁ ।''

ଗେଁଦାଲାଲ ଚାଲିଯିବାପରେ ଗଂଗାପ୍ରସାଦଙ୍କର ଭୁଲ ହୋଇଛି ବୋଲି ସେ ଅନୁଭବ କଲେ; କିନ୍ତୁ ନିଜର ଭୁଲକୁ ଠିକ୍ ସାବ୍ୟସ୍ତ କରିବା ତାଙ୍କର ଏକପ୍ରକାର କର୍ତ୍ତବ୍ୟ ଭାବି ସେ ଟିକିଏ ଚିନ୍ତା କରି କହିଲେ, ''ହଁ ପାଞ୍ଚ ଛ' କୋଟି ଅଛୁଆଁ ଓ ସାତ ଆଠ କୋଟି ମୁସଲମାନ—ଏମାନେ ସମସ୍ତେ ମିଶି ତେର ଚୌଦ କୋଟି ହେବେ । ତା'ହେଲେ କାକା, ଆପଣ ପ୍ରଥମେ ଏହି ଚୌଦ କୋଟି ଲୋକଙ୍କ ସମସ୍ୟା ସୁଧାରି ନିଅନ୍ତୁ । ତା'ପରେ ସ୍ୱାଧୀନତା କଥା ଭାବିବେ । ମୋର ତ ସ୍ୱରାଜ୍ୟ ପାଇବାର ନାହିଁ କିମ୍ବା ଏ ଲୋକଙ୍କ କଥା ବୁଝିବାର ନାହିଁ । ମୁଁ ତ ଆଜି ସନ୍ଧ୍ୟାବେଳେ କାନପୁର ଚାଲିଯାଉଛି ।''

ଜଗନ୍ନାଥ ପାଣ୍ଡେ ମଧ୍ୟ ଉଠି ଠିଆହେଲେ । ସେ ଜ୍ଞାନପ୍ରକାଶଙ୍କୁ କହିଲେ, ''ଆପଣ ଗେଁଦାଲାଲଙ୍କ କଥା କିଛି ଭାବିବେ ନାହିଁ, ସେ'ତ ଆମ ନିଜ ଲୋକ ।'' ତା'ପରେ ସେ ଗଙ୍ଗାପ୍ରସାଦଙ୍କୁ କହିଲେ, ''ବାବୁ ଗଙ୍ଗାପ୍ରସାଦ ! ମୁସଲମାନମାନଙ୍କ ସମସ୍ୟା ତ ଆମେ ସମାଧାନ କରିଦେଇଛୁ । ଅଛୁଆଁମାନଙ୍କର ସମସ୍ୟା ସମାଧାନ କରିବାର ଦାୟିତ୍ୱ ମହାତ୍ମା ଗାନ୍ଧି ନିଜ ହାତରେ ନେଇଛନ୍ତି । ବର୍ତ୍ତମାନ ଗେଁଦାଲାଲ ଏଠୁ ଚାଲିଗଲେ ବୋଲି ଆମଠୁ ସେମାନେ ଭିନ୍ନ, ଏ କଥା ଆପଣ ଭାବନ୍ତୁ ନାହିଁ । ପ୍ରକୃତରେ ସେମାନେ ଆମପାଖରୁ ଯାଇପାରିବେ ନାହିଁ । ସେମାନେ ଆମ ନିଜ ଲୋକ, ସେ ବରାବର ଆମ ସଙ୍ଗରେ ରହିବେ ।''

ଗଙ୍ଗାପ୍ରସାଦଙ୍କ ଉପରେ ଜଗନ୍ନାଥଙ୍କ କଥାର କୌଣସି ପ୍ରଭାବ ପଡ଼ିଲା କି ନାହିଁ କହିବା କଠିନ । କିନ୍ତୁ ଜଗନ୍ନାଥ ଚାଲିଗଲାପରେ ଗଙ୍ଗାପ୍ରସାଦ ଜ୍ଞାନପ୍ରକାଶଙ୍କୁ କହିଲେ, ''କାକା, ମୁଁ ଆପଣଙ୍କୁ ଏତିକି କହିପାରେ ଯେ ଆପଣଙ୍କର ଏହି ଆନ୍ଦୋଳନ କେବେ ସଫଳ ହୋଇପାରିବ ନାହିଁ । ସ୍ୱାଧୀନତାପାଇଁ ଯୋଗ୍ୟ ହେବାକୁ ଆମ ଦେଶକୁ ଆହୁରି ଶହେ ବର୍ଷ ଲାଗିବ । ତାଛଡ଼ା ଆପଣଙ୍କୁ ନିଶ୍ଚୟ ସ୍ୱୀକାର କରିବାକୁ ହେବ ଯେ ସାମ୍ୟ ଓ

ସ୍ୱାଧୀନତାର ଚେତନା ଆମ ଲୋକେ ଇଂରେଜୀ ଶିକ୍ଷାରୁ ହିଁ ପାଇଛନ୍ତି । ପ୍ରଥମେ ଏହି ଶିକ୍ଷାକୁ ଆମକୁ ଆୟତ୍ତ କରିବାକୁ ହେବ, ତା'ପରେ ଆମେ ସ୍ୱାଧୀନତା କଥା ଭାବିବା । ବିନା ଚିନ୍ତାରେ ବିନା ଯୋଜନାରେ ଏହି ଆନ୍ଦୋଳନକୁ ଯେପରି ଭାବରେ ଆରମ୍ଭ କରାଯାଇଛି, ସେଥିରେ ପରାଜୟ ସୁନିଶ୍ଚିତ ।"

ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କର ଏହି କଥାର କୌଣସି ଜବାବ୍ ଦେଲେ ନାହିଁ । ସମ୍ଭବତଃ କୌଣସି ବାଦବିବାଦ କରିବାପାଇଁ ତାଙ୍କର ଇଚ୍ଛା ନ ଥିଲା । ସେ କହିଲେ, "ତା'ହେଲେ ଆଜି ସନ୍ଧ୍ୟାରେ ଯିବାପାଇଁ ତମର ଠିକ୍ ହୋଇଯାଇଛି । କିନ୍ତୁ ଗଙ୍ଗା, ଏହି ଆନ୍ଦୋଳନ ପାଇଁ ତମ ମନରେ କିଛି ସହାନୁଭୂତି ଯେମିତି ସୃଷ୍ଟି ହୁଏ ସେଥିପାଇଁ ତମର ଚେଷ୍ଟା କରିବା ଦରକାର ।"

ଗଙ୍ଗାପ୍ରସାଦ କାନପୁରରେ ପହଞ୍ଚିବା ବାସିଦିନ ଘରକୁ ନେଇଗଲେ ।

ଖୁବ୍ ଶୀତ ପଡ଼ୁଥାଏ । ଗଙ୍ଗାପ୍ରସାଦଙ୍କର ଗୋଟାଏ ଗରମ ସୁଟ୍ ଦରକାର ପଡ଼ିଲା । କାନପୁର ଆସିବା ପରେ ତାଙ୍କର ସାମାଜିକ ସମ୍ପର୍କ ବହୁତ ବଢ଼ିଯାଇଥିଲା । କାନପୁରରେ ବହୁତ କାରଖାନା ଥିବାରୁ ସେଠି ବହୁତ ଇଂରେଜ ଲୋକ ରହୁଥିଲେ ଓ ସେମାନଙ୍କ ସହିତ ଦେଖାସାକ୍ଷାତ୍ ହେବା ଦରକାର ପଡ଼ୁଥିଲା । ସେ ସିଭିଲ୍ ଲାଇନ୍‌ରେ ରହୁଥିଲେ ଓ ପୁଅ ନବଲକୁ କନ୍‌ଭେଣ୍ଟ ସ୍କୁଲରେ ଛାଡ଼ି ଦେଇଥିଲେ । ସେଦିନ କଚେରିକାମ ଶେଷ କରି କପଡ଼ା କିଣିବାପାଇଁ ସେ କଚେରିରୁ ସିଧା ବଜାରକୁ ବାହାରିଲେ ।

ଗଙ୍ଗାପ୍ରସାଦ କପଡ଼ା କିଣିସାରି ଘରକୁ ଫେରିଲାବେଳକୁ ବଜାରର ଭିଡ଼ କମିଯାଇଥିଲା । ଘରେ ପହଞ୍ଚିଲାମାତ୍ରେ କଲେକ୍ଟରଙ୍କଠାରୁ ଖବର ମିଳିଲା, ତହିଁ ଆରଦିନ ସକାଳ ସାତଟାବେଳେ କଲେକ୍ଟରଙ୍କୁ ସାକ୍ଷାତ୍ କରିବାକୁ ହେବ; କାରଣ ତାଙ୍କର କେତେକ ଜରୁରୀ ପରାମର୍ଶ କରିବାକୁ ଥିଲା ।

ଗଙ୍ଗାପ୍ରସାଦ କଲେକ୍ଟରଙ୍କ ପାଖରେ ପହଞ୍ଚିଲାବେଳକୁ ସେ ବାରଣ୍ଡାରେ ବସି ଚାହା ପିଉଥିଲେ । ଗଙ୍ଗାପ୍ରସାଦଙ୍କ ପାଇଁ ଆଉ ଗୋଟାଏ କପ୍ ଚା' ପ୍ରସ୍ତୁତ କରୁ କରୁ ସେ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ, ସମ୍ବାଦ ବଡ଼ ଗୁରୁତର । କାଲି ଯୁବରାଜଙ୍କ ଆସିବାବେଳେ ବମ୍ବେଇରେ ଲୋକଙ୍କ ଉପରେ ପୋଲିସ୍‌କୁ ଗୁଳି ଚଳାଇବାକୁ ପଡ଼ିଥିଲା ।"

ଗଙ୍ଗାପ୍ରସାଦ ଚମକି ପଡ଼ି କହିଲେ, "କ'ଣ, ଲୋକଙ୍କ ଉପରେ ଗୁଳି ଚଳାଇବାକୁ ପଡ଼ିଲା ? ଇଏ ତ ବଡ଼ ଦୁଃସମ୍ବାଦ ! ଯୁବରାଜଙ୍କର କ'ଣ ଧାରଣା ହୋଇଥିବ !"

କଲେକ୍ଟର କହିଲେ, "ଯୁବରାଜଙ୍କର କ'ଣ ଧାରଣା ହୋଇଥିବ, ସେ ତ ଅଲଗା କଥା; କିନ୍ତୁ ଅସଲ କଥା ହେଉଛି ଏ ଆନ୍ଦୋଳନ ଏତେଦୂର ବଢ଼ିଗଲା କେମିତି ? ଆମେ ତ ଜାଣିଥିଲେ ଯେ ଯୁବରାଜଙ୍କ ଆଗମନକୁ ଲୋକେ ବୟକଟ୍ କରିବେ; କିନ୍ତୁ

ଏହି ଅସହଯୋଗ ଏତେ ଉଗ୍ର ଓ ହିଂସାତ୍ମକ ହେବ ବୋଲି ଆମେ କେବେ କଳ୍ପନା କରି ନ ଥିଲେ । ଏଠିକା ସହରର ଅବସ୍ଥା କେମିତି ଆପଣ କିଛି ଜାଣନ୍ତି ?"

"କାନପୁର ସହର ଅବସ୍ଥା ତ ସେତେ ଭଲ ନୁହେଁ । କାଲି ସନ୍ଧ୍ୟାବେଳେ କିଛି କପଡ଼ା କିଣିବାପାଇଁ ସହର ଭିତରକୁ ଯାଇଥିଲି । ଦେଖିଲି ମୂଳଗଞ୍ଜ ଛକ ଉପରେ ବିଦେଶୀ କପଡ଼ା ପୋଡ଼ାଯାଇ ବଡ଼ ଉତ୍ତେଜନାପୂର୍ଣ୍ଣ ଭାଷଣ ଚାଲିଥିଲା । ବଜାରର ଗୋଟିଏ ପାଖରେ ଲୋକେ ବଡ଼ ଅସ୍ତବ୍ୟସ୍ତ ହେଉଥିଲେ । ଲୋକେ ନିଜ ନିଜ ଦୋକାନରୁ ବିଦେଶୀ ଲୁଗା କାଢ଼ି ନେଉଥିଲେ; କାରଣ କିଏ ଜାଣେ କେତେବେଳେ କ'ଣ ଘଟିବ ? ବର୍ତ୍ତମାନ ବିଲାତିଲୁଗା ବଜାରରେ ମୋଟେ ନାହିଁ । ସ୍ୱଦେଶୀ ଆନ୍ଦୋଳନ ଖୁବ୍ ଜୋର ଚାଲିଛି ।" ମୋତେ ଲାଗୁଛି ଖୁବ୍ ଶୀଘ୍ର ବିଲାତି ଲୁଗାଦୋକାନ ଆଗରେ ଧାରଣା ଦିଆଯିବ ।"

କଲେକ୍ଟର ଟିକିଏ ଚିନ୍ତିତ ସ୍ୱରରେ କହିଲେ, "ତା'ହେଲେ ଏମିତି ସବୁ ଚାଲିଛି ! ମିଷ୍ଟର ଗଙ୍ଗାପ୍ରସାଦ, ଆମ୍ଭେମାନେ ସତର୍କ ରହିବା ପାଇଁ ସରକାରଙ୍କଠାରୁ ନିର୍ଦ୍ଦେଶ ଆସିଛି । ଯୁବରାଜ ମାନ୍ଦ୍ରାଜ ଦେଇ କଲିକତା ଯାଉଛନ୍ତି । ସେ ଡିସେମ୍ବର ପଚିଶ ତାରିଖରେ କଲିକତାରେ ପହଞ୍ଚି ସେଠି ବଡ଼ଦିନ ପାଳନ କରିବେ । ସେତେବେଳେ ଗଭର୍ଣ୍ଣର ଜେନେରାଲ୍ ବି ତାଙ୍କ ସଙ୍ଗରେ ରହିବେ । ଜାନୁଆରି ମାସରେ ଯୁବରାଜ ଉତ୍ତର ଭାରତରେ ଭ୍ରମଣ କରିବେ । ଏଠି ଯେମିତି ବମ୍ବେଇପରି ଘଟଣା ନ ଘଟେ, ସେଥିପାଇଁ ଆମକୁ ସାବଧାନ ହେବାକୁ ହେବ ଓ ସବୁ ପ୍ରକାର ବ୍ୟବସ୍ଥା କରିବାକୁ ହେବ ।"

ଗଙ୍ଗାପ୍ରସାଦ ପଚାରିଲେ, "ଆଜ୍ଞା, ଇଏ ତ ଠିକ୍ କଥା; କିନ୍ତୁ ଆମର କି ପ୍ରକାର ବ୍ୟବସ୍ଥା କରାଯିବ ?"

"ମୋର ଧାରଣା ଆମ୍ଭମାନଙ୍କୁ କଂଗ୍ରେସନେତା ଓ କଂଗ୍ରେସ କର୍ମୀମାନଙ୍କର ଗୋଟାଏ ତାଲିକା ତିଆରି କରିନେବାକୁ ହେବ ଓ ଡିସେମ୍ବର ଶେଷ ସପ୍ତାହ ସୁଦ୍ଧା ସେମାନଙ୍କୁ ଗିରଫ କରିବାକୁ ହେବ । ଏଠି ଯେଉଁ କଂଗ୍ରେସ ସ୍ୱୟଂସେବକଦଳ ଅଛନ୍ତି ସେମାନଙ୍କୁ କେଉଁଠୁ ପଇସା ମିଳୁଛି ତାହା ମଧ୍ୟ ଆମର ଜାଣିବା ଦରକାର ।" କଲେକ୍ଟର ଟିକିଏ ରହିଯାଇ ପୁଣି ପଚାରିଲେ, "ମିଷ୍ଟର ଗଙ୍ଗାପ୍ରସାଦ, କଂଗ୍ରେସକୁ ଟଙ୍କାପଇସା କେଉଁଠୁ ମିଳୁଛି, ଆପଣ କ'ଣ କିଛି ଅନୁମାନ କରି ପାରୁଛନ୍ତି ? ଏଠି କାନପୁରରେ ବଡ଼ ଜମିଦାର ବା ତାଲୁକଦାର ତ କେହି ନାହାନ୍ତି ।"

ମୂଳଗଞ୍ଜ ବଜାରରେ ଲୁଗାଦୋକାନୀ ଯାହା କହୁଥିଲେ ଯେ ସ୍ୱଦେଶୀ ଆନ୍ଦୋଳନ ଫଳରେ ଦେଶୀ ମିଲମାନଙ୍କରେ ଭାଗ୍ୟ ଖୋଲିଯିବ । ସେହି କଥା ବର୍ତ୍ତମାନ ଗଙ୍ଗାପ୍ରସାଦଙ୍କ ମନରେ ଚେଇଁଉଠିଲା ଓ ସେ ଟିକିଏ ଇତସ୍ତତଃ ହୋଇ କହିଲେ, "ମୋର ଧାରଣା

ଯେଉଁ ବେପାରୀ ଓ ମିଲମାଲିକମାନଙ୍କୁ ଏହି ଆନ୍ଦୋଳନରୁ ସିଧା ଫାଇଦା ମିଳିବ, ସେହିମାନେ ଏହି ଆନ୍ଦୋଳନ ପାଇଁ ପଇସା ଦେଉଛନ୍ତି ।''

କଲେକ୍ଟର ଗଙ୍ଗାପ୍ରସାଦଙ୍କୁ ଅଧିକ ଧ୍ୟାନର ସହିତ ଚାହିଁ କହିଲେ, ''ମିଷ୍ଟର ଗଙ୍ଗାପ୍ରସାଦ, ପ୍ରକୃତରେ ଆପଣ ଖୁବ୍ ବୁଦ୍ଧିମାନ୍ ! ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି ଏତେ ସାଧାରଣ କଥାଟା ମୁଁ ଆଗରୁ କେମିତି ଧରି ପାରିଲି ନାହିଁ । ମୁଁ ଏବେ ଜାଣିଲି କଲିକତା ଓ ବମ୍ବେଇରେ ଏ ଆନ୍ଦୋଳନ କାହିଁକି ଏତେ ଜୋରରେ ଚାଲିଛି; ଯଦିଓ ଅନ୍ୟ ଜାଗାରେ କମିଗଲାଣି । କାନପୁର ମଧ୍ୟ ବ୍ୟବସାୟୀମାନଙ୍କ ସହର; କିନ୍ତୁ ସେଠି ଅଧିକାଂଶ ମିଲମାଲିକ ଓ ବେପାରୀମାନଙ୍କର କଂଗ୍ରେସ ସହିତ ଘନିଷ୍ଠ ସମ୍ପର୍କ ଅଛି, ସେମାନଙ୍କ ବିଷୟରେ ଟିକିଏ ସାବଧାନ ହୋଇ ଖବର ରଖନ୍ତୁ ।''

ସେହିଦିନ ସନ୍ଧ୍ୟାବେଳକୁ ଗଙ୍ଗାପ୍ରସାଦ ଲକ୍ଷ୍ମୀଚନ୍ଦଙ୍କ ଘରେ ପହଞ୍ଚିଲେ । ଲକ୍ଷ୍ମୀଚନ୍ଦ ସହର ଭିତରେ ଗୋଟାଏ ଘରେ ଅଫିସ ଖୋଲିଥିଲେ ଓ ନିଜର ରହିବାପାଇଁ ସିଭିଲ ଲାଇନ୍‌ରେ ଗୋଟାଏ ବଙ୍ଗଳା ଭଡ଼ାରେ କରି ନେଇଥିଲେ । ଗଙ୍ଗାପ୍ରସାଦଙ୍କ ବଙ୍ଗଳାଠାରୁ ତାଙ୍କ ବଙ୍ଗଳା ପ୍ରାୟ ଏକ ମାଇଲ ଦୂରରେ ଥିଲା । ଗଙ୍ଗାପ୍ରସାଦ ଲକ୍ଷ୍ମୀଚନ୍ଦଙ୍କ ବଙ୍ଗଳାରେ ପହଞ୍ଚିଲା ବେଳକୁ ପ୍ରାୟ ରାତି ହୋଇଯାଇଥିଲା । ସେ ତାଙ୍କର ବାହାର ବଖରାରେ ବସି ଅଫିସର କାଗଜପତ୍ର ଦେଖୁଥିଲେ ଓ ଦୁଇଜଣ କିରାଣି ତାଙ୍କ ପାଖରେ ବସି ସାହାଯ୍ୟ କରୁଥିଲେ । ଗଙ୍ଗାପ୍ରସାଦଙ୍କ ଆସିବା ଖବର ପାଇଲାମାତ୍ରେ ସେ କାଗଜପତ୍ର ବନ୍ଦ କରି ଦେଇ କିରାଣିମାନଙ୍କୁ କହିଲେ, ''କାଗଜପତ୍ର ଠିକ୍ କରି ରଖ । କାଲି ସକାଳେ ଆସିବ ।'' ଏତିକି କହି ବାରଣ୍ଡାକୁ ଆସି କହିଲେ, ''ଆରେ ତମେ ଗଙ୍ଗାପ୍ରସାଦ ! ମୋ' ପାଖକୁ କାର୍ଡ଼ ପଠାଇବା କ'ଣ ଦରକାର ଥିଲା ? ନିଜ ଘରଲୋକଙ୍କ ସଙ୍ଗରେ କ'ଣ ଏମିତି ବ୍ୟବହାର କରାଯାଏ ? ଆସ ଆସ !''

ଲକ୍ଷ୍ମୀଚନ୍ଦ ଗଙ୍ଗାପ୍ରସାଦଙ୍କୁ ନେଇ ଡ୍ରଇଂରୁମରେ ବସିଯାଇ କହିଲେ, ''ଆଜିକାଲି କେଉଁଠି ଅଛ ? ଏଠି କାନପୁରକୁ କେବେ ଆସିଛ ଓ କାହିଁକି ଆସିଛ ?''

ଯେଉଁ ଲକ୍ଷ୍ମୀଚନ୍ଦ ନିଜର ମା' ଜେଦେଇଙ୍କୁ ମୃତ୍ୟୁଶଯ୍ୟାରେ ଗାଳିଦେଇ ଗଙ୍ଗାପ୍ରସାଦ ଓ ତାଙ୍କର ପିତା ଜ୍ୱାଳାପ୍ରସାଦଙ୍କୁ ଅପମାନିତ କରିଥିଲେ, ସେ ଆଜି ଏପରି ଆତ୍ମୀୟ ଭାବରେ କଥାବାର୍ତ୍ତା କରୁଥିବାର ଦେଖି ଗଙ୍ଗାପ୍ରସାଦ ମନେ ମନେ ହସୁଥିଲେ ଓ ତାଙ୍କ ମନଭିତରେ ଏକପ୍ରକାର ଅପୂର୍ବ ପରିବର୍ତ୍ତନ ଅନୁଭବ କରୁଥିଲେ । ତାଙ୍କ ଅନ୍ତରର କଠୋରତା ଅନେକ ନଷ୍ଟହୋଇ ଯାଇଥିଲା । ସେ ହସି ହସି କୋମଳ ସ୍ୱରରେ କହିଲେ, ''ସାତଦିନ ହେଲା ଏଇ କାନପୁରକୁ ମୁଁ ଜଏଣ୍ଟ ମାଜିଷ୍ଟ୍ରେଟ ହୋଇ ଆସିଛି । ନୂଆ ସହର, ନୂଆ ଦାୟିତ୍ୱ ଓ ନୂଆ ସମସ୍ୟା—ଏସବୁ ଭିତରେ ମୁଁ ବହୁତ କାମରେ ଲାଗିଯାଇଛି ।

ଆଜି ଭାବିଲି ଲକ୍ଷ୍ମୀଭାଇଙ୍କ ସଙ୍ଗରେ ଟିକିଏ ଦେଖାହୋଇ ଆସିବା । ବହୁତ କଷ୍ଟରେ ଟିକିଏ ସମୟ ପାଇଁ ଚାଲିଆସିଛି ।"

"ତମକୁ ଆଜି ମୁଁ ଅଶେଷ ଅଭିନନ୍ଦନ ଜଣାଉଛି । ମୋର ସାନଭାଇ ଗଙ୍ଗା କାନପୁରରେ ଜଏଣ୍ଟ ମାଜିଷ୍ଟ୍ରେଟ୍ ହୋଇଗଲଣି; ଏପର୍ଯ୍ୟନ୍ତ କୌଣସି ଭାରତୀୟ ଏହି ପଦ ପାଇ ନ ଥିଲେ । ମୋର ଆଜି କେତେ ବଡ଼ ଗର୍ବ ।" ଲକ୍ଷ୍ମୀଚନ୍ଦ ପୁଣି ବଡ଼ ଉତ୍ସାହରେ କହିଲେ, "ଆଉ ତୁମ ଭାଉଜଙ୍କ ଖବର ଶୁଣିବ ? କେତେଥର ଯେ ମୋତେ ସେ ତମ କଥା ପଚାରିଲେଣି; କିନ୍ତୁ ମୋତେ ତ ତୁମର ଠିକଣା ଜଣା ନ ଥିଲା କିମ୍ବା ତମେ ମୋତେ କେବେ ଚିଠି ଲେଖି ନ ଥିଲ ।" ତା'ପରେ ଲକ୍ଷ୍ମୀଚନ୍ଦ ଘର ଭିତରକୁ ଚାଲିଯାଇ ପାଞ୍ଚମିନଟ୍ ଭିତରେ ରାଧାକୁ ନେଇ ଚାଲିଆସିଲେ ।"

ରାଧା ସ୍ୱାମୀ ଭିତରେ ଖୁବ୍ ମୋଟୀ ହୋଇ ବଡ଼ ଅସୁନ୍ଦର ଦେଖାଯାଉଥିଲେ । ଗହଣାରେ ଲଦି ହୋଇଥିବା ଜଣେ ଅଧାବୟସୀ ସ୍ତ୍ରୀଙ୍କୁ ଦେଖି ଗଙ୍ଗାପ୍ରସାଦ ପ୍ରଥମେ ଚିହ୍ନି ପାରିଲେ ନାହିଁ । ଟିକିଏ ପରେ ଉଠିପଡ଼ି କହିଲେ, "ନମସ୍କାର ଭାଉଜ !"

"ଭଗବାନ ତମର ମଙ୍ଗଳ କରନ୍ତୁ ଗଙ୍ଗା ! ତମ ବିରୁଦ୍ଧରେ ମୋର ବହୁତ ଅଭିଯୋଗ ଅଛି । ତମେ ତ ଆସିବା ଆଗରୁ ଲେଖିଦେଇଥିଲେ ଷ୍ଟେସନକୁ ଗାଡ଼ି ପଠାଇ ଦେଇଥାନ୍ତୁ ! ଏବେ କେଉଁଠି ଅଛ ? ଭଲରେ ଅଛ ତ ?"

ଲକ୍ଷ୍ମୀଚନ୍ଦ ହସି ହସି କହିଲେ, "କାନପୁରରେ ଜଏଣ୍ଟ ସାହେବ ହୋଇ ଆସିଛନ୍ତି । ତାଙ୍କର ଏବେ ଆମମର କେଉଁ ଅଭାବ ? ବଢ଼ିଆ ବଙ୍ଗଳା, ବହୁତ ଚାକରବାକର । ଆମକୁ ସେ ଦେଖିବାକୁ ଆସିଛନ୍ତି । ସେ କଣ କମ୍ କଥା ? ହଁ ଗଙ୍ଗା, ବୋହୂଙ୍କୁ ସଙ୍ଗରେ ଆଣିଛ ନା ନାହିଁ ? କାକା ଓ ଖୁଡ଼ୀ ଭଲରେ ଅଛନ୍ତି ଟି ? ଶୁଣିଲି ଆଲହାବାଦରେ ସେ ଗୋଟାଏ ବଙ୍ଗଳା ତିଆରି କରି ପେନ୍‌ସନ୍ ପାଇବା ପରେ ସେଇଠି ରହୁଛନ୍ତି ।"

"ହଁ ଲକ୍ଷ୍ମୀଭାଇ ! ବାପା ଆଲହାବାଦ ଜର୍ଜ ଟାଉନରେ ଗୋଟାଏ ଘର ତିଆରି କରିଛନ୍ତି । କିନ୍ତୁ ବାପା ମା' କଣ ସେଠି ଏକା ରହନ୍ତେ ? ବହୁତ ଲୁହାପୋଡ଼ି କରି ମୁଁ ସେମାନଙ୍କୁ ଏଠାକୁ ନେଇ ଆସିଛି । ମୋ ପିଲାପିଲି ମଧ୍ୟ ଏଇଠି ଅଛନ୍ତି । ବାପା ତ ଏଠାକୁ ଆସିବେ ବୋଲି କହୁଥିଲେ; କିନ୍ତୁ ବର୍ତ୍ତମାନ ଟିକିଏ ଘରଦ୍ୱାର ଠିକ୍‌ଠାକ୍ କରିବାରେ ଲାଗିଛନ୍ତି । ଫୁରସତ୍ ମିଳୁନାହିଁ । ପୁଣି ମୋ' ପାଖରେ ଯେଉଁ ଘୋଡ଼ାଗାଡ଼ି ଅଛି, ସେ ତ ସବୁବେଳେ ମୋ କାମରେ ଲାଗୁଛି । ମୋତେ କହୁଥିଲେ, ରବିବାର ଦିନ ସେ ଆସିବେ ।"

ଲକ୍ଷ୍ମୀଚନ୍ଦ କହିଲେ, "ଆଜି ପର୍ଯ୍ୟନ୍ତ କ'ଣ ସେଇ ଘୋଡ଼ାଗାଡ଼ିରେ କାମ ଚଳୁଛି ?

ତମର ତ ଏତେବେଳକୁ ମଟରକାର ହୋଇଯିବା କଥା । ଘୋଡ଼ାଗାଡ଼ିଫାଡ଼ି ସାଧାରଣ ମାଜିଷ୍ଟ୍ରେଟଙ୍କ ପାଇଁ । ତମେ ତ ଜଏଣ୍ଟ ମାଜିଷ୍ଟ୍ରେଟ୍ !'' ପୁଣି କ'ଣ ଟିକିଏ ଭାବି କହିଲେ, "ଆଚ୍ଛା, କାଲି ସନ୍ଧ୍ୟାବେଳେ ମୁଁ କାକାଙ୍କ ସହିତ ସାକ୍ଷାତ୍ କରିବା ପାଇଁ ତମ ଘରକୁ ଯିବି । ତାଙ୍କୁ ଓ ତମ ପରିବାରଙ୍କୁ ଏଠାକୁ ନେଇ ଆସିବି । ବୋହୂ ଓ ପିଲାମାନେ ସମସ୍ତେ ଏଇଠି ଖାଇବେ । ତମର ଫୁରସତ୍ ଥିଲେ ତମେ ବି ଏଇଠି ଖାଇନେବ ।'' ତାପରେ ଲକ୍ଷ୍ମୀଚନ୍ଦ ଟିକିଏ ହସି ଦେଇ କହିଲେ, "ଏଠି ତ ଆମ ଘରେ ବୈଷ୍ଣବ କାରବାର ।''

ଗଙ୍ଗାପ୍ରସାଦ ହସି ହସି କହିଲେ, "ନାହିଁ, ମୋର ତ କାଲି ଏସ୍.ପି.ଙ୍କ ଘରେ ଡିନର୍; ମୁଁ ପୁଣି ଆଉ କେବେ ସୁବିଧା ଦେଖି ଆସିବି ।''

ଗଙ୍ଗାପ୍ରସାଦ ଘରକୁ ଫେରି ଲକ୍ଷ୍ମୀଚନ୍ଦଙ୍କ ଘରକୁ ଯାଇଥିବା କଥା ଜ୍ୱାଳାପ୍ରସାଦଙ୍କୁ ଜଣାଇ କହିଲେ, "କାଲି ସନ୍ଧ୍ୟାବେଳେ ଆପଣଙ୍କୁ ଓ ପିଲାମାନଙ୍କୁ ନେବାପାଇଁ ଲକ୍ଷ୍ମୀଚନ୍ଦ ଆସିବେ । ଦେଖା ହେଲା, ବହୁତ ଆଦର ଅଭ୍ୟର୍ଥନା କଲେ ।''

ଏ କଥା ଶୁଣି ଜ୍ୱାଳାପ୍ରସାଦଙ୍କ ମୁହଁ ଗମ୍ଭୀର ହୋଇଗଲା । ସେ କହିଲେ, "ତୋର ସେଠାକୁ ଯିବା ଉଚିତ ନ ଥିଲା ।''

"ମୁଁ କ'ଣ କରିବି ବାପା, କାନପୁରର ସବୁଠାରୁ ବଡ଼ ଭାରତୀୟ ମିଲ୍ ମାଲିକ ଓ ବଡ଼ ନାଗରିକ ସେ । 'ସାର୍' ଉପାଧି ତାଙ୍କୁ ମିଳିଛି । ସରକାରଙ୍କର ତାଙ୍କପ୍ରତି ବଡ଼ ଖାତିର୍ । ତାଙ୍କ ସହିତ ମୋତେ ବନ୍ଧୁତା ରଖିବାକୁ ପଡ଼ିବ । ଆପଣ ନିଶ୍ଚିନ୍ତ ରହନ୍ତୁ, ସବୁ ଠିକ୍ ହୋଇଯିବ । ପୁରୁଣା କଥାସବୁ ଭୁଲିଯିବା ଉଚିତ ବାପା ! ଯାହା ହେଲେ ବି କାକାଙ୍କ ପୁଅ ତ ! ଅନେକ କାଳ ତାଙ୍କ ସହିତ ସମ୍ବନ୍ଧ ରହିଆସିଛି ।''

ଗଙ୍ଗାପ୍ରସାଦଙ୍କର ସ୍ନେହ-ସହାନୁଭୂତିର ଅଭାବ ଜ୍ୱାଳାପ୍ରସାଦ ସବୁବେଳେ ଦେଖି ଆସି-ଥିଲେ । ବର୍ତ୍ତମାନ କିନ୍ତୁ ତାଙ୍କ ମୁହଁରୁ ଏସବୁ କଥା ଶୁଣି ପୁଅର ବଡ଼ ପରିବର୍ତ୍ତନ ହୋଇଛି ଭାବି ସେ ଭାରି ଖୁସି ହୋଇ କହିଲେ, "ହଁ ଗଙ୍ଗା, ଯେ ତ ସବୁ ଠିକ୍ କଥା । କିନ୍ତୁ କେଜାଣି କାହିଁକି ସେ ଲକ୍ଷ୍ମୀଚନ୍ଦଙ୍କୁ ମୋତେ କେବେ ଭଲ ଲାଗେ ନାହିଁ । ତେବେ ଛାଡ଼—ସେ ଆସୁ, ଆମେ ସମସ୍ତେ ଯିବା ।''

ତହିଁ ଆରଦିନ ପ୍ରାୟ ସନ୍ଧ୍ୟା ଛଅଟା ବେଳେ ଲକ୍ଷ୍ମୀଚନ୍ଦ ଗୋଟାଏ ନୂଆ ଓଭରଲାଣ୍ଡ ଗାଡ଼ି ନେଇ ଗଙ୍ଗାପ୍ରସାଦଙ୍କ ବଙ୍ଗଳାରେ ପହଞ୍ଚିଲେ । ଗଙ୍ଗାପ୍ରସାଦ ତାଙ୍କୁ ଅପେକ୍ଷା କଲାପରି ରହିଥିଲେ । ଲକ୍ଷ୍ମୀଚନ୍ଦ ଡ୍ରଇଁରୁମ୍‌ରେ ପଶିଲା ମାତ୍ରେ କହିଲେ, "ମୋ ସଙ୍ଗରେ ଗୋଟାଏ ମିନଟ୍ ବାହାରକୁ ଚାଲ । ମୁଁ ଆଜି ଗୋଟାଏ ନୂଆ ଗାଡ଼ି କିଣିଛି, କେମିତି ଚାଲୁଛି ଦେଖ ।''

"ମୁଁ ତ କାଲି ଦେଖିଥିଲି ତୁମ ପାଖରେ ଦୁଇଟା ଗାଡ଼ି ଅଛି; କିନ୍ତୁ ଏହି ଗାଡ଼ିଟା ଭଲ ଚାଲୁଛି । ମୁଁ ଭାବୁଛି ଏଇ ଦୁଇ ଚାରି ମାସରେ ଗୋଟାଏ ଗାଡ଼ି କିଣିନେବି ।"

ଗାଡ଼ି ଦେଖିସାରି ଦୁହେଁ ଘରକୁ ଫେରିଆସିଲେ ଓ ଗଙ୍ଗାପ୍ରସାଦ ଲକ୍ଷ୍ମୀଚନ୍ଦଙ୍କର ଆସିବା ଖବର ବାପାଙ୍କୁ ଦେଇଦେଲେ ।

ଜ୍ୱାଲାପ୍ରସାଦ ଆସିବାରୁ ଲକ୍ଷ୍ମୀଚନ୍ଦ ଉଠିପଡ଼ି କହିଲେ, "ପ୍ରଣାମ କାକା, ମୁଁ କାଲି ଗଙ୍ଗାଠାରୁ ଶୁଣିଲି ଯେ ଆପଣମାନେ ସମସ୍ତେ ଏଠାକୁ ଚାଲିଆସିଛନ୍ତି ! ଏକସମୟରେ ଆମ୍ଭେମାନେ କେତେ ଆପଣାର ଥିଲେ, ଆଜି ସେହି କଥା ମନେ ପଡ଼ୁଛି । ଗଙ୍ଗାକୁ ଦେଖି ମୋ ପେଟ ପୂରିଯାଉଛି । ଶ୍ରେଷ୍ଠ ଭାଇଟା ନା ! ଆପଣ ଭଲ ଅଛନ୍ତି ତ ? ଦେହ ପା' କେମିତି ଅଛି ?"

ଲକ୍ଷ୍ମୀଚନ୍ଦ ଯେଉଁ ଆତ୍ମୀୟତା ସହିତ ଜ୍ୱାଲାପ୍ରସାଦଙ୍କୁ ଭେଟିଲେ, ସେଥିରେ ଜ୍ୱାଲାପ୍ରସାଦ ଖୁବ୍ ପ୍ରଭାବିତ ହୋଇ ପଡ଼ିଲେ । ସେ ଲକ୍ଷ୍ମୀଚନ୍ଦଙ୍କର ଭଲମନ୍ଦ ପଚାରିସାରି ଯମୁନା, ରୁକ୍ମଣୀ ଓ ପିଲାମାନଙ୍କୁ ସବୁ ପ୍ରସ୍ତୁତ ହେବାପାଇଁ ଆଦେଶ ଦେଲେ ।

ଜ୍ୱାଲାପ୍ରସାଦ ଘରେ ସମସ୍ତଙ୍କୁ ଠିକ୍‌ଠାକ୍ କରି ଫେରି ଦେଖିଲେ ଗଙ୍ଗାପ୍ରସାଦ ଓ ଲକ୍ଷ୍ମୀଚନ୍ଦଙ୍କ ଭିତରେ ରାଜନୀତି କଥା ପଡ଼ିଛି । ବମ୍ବେଇରେ ଯାହା ସବୁ ଘଟିଥିଲା ସେ ସବୁ ଖବରକାଗଜରେ ବାହାରିଥିଲା ଓ ସେଥିପାଇଁ ସାରା ସହରରେ ଚହଳ ପଡ଼ି ଯାଇଥିଲା । ଗଙ୍ଗାପ୍ରସାଦ କହୁଥିଲେ, "ଏହି ସ୍ୱଦେଶୀ ଆନ୍ଦୋଳନରୁ କ'ଣ ସ୍ୱରାଜ୍ୟ ଲାଭ ହୋଇ ପାରିବ ? ଆମେ କ'ଣ ଏହି ସ୍ୱଦେଶୀମାନଙ୍କ ବଳରେ ତିଷ୍ଠି ରହି ପାରିବା ? ଆମ ଦେଶରେ ଏତେ ସ୍ୱଦେଶୀ ବ୍ୟବସାୟ ନାହିଁ ଯେ ସ୍ୱଦେଶୀ ଆନ୍ଦୋଳନ ସଫଳ ହୋଇ ପାରିବ । ଲକ୍ଷ୍ମୀଭାଇ ସାହେବ ! ଆମକୁ ତ ବାଧ୍ୟହୋଇ ବିଦେଶୀ ଜିନିଷ କିଣିବାକୁ ହିଁ ପଡ଼ିବ ।"

ଲକ୍ଷ୍ମୀଚନ୍ଦ କହିଲେ, "ହଁ ଗଙ୍ଗା, ତମେ ଠିକ୍ କହୁଛ । ଏହି ଆନ୍ଦୋଳନରେ ସ୍ୱରାଜ୍ୟ ମିଳିବ ନାହିଁ । ହେଲେ ନିଜ ଦେଶର ଶିଳ୍ପ ତ ପୁଣି ବଢ଼ାଇବାକୁ ହେବ ! ଯଦି ଲୋକଙ୍କ ଭିତରେ ସ୍ୱଦେଶୀ ଭାବନା ଜାଗ୍ରତ ନ ହୁଏ ତେବେ ଦେଶୀ ଶିଳ୍ପ ଓ ଦେଶୀ କାରଖାନା ବଢ଼ିବା ସମ୍ଭବ ହେବନାହିଁ । ଆମ ଦେଶରେ କଳକାରଖାନା ତ ଆରମ୍ଭ ହେଉଛି । ଏହି ଆରମ୍ଭ ସମୟରେ ତ ଆମ୍ଭେମାନେ ବିଦେଶୀମାନଙ୍କ ସହିତ ପ୍ରତିଯୋଗିତା କରିପାରିବା ନାହିଁ; ହେଲେ ଲୋକମାନଙ୍କର ଆମ ଶିଳ୍ପ ପ୍ରତି ଯଦି ସହାନୁଭୂତି ରହେ ତେବେ ଆମେ ଧୀରେ ଧୀରେ ଆତ୍ମନିର୍ଭରଶୀଳ ହୋଇପାରିବା । ଲୋକେ ମୋଟା କପଡ଼ା ପିନ୍ଧି ଯଦି ସ୍ୱଦେଶୀ ବସ୍ତ୍ର କିଣନ୍ତି ତା ହେଲେ ଧୀରେ ଧୀରେ ଦେଶରେ ବହୁତ ମିଲ୍ ଖୋଲିଯିବ ଏବଂ ଆସ୍ତେ ଆସ୍ତେ ଆମେ ଖୁବ୍ ସରୁ ଲୁଗା ତିଆରି କରିପାରିବା । ବୁଝିଲି ଗଙ୍ଗା ! ଅଂସହ-

ଯୋଗରୁ ଏହି ସ୍ୱଦେଶୀ ଆନ୍ଦୋଳନଦ୍ୱାରା ଆମର ପ୍ରକୃତରେ ଲାଭ ହେବ । ବାକି ଯେଉଁ ସ୍ୱରାଜ୍ୟ ଓ ଖିଲାଫତ୍ କଥା କୁହାଯାଉଛି, ସେଗୁଡ଼ାକ କିଛି ନୁହେଁ ।'' ଏହି କଥା କହି କହି ଲକ୍ଷ୍ମୀଚନ୍ଦ ହସିଲେ ।

ଜ୍ୱାଲାପ୍ରସାଦ ଲୁଗାପଟା ପିନ୍ଧି ବାହାରି ଆସିବାରୁ ଲକ୍ଷ୍ମୀଚନ୍ଦ ଏ ରାଜନୈତିକ ଗଳ୍ପ ବନ୍ଦ କରିଦେଇ କହିଲେ, ''ତମେ ତ ଏବେ ଏଠାକୁ ଆସିଗଲଣି । ତମ ସଙ୍ଗରେ ଆହୁରି ବେଶୀ କଥାବାର୍ତ୍ତା ହେବା । ଯେତେବେଳେ ଦରକାର ପଡ଼ିବ ମୋତେ ଖବର ଦେବ । ମୁଁ ତମକୁ ସବୁପ୍ରକାର ସାହାଯ୍ୟ କରିବାପାଇଁ ତିଆରି ଅଛି । ଦେଖ ଗଙ୍ଗା, ତମେ ମୋର ଶ୍ରେଷ୍ଠ ଭାଇପରି । ତମେ ଭାରତର ଜଣେ ବଡ଼ ଅଫିସର; ତମର ଗୋଟାଏ ଗାଡ଼ି ଦରକାର । ମୁଁ ଆଜି ଯେଉଁ ଗାଡ଼ି କିଣିଛି, ସେଇଟା ତମପାଇଁ କିଣିଛି । ମୁଁ ଆଜି ସେହି ଗାଡ଼ିରେ ତମ ଘରକୁ ଆସିଛି ଓ ତମ ପରିବାରକୁ ମୋ ଘରକୁ ନେଇଯାଉଛି । କମ୍ପାନୀରୁ ମାସକପାଇଁ ଗୋଟାଏ ଡ୍ରାଇଭର ନେଇ ଆସିଛି । ତାର ଦରମା ଏହି ଗାଡ଼ିଦାମ୍ ସହିତ ମିଶାଇ ଦିଆଯାଇଛି । ନିଅ, ଏ ଗାଡ଼ିର କାଗଜପତ୍ର ରଖ । ଏହି ଡ୍ରାଇଭର ତମକୁ ଡ୍ରାଇଭିଂ ଶିଖାଇଦେବ ଓ ତମେ ଚାହିଁଲେ ତମପାଇଁ ଗୋଟାଏ ଡ୍ରାଇଭର ଖୋଜିଦେବ । ମୁଁ ଘରେ ପହଞ୍ଚିସାରି ଏ ଗାଡ଼ି ତମ ପାଖକୁ ପଠାଇଦେବି । ଏ ଗାଡ଼ି ନେଇ ତମେ ଡିନର୍ ଖାଇବାକୁ ଯିବ ।''

ଗଙ୍ଗାପ୍ରସାଦ କେତେ ମାସ ହେଲା ଗୋଟାଏ ଗାଡ଼ି କିଣିବାପାଇଁ ବିଚାର କରୁଥିଲେ; କିନ୍ତୁ ପଇସା ନଥିବାରୁ କିଣି ପାରୁନଥିଲେ । ସେ କହିଲେ, ''ଲକ୍ଷ୍ମୀଭାଇ, ମୁଁ ତ ନିଜେ କିଣିଥାନ୍ତି, ତମେ ଏମିତି କାହିଁକି କଲ ?''

''ଆଚ୍ଛା, ତମେ ଯେମିତି କିଣିଥାନ୍ତ ମୁଁ ତମପାଇଁ ସେମିତି କିଣିଦେଲି । ଏଥିରେ ଆଉ କ'ଣ ତଫାତ୍ ହୋଇଗଲା ଯେ !'' ତା'ପରେ ସେ ଜ୍ୱାଲାପ୍ରସାଦଙ୍କୁ କହିଲେ, ''ଚାଲନ୍ତୁ କାକା ଯିବା । ଗଙ୍ଗା ମୋତେ କହୁଥିଲେ ଯେ ଗାଡ଼ି ଅଭାବରୁ ଆପଣ ଯାଇପାରୁ ନ ଥିଲେ । ମୁଁ ଭାବିଲି ଏହି ଗାଡ଼ି ଅଭାବଟା କାହିଁକି ରହିବ ? ବର୍ତ୍ତମାନ ଗୋଟାଏ ମଟର ଗୋଟାଏ ଘୋଡ଼ାଗାଡ଼ି । ଗୋଟାଏ ଗଙ୍ଗାଙ୍କ ପାଇଁ ଓ ଗୋଟାଏ ଆପଣମାନଙ୍କପାଇଁ । ଦୁଇଟା ଗାଡ଼ି ଛଡ଼ା ତ ଆପଣମାନଙ୍କର କାମ ଚଳନ୍ତା ନାହିଁ ।''

ବର୍ତ୍ତମାନ ଗଙ୍ଗାପ୍ରସାଦ ଓ ଲକ୍ଷ୍ମୀଚନ୍ଦଙ୍କ ପରିବାର ଭିତରେ ପୁଣି ଘନିଷ୍ଠତା ପ୍ରତିଷ୍ଠା ହୋଇଗଲା ।

ଡିସେମ୍ବର ତୃତୀୟ ସପ୍ତାହରେ ବଙ୍ଗଳା ଓ ସମସ୍ତ ଉତ୍ତର-ଭାରତରେ କ୍ରିମିନାଲ ଲ' ଆମେଣ୍ଡମେଣ୍ଟ ଆକ୍ଟ ଲାଗୁ କରିଦିଆଗଲା । ବଙ୍ଗଳା ତଥା ଯୁକ୍ତପ୍ରଦେଶର ସମସ୍ତ କଂଗ୍ରେସ ନେତାଙ୍କୁ ଗିରଫ କରିନିଆଗଲା । ଡିସେମ୍ବର ପଚିଶ ତାରିଖରେ ଯୁବରାଜ

ଯେତେବେଳେ କଲିକତାରେ ପହଞ୍ଚିଲେ,—ସେତେବେଳେ ଯେଉଁ ହରତାଳ ହେଲା ଏବଂ ସମଗ୍ର ଉତ୍ତର-ଭାରତରେ ଯେଉଁ ହରତାଳ ପ୍ରଦର୍ଶିତ ହେଲା, ସେଥିରେ ଅବସ୍ଥା ବଡ଼ ଚିନ୍ତାଜନକ ହୋଇ ଉଠିଲା । ଡିସେମ୍ବର ପଚିଶ ତାରିଖର କଲିକତା ହରତାଳ ଖବର ପାଇ କଲେକ୍ଟର ଗଙ୍ଗାପ୍ରସାଦଙ୍କୁ ଡକାଇ ତାଙ୍କ ସହିତ ପରାମର୍ଶ କଲେ । ଜିଲାର ଆଉ ଜଣେ ଅଫିସର ତାଙ୍କ ପାଖରେ ଥିଲେ; କିନ୍ତୁ ଏହି ଆନ୍ଦୋଳନକୁ କେମିତି ଭାବରେ ଶେଷ କରିବାକୁ ହେବ, କେହି କିଛି କହି ପାରି ନଥିଲେ । ସେମାନଙ୍କ ପାଖରେ କେବଳ ଏକମାତ୍ର ଉପାୟ ଥିଲା ଆନ୍ଦୋଳନକୁ ଦମନ କରିବା ।

ଏହି ଆନ୍ଦୋଳନକୁ ଆହୁରି ବଢ଼ାଇବାପାଇଁ ଅହମଦାବାଦ କଂଗ୍ରେସରେ ସ୍ଥିର ହେଲା । ଜ୍ଞାନପ୍ରକାଶ ସେହି କଂଗ୍ରେସକୁ ଯାଇଥିଲେ । ସେଠାରୁ ଫେରିବାବେଳେ ସେ ଆଲାହାବାଦ ନ ଆସି ସିଧା ଦିଲ୍ଲୀ ହୋଇ କାନପୁର ଆସିଲେ । ସେଦିନ ୧୯୨୨ ଜାନୁଆରୀ ପହିଲା ତାରିଖ । ସେଦିନ ନୂଆ ବର୍ଷର ଅଭିବାଦନ ଜଣାଇବାପାଇଁ ଗଙ୍ଗା-ପ୍ରସାଦଙ୍କ ଘରଠାରେ ଲୋକଙ୍କର ଧାର ଲାଗିଥିଲା ଓ ସେହିଦିନ ସନ୍ଧ୍ୟାରେ ଲକ୍ଷ୍ମୀଚନ୍ଦଙ୍କ ଘରଠାରେ ଡିନର୍ ଥିଲା । ଗଙ୍ଗାପ୍ରସାଦଙ୍କ ପରିବାର ଦୁଇପ୍ରହର ବେଳୁ ଲକ୍ଷ୍ମୀଚନ୍ଦଙ୍କ ଘରକୁ ଚାଲିଯାଇଥିଲେ । ଗଙ୍ଗାପ୍ରସାଦ ତାଙ୍କ ବୈଠକଖାନାରେ ବସି ଲୋକଙ୍କ ସହିତ ଆଳାପ କରୁଥିଲେ । ଏହି ସମୟରେ ଗୋଟାଏ ବୋତଲ ମଦ ଶେଷ ହୋଇ ଆଉ ଗୋଟାଏ ପ୍ରାୟ ଅଧା ହୋଇ ଯାଇଥିଲା । ଜ୍ଞାନପ୍ରକାଶଙ୍କର ଆସିବାର ଖବର ପାଇଲାମାତ୍ରେ ସେ ବାହାରକୁ ବାହାରି ଆସି ତାଙ୍କ ହାତ ଧରିପକାଇ କହିଲେ, "ଆସନ୍ତୁ କାକା ! ଜଣାପଡ଼ୁଛି ଆପଣ ଦିଲ୍ଲୀ ଦେଇ ଆସୁଛନ୍ତି ।" ଏହାପରେ ସେ ନିଜ ଅର୍ଦ୍ଦଳି ହାତରେ ଗୋଟାଏ ଗ୍ଲାସ ମଗାଇ କହିଲେ, "ନୂଆ ବର୍ଷ ଶୁଭ ହେଉ କାକା ! ନିଅନ୍ତୁ, ଆପଣ ବହୁତ ଥକିପଡ଼ିଛନ୍ତି ।" ତାପରେ ସେ ଗୋଟାଏ ବଡ଼ ଗ୍ଲାସରେ ମଦ ପୂରାଇ ଜ୍ଞାନପ୍ରକାଶଙ୍କ ହାତକୁ ବଢ଼ାଇଦେଲେ ।

ସେଠି ଯେଉଁମାନେ ବସିଥିଲେ ସେମାନେ ଉଠି ଚାଲିଗଲେ । ଜ୍ଞାନପ୍ରକାଶ ଏକା-ଥରକେ ଗ୍ଲାସର ଏକ-ଚତୁର୍ଥାଂଶ ଖାଲି କରିଦେଲେ । ପ୍ରକୃତରେ ତାଙ୍କୁ ବହୁତ ଶୋଷ ହେଉଥିଲା ଓ ସେ ବହୁତ ଥକି ଯାଇଥିଲେ । ସେ ପଚାରିଲେ, "ଭାଇ କାହାନ୍ତି ? ଘର ତ ବଡ଼ ଶୂନ୍‌ଶାନ୍ ଦେଖାଯାଉଛି, ପିଲାଛୁଆ କେହି ଦିଶୁନାହାନ୍ତି ।"

"ସମସ୍ତେ ଆଜି ଲକ୍ଷ୍ମୀଚନ୍ଦଙ୍କ ଘରକୁ ଚାଲିଯାଇଛନ୍ତି । ଆଜି ତାଙ୍କ ଘରେ ନୂଆ ବର୍ଷପାଇଁ ବଡ଼ ଭୋଜି ହେଉଛି । ସବୁ ଅଫିସର ସେଠାକୁ ଆସୁଛନ୍ତି । ମୋତେ ବି ରାତି ଆଠଟା ବେଳେ ସେଠି ପହଞ୍ଚିବାକୁ ପଡ଼ିବ । ଆଚ୍ଛା କାକା, ମୁହଁହାତ ଧୋଇ ଲୁଗାପଟା ବଦଳାଇ ପକାନ୍ତୁ । ଡିନର୍ ସୁଟ୍ ତମ ପାଖରେ ଅଛିଟି ? ଏତିକି କହି ସେ ଘଣ୍ଟି

ବଜାଇବାରୁ ଭିକ୍ଷୁ ଚାଲିଆସିଲା । ଭିକ୍ଷୁକୁ ସେ କହିଲେ, "ଜ୍ଞାନ କାକାଙ୍କ ପାଇଁ ଗାଧୁଆଘରେ ଗରମ ପାଣି ରଖିଦେ ।"

ତା'ପରେ ସେ ଜ୍ଞାନପ୍ରକାଶଙ୍କୁ କହିଲେ, "କାକା, ବୁଝାମଣା କାମ ତ ସବୁ ସରିଗଲା । ଏବେ ତମ ଅହମଦାବାଦ କଂଗ୍ରେସରେ କଣ ଠିକ୍ ହେଲା ?"

ଜ୍ଞାନପ୍ରକାଶ ହସିଦେଇ କହିଲେ, "ଆନ୍ଦୋଳନକୁ ତେଜାଇବା ଓ ସମଗ୍ର ଦେଶରେ ସତ୍ୟାଗ୍ରହ ଆରମ୍ଭ କରିବାପାଇଁ ଠିକ୍ ହେଲା । ବର୍ତ୍ତମାନ ତ ଲଢ଼ାଇ ସରଗରମ ହୋଇ ଆସିଲା । ଯୁବରାଜଙ୍କ ଅଭିନନ୍ଦନରେ କେମିତି ଦୁରବସ୍ଥା ହୋଇଛି, ତାହା ତ ତମେ ଆଖିରେ ଦେଖିଥିବ ।"

ଗଙ୍ଗାପ୍ରସାଦଙ୍କ ମୁହଁରେ ଏକପ୍ରକାର ଘୃଣା ଘୋଟିଗଲା । ସେ କହିଲେ, "ବଡ଼ ହଇରାଣରେ ପକାଉଛ କାକା ! ଏହି ଅସହଯୋଗ ଓ ଧାରଣା ପାଇଁ ମଣିଷ ବଡ଼ ହଇରାଣ ହେଲାଣି । ଏହାପରେ ପୁଣି ସତ୍ୟାଗ୍ରହ ଓ ଲଗାଣବନ୍ଦୀ ।" ପୁଣି କିଛି ଚିନ୍ତା କରି ସେ କହିଲେ. "କିନ୍ତୁ ଗୋଟାଏ ଦୃଷ୍ଟିରୁ ତମ ସତ୍ୟାଗ୍ରହ ବି ଖୁବ୍ ଭଲ; କାରଣ ଆମେ ଯେତେ ଶୀଘ୍ର ପାରିବୁ ଏହି ଆନ୍ଦୋଳନକୁ ଶେଷ କରିଦେବୁ ।"

ବର୍ତ୍ତମାନ ଜ୍ଞାନପ୍ରକାଶ କହିଲେ, "କ'ଣ ସତ୍ୟାଗ୍ରହଦ୍ୱାରା ଆନ୍ଦୋଳନ ଶେଷ ହୋଇଯିବ ? ତମେ କ'ଣ କହୁଛ କି ?"

"ହଁ, ମୁଁ ଏଇଥିପାଇଁ କହୁଛି ଯେ ସତ୍ୟାଗ୍ରହ ଜନସାଧାରଣଙ୍କ ହାତରେ ପଡ଼ିଲେ ଆପେ ଆପେ ତାହା ନଷ୍ଟ ହୋଇଯିବ । ନେତା ସବୁ ତ ଜେଲରେ ରହିବେ, ସେମାନଙ୍କୁ ବୁଝାସୁଝା କରିବାପାଇଁ କେହି ରହିବେ ନାହିଁ । ତେଣୁ ଲୋକେ ହିଂସା କରିବା ପାଇଁ ଆଗେଇଯିବେ; ଫଳରେ ଜାଲିଆନାୱାଲାବାଗ୍‌ର ପୁଣି ପୁନରାବୃତ୍ତି ହୋଇଯିବ । ବାସ୍, ଏଥରକରେ ଆନ୍ଦୋଳନ ଶେଷ ହୋଇଯିବ ।"

ଜ୍ଞାନପ୍ରକାଶ ବହୁତ ଲମ୍ବା ବାଟରୁ ଆସି ଏତେ ଥକିଯାଇଥିଲେ ଯେ ତାଙ୍କର ଆଉ ଯୁକ୍ତି କରିବାକୁ ଇଚ୍ଛା ନ ଥିଲା । ବାକି ମଦତକ ପିଇଦେଇ ସେ କହିଲେ, "ଆଚ୍ଛା, ଏ ବିଷୟରେ ପୁଣି କଥାବାର୍ତ୍ତା କରିବା; କିନ୍ତୁ ତମେ ଯେ ମୋତେ ଜବରଦସ୍ତ ଲକ୍ଷ୍ମୀଚନ୍ଦ ଘରକୁ ଟାଣୁଛ ସେଟା କ'ଣ ଠିକ୍ ?"

"କାକା, ଏଥିରେ ଖରାପ କ'ଣ ? ସେ ଯେତେବେଳେ ଆମ ସମସ୍ତଙ୍କୁ ଡାକିଛନ୍ତି ସେତେବେଳେ ତମକୁ ଛାଡ଼ିଦେବା କାହିଁକି ? ତାଛଡ଼ା ତମେ ତ ଲକ୍ଷ୍ମୀଚନ୍ଦଙ୍କୁ ଭଲଭାବରେ ଜାଣ । ସେ ସାର୍ ଉପାଧି ପାଇଛନ୍ତି । ସେଠି ଖୁବ୍ ଶାମ୍ପେନ ଚାଲିବ, ବଢ଼ିଆ ଡିନର୍ ହେବ । ସେଠି ବହୁତ ଇଂରେଜ ଲୋକ ତମେ ଦେଖିବ ଓ ତମ ବିଲାତ କଥା ତମର ମନେ ପଡ଼ିଯିବ ।"

ଜ୍ଞାନପ୍ରକାଶ ମନେ ମନେ ହସି କହିଲେ, "ଆଚ୍ଛା ହେଉ ଚାଲ, ଖୋଜରେ ତାଙ୍କ ସଙ୍ଗରେ ଦେଖା ହୋଇଯାଉ ।"

ବର୍ତ୍ତମାନ ମୁହଁହାତ ଧୋଇ ହୋଇ ଗୋଟାଏ ବଲାତି ସୁଟ୍ ପିନ୍ଧି ଜ୍ଞାନପ୍ରକାଶ ବାହାରିଲା ମାତ୍ରେ ବଙ୍ଗଳା ଆଗରେ ଗଙ୍ଗାପ୍ରସାଦଙ୍କର ନୂଆ ଗାଡ଼ି ଦେଖି ପଚାରିଲେ, "କଣ ଲକ୍ଷ୍ମୀଚନ୍ଦ ତମକୁ ନେବା ପାଇଁ ଗାଡ଼ି ପଠାଇଛନ୍ତି ?"

ଗଙ୍ଗାପ୍ରସାଦ ହସି ଦେଇ କହିଲେ, "ନାହିଁ କାକା ! ଏଟା ପରା ମୋ ଗାଡ଼ି । ଏଠି ଜଏଣ୍ଟ ମାଜିଷ୍ଟ୍ରେଟ ହୋଇଥିବାରୁ ମୋ ପାଖରେ ଗୋଟାଏ ଗାଡ଼ି ରହିବା ଦରକାର । ହେଲେ ତମ କଥା ମିଛ ନୁହେଁ । ମୋତେ ଏହି ଗାଡ଼ିଟା ଲକ୍ଷ୍ମୀଚନ୍ଦ ଦେଇଛନ୍ତି । ସେ ମୋର ବଡ଼ଭାଇ ତ ! ମୋ ପାଖରେ ଏତେ ପଇସା କାହିଁ ଯେ ମୁଁ ଗାଡ଼ି କିଣନ୍ତି ? ଜୌନପୁରଠାରେ ମୁଁ ଯେଉଁ କରଜ କରିଥିଲି, ତାକୁ ଏବେ ଶୁଝୁଛି ।"

ଜ୍ଞାନପ୍ରକାଶଙ୍କୁ ଦେଖି ଲକ୍ଷ୍ମୀଚନ୍ଦ ଚମକି ପଡ଼ିଲେ । ଆଲାହାବାଦରେ ସେ ଜ୍ଞାନପ୍ରକାଶଙ୍କୁ କେତେ ଥର ଦେଖିଥିଲେ, କେତେ ଥର ବି ତାଙ୍କ ସଙ୍ଗରେ କଥାବାର୍ତ୍ତା କରିଥିଲେ; କିନ୍ତୁ ଏଥର ତାଙ୍କୁ ଦେଖି ଓ ତାଙ୍କ ନାଁ ଶୁଣି ଏମିତି ଚମକି ପଡ଼ିବାରୁ ଗଙ୍ଗାପ୍ରସାଦଙ୍କୁ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା ସତ; କିନ୍ତୁ ଜ୍ଞାନପ୍ରକାଶଙ୍କୁ ବିଶେଷ କିଛି ଆଶ୍ଚର୍ଯ୍ୟ ଲାଗିଲା ନାହିଁ । ଲକ୍ଷ୍ମୀଚନ୍ଦ ଜ୍ଞାନପ୍ରକାଶଙ୍କୁ ଆସ୍ତେ ପଚାରିଲେ, "ଆପଣ କ'ଣ ଅହମଦାବାଦ କଂଗ୍ରେସରୁ ଆସିଲେ ?"

ଜ୍ଞାନପ୍ରକାଶ ଉତ୍ତର ଦେଲେ, "ହଁ, ଅହମଦାବାଦରୁ ଆସିଲି । ଆପଣଙ୍କ ସଙ୍ଗରେ ଦେଖାହେବା ପାଇଁ କାନପୁର ହୋଇ ଆଲାହାବାଦ ଯାଉଛି ।"

ଲକ୍ଷ୍ମୀଚନ୍ଦ କହିଲେ, "କାଲି ଦୁଇପ୍ରହରେ ମୋ ଅଫିସକୁ ଆସନ୍ତୁ ।" ତା'ପରେ ସେ ଅନ୍ୟ ଅତିଥିମାନଙ୍କୁ ସତ୍କାର କରିବା ପାଇଁ ଚାଲିଗଲେ ଓ ଜ୍ଞାନପ୍ରକାଶ ଜ୍ୱାଲାପ୍ରସାଦଙ୍କ ସହିତ କଥାବାର୍ତ୍ତାରେ ଲାଗିଗଲେ ।

ଜ୍ଞାନପ୍ରକାଶ ଓ ଲକ୍ଷ୍ମୀଚନ୍ଦଙ୍କ କଥାବାର୍ତ୍ତା ଦେଖି ଗଙ୍ଗାପ୍ରସାଦଙ୍କୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । ସେ ଘରକୁ ଫେରି ଜ୍ଞାନପ୍ରକାଶଙ୍କୁ ପଚାରିଲେ, "କାକା ! ଲକ୍ଷ୍ମୀଚନ୍ଦ କେମିତି ଜାଣିଲେ ଯେ ତମେ ଅହମଦାବାଦ କଂଗ୍ରେସରୁ ଫେରୁଥିଲ ଏବଂ ତମେ ଜଣେ କଂଗ୍ରେସ ଲୋକ ? ତମ ପୋଷାକପତ୍ର ଯେକୌଣସି ୟୁରୋପୀୟାନଙ୍କଠାରୁ ଯଥେଷ୍ଟ ଭଲ ଦେଖାଯାଉଥିଲା ।"

ଜ୍ଞାନପ୍ରକାଶ ଟିକିଏ ହସିଦେଇ କଥାକୁ ଟାଳି ଦେବାର ଯତ୍ନ କରି କହିଲେ, "ସେସବୁ ଜାଣି ତମର ଲାଭ କ'ଣ ?"

ଗଙ୍ଗାପ୍ରସାଦ ଜିଦ୍ କରି କହିଲେ, "ନାହିଁ କାକା, ତମକୁ ସେକଥା ନିଶ୍ଚୟ କହିବାକୁ

ହେବ । ନୋହିଲେ ମୋର ଆଜି ଖାଦ୍ୟ ଜୀର୍ଣ୍ଣ ହେବନାହିଁ ।"

"ତାହେଲେ ଶୁଣ; କିନ୍ତୁ ଏତିକି ମନେ ରଖିବାକୁ ହେବ ଯେ ମୁଁ ଏ କଥା କାନପୁରର ଜଏଣ୍ଟ ମାଜିଷ୍ଟ୍ରେଟଙ୍କୁ କହୁନାହିଁ, କହୁଛି ମୋର ଜଣେ ପୁତୁରା, ମୋର ବନ୍ଧୁ ଗଙ୍ଗାପ୍ରସାଦକୁ । ଏହି ସାର୍ ଲକ୍ଷ୍ମୀଚନ୍ଦ ପୁଞ୍ଜିପତି ନାଁ ନୁହନ୍ତି ? ଭାରତର ପୁଞ୍ଜିପତିମାନେ ଆମର ଆନ୍ଦୋଳନର ମେରୁଦଣ୍ଡ । ଆମ ଆନ୍ଦୋଳନ ପାଇଁ ଯାହା ପଇସା ଦରକାର ଏହି ପୁଞ୍ଜିପତିମାନଙ୍କଠାରୁ ମିଳିପାରିବ; କାରଣ ଇଂରେଜମାନଙ୍କର ଶକ୍ତି ବ୍ରିଟିଶ ପୁଞ୍ଜିବାଦୀ ଶକ୍ତିରୁ ଗୃହୀତ । ଭାରତରେ ବ୍ୟବସାୟ କରି ଓ ଭାରତରେ ନିଜର ଜିନିଷ ବିକି ବ୍ରିଟିଶମାନେ ହିନ୍ଦୁସ୍ଥାନକୁ ଶୋଷଣ କରୁଛନ୍ତି । ଯଦି ବ୍ରିଟିଶ ପୁଞ୍ଜିପତିମାନଙ୍କର ସବୁଠାରୁ ବଡ଼ ଶକ୍ତି କିଏ ଥାଏ, ତା'ହେଲେ ସେମାନେ ହେଉଛନ୍ତି ଏହି ଭାରତୀୟ ପୁଞ୍ଜିପତି ।"

ଗଙ୍ଗାପ୍ରସାଦଙ୍କର ପୁଣି ସେହି ଲୁଗା ଦୋକାନୀଙ୍କର କଥା ମନେପଡ଼ିଗଲା—'ଏହି ସ୍ୱଦେଶୀ ଆନ୍ଦୋଳନଦ୍ୱାରା ଦେଶୀ ମିଲ୍‌ମାନଙ୍କର ଭାଗ୍ୟ ବଢ଼ିବ ।' ସେ କହିଲେ, "ବୁଝିଗଲି କାକା, ତମେ ତାହାହେଲେ ଲକ୍ଷ୍ମୀଚନ୍ଦଙ୍କଠାରୁ ପଇସା ନେବା ପାଇଁ ଆସିଛ ! ଆଶ୍ଚର୍ଯ୍ୟ କଥା, ଲକ୍ଷ୍ମୀଚନ୍ଦ ତେଣେ ସରକାରଙ୍କୁ ଟଙ୍କା ଦେଉଛନ୍ତି; ଏଣେ କଂଗ୍ରେସକୁ ବି ଟଙ୍କା ଦେଉଛନ୍ତି !"

ଜ୍ଞାନପ୍ରକାଶ କହିଲେ, "ଏଣେ ପୁଣି ତମକୁ ଟଙ୍କା ଦେଉଛନ୍ତି ମଟରଗାଡ଼ି ରୂପରେ । କିନ୍ତୁ ଗଙ୍ଗା, ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । ଏହି ପୁଞ୍ଜିପତିମାନେ ବହୁତ ଲାଭ ଉଠାଉଛନ୍ତି । ଏମାନେ ସରକାରଙ୍କୁ ଖୁବ୍ ଅଳ୍ପ କିଛି ଦେଉଛନ୍ତି କେବଳ ସରକାରଙ୍କଠାରୁ ସୁବିଧା ଉଠାଇବା ପାଇଁ; ଅଳ୍ପ କିଛି କଂଗ୍ରେସକୁ ଦେଉଛନ୍ତି ସ୍ୱଦେଶୀ ଆନ୍ଦୋଳନ ବଢ଼ାଇବା ପାଇଁ । ତାହେଲେ ତାଙ୍କ ସ୍ୱଦେଶୀ ମାଲ ବେଶୀ ବିକ୍ରି ହେବ । ତାଙ୍କ ଲାଭରୁ ସେ ଜଏଣ୍ଟ ମାଜିଷ୍ଟ୍ରେଟ ଗଙ୍ଗାପ୍ରସାଦଙ୍କୁ ଅଳ୍ପ କିଛି ଦେଇଛନ୍ତି । ତା'ହେଲେ ସେ ଯେଉଁ ଲୁଟତରାଜ ଓ ବେଇମାନି କରୁଛନ୍ତି ସେଥିପ୍ରତି ସରକାରୀ କର୍ମଚାରୀମାନେ ଆଖି ବୁଜି ଦେବେ । ଏ ଯୁଗରେ ସବୁଠାରୁ ବଡ଼ ଦରକାରୀ ଜିନିଷ ଟଙ୍କା ।" ଏତିକି କହି କହୁ ଜ୍ଞାନପ୍ରକାଶ ଖୁବ୍ ଜୋରରେ ହସିଦେଲେ ।

## ନଅ

ସମଗ୍ର କାନପୁର ସହରରେ ହରତାଳ ସହ ଖୁବ୍ ଉତ୍ତେଜନା ଦେଖା-ଦେଇଥିଲା । ପୂର୍ବ ରାତରେ ଜେଲ ଭିତରେ ଜଣେ କଂଗ୍ରେସ କର୍ମୀଙ୍କର ମୃତ୍ୟୁ ହୋଇଥିଲା । ଲୋକେ କହନ୍ତି, ଜେଲ ହାକିମଙ୍କ ଅତ୍ୟାଚାର ଫଳରେ ତାଙ୍କର ମୃତ୍ୟୁ ହୋଇଥିଲା; କିନ୍ତୁ ଜେଲର ହାକିମମାନେ କହୁଥିଲେ, ପୂର୍ବରୁ ସେ ବେମାର ଥିଲେ । ତେଣୁ ତାଙ୍କର ମୃତ୍ୟୁ ସ୍ୱାଭାବିକ ଭାବରେ ହୋଇଥିଲା । ଏହି କଂଗ୍ରେସ ସ୍ୱୟଂସେବକଙ୍କ ଶବକୁ ଶୋଭାଯାତ୍ରାରେ ନିଆଯାଇଥିଲା । ଶୋଭାଯାତ୍ରା ଷ୍ଟେସନ ରୋଡ଼ରେ ପହଞ୍ଚିବାବେଳକୁ ପଚଶ ତିରିଶ ହଜାର ଲୋକ ସେଥିରେ ଯୋଗ ଦେଇଥିଲେ । ସେମାନଙ୍କ ମନରେ ବହୁତ ହିଂସା ଓ କ୍ରୋଧ ଥିଲା ।

ପୋଲିସ ଅଫିସରମାନେ ଲୋକମାନଙ୍କର ଏପରି ମନୋବୃତ୍ତି ଦେଖି ଖୁବ୍ ଚିନ୍ତିତ ହୋଇ ଗଙ୍ଗାପ୍ରସାଦଙ୍କୁ ଏହାର ସୂଚନା ଦେଇଦେଲେ । ଅଫିସରମାନଙ୍କର ମିଟିଂରେ ସ୍ଥିର ହେଲା ଯେ ଶୋଭାଯାତ୍ରାକୁ ସିଭିଲ ଲାଇନ ରାସ୍ତାରେ ଛାଡ଼ି ଦିଆଯିବ ନାହିଁ । କାରଣ ସିଭିଲ ଲାଇନରେ ବହୁତ ଇଂରେଜ ଲୋକ ଓ ଅନେକ ବଡ଼ ବଡ଼ ଅଫିସର ରହୁଥିଲେ । ଲୋକମାନଙ୍କ ମନରେ ଏତେ ଉତ୍ତେଜନା ଥିଲା ଯେ ସେମାନେ ଯେକୌଣସି ମୁହୂର୍ତ୍ତରେ ହିଂସାକାଣ୍ଡ ଘଟାଇବା ଅସମ୍ଭବ ନୁହେଁ । ଏହି ସମୟରେ ଶୋଭାଯାତ୍ରାକାରୀ-ମାନଙ୍କ ସମ୍ମୁଖୀନ ହେବା ପାଇଁ ପୋଲିସଦଳଙ୍କୁ ଡକରା ହେଲା ।

ଷ୍ଟେସନ ରୋଡ଼ରୁ ସିଭିଲ ଲାଇନକୁ ଯିବାରାସ୍ତା ଛକ ଉପରେ ଶୋଭାଯାତ୍ରାକାରୀମାନଙ୍କୁ ବାଧା ଦେବାପାଇଁ ଗଙ୍ଗାପ୍ରସାଦ ପ୍ରାୟ ଦୁଇଶହ ସଶସ୍ତ୍ର ପୋଲିସ ଓ ସାଧାରଣ ସିପାହୀ ନେଇ ଠିଆ ହୋଇ ରହିଲେ । କଂଗ୍ରେସ କର୍ମକର୍ତ୍ତାଙ୍କର ଏହି ଶବକୁ ସ୍ୱୟଂସେବକ ଓ ଆତ୍ମୀୟସ୍ୱଜନଙ୍କ ସହିତ ଜେଲଠାରୁ ସିଧା ଭୈରବଘାଟ ଶ୍ମଶାନକୁ ପଠାଇ ଦିଆଯାଇଥିଲା; କିନ୍ତୁ ଅନ୍ୟ ଶୋଭାଯାତ୍ରୀମାନେ ଯେତେବେଳେ ଆସି ଛକରେ ପହଞ୍ଚିଲେ ସେମାନଙ୍କୁ ବନ୍ଦ କରାଗଲା ।

ଏହି ଶୋଭାଯାତ୍ରାର ଆଗରେ କଂଗ୍ରେସ ପତାକା ଧରି ସ୍ୱୟଂସେବିକାମାନେ ରହିଥିଲେ ଓ ସେମାନଙ୍କ ସହିତ ଆହୁରି ଅନେକ ସ୍ତ୍ରୀଲୋକ ମଧ୍ୟ ଥିଲେ । ସେମାନଙ୍କ ପଛରେ କଂଗ୍ରେସ ସ୍ୱୟଂସେବକ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନେ ଥିଲେ । ସେମାନଙ୍କ

ପଛରେ କାନପୁର ସହରର ଅଗଣିତ ଜନତା ମାଡ଼ିଚାଲିଥିଲେ । ଗଙ୍ଗାପ୍ରସାଦ ଶୋଭା-
ଯାତ୍ରାର ଆଗକୁ ଯାଇ ସେଇଠୁ ଫେରିଯିବା ପାଇଁ ଲୋକଙ୍କୁ ଆଦେଶ ଦେଲେ ଓ
ସିଭିଲ୍ ଲାଇନ୍ ରାସ୍ତାରେ ଶୋଭାଯାତ୍ରା ଯିବାପାଇଁ ମନା ବୋଲି କହିଲେ । ଏ କଥା ଶୁଣି
ନଗର କଂଗ୍ରେସ କମିଟିର ପାଞ୍ଚଜଣ କର୍ମକର୍ତ୍ତା ଆଗକୁ ଆସି କହିଲେ ଯେ ଶୋଭାଯାତ୍ରା
ସେଠୁ ଫେରିପାରିବ ନାହିଁ । ଶୋଭାଯାତ୍ରୀମାନେ ସିଭିଲ୍ ଲାଇନ୍ ଦେଇ ଶ୍ମଶାନ
ଘାଟକୁ ଯାଇ ସେଠି ସେମାନଙ୍କର ଅମର ଶହୀଦଙ୍କ ଉପରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବେ ।
ସେମାନେ ସରକାରୀ ଆଜ୍ଞା ପାଳନ କରିବା ପାଇଁ ପ୍ରସ୍ତୁତ ନୁହନ୍ତି । ପରନ୍ତୁ ଶୋଭା-
ଯାତ୍ରୀମାନେ କୌଣସି ହିଂସାତ୍ମକ କାର୍ଯ୍ୟ କରିବେ ନାହିଁ ବୋଲି ସେମାନେ
ଗଙ୍ଗାପ୍ରସାଦଙ୍କୁ ଆଶ୍ୱାସନା ଦେଇଥିଲେ ।

ଶୋଭାଯାତ୍ରାରେ ଭାରି ପାଟିତୁଣ୍ଡ ହେଉଥାଏ । ଲୋକେ ସରକାର ଓ ସରକାରୀ
ଅଫିସରଙ୍କୁ ଖରାପ ଭାଷାରେ ଗାଳି ଦେଉଥା'ନ୍ତି । ମହାତ୍ମାଗାନ୍ଧି, ଭାରତର ସ୍ୱାଧୀନତା
ଓ ଭାରତମାତାଙ୍କର ଜୟ ସ୍ଲୋଗାନ୍ ଚାଲିଥାଏ । ଗଙ୍ଗାପ୍ରସାଦଙ୍କ ପାଖରେ କାନପୁରର
ଇଂରେଜ ଆସିଷ୍ଟାଣ୍ଟ ପୁଲିସ୍ ସୁପରିନ୍ଟେଣ୍ଡେଣ୍ଟ ଠିଆ ହୋଇଥାନ୍ତି ଓ ଏପାଖ
ସେପାଖ ଅନେକ ୟୁରୋପୀୟାନ୍ ଓ ଆଙ୍ଗ୍ଲୋଇଣ୍ଡିଆନ ସର୍ଜେଣ୍ଟ ଅଣ୍ଟାରେ ପିସ୍ତଲ୍
ଲଟକାଇ ଠିଆହୋଇଥାନ୍ତି । ଗଙ୍ଗାପ୍ରସାଦ ବର୍ତ୍ତମାନ କାନପୁର ସହରରେ ଶହେ
ଚଉରାଳିଶ ଧାରା ଘୋଷଣା କରିଦେଇ ଶୋଭାଯାତ୍ରାକାରୀମାନଙ୍କୁ ଏଣେତେଣେ
ଚାଲିଯିବା ପାଇଁ ଆଦେଶ ଦେଲେ ।

ଏହି ସମୟରେ ଲୋକଙ୍କ ଭିତରୁ କେହି ଜଣେ ଏକ ଢେଲା ଫିଙ୍ଗିବାରୁ ତାହା
ଯାଇ ଆସିଷ୍ଟାଣ୍ଟ ପୁଲିସ୍ ସୁପରିନ୍ଟେଣ୍ଡେଣ୍ଟଙ୍କ ବାଁ ହାତରେ ବାଜିଲା; ଫଳରେ ସେ
ଲୋକଙ୍କ ଆଡ଼କୁ ପିସ୍ତଲ ଦେଖାଇ ଠିଆହେଲେ । ଗଙ୍ଗାପ୍ରସାଦ ସେହି ପୋଲିସଙ୍କ
ହାତକୁ ଦବାଇଦେଲେ; କିନ୍ତୁ ସେତେବେଳେ ଏତେ ଟେକା ବୃଷ୍ଟି ହେଲା ଯେ
ସେଥିରୁ ଗୋଟିଏ ଯାଇ ଗଙ୍ଗାପ୍ରସାଦଙ୍କ ମୁଣ୍ଡରେ ବାଜିଲା । ଗଙ୍ଗାପ୍ରସାଦ ବର୍ତ୍ତମାନ
ଲାଠିଚାର୍ଜ ପାଇଁ ପୁଲିସଙ୍କୁ ଆଦେଶ ଦେଲେ ଓ ଲୋକମାନଙ୍କୁ ଛତ୍ରଭଙ୍ଗ କରିଦେବା
ପାଇଁ ଘୋଡ଼ସବାରମାନଙ୍କୁ ଆଜ୍ଞା ଦେଲେ । ଆଦେଶ ପାଇଲା ମାତ୍ରେ ସେମାନେ
ଲୋକଙ୍କ ଉପରେ ଚଢ଼ାଉ ଆରମ୍ଭ କରିଦେଲେ ।

ଶୋଭାଯାତ୍ରାର ଅନ୍ୟ ଲୋକ ଏଣେତେଣେ ପଳାଇବାକୁ ଲାଗିଲେ; କିନ୍ତୁ
କଂଗ୍ରେସର ସ୍ୱୟଂସେବକ ଓ ସ୍ୱୟଂସେବିକାମାନେ ଅଟଳ ରହି ମାଡ଼ ଖାଇଲେ । ପାଞ୍ଚ
ମିନଟ୍ ଭିତରେ ଯେ ଯୁଆଡ଼େ ପଳାଇଲେ । କେବଳ ଆହତ ଲୋକମାନେ ସେଇଠି
ପଡ଼ିରହିଲେ । ପ୍ରାୟ ଦୁଇଶହ ଲୋକ ଲାଠିମାଡ଼ରେ ଆହତ ହୋଇଥିଲେ ଓ

ସେମାନଙ୍କ ଭିତରେ ପ୍ରାୟ ପଚିଶ ଜଣ ସ୍ତ୍ରୀଲୋକ ଥିଲେ । ସେମାନଙ୍କ ଭିତରୁ ଯେଉଁ ପଚାଶଜଣ ବେଶୀ ଆଘାତ ପାଇଥିଲେ ସେମାନଙ୍କୁ ଡାକ୍ତରଖାନା ପଠାଇ ଦିଆଗଲା ଓ ବାକିମାନଙ୍କୁ ଗିରଫ କରି ହାଜତକୁ ପଠାଇ ଦିଆଗଲା ।

ତହିଁ ଆରଦିନ ଗଙ୍ଗାପ୍ରସାଦ କଚେରୀରୁ ଫେରିଲାବେଳକୁ ତାଙ୍କ ଘରେ ସତ୍ୟବ୍ରତ ଓ ଜ୍ଞାନପ୍ରକାଶ ବସିଥିଲେ । ପଚାଶ ଜଣ ଆହତଙ୍କ ଭିତରୁ ପ୍ରାୟ ତିରିଶ ଜଣଙ୍କୁ ଘରକୁ ପଠାଇ ଦିଆଯାଇଥିଲା ଓ ବାକି କୋଡ଼ିଏ ଜଣଙ୍କର ଚିକିତ୍ସା ହେଉଥିଲା; କିନ୍ତୁ ପ୍ରତ୍ୟେକଙ୍କର ଅବସ୍ଥା ଭଲ ଥିଲା । ପୂର୍ବଦିନ ସନ୍ଧ୍ୟାରେ ଯେଉଁ ପାଞ୍ଚ ଜଣଙ୍କୁ ଗିରଫକରି ନିଆଯାଇଥିଲା, ସେମାନଙ୍କୁ ଗଙ୍ଗାପ୍ରସାଦ ମାସେ ଲେଖା ଜେଲ୍ ଦଣ୍ଡ ଦେଇଥିଲେ । ସେଥିରେ ମନ ତାଙ୍କର ଟିକିଏ ହାଲୁକା ହୋଇ ଯାଇଥିଲା । ସେ ଲୁଗାପଟା ବଦଳି ଏହି ଦୁଇ ଜଣଙ୍କ ପାଖରେ ଆସି ବସିଲେ । ଭିକ୍ଷୁ ସେମାନଙ୍କୁ ଗୁହା ଜଳଖିଆ ଆଣି ଦେଲା । ବର୍ତ୍ତମାନ ଗଙ୍ଗାପ୍ରସାଦ ଜ୍ଞାନପ୍ରକାଶଙ୍କୁ ନିରୀକ୍ଷଣ କରି ପଚାରିଲେ, "ହଁ ବର୍ତ୍ତମାନ ତମମାନଙ୍କର ବିଚାର କ'ଣ କୁହ ?"

"ବିଚାର ଆଉ କ'ଣ ? ଆମେ ତ ବର୍ତ୍ତମାନ ତମର ଚିନ୍ତା ଦୂର କରିବାରେ ବ୍ୟସ୍ତ; ଅନ୍ତତଃ ତମକୁ କିଛି ଶାନ୍ତି ମିଳିବା ଦରକାର । ଏଣିକି ସହର ଛାଡ଼ି ଗାଁରେ ଆନ୍ଦୋଳନ ଆରମ୍ଭ କରିବା କଥା । ଗାଁରେ ସମୂହ ଖଜଣାବନ୍ଦ ଆନ୍ଦୋଳନ ଆମ୍ଭେମାନେ ଆରମ୍ଭ କରିଦେଇଛୁ । ସହରର ଜଏଣ୍ଟ ମାଜିଷ୍ଟ୍ରେଟ୍‌ଙ୍କର ସେଥିରେ କିଛି ଯାଏ-ଆସେ ନାହିଁ । ଆମେ ଭାବୁଛୁ, ଦୁଇଚାରି ମାସରେ ସରକାର ଯଦି ହାରିଯା'ନ୍ତି ତାହେଲେ ସବୁ ସମାଧାନ ହୋଇଯିବ ।"

"କାକା, ତାହେଲେ ସତରେ ଆପଣମାନେ ଗାଁରେ ସତ୍ୟାଗ୍ରହ କରିବାପାଇଁ ଯାଉଛନ୍ତି ? ସାମୂହିକ ସତ୍ୟାଗ୍ରହ ତ ଗୋଟିଏ ଭୟଙ୍କର ଅସ୍ତ୍ର । ସେ ବିଷୟରେ ଆପଣମାନେ ଭାବନ୍ତୁ । ନଚେତ୍ ଏପର୍ଯ୍ୟନ୍ତ ଆପଣମାନେ ଯାହା ସଫଳତା ପାଇଛନ୍ତି— ସେସବୁ ନଷ୍ଟ ହୋଇଯିବ ।"

କିଛି ଟିକିଏ ଚିନ୍ତା କଲାପରି ଜ୍ଞାନପ୍ରକାଶ ଉତ୍ତର ଦେଲେ, "ହଁ ଗଙ୍ଗା ! ସେକଥା ମୁଁ ବୁଝୁଛି ଯେ; କିନ୍ତୁ ଆମେ ଚୁପ୍‌ଚାପ୍ ରହିଲେ ଆମର ସବୁ ସଫଳତା ନଷ୍ଟ ହୋଇଯିବ । ସମୂହ ସତ୍ୟାଗ୍ରହ ଏକମାତ୍ର ଅସ୍ତ୍ର ଯାହା ପାଖରେ ବ୍ରିଟିଶ୍ ସରକାର ମୁଣ୍ଡ ନୁଆଁଇ ପାରେ । ଏହି ଆନ୍ଦୋଳନକୁ କୋଟି କୋଟି କୃଷକଙ୍କ ନିକଟରେ ପହଞ୍ଚାଇବା ବର୍ତ୍ତମାନ ଆମମାନଙ୍କର କାମ । ଏହି ସପ୍ତାହପରେ ଯୁକ୍ତପ୍ରଦେଶରେ ସମସ୍ତ ସକ୍ରିୟ କର୍ମୀମାନଙ୍କର ଆଲ୍ଲାହାବାଦରେ ଏକ ବୈଠକ ବସିବ ଓ ଏହି ଆନ୍ଦୋଳନକୁ ଗ୍ରାମବାସୀଙ୍କ ନିକଟରେ ପହଞ୍ଚାଇବାକୁ ସେଇଠି ଉପାୟ ଠିକ୍ କରାଯିବ ।"

ଏହି ସମୟରେ କଲେକ୍ଟରଙ୍କର ଚପରାସୀ ଆସି ଖଣ୍ଡିଏ ଚିଠି ଦେଇଗଲା । ଚିଠି ପଢ଼ି ଗଙ୍ଗାପ୍ରସାଦ ଚମକିପଡ଼ି ଚପରାସୀକୁ କହିଲେ, "ଆଚ୍ଛା, ମୁଁ ଏଇ ଘଣ୍ଟାକ ଭିତରେ ଯାଉଛି ।" ଚପରାସୀ ଚାଲିଯିବା ପରେ ସେ କଲେକ୍ଟରଙ୍କ ଟାଇପ୍ ଚିଠିକୁ ଜ୍ଞାନପ୍ରକାଶଙ୍କ ହାତକୁ ବଢ଼ାଇଦେଇ କହିଲେ, "କାକା, ଏଟାକୁ ପଢ଼ନ୍ତୁ । ବଡ଼ ତାଜା ଖବର ମୁଁ ତମକୁ ଦେଉଛି ।"

ଜ୍ଞାନପ୍ରକାଶ କଲେକ୍ଟରଙ୍କ ଚିଠି ପଢ଼ି ପାଟିକରି ଉଠିଲେ, "ଏଁ, ଏ କ'ଣ ? ଏ ଚୌରିଚଉରା ଖବର ମିଛ ! ଏଗୁଡ଼ା ଅତିରଂଜିତ କରି କୁହାଯାଇଛି । ଥାନା ପୋଡ଼ି-ଦେଇ ଏକୋଇଶ ଜଣ ପୋଲିସ୍ ଓ ଜଣେ ସବ୍‌ଇନସ୍‌ପେକ୍ଟରଙ୍କୁ ଜୀଅନ୍ତା ପୋଡ଼ି ଦିଆଯାଇଛି । ମୁଁ ଏଗୁଡ଼ା ବିଶ୍ୱାସ କରୁନାହିଁ । କ'ଣ ଗଙ୍ଗା, ତମେ କ'ଣ ଭାବୁଛ ଏଗୁଡ଼ା ସତ ?"

ଗଙ୍ଗାପ୍ରସାଦ ଉତ୍ତର ଦେଲେ, "କାକା, ତମେ ବିଶ୍ୱାସ କର ବା ନକର ସରକାରୀ ଖବର କେବେ ଭୁଲ୍ ଦିଆଯାଏ ନାହିଁ । ମୁଁ ତମକୁ ପ୍ରଥମରୁ କହିଛି ଯେ ସାମୂହିକ ସତ୍ୟାଗ୍ରହ ଓ ହିଂସାତ୍ମକ ଆନ୍ଦୋଳନକୁ ଗାଁଗହଳକୁ ନେବା ଭୁଲ୍ । ଯଦି ଏପରି ଆଉ ଦୁଇଚାରିଟା ଘଟଣା ଘଟିଯାଏ ତାହେଲେ ସାରାରାଜ୍ୟରେ ମିଲିଟାରୀ ଶାସନ ଚାଲିବ ଓ ତାହା ବୋଧହୁଏ ପଞ୍ଜାବ ମାର୍ଶାଲ ଆଇନଠାରୁ ବେଶି ଭୟାନକ ହେବ । ଏପରି ମିଲିଟାରୀ ଶାସନକୁ ମଧ୍ୟ ନ୍ୟାୟୋଚିତ ବୋଲି କୁହାଯାଇପାରିବ ।"

ଜ୍ଞାନପ୍ରକାଶ ଏ କଥାର କୌଣସି ଜବାବ ଦେଲେ ନାହିଁ; କିନ୍ତୁ ସତ୍ୟବ୍ରତ ଦୃଢ଼ସ୍ୱରରେ କହିଲେ, "କଏଣ୍ଟ ସାହେବ ଖାଲି ଯୁକ୍ତପ୍ରଦେଶରେ ନୁହେଁ, ସାରା ଭାରତବର୍ଷରେ ଯଦି ମାର୍ଶାଲ୍ ଆଇନ୍ ଜାରୀ କରାଯାଏ, ତେବେ ମୁଁ ଖୁସି ହେବି । ତାହେଲେ ଇଂରେଜମାନେ ଭାରତବର୍ଷରେ ହାକିମମାନଙ୍କ ସାହାଯ୍ୟରେ ଯେଉଁ ଶାସନ ଚଳାଇଛନ୍ତି ତାହା ଶେଷ ହୋଇଯିବ ଓ ସାରା ଭାରତର ଲୋକେ ଅନୁଭବ କରିପାରିବେ ଯେ ସେମାନେ ସମସ୍ତେ ଗୋଲାମ । ଭାରତରେ ଯେଉଁମାନେ ନିଜକୁ ସିଭିଲିଆନ୍ କହି ଚାକିରୀ କରୁଛନ୍ତି, ସେହିମାନଙ୍କ ଜରିଆରେ ବ୍ରିଟିଶମାନେ ସେମାନଙ୍କ ଶାସନ ଏ ଦେଶରେ କାଏମ ରଖିଛନ୍ତି ବୋଲି ଲୋକେ ଜାଣିପାରିବେ ।"

ସତ୍ୟବ୍ରତଙ୍କ କଥା ଗଙ୍ଗାପ୍ରସାଦଙ୍କୁ ଭଲ ଲାଗିଲା ନାହିଁ; ବିଶେଷତଃ ସେଥିରେ ତାଙ୍କପ୍ରତି ଆକ୍ଷେପ ମଧ୍ୟ ଥିଲା । ପରନ୍ତୁ ସତ୍ୟବ୍ରତଙ୍କ କଥାକୁ ସେ ଅସ୍ୱୀକାର କରିପାରି ନଥିଲେ; ବରଂ ସେ ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲେ । ଏତେ କମ୍ ବୟସର ଯୁବକ, ଏତେବଡ଼ ସତ୍ୟ କିମିତି କଳ୍ପନା କରିପାରିଲେ ! ସତ୍ୟବ୍ରତଙ୍କ କଥାରେ ଆଉ ଗୋଟାଏ ପାଖ ମଧ୍ୟ ଥିଲା । ସେ ସତ୍ୟବ୍ରତଙ୍କୁ ପଚାରିଲେ, "କିନ୍ତୁ ଆମର ଯେଉଁ ଭାରତୀୟ

ସୈନ୍ୟମାନେ ୧୮୫୭ ବିଦ୍ରୋହକୁ ଦବାଇ ଦେଇଥିଲେ, ସେମାନଙ୍କ ବିଷୟରେ ତମେ କ'ଣ କରିବ ? ସେହି ସୈନ୍ୟମାନଙ୍କ ସାହାଯ୍ୟରେ ଅଳ୍ପ କେତେଜଣ ଇଂରେଜ ତ ପୁଣି ଏ ଦେଶକୁ ଗୋଲାମ କରିଦେଲେ । ଦେଖ ସତ୍ୟବ୍ରତ, ମାର୍ଶାଲ ଆଇନ୍ ବଡ଼ ଭୟଙ୍କର ଜିନିଷ; ତାକୁ କେବେ ତମେ ସ୍ୱାଗତ କର ନାହିଁ ।''

ସତ୍ୟବ୍ରତ ଉଠି ଠିଆହେଲେ । କହିଲେ, ''ଜଏଣ୍ଟ ସାହେବ ! ମୁଁ ଜାଣେ ଗୋଲାମୀ ବିରୁଦ୍ଧରେ ବିଦ୍ରୋହ କରିବା, ଗୋଲାମୀ ସାଙ୍ଗରେ ଲଢ଼ିବା ଆମର ଧର୍ମ । ଏହି ଯୁଦ୍ଧ, ଏହି ବିଦ୍ରୋହର ଫଳାଫଳ କ'ଣ ହେବ ସେ ବିଷୟରେ ଚିନ୍ତା କରିବା, ବାଦବିବାଦ କରିବା କେବଳ କାପୁରୁଷତା ଓ ଏହି କାପୁରୁଷତା ହେତୁ ଆଜି ହିନ୍ଦୁସ୍ଥାନର ଲୋକେ ଛେଳିମେଣ୍ଢା ହୋଇ ରହିଛନ୍ତି । ଆଚ୍ଛା, ଆପଣ ତ କଲେକ୍ଟରଙ୍କ ଅଫିସକୁ ଯିବେ; ମୁଁ ବର୍ତ୍ତମାନ କଂଗ୍ରେସ ଅଫିସକୁ ଯାଉଛି । ଖୁବ୍ ସମ୍ଭବତଃ ଆମ ଅଫିସକୁ ବି କିଛି ଖବର ଆସିଥିବ । ଏପରି ଜଟିଳ ପରିସ୍ଥିତିରେ ଆମକୁ ମଧ୍ୟ କିଛି ବିଚାର କରିବାକୁ ହେବ । ଚାଲନ୍ତୁ ଜ୍ଞାନପ୍ରକାଶଜୀ, ଆପଣ ଏଠି ଏକା ବସି କ'ଣ କରିବେ ?''

ଗଙ୍ଗାପ୍ରସାଦ ଜ୍ଞାନପ୍ରକାଶଙ୍କୁ କହିଲେ, ''ହଁ କାକା, ତମେ ବି ଯାଅ ।''

''କିନ୍ତୁ ଦେଖ ବର୍ତ୍ତମାନ ଏ ଚୌରିଚୌରା ଖବର କାହାକୁ କହିବ ନାହିଁ । ନଚେତ୍ ମୁଁ ସରକାରୀ ସମ୍ବାଦ ବାହାରକୁ ଦେଇଦେଇଛି ବୋଲି ମୋ ଉପରେ ଅଭିଯୋଗ ହେବ । କିଏ ଜାଣେ, ସରକାର ଏ ଖବର ନେଇ ଲୋକଙ୍କ ଉପରେ ଆଉ କିଛି କରି-ପାରନ୍ତି । କିନ୍ତୁ କାକା, ଜିଲା ବାହାରେ ଥିବା କଂଗ୍ରେସ ଲୋକଙ୍କ ଦାୟିତ୍ୱରେ ଥିବା ତମ ଦୁହିଁଙ୍କୁ ମୁଁ ଏତିକି କହିବାକୁ ଚାହେଁ ଯେ ଆନ୍ଦୋଳନକୁ ଏଇଠି ବନ୍ଦ କରିଦେବା ଦରକାର; ନାହିଁ ତ ଅବସ୍ଥା ବହୁତ ଖରାପ ହୋଇଯିବ । ଯଦି ଭାରତୀୟମାନେ ଭାରତୀୟ-ମାନଙ୍କୁ ହତ୍ୟା କରନ୍ତି, ଜାଳିପୋଡ଼ି ମାରିଦିଅନ୍ତି, ତା ହେଲେ ଦେଶରେ ଗୃହଯୁଦ୍ଧ ଆରମ୍ଭ ହୋଇଯିବ; ଫଳରେ ଦେଶରେ ଲୁଟ୍‌ତରାଜ ଓ ଅରାଜକତା ଆସି ଉପସ୍ଥିତ ହେବ ।''

ତହିଁଆରଦିନ ଚୌରିଚୌରା ହତ୍ୟାକାଣ୍ଡ ଖବର ସାରା ଦେଶର ବ୍ୟାପିଗଲା । ସେଠାରେ ଯାହାସବୁ ଘଟିଥିଲା ପ୍ରକୃତରେ ତାହା ଭୟଙ୍କର । ଲୋକେ ରାଗିଲେ କ'ଣ କରିପାରନ୍ତି ଏହା ତା'ର ଏକ ନମୁନା । ସରକାରୀ ଅଫିସର ଓ କର୍ମକର୍ତ୍ତାମାନଙ୍କ ମନରେ ଏକପ୍ରକାର ଛନକା ପଶିଯାଇଥିଲା । ସେହି ଛନକା ଯୋଗୁ କଂଗ୍ରେସ ଲୋକମାନଙ୍କ ବିରୁଦ୍ଧରେ ସେମାନଙ୍କ ମନରେ ହିଂସା ଜାଗିଉଠିଲା । ଦେଶରେ ଲଢ଼ାଇ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଦେଶସାରା କଂଗ୍ରେସ ସଂଗଠନଗୁଡ଼ିକ ସରଗରମ ହୋଇଉଠିଲେ ।

ସେଦିନ ଅଳ୍ପ ଟିକିଏ ବର୍ଷା ହୋଇଥିଲା ଓ ତା ପୂର୍ବରାତିରୁ ବେଶ୍ ଥଣ୍ଡା ପଡ଼ିଯାଇଥିଲା । ଗଙ୍ଗାପ୍ରସାଦ କଚେରୀକୁ ବାହାରିବାବେଳେ ଜ୍ଞାନପ୍ରକାଶ ତାଙ୍କ ପ୍ରକୋଷ୍ଠରେ ପ୍ରବେଶ କରି କହିଲେ, "ଗଙ୍ଗା, ମୁଁ ଏଇ ଗାଡ଼ିରେ ଆଲ୍ଲାହାବାଦ ଚାଲିଯାଉଛି । କାଲି କଂଗ୍ରେସ କମିଟିରୁ ମୋ ପାଖକୁ ତାର ଆସିଥିଲା; ମୁଁ ସେଠାକୁ ଯିବା ନିତାନ୍ତ ଦରକାର । ପ୍ରାନ୍ତୀୟ କଂଗ୍ରେସ କମିଟି ସେକ୍ରେଟାରୀଙ୍କ ଚିଠି ମଧ୍ୟ ମୋତେ ଏହି ଡାକରେ ମିଳିଲା; ବଡ଼ ଅଜବ ପରିସ୍ଥିତି ସୃଷ୍ଟି ହୋଇଯାଇଛି ।"

ଗଙ୍ଗାପ୍ରସାଦ କୌତୂହଳ ଦୃଷ୍ଟିରେ ଜ୍ଞାନପ୍ରକାଶଙ୍କୁ ଚାହିଁ ପଚାରିଲେ, "କ'ଣ କାକା ! କ'ଣ ପରିସ୍ଥିତି ହୋଇଛି ? ଯଦି କିଛି ଲୁଚାଛପା ନ ଥାଏ, ମୋତେ କୁହ ।"

"ଖବର କାଗଜରେ ତ ତମେ ପଢ଼ିଥିବ, ଗାନ୍ଧିଜୀ ପୁଣି ସାମୂହିକ ସତ୍ୟାଗ୍ରହ ଆନ୍ଦୋଳନକୁ ହଟାଇନେବାକୁ ଚାହାନ୍ତି । ଆହୁରି ମଧ୍ୟ ପଢ଼ିଥିବ ଫେବୃୟାରୀ ବାର ତାରିଖରେ ବର୍ଦ୍ଦୋଲିଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବସିବାର ଅଛି । ଜଣାପଡ଼ୁଛି, ସେଠି ଗାନ୍ଧିଜୀଙ୍କ ପ୍ରସ୍ତାବ ପାସ୍ ହୋଇଯିବ ।"

ଗଙ୍ଗାପ୍ରସାଦ ଏକ ଗଭୀର ନିଶ୍ୱାସ ପକାଇ କହିଲେ, "ଦେଖିଲେ କାକା, ମୁଁ କ'ଣ କହୁଥିଲି । ଗାନ୍ଧିଜୀ ପ୍ରକୃତରେ ଦେଶର ପରିସ୍ଥିତି ଖୁବ୍ ଭଲଭାବରେ ଜାଣନ୍ତି । ତେଣୁ ସେ ଯାହା କରୁଛନ୍ତି ଠିକ୍ କରୁଛନ୍ତି । ଏଥିରେ ତମର ଚିନ୍ତା କରିବାର କ'ଣ ଅଛି ?"

"ଆଗକୁ ପାଦ ପକାଇ ପୁଣି ପଛକୁ ଘୁଞ୍ଚିବା ଆମର ପରାଜୟ; ତେଣୁ ବିଜୟ ଆମ ଆଖିଆଗରେ ଦିଶୁଥିଲାବେଳେ ଆମେ ପଛକୁ ଘୁଞ୍ଚିଯାଉଛୁ ।"

ଗଙ୍ଗାପ୍ରସାଦ ପୁଣି ହସି ହସି କହିଲେ, "ହଁ, ବିଜୟ ଆଖିଆଗରେ ଅଛି-ନା ବିନାଶ ଆଖିଆଗରେ ଅଛି; ଗାନ୍ଧିଜୀ ତାହା ତମଠୁ ବେଶୀ ଭଲ କରି ଦେଖିପାରୁଛନ୍ତି ଓ ବୁଝିପାରୁଛନ୍ତି; କିନ୍ତୁ ତମେ ଆଲ୍ଲାହାବାଦ ଯାଇ କ'ଣ କରିପକାଇବ ? ଦେଖ କାକା, ଆଜି ଏଗାର ତାରିଖ ହେଲଣି, ହେଲେ ବାପା ଆଜିଯାଏ ଫେରିନାହାନ୍ତି । ତମେ ରହିଲେ ଟିକିଏ ଭଲ ଲଗେ । ମୋ କଥା ମାନି ତମେ ଏଠି ଆଉ ପଞ୍ଚସାତ ଦିନ ରହିଯାଅ । ତମେ ନଗଲେ ତ କଂଗ୍ରେସର କୌଣସି କାମ ଅଟକି ଯିବନାହିଁ ।"

ଜ୍ଞାନପ୍ରକାଶ ଟିକିଏ ବିଗିଡ଼ି ଯାଇଥିଲେ; ତେଣୁ କଡ଼ାସ୍ୱରରେ କହିଲେ, "ହଁ, କାମ ଅଟକି ଯାଇପାରେ, ନ ଯାଇ ବି ପାରେ । କିନ୍ତୁ ଏହି ଆନ୍ଦୋଳନକୁ ଚଳାଇବା ଭାର ମୋ ଉପରେ ଥିଲା । ଏଠି ତ କିଛି ଟଙ୍କାପଇସା ମିଳିଲା ପରି ଦିଶୁନାହିଁ । କାନପୁରର ବ୍ୟବସାୟୀ ଓ ମିଲ୍ ମାଲିକମାନେ ଏବେ ନାନାପ୍ରକାର ବାହାନା କରିବାକୁ ଆରମ୍ଭ କଲେଣି । କାଲି ତ ପୁରାପୁରି ନାହିଁ କରିବା ଅବସ୍ଥା ଆସିଯାଇଥିଲା । ଲକ୍ଷ୍ମୀଚନ୍ଦ ପଗାଣ

ହଜାର ଟଙ୍କା ଦେବେ ବୋଲି କହିଥିଲେ; କିନ୍ତୁ କାଲି ସେ ସଫା ମନାକରିଦେଲେ ।"

ଗଙ୍ଗାପ୍ରସାଦ ଫେଁକରି ହସିଦେଇ କହିଲେ, "ସାବାସ୍ ସାର୍ ଲକ୍ଷ୍ମୀଚନ୍ଦ ! ବେଶ୍ ଜାଣିବା ଶୁଣିବା ଲୋକ ! ଆନ୍ଦୋଳନ ପର୍ଯ୍ୟନ୍ତ ସେ ସାଙ୍ଗରେ ରହିପାରିବେ; କିନ୍ତୁ ଯେତେବେଳେ ଯୁଦ୍ଧ ଓ ଅରାଜକତାର ପ୍ରଶ୍ନ ଉଠିବ ସେତେବେଳେ କ'ଣ ଆଉ ସେ ସାଙ୍ଗରେ ରହିପାରିବେ ? ଆଚ୍ଛା, ଆପଣ ଶୁଳିଯାନ୍ତୁ ଓ କଂଗ୍ରେସବାଲାଙ୍କର ଟଙ୍କା ପାଇବାର ବୃଥା ଆଶାକୁ ଶେଷକରି ଦିଅନ୍ତୁ; କିନ୍ତୁ ସେଠି ପହଞ୍ଚିବା ମାତ୍ରେ ବାପାଙ୍କୁ ଓ ଘରର ଅନ୍ୟମାନଙ୍କୁ ଏଠାକୁ ପଠାଇଦେବେ; ଯେମିତି କାଲି ଆସି ସେମାନେ ପହଞ୍ଚିଯିବେ ।"

ସାଧାରଣତଃ ଜ୍ଞାନପ୍ରକାଶ ରାଗନ୍ତି ନାହିଁ; କିନ୍ତୁ ବର୍ତ୍ତମାନ ସେ ରାଗରେ ତମତମ ହୋଇ କହିଲେ, "ହଁ ନିଶ୍ଚୟ ପଠାଇଦେବ । ନ ଆସିଲେ ଜବରଦସ୍ତ ଗାଡ଼ିରେ ବସାଇଦେବ । କିନ୍ତୁ ଗଙ୍ଗା, ଏ ଲକ୍ଷ୍ମୀଚନ୍ଦଟା ବଡ଼ ଶ୍ରେଷ୍ଠ ଲୋକଟାଏ ! ସ୍ୱଦେଶୀ ଆନ୍ଦୋଳନରୁ ସେ ପାଞ୍ଚ, ଛ' ଲକ୍ଷ ଟଙ୍କା ଲାଭ ଉଠେଇଛି । ଏବେ ପୁଣି ଗୋଟିଏ ନୂଆ ଲୁଗାକଲ ବସାଇବା ପାଇଁ ପ୍ରସ୍ତୁତ ହେଉଛି । କିନ୍ତୁ ଯେତେବେଳେ ଅସଲ ସମୟ ଆସିଗଲା, ସେ ସଫା ପଛଘୁଞ୍ଚା ଦେଇ ରହିଗଲା । ଆଲ୍ଲାହାବାଦ କଂଗ୍ରେସ କମିଟି ଲୋକଙ୍କୁ ମୁଁ ଏବେ କିମିତି ମୁହଁ ଦେଖାଇବି ? ଆଲ୍ଲାହାବାଦରେ କଂଗ୍ରେସର ସକ୍ରିୟ କର୍ମକର୍ତ୍ତାମାନଙ୍କର ଯେଉଁ ସମ୍ମିଳନୀ ଆମେ ଡକାଇଛୁ, ସେଥିରେ ଅନ୍ତତଃ ଦୁଇ ତିନି ହଜାର ଟଙ୍କା ଖର୍ଚ୍ଚ ହେବ । ଆମର ସେଠି ଫଣ୍ଡରୁ ସବୁ ଟଙ୍କା ଖର୍ଚ୍ଚ ହୋଇଯାଇଛି । ଆଜି ସକାଳ ମୁଁ ଲକ୍ଷ୍ମୀଚନ୍ଦକୁ ପାଞ୍ଚ ହଜାର ଟଙ୍କା ମାଗିଲି ଯେ, ସେ କହିଲା, ତା ପାଖରେ ଗୋଟିଏ ପଇସା ନାହିଁ । ଶହେ ଟଙ୍କିଆ ପାଞ୍ଚଖଣ୍ଡ ନୋଟ୍ ବାହାର କରି କହିଲା, ତା ପାଖରେ ମୋଟେ ସେତିକ ନଗଦ ଥିଲା ; ଅଥଚ କାଲି ସେ ତିନି ଲକ୍ଷ ଟଙ୍କାର ଚେକ୍ କାଟିଛି ।"

ଗଙ୍ଗାପ୍ରସାଦ ପଚାରିଲେ, "କଣ କାକା ସାହେବ, ମୋଟେ କିଛି ନ ଦେଇ ଏମିତି ଫେରେଇ ଦେଲା ? ଆଲ୍ଲାହାବାଦ ଯିବାପାଇଁ ଗାଡ଼ିଭଡ଼ା ଅଛି ନା—ମୋତେ ଦେବାକୁ ପଡ଼ିବ ?"

ଜ୍ଞାନପ୍ରକାଶ ବିଗିଡ଼ିଯାଇ କହିଲେ, "ବୁଝିଲ ବନ୍ଧୁ, ମୁଁ ଏମିତି ଟାଲି ନୁହେଁ ଯେ ତମଠୁଁ ଗାଡ଼ିଭଡ଼ା ନେବି ? ଲକ୍ଷ୍ମୀଚନ୍ଦ ତ ନାହିଁ ନାହିଁ କରୁଥିଲା—କିନ୍ତୁ ମୁଁ ତାହାଠାରୁ ପାଞ୍ଚଶହ ଟଙ୍କା ଛଡ଼େଇ ଆଣିଲି । ଘରପୋଡ଼ିରୁ କୁଟା କେରାଏ ପାଇଲେ ଢେର୍ । ଆଉ ଏଣୁତେଣୁ ପାଞ୍ଚଶହ ଟଙ୍କା ଜୁଟାଜୁଟି କରିଛି । ମୋ ପାଖରେ ତ ବର୍ତ୍ତମାନ ହଜାର ଟଙ୍କା ଅଛି, ବାକି ହଜାର ଟଙ୍କା ମୋର ଦରକାର । କ'ଣ କରିବାକୁ ହେବ, କିଛି ଭାବିପାରୁନାହିଁ ।"

ଗଙ୍ଗାପ୍ରସାଦଙ୍କର ମନ ବର୍ତ୍ତମାନ ଟିକିଏ ପରିବର୍ତ୍ତିତ ହୋଇଯାଇଥିଲା । ସେ କହିଲେ, "କାକା, ଦଶପାଞ୍ଚ ମିନିଟ୍ ପାଇଁ ଯଦି ତମେ ଅମନ-ସଭାର ସଭ୍ୟ ହୋଇଯା'ନ୍ତ, ତାହେଲେ ମୁଁ ତୁମକୁ ଆଜି ଭିତରେ ହଜାରେ ଟଙ୍କା କରାଇ ଦିଅନ୍ତି ।"

ଜ୍ଞାନପ୍ରକାଶ ଚମକିପଡ଼ି କହିଲେ, "ମୋତେ ତୁମେ ଅମନ-ସଭାର ସଭ୍ୟ ହେବାପାଇଁ କହୁଛ । ତମ ମୁଣ୍ଡ ଠିକ୍ ଅଛି ତ ?"

ଗଙ୍ଗାପ୍ରସାଦ ଟିକିଏ ମୁରୁକିହସା ଦେଇ କହିଲେ, "ତମେ କ'ଣ କାକା, ତମ ବଡ଼ଭାଇ ସତ୍ୟପ୍ରକାଶ ହେଉଛନ୍ତି ଅମନ-ସଭାର ପ୍ରେସିଡେଣ୍ଟ । ଯାହାହେଉ ଏହି ସାମାନ୍ୟ କଥାରେ ଏତେ ବିଗିଡ଼ିଯିବା କ'ଣ ଦରକାର । ମୁଁ ତ ଭାବିଥିଲି ତମେ ବର୍ତ୍ତମାନ ଯେଉଁ ବିପଦରେ ପଡ଼ିଛ, ସେଇ ଫଣ୍ଡରୁ ତମକୁ ହଜାରେ ଟଙ୍କା ଉଧାର ଦିଆଇଦେବି । ନୋହିଲେ ତ ତମକୁ ଏ ଟଙ୍କା ହାତରୁ ଦେବାକୁ ପଡ଼ିବ । ମୁଁ କ'ଣ ମିଛ କହୁଛି କାକା ?"

ଜ୍ଞାନପ୍ରକାଶ ବିବଶସ୍ୱରରେ କହିଲେ, "ହଁ ଏ ଟଙ୍କା ତ ମୋତେ ହାତରୁ ଦେବାକୁ ପଡ଼ିବ । କିନ୍ତୁ ମୁଁ କେମିତି ଅମନ-ସଭାର ସଭ୍ୟ ହେବି ? ତାଛଡ଼ା ସେଥିରୁ ଟଙ୍କା ବା କିମିତି ମିଳିବ ?

"କିମିତି ମିଳିବ ଶୁଣ । ଏଠି ନୂରଅହମଦ ଓ ମଞ୍ଜୁରଅହମଦ ବୋଲି ଗୋଟିଏ ଫାର୍ମ ଅଛି । ସେହି ଫାର୍ମର ଦୁଇଟା ଟାନେରୀ ଅଛି । ଖାଁ ବାହାଦୁର ନୂର ଅହମଦ ସରକାରଙ୍କର ବଡ଼ ଭକ୍ତ । ମୁଁ ତାଙ୍କ ସହିତ ଅମନସଭା ଚାନ୍ଦା ବାବଦରେ କଥାବାର୍ତ୍ତା କରିଥିଲି । ସେ ହଜାରେ ଟଙ୍କା ଦେବେ ବୋଲି କହିଥିଲେ ! ମୁଁ ଚିଠି ଲେଖି ଦେଉଛି । ତମେ ସେଠୁ ହଜାରେ ଟଙ୍କା ନେଇଯିବ ;କିନ୍ତୁ ସେଠିକି ସୁଟ୍ ପିନ୍ଧିକରି ଯିବାକୁ ହେବ ।"

ଜ୍ଞାନପ୍ରକାଶ ପଚାରିଲେ, "କିନ୍ତୁ ସେ ଚାନ୍ଦାର ରସିଦ ?"

"ରସିଦ ମୁଁ ତା ପାଖକୁ ପଠାଇଦେବି । ଲକ୍ଷ୍ମୀଚନ୍ଦ ବି ଅମନସଭାକୁ ଦୁଇହଜାର ଟଙ୍କା ଦେଇଛନ୍ତି; କିନ୍ତୁ ମୁଁ ତାଙ୍କ ରସିଦ ଏପର୍ଯ୍ୟନ୍ତ ପଠାଇନାହିଁ । ଯେତେ ଟଙ୍କା କାରବାର ହେଉଛି ମୁଁ ତ ବ୍ୟାଙ୍କ୍ ବହିରେ ଅମନସଭା ଖାତାରେ ଲେଖି ଦେଉଛି, ରସିଦ୍ ପରେ କାଟି ଦେଉଛି । ଲକ୍ଷ୍ମୀଚନ୍ଦଙ୍କୁ କେବଳ ହଜାରେ ଟଙ୍କାର ରସିଦ୍ ଦେଇ-ଦେଲେ ହେଲା । ମୋ ପାଖରେ ଯଦି ଟଙ୍କା ଥା'ନ୍ତା, ତାହେଲେ ମୁଁ ତୁମକୁ ସେ ପାଜି ଖାଁ ବାହାଦୂର ପାଖକୁ ପଠାନ୍ତି ନାହିଁ ।"

ଜ୍ଞାନପ୍ରକାଶଙ୍କ ମୁହଁରେ ଏକ ନୀରସ ହସରେଖା ଦେଖାଦେଲା । ସେ କହିଲେ, "ବନ୍ଧୁ, ତମେ ତ ଜାଲ କାରବାରରେ ବି ବଡ଼ ଓସ୍ତାଦ ହୋଇଗଲଣି ।"

"ଏ ସବୁ ତମର ପାଇଁ କରୁଛି କାକା, ନୋହିଲେ କଂଗ୍ରେସର ତ ମୁଁ ଜୀବନଶତ୍ରୁ ।"

ଜ୍ଞାନପ୍ରକାଶ ଧନଗାଡ଼ି ଛାଡ଼ିଦେଇ ଟଙ୍କା ନେଇ ବ୍ୟିଗାଡ଼ିରେ ଆଲହାବାଦ ଚାଲିଗଲେ ।”

ଯାହା ଅନୁମାନ କରାଯାଉଥିଲା, ବର୍ଦ୍ଧୋଲି କଂଗ୍ରେସର କାର୍ଯ୍ୟକାରୀ ସମିତି ତାହାହିଁ କଲେ । ଅର୍ଥାତ୍ ମହାତ୍ମା ଗାନ୍ଧିଙ୍କ ଇଚ୍ଛା ଅନୁସାରେ ସେମାନେ ସାଧାରଣ ସତ୍ୟାଗ୍ରହକୁ ସ୍ଥଗିତ କରିଦେବା ପାଇଁ ପ୍ରସ୍ତାବ ପାସ୍ କରିଦେଲେ । ସମଗ୍ର ଦେଶରେ ନୈରାଶ୍ୟର ଏକ ଛାୟା ଘୋଟିଗଲା । ତଥାପି ସକ୍ରିୟ କର୍ମୀମାନଙ୍କ ମଧ୍ୟରୁ କେତେକ ଆନ୍ଦୋଳନକୁ ଆଗେଇ ନେବାପାଇଁ ବିଚାର କରୁଥିଲେ । ଫେବୃୟାରୀ ଚବିଶ ତାରିଖରେ ଦିଲ୍ଲୀରେ ଅଖିଳ ଭାରତୀୟ କଂଗ୍ରେସ ମହାସମିତିର ଅଧିବେଶନ ହେବାର ଥିଲା । ଜ୍ଞାନପ୍ରକାଶ ଓ ସତ୍ୟବ୍ରତ ଦୁହେଁ ଯାକ ଏହି ମହାସମିତିର ସଭ୍ୟ ଥିଲେ । ସତ୍ୟାଗ୍ରହକୁ ବନ୍ଦ କରିବା କଥା ଅନେକ ସଭ୍ୟଙ୍କୁ ଆଦୌ ଭଲ ଲାଗୁ ନ ଥିଲା; କିନ୍ତୁ ପ୍ରଭାବଶାଳୀ ସଦସ୍ୟମାନେ ଜେଲରେ ରହିଯାଇଥିଲେ ଓ ଯେଉଁମାନେ ଅଧିବେଶନରେ ଯୋଗ ଦେବାକୁ ଆସିଥିଲେ ସେମାନଙ୍କର ଆନ୍ଦୋଳନ ଚଳାଇବାକୁ ଇଚ୍ଛା ଥିଲେ ସୁଦ୍ଧା ସେମାନଙ୍କର ଆନ୍ଦୋଳନର ରୂପରେଖ ବିଷୟରେ କୌଣସି ଧାରଣା ନଥିଲା । ମହାତ୍ମା ଗାନ୍ଧିଙ୍କଠାରୁ ସତ୍ୟାଗ୍ରହ ଚଳା ଆରମ୍ଭ ହୋଇଥିଲା ଓ ସେ ଏହି ସତ୍ୟାଗ୍ରହକୁ ପରିଚାଳିତ କରୁଥିଲେ । ତଥାପି ଗାନ୍ଧିଙ୍କ ସହିତ ଅନେକ ଲୋକ ଭାବୁଥିଲେ ଯେ ବ୍ୟକ୍ତିଗତ ସତ୍ୟାଗ୍ରହ ଚାଲୁରହିବ ଓ ଏହାକୁ ସତର୍କତା ସହିତ କରିବାକୁ ହେବ । ଏଣିକି ସତ୍ୟାଗ୍ରହରେ ରଚନାତ୍ମକ କାର୍ଯ୍ୟକ୍ରମକୁ ପୂରାଇବା ପାଇଁ ଚେଷ୍ଟା କରାଯାଉଥିଲା । ଏହି କାର୍ଯ୍ୟକ୍ରମର ରୂପରେଖ ମହାତ୍ମା ଗାନ୍ଧି ଦେଇଥିଲେ ।

ଦିଲ୍ଲୀଠାରୁ ସତ୍ୟବ୍ରତ କାନପୁର ଫେରିଗଲେ; କିନ୍ତୁ ଜ୍ଞାନପ୍ରକାଶ ସିଧା ଆଲହାବାଦ ଚାଲିଗଲେ । କଂଗ୍ରେସର ସଂଗଠନକୁ ନୂତନ ରୂପ ଦେବାପାଇଁ ଆଲହାବାଦରେ କଂଗ୍ରେସ କାର୍ଯ୍ୟକର୍ତ୍ତାମାନଙ୍କର ଗୋଟିଏ ବଡ଼ କ୍ୟାମ୍ପ ହେବାର ଥିଲା । ଆନ୍ଦୋଳନ ନିମନ୍ତେ ଆର୍ଥିକ ବ୍ୟବସ୍ଥାକୁ ସ୍ୱଚ୍ଛଳ କରିବା ପାଇଁ ଟଙ୍କା ପଇସା ଯୋଗାଡ଼ କରିବା ଲାଗି ଜୋର ଦିଆଯାଉଥିଲା । ଆଲହାବାଦରେ ହେଉଥିବା ଏହି ସଭା ପାଇଁ ଗୋଟିଏ ବଡ଼ ଦଳ କାନପୁରରୁ ଯାଉଥିଲେ ।

ସେଦିନ ଗଙ୍ଗାପ୍ରସାଦ ଅଫିସରୁ ବହୁତ ଡେରିରେ ଫେରିଲେ । କଲେକ୍ଟରଙ୍କ ଅଫିସରେ ସହରର ସରକାରୀ କର୍ମଚାରୀମାନଙ୍କର ଗୋଟିଏ ସଭା ହୋଇଥିଲା । କଂଗ୍ରେସର ଆଗାମୀ କାର୍ଯ୍ୟକ୍ରମକୁ କିପରି ଭାବରେ ମୁକାବିଲା କରିବାକୁ ହେବ ସେହି ବିଷୟରେ ବିଚାର ଚାଲିଥିଲା । ସେହି ସଭାରେ କଲେକ୍ଟର ଏପରି କେତେକ କଥା କହିଲେ ଯାହା ଗଙ୍ଗାପ୍ରସାଦଙ୍କ ମନକୁ ପାଇଲା ନାହିଁ । କିନ୍ତୁ ଏହି ଉପଦେଶ ସରକାରଙ୍କର ଉପର ସ୍ତରରୁ

ଆସିଥିଲା । ଅବଶ୍ୟ କଲେକ୍‌ଟରଙ୍କର ମଧ୍ୟ ସେଥିରେ ସମ୍ମତି ଥିଲା । ସେଦିନ ସେ ଦେହ ଓ ମନ ଉଭୟରେ କ୍ଳାନ୍ତି ଅନୁଭବ କରୁଥିଲେ । ତାଙ୍କ ଅଜାଣତରେ ଏହି ଆନ୍ଦୋଳନ ପ୍ରତି ତାଙ୍କ ମନରେ ଏକପ୍ରକାର ସହାନୁଭୂତି ଜାଗିଉଠିଥିଲା । ଏହି ଆନ୍ଦୋଳନ ଛଡ଼ା ହୋଲି ଉତ୍ସବରେ ମୁସଲମାନମାନଙ୍କ ଉପରକୁ ରଙ୍ଗ ଫିଙ୍ଗିଲେ ଯେଉଁ ପ୍ରକାର ଅଶାନ୍ତି ହେବାର ଆଶଙ୍କା ଥିଲା ତାହା ଦୂର କରିବାପାଇଁ କଲେକ୍‌ଟର ମଧ୍ୟ ସୂଚନା ଦେଇଥିଲେ । ଏହି ସୂଚନା ଗଙ୍ଗାପ୍ରସାଦଙ୍କୁ ଆଦୌ ଭଲ ଲାଗିନଥିଲା; କିନ୍ତୁ ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେ, ମୁସଲମାନ ଅଫିସରମାନେ କଲେକ୍‌ଟରଙ୍କ କଥାକୁ ସମର୍ଥନ କଲେ ମଧ୍ୟ ମୁସଲମାନ-ମାନଙ୍କ ମଧ୍ୟରେ ଯେଉଁ କ୍ରୋଧ ଏବଂ ଦୃଢ଼ତା ଥିଲା, ତାହା ସେମାନେ ପ୍ରକାଶ କରିଥିଲେ । ଗଙ୍ଗାପ୍ରସାଦ ଭାବୁଥିଲେ ଶହ ଶହ ବର୍ଷଧରି ହୋଲିଖେଳ ହୋଇ ଆସିଅଛି; କିନ୍ତୁ କେବେ ତ କିଛି ଗଣ୍ଡଗୋଳ ହୋଇନାହିଁ । ହିନ୍ଦୁ ମୁସଲମାନ ସବୁକାଳେ ମିଳିମିଶି ହୋଲି ଖେଳି ଆସୁଛନ୍ତି । କିନ୍ତୁ ଏଥର ହୋଲି ଉତ୍ସବରେ ସାମ୍ପ୍ରଦାୟିକ ଅଶାନ୍ତି ବିଷୟରେ ବିଚାର କରିବାର ଆବଶ୍ୟକତା କ'ଣ ଥିଲା ?

## ଦଶ

ମିଷ୍ଟର ହାରସନ୍‌ଙ୍କ ଘରଠାରେ ହେଉଥିବା ଡିନର୍‌ରେ ମୋଟେ ବାରଜଣ ଲୋକ ଥିଲେ । ସେମାନଙ୍କ ଭିତରୁ ଛ'ଜଣ ଥିଲେ ଭାରତୀୟ । ସେହି ଛ'ଜଣଙ୍କ ଭିତରୁ ଚାରି ଜଣ ହିନ୍ଦୁ, ଦୁଇଜଣ ମୁସଲମାନ—ସାର୍ ଲକ୍ଷ୍ମୀଚନ୍ଦ, ରାଜା ଶିବକୁମାର, ରାୟବାହାଦୁର ଗୋପୀନାଥ ଓ ଗଙ୍ଗାପ୍ରସାଦ; ଖାଁ ବାହାଦୁର ନୂର୍‌ଅହମ୍ମଦ ଓ ନବାବ୍ ଅସଫାକ୍ ହୁସେନ୍ । ଯେତେବେଳେ ସମସ୍ତେ ଏକାଠି ହୋଇ ମଦ ପିଇ ଆପଣା ଆପଣା ଭିତରେ କଥାବାର୍ତ୍ତା ଆରମ୍ଭ କଲେ, ସେତେବେଳେ ଗଙ୍ଗାପ୍ରସାଦଙ୍କୁ ଜଣାଗଲା ଯେ ତାହା ଏକ ପ୍ରକାର ରାଜନୈତିକ ଡିନର୍ । ସାହେବମାନଙ୍କ ମଧ୍ୟରେ କାନପୁରର କଲେକ୍‌ଟର ଓ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଛଡ଼ା ଚାରିଜଣ ମିଲ୍‌ମାଲିକ ମଧ୍ୟ ଥିଲେ ।

ମିଷ୍ଟର ହାରସନ୍ ବେଶୀ ମଦ ପିଇଦେଇଥିଲେ କିମ୍ବା ବିଶେଷଭାବରେ ଉତ୍ସାହିତ ଥିଲେ । ସେ କହିଲେ, "ଏହି ଗାନ୍ଧିକୁ ମୋଟେ ଛ'ବର୍ଷ ସଜା ହେଲା । ସାରା ହିନ୍ଦୁ-ସ୍ଥାନରେ ବିପ୍ଳବ ବିସ୍ତାର କରିଥିବା ଏହି ମହାନ୍ ବିଦ୍ରୋହୀକୁ ଗୁଳି କରିଦେବା ଉଚିତ ଥିଲା । ସାର୍ ଲକ୍ଷ୍ମୀଚନ୍ଦ, ଆପଣଙ୍କର ଏ ବିଷୟରେ ମତାମତ କ'ଣ ?"

ଲକ୍ଷ୍ମୀଚାନ୍ଦ ଏ ବିଷୟରେ କୌଣସି ଉତ୍ତର ଦେଲେ ନାହିଁ । କିନ୍ତୁ ରାୟବାହାଦୁର ଗୋପୀନାଥ କହିଲେ, "ଗ୍ରାଉଣ୍ଡ, ଗଣ୍ଡଗୋଳ ତ ତୁଟିଯାଇଛି । ସେ ବଦମାସ୍ ମୋର ସବୁ ବେପାର ନଷ୍ଟ କରିଦେଲା । ମାନ୍‌ଚେଷ୍ଟାରରୁ ମୋର ପାଞ୍ଚଲକ୍ଷ ଟଙ୍କାର ଲୁଗା ଆସୁଛି । ଏ ବିଷୟରେ ମୁଁ ବଡ଼ ଚିନ୍ତିତ ଥିଲି ।"

ଖାଁ ବାହାଦୁର ନୂରଅହମ୍ମଦ ଆପେ ଆପେ କହି ପକାଇଲେ, "ଗୋପୀନାଥ ସାହେବ ! ଆପଣ ଗୋଟିଏ ବଢ଼ିଆ କଥା କହିଲେ, ଲୋକଟା ବଡ଼ ଗଣ୍ଡଗୋଳିଆ । କେତେ ବଡ଼ ନାଆଁ ଲଗାଇ ଦେଇଛି !"

ମିଷ୍ଟର ହାରିସନଙ୍କ ଉତ୍ସାହ ଆହୁରି ବଢ଼ିଗଲା । ସେ କହିଲେ, "ସେ ନାଆଁ ଲିଭିଗଲାଣି । ଆଜ ମୁଁ ଆପଣମାନଙ୍କୁ କହିଦେବାକୁ ଚାହେଁ ଯେ ସେହି ବର୍ବର ବିଦ୍ରୋହୀଟା ଜେଲ୍ ଯିବାରୁ ମୁଁ ଖୁସି ହୋଇ ଆପଣମାନଙ୍କୁ ଏହି ଭୋଜି ଦେଉଛି ।"

ଗଙ୍ଗାପ୍ରସାଦ ତାଙ୍କର ସାଥୀ ଭାରତୀୟମାନଙ୍କୁ ଚାହିଁ ଦେଖିଲେ ଯେ ହାରିସନଙ୍କ ଅଭଦ୍ରତା ଯୋଗୁ କାହାରି ମୁହଁରେ ଏତେ ଟିକିଏ ହେଲେ ମ୍ଳାନ ନ ଥିଲା । କିନ୍ତୁ ସେ ସମ୍ଭାଳି ନପାରି କହିଲେ, "ମିଷ୍ଟର ହାରିସନ୍, ଆପଣ ଯଦି ଆଗରୁ ଏହି ଭୋଜି ବିଷୟରେ ଆପଣଙ୍କର ଏହି ନୀଚ ମନୋବୃତ୍ତି ପ୍ରକାଶ କରି ଦେଇଥା'ନ୍ତେ ତାହେଲେ ମୁଁ ଅନ୍ତତଃ ଏ ଭୋଜିକୁ ଆସି ନଥା'ନ୍ତି । ବୋଧହୁଏ ଏହିମାନଙ୍କ ଭିତରୁ ଆହୁରି ଚାରି ଛ'ଜଣ ମଧ୍ୟ ଆସି ନଥା'ନ୍ତେ ।"

ଗଙ୍ଗାପ୍ରସାଦଙ୍କର ଏହି କଥା ଶୁଣି ଡିନର୍‌କୁ ଆସିଥିବା ଆମନ୍ତ୍ରିତ ଅତିଥିମାନେ ଚମକି ଉଠିଲେ । ମିଷ୍ଟର ହାରିସନ୍ କାନପୁରର ଜଣେ ବଡ଼ ମିଲ୍‌ମାଲିକ ଓ ପୁଞ୍ଜିପତି । ସେ କହନ୍ତି ଯେ ଇଂଲଣ୍ଡର ଲର୍ଡ଼ ପରିବାରରେ ତାଙ୍କର ଜନ୍ମ । ତଥାପି ସେ ଜଣେ ଅତି ଉଗ୍ରସ୍ୱଭାବର ବୋଲି ତାଙ୍କୁ ସମସ୍ତେ ଜାଣିଥିଲେ । ଗଙ୍ଗାପ୍ରସାଦଙ୍କର ଏହି କଥାରେ ସେ ତମ ତମ ହୋଇ କହିଲେ, "ଆପଣ କ'ଣ ସେହି ବଦମାସ୍, ଚୋର, ମିଥ୍ୟାବାଦୀ ଧପ୍‌ପାବାଜ ଗାନ୍ଧିକୁ ମହାତ୍ମା ବୋଲି ଭାବନ୍ତି ?"

ହାରିସନ୍‌ଙ୍କର ଏହି ଅକାରଣ ଗାଳିଗୁଲଜ ଶୁଣି ଗଙ୍ଗାପ୍ରସାଦ ତାତିଯାଇ କହିଲେ, "ମିଷ୍ଟର ହାରିସନ୍, ତୁମେ ଯେ ଏହି ମହାପୁରୁଷଙ୍କୁ ଏଭଳି ଭାବରେ ନିନ୍ଦା କରୁଛ, ଏହା ତମର ନୀଚତା ଓ ଧୃଷ୍ଟତା । ଆମେ ତାଙ୍କ ରାଜନୀତି ସହିତ ଏକମତ ନ ହୋଇପାରୁ; କିନ୍ତୁ ତାଙ୍କର ମହତ୍ତ୍ୱ, ସାଧୁତା, ତାଙ୍କର ନ୍ୟାୟ୍ୟ ବିଚାରକୁ କେହି କେବେ ଅସ୍ୱୀକାର କରିପାରିବେ ନାହିଁ ।"

ହାରିସନ୍ ଉଠି ଛିଡ଼ାହୋଇ କହିଲେ, "ତୁମେ କଳାଲୋକ ହୋଇ ମୋତେ ପୁଣି ନୀଚ ଓ ଧୃଷ୍ଟ କହିବା ପାଇଁ ସାହସ କରୁଛ ? ଆମେ ତୁମମାନଙ୍କୁ ମୁହଁ ଦେବାରୁ ତା'ର

ଫଳ ଏଇଆ ହୋଇଛି ! ତୁମେ ଯଦି ଆଉ ଥରେ ଏପରି କୁହ ତାହେଲେ ମୁଁ ତୁମର ମୁହଁ ଭାଙ୍ଗି ଦେବି ।"

ଗଙ୍ଗାପ୍ରସାଦ କାମିଜ୍‌ହାତକୁ ଠେକି ଦେଇ ଛିଡ଼ା ହୋଇ କହିଲେ, "ତମେ ନିଷ୍ଟୁର ଧୃଷ୍ଟ, ନୀଚ ଏବଂ ସମ୍ଭୃତାନ ।"

ଏକପ୍ରକାର ହଙ୍ଗାମା ଆରମ୍ଭ ହୋଇଗଲା କହିଲେ ଚଳେ । ଅତିଥିମାନେ ଉଭୟଙ୍କୁ ଶାନ୍ତ କରାଇଲେ । ହାରସନଙ୍କର ପୂରା ଭୁଲ ହୋଇଥିଲା । ସମସ୍ତେ ବିଶେଷତଃ ଇଂରେଜ ମିଲ୍‌ମାଲିକମାନେ ଜୋର୍ ଦେବାରୁ ସେ ଗାନ୍ଧିଙ୍କ ପ୍ରତି ଯେଉଁ ଶବ୍ଦ ସବୁ ବ୍ୟବହାର କରିଥିଲେ ତାହା ଫେରାଇନେଲେ । ଗଙ୍ଗାପ୍ରସାଦ ତାଙ୍କ କଥା ମଧ୍ୟ ଫେରାଇନେଲେ । ବାତାବରଣ ଶାନ୍ତ ପଡ଼ିଯିବା ପରେ ଖିଆପିଆ ଚାଲିଲା ।

ତହିଁ ଆରଦିନ ଗଙ୍ଗାପ୍ରସାଦ କଚେରୀରେ ପହଞ୍ଚିବା ମାତ୍ରେ କଲେକ୍‌ଟରଙ୍କ ଚପରାସୀ ଆସି ତାଙ୍କୁ କଲେକ୍‌ଟର ଡାକୁଛନ୍ତି ବୋଲି କହିଲେ ।

ଗଙ୍ଗାପ୍ରସାଦ ସିଧା କଲେକ୍‌ଟରଙ୍କ ପାଖରେ ପହଞ୍ଚିବା ପରେ ସେ କହିଲେ, "ଏହି ହାରସନ୍‌ଟା ଏକନମ୍ବର ପାଜି ଓ ବଦମାସ୍, ମିଷ୍ଟର ଗଙ୍ଗାପ୍ରସାଦ !"

ଗଙ୍ଗାପ୍ରସାଦ ଟିକିଏ ଇତସ୍ତତଃ ହୋଇ କହିଲେ, "ନାହିଁ ଆଜ୍ଞା, ସେ ଯେମିତି ପିଇ-ଦେଇଥିଲେ, ମୁଁ ସେମିତି ପିଇ ଦେଇଥିଲି ।"

"ନାହିଁ, ତମର ସେଥିରେ କୌଣସି ଦୋଷ ନାହିଁ । କିନ୍ତୁ ଏହି ହାରସନ୍‌ଟା ତମ ପଛରେ ଲାଗିଛି । ସେ ମୋ ଜରିଆରେ କମିଶନରଙ୍କ ପାଖକୁ ତମ ବିରୁଦ୍ଧରେ ଆପତ୍ତି ଦରଖାସ୍ତ କରିଛି ।" ଏତିକି କହି କଲେକ୍‌ଟର ହାରସନଙ୍କ ଦରଖାସ୍ତକୁ ଗଙ୍ଗାପ୍ରସାଦଙ୍କ ହାତକୁ ବଢ଼ାଇଦେଲେ ।

ଦରଖାସ୍ତ ପଢ଼ି ଗଙ୍ଗାପ୍ରସାଦ ଚୁପ୍ ରହିଗଲେ । ସେ ଜଣେ କଂଗ୍ରେସୀ ଲୋକ ବୋଲି ତାଙ୍କ ବିରୁଦ୍ଧରେ ଲେଖାଯାଇଥିଲା ଓ ଗତ ରାତିର ଘଟଣାକୁ ଅତିରଞ୍ଜିତ କରାଯାଇଥିଲା । ସେ ଦରଖାସ୍ତ ପଢ଼ି କଲେକ୍‌ଟରଙ୍କୁ କହିଲେ, "ଆପଣ ତ ଜାଣନ୍ତି ଏଗୁଡ଼ାକ ସବୁ ମିଛ ।"

"ହଁ, ହଁ, ସମ୍ପୂର୍ଣ୍ଣ କାଳ୍ପନିକ, ସମ୍ପୂର୍ଣ୍ଣ ମିଛ । ମୁଁ ତ ଏହି ଦରଖାସ୍ତ ଦେହରେ ମୋର ନୋଟ୍ ଲେଖିଛି; କିନ୍ତୁ ତମର ଟିକିଏ କମିଶନରଙ୍କ ସାଙ୍ଗରେ ଦେଖା ହୋଇଗଲେ ଭଲ ହୁଅନ୍ତା । ଯଦି ସମ୍ଭବତଃ ହାରସନ କଥାକୁ କମିଶନର୍ ବିଶ୍ୱାସ କରନ୍ତି ଏବଂ ତମ ବିରୁଦ୍ଧରେ ତାଙ୍କ ମନରେ କିଛି ରହିଯାଏ, ତାହେଲେ ଭବିଷ୍ୟତରେ ତମର ଅସୁବିଧା ହେବ । କମିଶନରଙ୍କ ପାଖକୁ ମୁଁ ଏହି କାଗଜ ପଠାଇବା ପୂର୍ବରୁ ତୁମେ ଯାଇ ତୁମ ନିଜକଥା ତାଙ୍କୁ କହିଦିଅ । ମୁଁ ତୁମ ସପକ୍ଷରେ ନୋଟ୍ ଦେଉଛି ।"

କଲେକ୍ଟରଙ୍କ ପାଖରୁ **ଫେରିଆସି** ଗଙ୍ଗାପ୍ରସାଦ ଗ୍ରୀଷ୍ମଦିନ ଛୁଟିପାଇଁ ଦରଖାସ୍ତ ଦେଇଦେଲେ ଓ କଲେକ୍ଟର ତାହା ସଙ୍ଗେ ସଙ୍ଗେ ମଞ୍ଜୁର କରିଦେଲେ ।

ଆଲହାବାଦରେ ପହଞ୍ଚିଲାମାତ୍ରେ ଗଙ୍ଗାପ୍ରସାଦ କମିଶନରଙ୍କ ସହିତ ସାକ୍ଷାତ କଲେ । ଗଙ୍ଗାପ୍ରସାଦଙ୍କ କଥା ଶୁଣି ସେ ବ୍ୟଙ୍ଗ କରି କହିଲେ, "ତୁମେ କ'ଣ ଗାନ୍ଧିଙ୍କୁ ମହାତ୍ମା ବୋଲି ବିଶ୍ୱାସ କର ? ଏହି ଅର୍ଦ୍ଧସଭ୍ୟ ବିଦ୍ରୋହୀ ଜଣେ ମହାତ୍ମା ବୋଲି ତୁମେ ଭାବ ?"

ଗଙ୍ଗାପ୍ରସାଦ ବିନମ୍ର ଅଥଚ ଦୃଢ଼ ସ୍ୱରରେ ଜବାବ ଦେଲେ, "ହଜୁର୍, ମୁଁ ତାଙ୍କର ବିଚାର ଏବଂ ରାଜନୀତି ସହିତ ଏକମତ ନ ହେଲେ ମଧ୍ୟ ତାଙ୍କର ଚରିତ୍ର ଓ ସାଧୁତାକୁ ସମ୍ମାନ କରେ । ମୋର ଧାରଣା ବ୍ରିଟିଶଜାତି ଏପରି ଅନୁଦାର ନୁହେଁ ଯେ ସେ ଲୋକଙ୍କୁ ଅନ୍ୟର ସଦ୍‌ଗୁଣର ପ୍ରଶଂସା କରିବାକୁ ମନା କରିବେ ।"

କମିଶନର ଓଠକୁ କାମୁଡ଼ି କହିଲେ, "ବ୍ୟକ୍ତି ଅନୁଦାର ହୋଇପାରେ; ମାତ୍ର ବ୍ରିଟିଶଜାତି ଅନୁଦାର ନୁହେଁ । ତୁମେ ଯାହା କହୁଛ ତାହା ଯଦି ଠିକ୍ ହୋଇଥାଏ, ତା ହେଲେ ହାରିସନ୍‌ଙ୍କ ଅଭିଯୋଗରେ ମୁଁ ଆଦୌ ପ୍ରଭାବିତ ହେବି ନାହିଁ ।"

ଗଙ୍ଗାପ୍ରସାଦ ସନ୍ତୁଷ୍ଟ ହୋଇ ନମସ୍କାର କରି ଚାଲିଆସୁଥିବାବେଳେ କମିଶନର ତାଙ୍କୁ ପୁଣି ରୋକ ଦେଇ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ ! ଯାହା ତ ହେଲାଣି ହେଲାଣି; କିନ୍ତୁ ଭବିଷ୍ୟତ ପାଇଁ ଗୋଟିଏ କଥା ମନେ ରଖିବ । ଇଂରେଜ-ଇଂରେଜ, ହିନ୍ଦୁସ୍ଥାନି-ହିନ୍ଦୁସ୍ଥାନି—ଜଣେ ଶାସକ, ଜଣେ ଶାସିତ । ତମକୁ ଏ କଥା ଯେତେ ଖରାପ ଲାଗିଲେ ମଧ୍ୟ ଏହା ସତ୍ୟ; ତେଣୁ ଭବିଷ୍ୟତରେ କେବେ ଏମିତି ଘଟିଲେ ତୁମେ ଚୁପ୍ ରହିଯିବା ଭଲ ହେବ ।"

କମିଶନରଙ୍କ ଏହି ଉପଦେଶକୁ ଗ୍ରହଣ କରି ସେ କହିଲେ, "ଆପଣ ଯାହା କହିଲେ ଠିକ୍ ।"

ବର୍ତ୍ତମାନ ଆନ୍ଦୋଳନ ଏକପ୍ରକାର ସମାପ୍ତ ହୋଇ ଯାଇଥିଲା ଓ ଦେଶସାରା ନୈରାଶ୍ୟର ଛାୟା ଘୋଟିଯାଇଥିଲା । କଂଗ୍ରେସ ନୀତିକୁ ପୁନର୍ବିଚାର କରିବା ପାଇଁ ଦେଶରେ କେତେକ ଲୋକେ ଭାବୁଥିଲେ । ଏଥିରୁ ଜଣା ପଡ଼ୁଥିଲା ଯେ ଲୋକେ ଆନ୍ଦୋଳନରେ ଥକିଯାଇଥିଲେ । ଅସହଯୋଗ ବଦଳରେ ଧୀରେ ଧୀରେ ସହଯୋଗ ସହିତ ବିରୋଧ କରିବା ପାଇଁ ଲୋକେ ଖୋଲାଖୋଲି କହିବା ପାଇଁ ଆରମ୍ଭ କରିଥିଲେ ।

କିନ୍ତୁ ଗଙ୍ଗାପ୍ରସାଦ ଅନ୍ତରରେ ଏକ ବିଚିତ୍ର ପ୍ରକାର ପରିବର୍ତ୍ତନ ଅନୁଭବ କରୁଥିଲେ । ଅସହଯୋଗ ଆନ୍ଦୋଳନ ଶିଥିଳ ହୋଇଯିବାରୁ ସେ ଖୁସି ନ ହୋଇ ବରଂ ମନେ ମନେ

ଅଶାନ୍ତ ଅନୁଭବ କରୁଥିଲେ । ଏହି ଅଶାନ୍ତର କାରଣ ସେ ନିଜେ ବି ବୁଝିପାରୁ ନ ଥିଲେ । ଜୁଲାଇ ମାସର ଶେଷ ସପ୍ତାହରେ ହଠାତ୍ ଦିନେ ସେ ନିଜର ଏହି ଆନ୍ତରିକ ଅଶାନ୍ତର କାରଣ ବୁଝିପାରିଲେ । ବିନା କାରଣରେ ସେ ହଠାତ୍ ଏଟାଓ୍ୱାର ଡେପୁଟି କଲେକ୍ଟର ଭାବରେ ବଦଳି ହୋଇଗଲେ । ସକାଳେ ଖାଇ ବସିଥିଲାବେଳେ ସରକାରୀ ଅର୍ଡ଼ର ଆସି ପହଞ୍ଚିଲା । ଅଧାଖିଆ ଗ୍ରାସ ସେ ଛାଡ଼ି ହୋଇପଡ଼ିଲେ । ଭାବିଲେ ଏହି ପୁରସ୍କାର ତା ହେଲେ ତାଙ୍କୁ ମିଳିଲା ।

ଅସହଯୋଗ ଆନ୍ଦୋଳନକୁ ଦବାଇବା ପାଇଁ ସେ ଯେଉଁ କାର୍ଯ୍ୟ କରିଥିଲେ, ଉପର ଅଫିସରମାନଙ୍କ ମଧ୍ୟରେ ସେହି ବିଷୟରେ ଅନେକ ସମୟରେ ଚର୍ଚ୍ଚା ହେଉଥିଲା । ସେ ଭାବିଥିଲେ, ଖୁବ୍ ଶୀଘ୍ର ତାଙ୍କର ପ୍ରମୋସନ ହେବ ଓ ସେ ଜଏଣ୍ଟ ମାଜିଷ୍ଟ୍ରେଟ ପଦରେ ସ୍ଥାୟୀ ହୋଇଯିବେ । କାନପୁରର ଜଏଣ୍ଟ ମାଜିଷ୍ଟ୍ରେଟ ୧୯୨୩ ଜୁନ୍ ପର୍ଯ୍ୟନ୍ତ ତାଙ୍କ ଛୁଟି ବଢ଼ାଇଥିବାରୁ ଗଙ୍ଗାପ୍ରସାଦ ଭାବିଥିଲେ ଯେ ଅନ୍ତତଃ ସେ ପର୍ଯ୍ୟନ୍ତ ତାଙ୍କର ବଦଳି ହେବ ନାହିଁ । ସାଙ୍ଗେ ସାଙ୍ଗେ ଲୁଗାପଟା ପିନ୍ଧି କଲେକ୍ଟରଙ୍କ ପାଖରେ ପହଞ୍ଚିଲେ । କଲେକ୍ଟର ତାଙ୍କୁ ଦେଖିଲା ମାତ୍ରେ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ ! ବଡ଼ ଦୁଃଖର କଥା ତୁମର ବଦଳି ହୋଇଗଲା; କିନ୍ତୁ ଏଥିରେ କୌଣସି ଉପାୟ ନ ଥିଲା । କାନପୁରର ଜଏଣ୍ଟ ମାଜିଷ୍ଟ୍ରେଟ୍ ଆଇ.ସି.ଏସ୍.ମାନେ ହୁଅନ୍ତି । ସମ୍ଭବତଃ କେହି ଜଣେ ନୂଆ ଆଇ. ସି. ଏସ୍. ଆସିଛନ୍ତି । ତାଙ୍କୁ ତ ପୁଣି କେଉଁଠି ରଖିବାକୁ ହେବ ।"

"ତାହେଲେ କୌଣସି ଆଇ. ସି. ଏସ୍. ଙ୍କୁ ଟେମ୍ପରାରି ଭାବରେ ଜଏଣ୍ଟ ମାଜିଷ୍ଟ୍ରେଟ୍ କରି ଆଣିଥିଲେ ଚଳିଥା'ନ୍ତା । ଯେଉଁ ସ୍ଥାନ ଆଇ. ସି. ଏସ୍. ମାନଙ୍କ ପାଇଁ ସୁରକ୍ଷିତ ମୋତେ କାହିଁକି ସେଠାକୁ ଡକାଯାଇଥିଲା ?"

"ମୋର ଧାରଣା ସେତେବେଳେ ଅସହଯୋଗ ଆନ୍ଦୋଳନ ଖୁବ୍ ଜୋର୍‌ରେ ଚାଲିଥିବାରୁ ସେହି ଆନ୍ଦୋଳନକୁ ସମ୍ଭାଳିବା ଲାଗି ଜଣେ ଅନୁଭବୀ ଅଫିସରଙ୍କର ଆବଶ୍ୟକତା ଥିଲା; ତେଣୁ ତୁମକୁ ଡକାଯାଇଥିଲା ।"

ଗଙ୍ଗାପ୍ରସାଦ କଟୁ ସ୍ୱରରେ କହିଲେ, "ବର୍ତ୍ତମାନ ଆନ୍ଦୋଳନ ଶେଷ ହୋଇଗଲା, ସେଇଥିପାଇଁ ନା ! ଏହି ଆନ୍ଦୋଳନ ଶେଷ ହୋଇଯିବାରୁ ଏବଂ ମୁଁ ଜଣେ ଭାରତୀୟ ହୋଇଥିବାରୁ ଦୁଧରୁ ମାଛି କାଢ଼ିଲା ପରି ମୋତେ କାଢ଼ି ଫିଙ୍ଗିଦିଆଯାଇଅଛି ।"

କଲେକ୍ଟର ଗଙ୍ଗାପ୍ରସାଦଙ୍କୁ ଖୁବ୍ ଧ୍ୟାନରେ ଚାହିଁ ପୁଣି ଟିକିଏ ଗମ୍ଭୀର ହୋଇଯାଇ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ ! ଆଇ. ସି. ଏସ୍. ବୋଲି ଯେଉଁ ସଂସ୍ଥା ଅଛି ଏବଂ ଯେଉଁ ସଂସ୍ଥାରେ ଯୋଗ୍ୟ ଇଂରେଜ ଯୁବକମାନଙ୍କୁ ନିଆଯାଏ ସେହି ଆଇ. ସି. ଏସ୍. ହିନ୍ଦୁସ୍ଥାନରେ ବ୍ରିଟିଶ ରାଜ୍ୟର ମୂଳଦୁଆ । ତେଣୁ ଯେତେ ଦାୟିତ୍ୱପୂର୍ଣ୍ଣ ସରକାରୀ

ସ୍କୁଲର ଅଛୁ ସେଥିରେ ଆଇ. ସି. ଏସ୍. ମାନେ ବୁଝନ୍ତି । କାନପୁରର ଜଏଣ୍ଟ ମାଜିଷ୍ଟ୍ରେଟ୍ ପଦ ଖୁବ୍ ଦାୟିତ୍ୱପୂର୍ଣ୍ଣ ବୋଲି ମନେ କରାଯାଏ ।

ଗଂଗାପ୍ରସାଦଙ୍କୁ ମାସକପୂର୍ବେ କମିଶନର ଯାହା କହିଥିଲେ ହଠାତ୍ ତାହା ତାଙ୍କର ମନେ ପଡ଼ିଗଲା । କମିଶନରଙ୍କର ସେହି କଥାକୁ ଦୋହରାଇ ସେ କହିଲେ, "ଆଜ୍ଞା, ମୁଁ ଜାଣେ ଇଂରେଜ ଇଂରେଜ ଓ ଭାରତୀୟ ଭାରତୀୟ—ଜଣେ ଶାସକ ଓ ଜଣେ ଶାସିତ । ଆଇ. ସି. ଏସ୍. ଶାସକବର୍ଗର ସଂସ୍ଥା ।" ଗଂଗାପ୍ରସାଦଙ୍କ ମୁହଁରେ କଟୁତାପୂର୍ଣ୍ଣ ହାସ୍ୟରେଖା ଦେଖାଦେଲା । ସେ କହିଲେ, "ଧନ୍ୟବାଦ ମହାଶୟ ! ମୋର ଆଉ କିଛି କହିବାର ନାହିଁ । ମୋ କଥା ସମାଧାନ ହୋଇଯାଇଛି ।"

ହୁଏତ ଗଙ୍ଗାପ୍ରସାଦଙ୍କ କଥା କଲେକ୍ଟରଙ୍କୁ ଖରାପ ଲଗିଥା'ନ୍ତା; କିନ୍ତୁ ତାଙ୍କ କଥାଭିତରେ କେତେ ବିବଶତାପୂର୍ଣ୍ଣ ଆତ୍ମପୀଡ଼ନ ଥିଲା କଲେକ୍ଟର ତାହା ବୁଝି-ପାରିଥିଲେ । ଗଙ୍ଗାପ୍ରସାଦଙ୍କ ପ୍ରତି ତାଙ୍କର ଏକପ୍ରକାର ସହାନୁଭୂତି ଆସିଥିଲା । ସେ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ, ମୁଁ ଭାବୁଛି ବ୍ରିଟିଶ୍ ସରକାରଙ୍କୁ ଏହି ଦୃଷ୍ଟିକୋଣ ଖୁବ୍ ଶୀଘ୍ର ବଦଳାଇବାକୁ ପଡ଼ିବ । ତୁମ ପ୍ରତି ଯେ ଅନ୍ୟାୟ କରାଯାଉଛି, ଏକଥା ମୁଁ ସ୍ୱୀକାର କରୁଛି । ମୋର ଉପଦେଶ, ତୁମେ ଥରେ ଚିଫ୍ ସେକ୍ରେଟାରୀଙ୍କ ସହିତ ସାକ୍ଷାତ୍ କର । ତୁମର ରେକର୍ଡ଼ ଖୁବ୍ ଭଲ ଅଛି । ମୁଁ ବୁଝିପାରୁନାହିଁ, ତୁମକୁ କାହିଁକି ଏଟାଓ୍ୱାରକୁ ପଠାଯାଉଛି ।"

ଚିଫ୍ ସେକ୍ରେଟେରୀଙ୍କ ପାଖରେ ଗଙ୍ଗାପ୍ରସାଦ ଯେତେବେଳେ ପହଞ୍ଚିଲେ, ସେତେବେଳେ ସେ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ, ଏତେବେଳେ ମୁଁ ଯେ ତୁମକୁ ଏଟାଓ୍ୱାର ସମ୍ଭାଳିବା ପାଇଁ ପଠାଉଛି, ସେଥିପାଇଁ ମୁଁ ଦୁଃଖିତ । ମୁଁ ତୁମକୁ କାନପୁରରେ ରଖିବାକୁ ଚାହେଁ । କିନ୍ତୁ—କିନ୍ତୁ ଛାଡ଼ ସେ କଥା । ପ୍ରତ୍ୟେକଙ୍କର ନିଜ ନିଜର କେତେକ ଅସୁବିଧା ଅଛି । ମୁଁ ବରଂ ତୁମକୁ କହୁଛି ଯେ ତୁମେ ଡିସେମ୍ବର ସୁଦ୍ଧା ଛୁଟି ନେଇଯାଅ । ଜାନୁୟାରୀ ମାସରେ ମୁଁ ତୁମକୁ କୌଣସି ଭଲ ଜାଗାକୁ ପଠାଇଦେବି । ସେତେବେଳକୁ ସବୁ ଠିକ୍ଠାକ୍ ହୋଇଯାଇଥିବ ।"

ଗଙ୍ଗାପ୍ରସାଦଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଚିଫ୍ ସେକ୍ରେଟେରୀ କାହିଁକି ସେ ଆଇ. ସି. ଏସ୍. କଥା କହିଲେ ନାହିଁ ! ତାଙ୍କର କ'ଣ ଅସୁବିଧା ଥିଲା ସେ ବୁଝିପାରିଲେ ନାହିଁ । ସେ ସାଙ୍ଗେ ସାଙ୍ଗେ ଛୁଟି ଦରଖାସ୍ତ ଲେଖିଦେଲେ ଓ ଚିଫ୍ ସେକ୍ରେଟେରୀ ତାହା ମଞ୍ଜୁର କରିଦେଲେ ।

ଗଙ୍ଗାପ୍ରସାଦଙ୍କ ବିଦାୟବେଳରେ ଲକ୍ଷ୍ମୀଚନ୍ଦ ଗୋଟିଏ ଭୋଜିଦେଲେ । ସେହି ଭୋଜିକୁ ସହରର ବହୁତ ବଡ଼ ବଡ଼ ବ୍ୟବସାୟୀ, ମିଲ୍ ମାଲିକ, ଜମିଦାର, ସରକାରୀ ଅଫିସର

ନିମନ୍ତ୍ରିତ ହୋଇ ଆସିଥିଲେ । ଏହି ଭୋଜରେ ସମସ୍ତେ ଗଙ୍ଗାପ୍ରସାଦଙ୍କର ବିଦାୟ ପାଇଁ ଦୁଃଖ ପ୍ରକାଶ କଲେ । ଭୋଜ ଶେଷରେ ଯେତେବେଳେ ସମସ୍ତେ ଯିବାକୁ ବାହାରିଲେ ହାରିସନ୍ ଗଙ୍ଗାପ୍ରସାଦଙ୍କ ନିକଟକୁ ଆସି ତାଙ୍କ କାନରେ କହିଲେ, "ମିଷ୍ଟର ଗଙ୍ଗାପ୍ରସାଦ, ଭବିଷ୍ୟତରେ କେବେ ଆଉ କୌଣସି ଇଂରେଜ ଲୋକ ସହିତ କଳି କରିବାର ଧୃଷ୍ଟତା କରିବ ନାହିଁ ।" ଏତକ କହି ସେ ଖୁବ୍ ଚଞ୍ଚଳ ସେଠାରୁ ଚାଲିଗଲେ । ସେତେବେଳେ ତାଙ୍କ ଚେହେରାରେ ଏକପ୍ରକାର ପଇଶାଚିକ ଉଲ୍ଲାସ ପୂରିରହିଥିଲା ।

ହାରିସନ୍‌ର ଏହି କଥା ଶୁଣି ଗଙ୍ଗାପ୍ରସାଦଙ୍କର ମସ୍ତିଷ୍କରେ ବିଜୁଳି ଖେଳିଗଲା । ଚିଫ୍ ସେକ୍ରେଟେରୀଙ୍କ ଅସୁବିଧାଟା ସେ ବର୍ତ୍ତମାନ ବେଶ୍ ବୁଝିପାରିଲେ ।

ବର୍ତ୍ତମାନ ବର୍ଷାକାଳ ଶେଷ ହୋଇଆସିଥିଲା ଏବଂ ବର୍ଷା ଶେଷରେ ଗରମ ଖୁବ୍ ଜଣାପଡ଼ୁଥିଲା । ଗଙ୍ଗାପ୍ରସାଦ ସ୍ଥିର କରିଥିଲେ ଯେ, ଅଗଷ୍ଟ ମାସଟା ଆଲ୍ଲାହାବାଦରେ ରହି ତା'ପରେ ଜ୍ଞାନପ୍ରକାଶଙ୍କ ସହିତ ଦାକ୍ଷିଣାତ୍ୟ ଭ୍ରମଣରେ ଚାଲିଯିବେ । କିନ୍ତୁ ତାଙ୍କ ଅନ୍ତରରେ ଯେଉଁ ଜ୍ୱଳନ ଭରିଯାଇଥିଲା ତାହା ଦିନକୁ ଦିନ ବଢ଼ୁଥିଲା । ମଝିରେ ମଝିରେ ତାଙ୍କର ମନେହେଉଥିଲା, ସେ କେବଳ ଭାରତୀୟ ବୋଲି ଜଣେ ଅସଭ୍ୟ, ହିଂସ୍ର ଇଂରେଜ ଦ୍ୱାରା ଏପରି ଭାବରେ ଲାଞ୍ଛିତ ହୋଇଥିଲେ । ତାଙ୍କର ଏହି ଲାଞ୍ଛନାର କାରଣ ବ୍ରିଟିଶ୍ ସରକାରଙ୍କ କଳା-ଗୋରା ଭେଦଭାବ । ଅଜାଣତ ଭାବରେ ସେ ଜ୍ଞାନପ୍ରକାଶଙ୍କ ନିକଟକୁ ଯିବା ଆସିବା କରୁଥିଲେ । ଗୋଲାମୀ ନିକଟରେ ସତ୍ୟ, ନ୍ୟାୟ ଓ ମାନବତାର କୌଣସି ସ୍ଥାନ ନଥିଲା । ଜଣେ ଗୋଲାମ ଭାବରେ ତାଙ୍କର ଅବସ୍ଥା ଗୋଟିଏ ପାଳିତ ପଶୁର ଅବସ୍ଥା ସହିତ ସମାନ ବୋଲି ସେ ଭାବୁଥିଲେ । ତାଙ୍କର ନିଜର କୌଣସି ଚିନ୍ତା ବା ଚେତନା ନଥିଲା; କେବଳ ମାଲିକଙ୍କର ଇସାରାରେ ତାଙ୍କୁ ଚାଲିବାକୁ ପଡ଼ୁଥିଲା । ସେ ନିଜର ମନର ବିଦ୍ରୋହକୁ ଯେତିକି ଚପାଇବାକୁ ଚାହୁଁଥିଲେ ତାହା ସେତିକି ବଢ଼ିଚାଲିଥିଲା ।

ସେଦିନ ସେ ବୁଲି ଫେରିଲାବେଳକୁ ଦେଖିଲେ ଜ୍ଞାନପ୍ରକାଶ ଓ ଫରିହତୁଲ୍ଲା ବାରଣ୍ଡାରେ ବସି ଗପ କରୁଛନ୍ତି । ଗଙ୍ଗାପ୍ରସାଦ ଫରିହତୁଲ୍ଲାଙ୍କ ଆଡ଼କୁ ଆଗେଇ ଯାଇ କହିଲେ, "ନମସ୍କାର ଫରିହତୁଲ୍ଲା ସାହେବ, କେବେ ଆସିଛନ୍ତି ?"

ଫରିହତୁଲ୍ଲା ଉଠିପଡ଼ି କହିଲେ, "ନମସ୍କାର ।" ପୁଣି ସେ ଗଙ୍ଗାପ୍ରସାଦଙ୍କ ସହିତ ହାତ ମିଳାଇ କହିଲେ, "ଆଜିକାଲି ମୁଁ ଆଲ୍ଲାହାବାଦରେ ରହୁଛି । ଆଜି ଜ୍ଞାନପ୍ରକାଶ ସାହେବଙ୍କ ଦର୍ଶନ ପାଇଁ ଚାଲିଆସିଥିଲି ।"

ଦୁହେଁ ବସିଯିବାରୁ ଗଙ୍ଗାପ୍ରସାଦ ପଚାରିଲେ, "ଆପଣ କ'ଣ ଜୌନପୁର ଛାଡ଼ି ଆସିଲେ ? କାହିଁକି ?"

ଫରହତୁଲ୍ଲା ଟିକିଏ ହସିଦେଇ କହିଲେ, "ଛାଡ଼ି ଆସିଲି କ'ଣ—ଛାଡ଼ିଆସିବା ପାଇଁ ଲୋକେ ବାଧ୍ୟ କଲେ । ଭାବିଲି, ଆଲ୍ଲାହାବାଦରେ ଦୁଇଚାରି ମାସ ରହି କଂଗ୍ରେସ କାମ କରିବି । ଅବଦୁଲ୍ ହକ୍ ସାହେବ ମୋ ବିରୁଦ୍ଧରେ ଏତେ ବିଷୋଦ୍‌ଗାର କଲେ ଯେ ଓ ମୁସଲମାନମାନଙ୍କୁ ଏପରି ଉତ୍ତେଜିତ କରି ଦେଲେ ଯେ—ମୁଁ ଏକଦମ ଅସୁବିଧାରେ ପଡ଼ିଗଲି । ସଙ୍ଗରେ ଅଲ୍ଲାରଖା ବି ଥିଲେ । ସେ ଗୁଣ୍ଡାମୀ କରିବା ପାଇଁ ବାହାରି ପଡ଼ିଲେ । ଛାଡ଼ନ୍ତୁ ସେ କଥା । ଏଇ ବର୍ତ୍ତମାନ ଜ୍ଞାନପ୍ରକାଶଙ୍କଠାରୁ ଶୁଣିଲି ଯେ ଆପଣ ଲମ୍ବା ଛୁଟି ନେଇଛନ୍ତି ।"

ଜ୍ଞାନପ୍ରକାଶ କହିଲେ, "ଫରହତୁଲ୍ଲା ସାହେବ, ଧର୍ମ ବିଚାରର ଉପରକୁ ଉଠି ସାମାଜିକ କୁପ୍ରଥାଗୁଡ଼ିକୁ ହଟାଇବାକୁ ପଡ଼ିବ । ମହାତ୍ମା ଗାନ୍ଧି ଏହି କୁପ୍ରଥାମାନଙ୍କ ସହିତ ଲଢ଼ିବାର ଦାୟିତ୍ୱ ନେଇଛନ୍ତି । ଆପଣ ତ ଜାଣନ୍ତି, କଂଗ୍ରେସର କାର୍ଯ୍ୟକ୍ରମ ଯେତିକି ରାଜନୈତିକ, ସେତିକି ସାମାଜିକ ।"

"ଆଜ୍ଞା ହଁ, ସେହି କାରଣରୁ ତ ମୁଁ କଂଗ୍ରେସରେ ପଶି ଗାନ୍ଧିଙ୍କ ନେତୃତ୍ୱ ସ୍ୱୀକାର କରି ନେଇଛି । କିନ୍ତୁ ଆଜ୍ଞା, ମୁଁ ପ୍ରଥମେ ମୁସଲମାନ । ମୋର ରାସ୍ତା ଯେ ସାଧୁତା ଓ ସାମ୍ୟଭିତ୍ତି ଉପରେ ପ୍ରତିଷ୍ଠିତ ଏ କଥା ମୁଁ କିପରି ଭୁଲିଯିବି ! ବେଳେ ବେଳେ ମୋ ଭିତରେ ଏକପ୍ରକାର ଅଜବ ଚିନ୍ତା ଜାଗିଉଠେ । ମୁଁ ଭାବେ ଏବେ ଯେଉଁ ରାସ୍ତାରେ ଯାଉଛି ସେ ଠିକ୍ ତ ? କ'ଣ ଇସଲାମର ବିରୁଦ୍ଧାଚରଣ କରି କିଛି ସୁଧାର କରାଯାଇ-ପାରେ ? ପୁଣି ଭାବେ ଏସବୁ ଚିନ୍ତା କରି ଲାଭ କ'ଣ ! ନିଜର ସତ୍ୟ ଓ ସାଧୁତା ଉପରେ ନିର୍ଭର କରି ଈଶ୍ୱରଙ୍କର ସେବା କରିବା ଆମର କର୍ତ୍ତବ୍ୟ । ଈଶ୍ୱରଙ୍କ ସେବା ମୁଁ ମୋର ଧର୍ମ ଧାରଣା ଅନୁସାରେ କରୁଛି । ମୋର ସମସ୍ତ କାର୍ଯ୍ୟର ଏକମାତ୍ର ଆଦର୍ଶ ଧର୍ମ ।" ଏହି କଥା କହୁ କହୁ ଫରହତୁଲ୍ଲା ହସିଦେଲେ—"ଛାଡ଼ ଭାଇ ସେସବୁ କଥା । ମୁଁ ଯାହା କରୁଛି ସେ ଠିକ୍ । ଅବଦୁଲ୍ ହକ୍ ଓ ଅଲ୍ଲାରଖା ଯାହା କରୁଛନ୍ତି ତା' ବି ଠିକ୍ । ପ୍ରକୃତରେ କିଏ ଠିକ୍ ତାର ସମାଧାନ ଈଶ୍ୱର ନିଜେ କରିବେ । ମୁଁ ନ୍ୟାୟ ଏବଂ ସତ୍ୟକୁ କେବେ ଛାଡ଼ି ପାରିବି ନାହିଁ; କାରଣ ସତ୍ୟ ଓ ନ୍ୟାୟ ଗାନ୍ଧିଙ୍କର ସାଥୀ । ମହାତ୍ମା ଗାନ୍ଧିଙ୍କ ପାଖରେ ଆଉ ଏକ ବଡ଼ ଶକ୍ତି ତାଙ୍କର ଅହିଂସା । ମୁଁ ତ ଅହିଂସାର ଭକ୍ତ । ତେଣୁ ମୋର କାହାପ୍ରତି କୌଣସି ଆପତ୍ତି ଅଭିଯୋଗ ନାହିଁ ।"

ଫରହତୁଲ୍ଲା ଚାଲିଯିବାପରେ ଗଙ୍ଗାପ୍ରସାଦ ଜ୍ଞାନପ୍ରକାଶଙ୍କୁ କହିଲେ, "କାକା, ତମଠାରୁ କିଛି ପରାମର୍ଶ ନେବାକୁ ହେବ । ତମେ ତ ଜାଣ କାନପୁରରୁ ମୋର ବଦଳି ହୋଇଯିବାରୁ ମୁଁ ଏ ଲମ୍ବା ଛୁଟି ନେଇଛି; କିନ୍ତୁ ମୋର କାହିଁକି ବଦଳି ହୋଇଛି ତମେ ବୋଧହୁଏ ଜାଣନାହିଁ ।"

"ତମେ ତ ମୋତେ ସେକଥା କେବେ କହିନାହିଁ କିମ୍ବା ମୁଁ ତୁମକୁ ସେ କଥା ପଚାରିବାକୁ ଉଚିତ ମନେକରିନାହିଁ ।"

"ତାହେଲେ ଆଜି ସେହି କଥା ମୁଁ ତୁମକୁ କହୁଛି । ଗୋଟିଏ ବଦ୍‌ମାସ୍ ସାହେବ ମହାତ୍ମା ଗାନ୍ଧିଙ୍କ ପ୍ରତି ଅପମାନଜନକ କଥା କହିବାରୁ ମୁଁ ତାକୁ ଗାଳି ଦେଇଥିଲି । ସେଥିପାଇଁ ମୋର ଏହି ବଦଳି ହୋଇଛି ।" ତାପରେ ସେ ହାରିସନଙ୍କ କଥାକୁ ବିସ୍ତୃତ ଭାବରେ ଜ୍ଞାନପ୍ରକାଶଙ୍କୁ କହିଦେଲେ ।

"ଠିକ୍ କରିଛ ବନ୍ଧୁ, ବର୍ତ୍ତମାନ ତୁମେ ବୁଝିଥିବ ମୁଁ କାହିଁକି କଂଗ୍ରେସରେ ଯୋଗଦେଇଛି ।"

"ହିଁ କାକା, ଏବେ ମୁଁ ବୁଝିଛି ତମେ କଂଗ୍ରେସରେ ପଶି ନାହିଁ ବୋଲି ମୁଁ ଯାହା କହିଥିଲି ତାହା ଭୁଲ । ବର୍ତ୍ତମାନ ମୁଁ ଭାବୁଛି ଯେ ସରକାରୀ ଚାକିରୀରୁ ଇସ୍ତଫା ଦେଇ କଂଗ୍ରେସରେ ମିଶିଯିବି ।"

ଜ୍ଞାନପ୍ରକାଶ ଚମକି ପଡ଼ି କହିଲେ, "ଏମିତି ପାଗଳ ପରି କ'ଣ କଥା କହୁଛ, ଇସ୍ତଫା ଦେଇସାରି ତମେ କରିବ କ'ଣ ? ତମର ପିଲାଛୁଆ ଅଛନ୍ତି, ସେମାନଙ୍କ କଥା ତମକୁ ଚିନ୍ତା କରିବାକୁ ହେବ । ଆଉ ଦୁଇ ବର୍ଷରେ ନବଲ କଲେଜକୁ ଯିବ, ଝିଅର ବାହାଘର ହେବ । ମୁଁ ଯେତେଦୂର ଜାଣେ, ଏ ଚାକିରୀରୁ ତମେ କିଛି ପଇସା ରଖିନାହିଁ ।"

"ହିଁ, ବ୍ୟାଙ୍କରେ ତ ମୋଟେ ଦୁଇ ବା ଅଢ଼େଇ ହଜାର ଟଙ୍କା ଅଛି । ବାପାଙ୍କ ପାଖରେ ଖୁବ୍ ହେଲେ ଚାରି ହଜାର ଟଙ୍କା ଥିବ । ଭାବୁଛି ଚାରି ପାଞ୍ଚ ହଜାର ଟଙ୍କା ଲଗାଇ ଆଲ୍ଲାହାବାଦରେ ଗୋଟିଏ ଦୋକାନ କରିବି ।"

ଜ୍ଞାନପ୍ରକାଶ ହସିଦେଇ କହିଲେ, "କାୟସ୍ଥ ଘରର ପୁଅ ଦୋକାନ କରିବ, ପୁଣି ଜଏଣ୍ଟ ମାଜିଷ୍ଟ୍ରେଟ୍ ହେବାପରେ ! ଯେଉଁତକ ପଇସାପତ୍ର ଅଛି, ସବୁ ନଷ୍ଟ ହୋଇଯିବଟି !"

"ତା' ହେଲେ ପାଖରେ ଯେତେ ଅଳଙ୍କାର ଅଛି ତାକୁ ସବୁ ବିକିଦେଲେ ସାତ ହଜାର ଟଙ୍କା ହେବ । ମୋ ହୀର ମୁଦିଟା ବିକିଲେ ଛ' ସାତ ହଜାର ଟଙ୍କା ହେବ । ତାହେଲେ ଦଶବାର ହଜାର ଟଙ୍କାରେ ଘର ତିଆରି କରିଦେଇ ଭଡ଼ା ଲଗାଇଦେଲେ ମାସକୁ ଶହେଟଙ୍କା ଆସିବ । ରହିବାପାଇଁ ଏହି ଘର ତ ଅଛି । ବାପାଙ୍କ ପେନସନ ଓ ଘରଭଡ଼ା ମିଶି କୌଣସିମତେ ଗୁଜୁରାଣ ମେଣ୍ଟିଯିବ ।"

ଜ୍ଞାନପ୍ରକାଶ କହିଲେ, "ମଦପିଆ ଛାଡ଼ିଦେଇ ଯଦି ଆମପରି ସାଧାସିଧା ଭାବରେ ରହିବ, ତାହେଲେ ଚଳିଯାଇପାରି । ତାପରେ ପାଞ୍ଚ ଛ'ବର୍ଷ କଷ୍ଟରେ କଟିବ,

ସ୍ୱାଧୀନତା ମିଳିଗଲେ ପୁଣି ଆରାମରେ ରହିଯିବ ।''

ଗଙ୍ଗାପ୍ରସାଦଙ୍କର ଏହିପ୍ରକାର ବିଗ୍ରହ ଦେଖି ଜ୍ୱାଲାପ୍ରସାଦଙ୍କ ମନରେ ଘୋର କଷ୍ଟ ହେଲା ଓ ସେ ଗଙ୍ଗାପ୍ରସାଦଙ୍କୁ ବହୁତ ବୁଝାଇବାକୁ ଚେଷ୍ଟାକଲେ । ଜ୍ଞାନପ୍ରକାଶ ଗଙ୍ଗାପ୍ରସାଦଙ୍କ କଥାକୁ ଚୁପ୍‌ଚାପ୍ ସମର୍ଥନ କରୁଥିଲେ । ଦୁଇତିନ ଦିନ ପର୍ଯ୍ୟନ୍ତ ଘରେ ଏହିପରି ଟଣାଓଟରା ଲାଗିଲାପରେ ଶେଷରେ ଜ୍ୱାଲାପ୍ରସାଦଙ୍କୁ ହାର୍ ମାନିବାକୁ ପଡ଼ିଲା ।

ସନ୍ଧ୍ୟାବେଳେ ଗଙ୍ଗାପ୍ରସାଦ ଏବଂ ଜ୍ଞାନପ୍ରକାଶ ଶିଷ୍ଟ ଅଥଚ କଡ଼ା ଭାଷାରେ ଇସ୍ତଫା-ପତ୍ର ଲେଖିଲେ । ଜ୍ୱାଲାପ୍ରସାଦଙ୍କ ପରାମର୍ଶରେ ଇସ୍ତଫାପତ୍ରରେ ଏଠିସେଠି ସାମାନ୍ୟ ପରିବର୍ତ୍ତନ କରିଦେଇ ଜ୍ଞାନପ୍ରକାଶ ତାହାକୁ ଟାଇପ୍ କରିଦେଲେ । ଗଙ୍ଗାପ୍ରସାଦ ବହୁତ ଦୃଢ଼ତାର ସହିତ ସେହି ଇସ୍ତଫାପତ୍ରରେ ଦସ୍ତଖତ କଲେ । ସେ ଇସ୍ତଫା-ପତ୍ରରେ ଦସ୍ତଖତ କଲାବେଳେ ଜ୍ୱାଲାପ୍ରସାଦ ସମ୍ଭାଳି ନ ପାରି ବାହାରକୁ ଚାଲିଗଲେ । ସେତେବେଳେ ଆଖିରେ ତାଙ୍କର ଅଶ୍ରୁ ଥିଲା ।

ଜ୍ୱାଲାପ୍ରସାଦ ଘରୁ ପଦାକୁ ବାହାରିଲା ମାତ୍ରେ ଫରହତୁଲ୍ଲା ବାରଣ୍ଡା ଉପରକୁ ଚାଲିଆସି ପଚାରିଲେ, ''ଜ୍ଞାନପ୍ରକାଶ ସାହେବ ଘରେ ଅଛନ୍ତି ?''

ଫରହତୁଲ୍ଲାଙ୍କ ମୁହଁରେ ବ୍ୟସ୍ତତା ଓ ହାତରେ 'ପାୟୋନିୟର' କାଗଜର ବିଶେଷ ସଂସ୍କରଣର କେତେକ ପୃଷ୍ଠା ଥିଲା; କିନ୍ତୁ ଜ୍ୱାଲାପ୍ରସାଦଙ୍କର ସେଥିପ୍ରତି ଧ୍ୟାନ ନ ଥିଲା । ସେ ଅନ୍ୟମନସ୍କ ଭାବରେ କହିଲେ, ''ହଁ ଆସନ୍ତୁ, ସେ ଘରେ ବସିଛନ୍ତି ।'' ତାପରେ ଜ୍ୱାଲାପ୍ରସାଦ ଫରହତୁଲ୍ଲାଙ୍କ ସାଙ୍ଗରେ ଘର ଭିତରକୁ ଲେଉଟିଗଲେ ।

ଫରହତୁଲ୍ଲା ଦରଜା ପାଖରେ ପହଞ୍ଚିବା ମାତ୍ରେ ପାଟିକରି କହିଲେ, ''ବଡ଼ ଅସୁବିଧା ହେଲା ଜ୍ଞାନପ୍ରକାଶ ସାହେବ ! କାଲି ମୁଲତାନରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଗଣ୍ଡଗୋଳ ହୋଇଯାଇଛି ।''

''ଏ କ'ଣ କହୁଛନ୍ତି ! ମୁଲତାନରେ ହିନ୍ଦୁ ମୁସଲମାନ ଭିତରେ ଗଣ୍ଡଗୋଳ ହୋଇଯାଇଛି ?''

''ହଁ ଆଜ୍ଞା ଦେଖନ୍ତୁ, 'ପାୟୋନିୟର'ର ସ୍ୱତନ୍ତ୍ର ସଂସ୍କରଣ ବାହାରିଛି । କ'ଣ ହେବ ଭଗବାନ ଜାଣନ୍ତି ।''

ଜଣ ଜଣକରି ସେହି ସମ୍ବାଦକୁ ସମସ୍ତେ ପଢ଼ିଲେ । ଘରର ବାତାବରଣ ନିରାଶାରେ ଭରିଗଲା । କିଛି ସମୟ ପାଇଁ ସମସ୍ତେ ନୀରବ ହୋଇ ବସିରହିଲେ ।

ଫରହତୁଲ୍ଲା କହିଲେ, ''ମୁସଲମାନମାନଙ୍କ ଭିତରେ ଏ ନିଆଁ କିଏ ଜାଳିଦେଲା ? ମୋତେ ଆଜି ରାତି ଗାଡ଼ିରେ ମୁଲତାନ ଯିବାପାଇଁ କୁହାଯାଉଛି । ହିନ୍ଦୁ ମୁସଲମାନ ଏକତା ଉପରେ ଏହା ଏକ ପ୍ରଚଣ୍ଡ ଆଘାତ ।''

ଜ୍ଞାନପ୍ରକାଶ କହି ପକାଇଲେ, "ଓଃ, ତାହେଲେ ହିନ୍ଦୁ ମୁସଲମାନ ଏକତା ନଷ୍ଟ କରିବାର ଭୟଙ୍କର ପଦକ୍ଷେପ ସରକାର ନିଜ ହାତରେ ନେଇଛନ୍ତି !"

ସତେ ଯେପରି ଗଙ୍ଗାପ୍ରସାଦଙ୍କର ପୁରାତନ ସୁପ୍ତ ଓ ଲୁପ୍ତ ବ୍ୟକ୍ତିତ୍ୱ ପୁଣି ଥରେ ଜାଗିଉଠିଲା । ସେ କହିଲେ, "କାକା, ତୁମେ ଭୁଲ କହୁଛ । ହିନ୍ଦୁ ମୁସଲମାନ ଏକତା କେବେ ନ ଥିଲା । କେବଳ ଏକ ଅପ୍ରାକୃତିକ ଉପାୟରେ ତାକୁ ରଖାଯାଇଥିଲା; ସେହିପରି ଅପ୍ରାକୃତିକ ଉପାୟରେ ମଧ୍ୟ ତାହା ନଷ୍ଟ ହୋଇଯିବ ।"

ଫରହିତୁଲ୍ଲା ଆଶ୍ଚର୍ଯ୍ୟ ଭାବରେ ଗଙ୍ଗାପ୍ରସାଦଙ୍କୁ ଅନାଇ କହିଲେ, "ଆପଣ ଏ କ'ଣ କହୁଛନ୍ତି ବନ୍ଧୁ ?"

ସତେ ଯେମିତି ଗଙ୍ଗାପ୍ରସାଦଙ୍କ ମୁଣ୍ଡରେ ଭୂତ ସବାର ହୋଇଯାଇଥିଲା । ସେ କହିଲେ, "ଫରହିତୁଲ୍ଲା ସାହେବ, ମୁଁ ଠିକ୍ କହୁଛି । ମୋତେ ଏବେ ମଧ୍ୟ ଜଣାପଡ଼ୁଛି ଯେ ଏହି ଗୋଲାମୀରୁ ଆମକୁ ଏବେ ମଧ୍ୟ ମୁକ୍ତି ମିଳିନାହିଁ । ମୋତେ ଲାଗୁଛି, ଏ ଗଣ୍ଡଗୋଳ ଆହୁରି ଢେର ବଢ଼ିବ; ସେ ତ ମୋଟେ ଆରମ୍ଭ ହୋଇଛି । ଆପଣ ସେଦିନ କହିଥିଲେ ଯେ ଏହି ହିନ୍ଦୁ-ମୁସଲମାନ ଭେଦଭାବ ମୂଳରୁ ରହିଛି । ସେହି କଥା ବର୍ତ୍ତମାନ ମୁଁ ସ୍ୱୀକାର କରୁଛି । ଆମର ଏହି ମୂଳ ଭେଦଭାବକୁ ବଦଳାଇବା ପାଇଁ ଆମକୁ ଶହ ଶହ ବର୍ଷ ଲାଗିଯିବ । ଏହି ଶହ ଶହ ବର୍ଷକୁ କିଏ ଅପେକ୍ଷା କରି ରହୁଛି ? ତେବେ କାକା, ମୁଁ ଆଜି ଅଳ୍ପରେ ବର୍ତ୍ତିଗଲି । ଯଦି ଗୋଲାମୀ ଭୋଗକରିବାକୁ ହେବ, ତାହେଲେ ଆରାମରେ ହସିଖେଳି କାହିଁକି ନ ଭୋଗିବା ।" ଏତିକି କହୁ କହୁ ଗଙ୍ଗାପ୍ରସାଦ ନିଜ ହାତରେ ଥିବା ଇସ୍ତଫାପତ୍ରକୁ ଚିରି ଚିକି-ଚିକି କରିଦେଲେ ।

## ଏକ

ନବଲ ଆଖି ଖୋଲିଲା ମାତ୍ରେ ତାର ଦୃଷ୍ଟି ପଡ଼ିଲା ଟେବୁଲ ଉପର ଆଲାର୍ମଘଣ୍ଟା ଉପରେ । ସେତେବେଳକୁ ସାଢ଼େଆଠ ବାଜିଯାଇଥିଲା ଓ ଝରକା ଭିତର ଦେଇ ଆଲୁଅ ଆସି ଘରେ ବିଞ୍ଚି ହୋଇ ପଡ଼ିଥିଲା । ଉଠିବା ପାଇଁ ମନ ହେଉ ନ ଥିଲେ ବି ସେ ଉଠି ବସିଲା । ହଠାତ୍ ତାର ମନେ ପଡ଼ିଲା ଆଜି ତାର ବି. ଏ. ପରୀକ୍ଷା ସରି-ଯାଇଛି । ତେଣୁ ବର୍ତ୍ତମାନ ଆଉ ମନ ଲଗାଇ ପାଠ ପଢ଼ିବା ଦରକାର ନାହିଁ କିମ୍ବା ରାତିସାରା ଚେଇଁବା ଦରକାର ନାହିଁ କିମ୍ବା ହଷ୍ଟେଲ ରୁମ୍ ଭିତରେ ବନ୍ଦ ହୋଇ ରହିବାର ଆବଶ୍ୟକତା ନାହିଁ । ସେ ମନେ ମନେ ଏକପ୍ରକାର ଉଦ୍ଦୀପନା ଓ ଉତ୍ସାହ ଅନୁଭବ କଲା ଓ ଘରର କବାଟ ଖୋଲି ଦେଇ ଅଳସ ଭାବରେ ଚଉକି ଉପରେ ବସିଗଲା ।

ଆଖିଆଗରେ ତାର ଥିଲା ମାର୍ଚ୍ଚ ମାସର ସ୍ନିଗ୍ଧୋଜ୍ଜ୍ୱଳ ସୁନେଲି ଖରା । ଘାସର ଏକ ମଖମଲ ସବୁଜ ପ୍ରାନ୍ତର ଓ ତାର ଧାରେ ଧାରେ ନାନାପ୍ରକାର ରଙ୍ଗ-ବେରଙ୍ଗ ଫୁଲ । ନବଲର ଆଖି ସେ ଫୁଲରେ ଲଖିରହିଲା ଓ ମନରେ ତାର ଅନେକ ଭାବନା ଜାଗି ଉଠିଲା । ନାନାପ୍ରକାର ରଙ୍ଗର ହଜାର ହଜାର ଫୁଲ ଫୁଟିଥିଲା; କିନ୍ତୁ ଏସବୁ ଫୁଲ ଆସିଲା କେଉଁଠୁ ? ପୁଣି ଏସବୁର ମୂଳ ବା କେଉଁଠି ? ଏସବୁ ରଙ୍ଗ ଗ୍ରେଟ ଗ୍ରେଟ ମଞ୍ଜିରୁ ହୋଇଛି ନା ମାଟିରୁ ହୋଇଛି ନା ଯେଉଁ ପାଣି ଛୁଆଁ ହେଉଛି ସେଥିରୁ ହେଉଛି, କିମ୍ବା ଯେଉଁ ଋତୁରେ ଫୁଲ ଫୁଟିଛି ସେହି ଋତୁ ଯୋଗୁ ହେଉଛି—ଏହିପରି କେତେ କ'ଣ ସେ ଭାବିଲା ।

ଏହି ଫୁଲ ଫୁଟୁଛି, ଏଇ ଫୁଲ ପୁଣି ମଉଳୁଛି । ଫୁଟୁଛି କାହିଁକି, ମଉଳୁଛି ବା କାହିଁକି ?

ପୁଣି ଏହି ଫୁଲମାନଙ୍କ ବିଷୟରେ ଏହି ସନ୍ଦେହ ହେଉଛି କାହିଁକି, ଏହି ପ୍ରଶ୍ନ ବା ଉଠୁଛି କାହିଁକି ? ସମସ୍ତ ସୃଷ୍ଟି ବିଷୟରେ ମଧ୍ୟ ଏହି ପ୍ରଶ୍ନ କରାଯାଇପାରେ । ମନୁଷ୍ୟ ଜନ୍ମ ହେଉଛି; ପୁଣି ମରୁଛି । ଜନ୍ମ ହେବା ଓ ମରିବା ପ୍ରକୃତିର ନିୟମ । ପରୀକ୍ଷାକୁ ଗଲାବେଳେ ନବଲ ଯେଉଁ ବହିକୁ ଖୋଲି ଟେବୁଲ ଉପରେ ରଖିଦେଇଥିଲା, ହଠାତ୍ ତାର ଉପରେ ତାର ଦୃଷ୍ଟି ପଡ଼ିଲା । ସେହି ବହିକୁ ଦେଖି ତା'ମୁହଁରେ ହସର ଏକ କ୍ଷୀଣ ରେଖା ଖେଳିଗଲା ।

ସକାଳେ ପରୀକ୍ଷାରେ ଗୋଟାଏ ପ୍ରଶ୍ନ ପଡ଼ିଥିଲା—"ମୋଗଲ ସାମ୍ରାଜ୍ୟ ଧ୍ୱଂସର କାରଣ ଲେଖ ।"

ସେହି ପ୍ରଶ୍ନ ଦେଖି ନବଲ ଟିକିଏ ଚିନ୍ତା କରିଥିଲା । ପ୍ରଥମେ ଭାବିଥିଲା ଲେଖିଦେବ, "ବ୍ରିଟିଶ ସାମ୍ରାଜ୍ୟର ଉତ୍‌ଥାନ ହିଁ ମୋଗଲ ସାମ୍ରାଜ୍ୟ ପତନର କାରଣ"; କିନ୍ତୁ ସେ ତାହା ନ ଲେଖି ବହିରେ ଯାହା ପଢ଼ିଥିଲା ତାହାହିଁ ଲେଖିଲା । ସେ ଭାବୁଥିଲା, ବହିରେ ଯାହା ଲେଖା ହୋଇଛି ତାହା ଭୁଲ । ତା' ଦୃଷ୍ଟିରେ ଉତ୍‌ଥାନ ଓ ପତନ ଯାହା ପୁରୁଣା ତାହା ପଡ଼ିଯାଏ, ଯାହା ନୂତନ ତାହା ଉଠିଯାଏ । କିନ୍ତୁ ଏପ୍ରକାର ଉତ୍ତର 'ଦର୍ଶନ'ପତ୍ରରେ ଦିଆଯାଇପାରେ; ଇତିହାସରେ ନୁହେଁ ।

ଏହି ଫୁଲମାନଙ୍କର ଇତିହାସ ତ କେହି କେବେ ଲେଖେ ନାହିଁ । ବସନ୍ତ ଋତୁ ହେଲେ ଅସଂଖ୍ୟ ଫୁଲ ଫୁଟନ୍ତି । ପୁଣି ଗ୍ରୀଷ୍ମ ଋତୁ ହେଲେ ସବୁ ମଉଳିଯାନ୍ତି । ତାହେଲେ ଏହି ସୃଷ୍ଟି ଓ ଏହାର ବିନାଶ କ'ଣ ଅକାରଣ ? ନବଲ ଏସବୁ କିଛି ବୁଝି ପାରୁ ନ ଥିଲା ।

ନବଲ ଅଳସ ଭାଙ୍ଗି ଠିଆହେଲା । ଘର କୋଣରେ ଥିବା ଷ୍ଟୋଭଟାକୁ ଲଗାଇ ଚା' ପାଇଁ ପାଣି ବସାଇଲା । ତା'ପରେ ପୁଣି ଆସି ଚଉକିରେ ବସି ଦୁଆର ପଡ଼ିଆ ଆଡ଼କୁ ଅନାଇଁ ରହିଲା । ହଠାତ୍ କୋଇଲିର କୁ-କୁ ରବ ଆସି ତା' କାନରେ ପଡ଼ିଲା । କେଡ଼େ ମଧୁର ସେ ଧ୍ୱନି, ସତେ ଯେମିତି ବସନ୍ତର ସମସ୍ତ ସଙ୍ଗୀତ ତାରି ଭିତରେ ଲୁହିଡ଼ି ଯାଉଛି । ପୁଣି କୋଇଲିର ଏହି ମଧୁର ଧ୍ୱନି ଅଳ୍ପକ୍ଷଣ ଭିତରେ ଉଷାର ସଙ୍ଗୀତମୟ କଣ୍ଠସ୍ୱରରେ ପରିଣତ ହୋଇଗଲା ।

ଉଷା ! କି ସୌନ୍ଦର୍ଯ୍ୟର ଅପରୂପ ପ୍ରତିମା ସେ । କେଡ଼େ ମଧୁର ତାର କଣ୍ଠଧ୍ୱନି । ଉଷାକୁ ଦେଖିଲେ ସେ ନିଜକୁ ହରାଇବସେ, ସବୁ ଭୁଲିଗଲା ପରି ରହିଯାଏ । ଉଷା ନବଲକୁ ଦେଖି ପଚାରେ, "କ'ଣ ହୋଇଛି, ଆପଣ ବସି କ'ଣ ଭାବୁଛନ୍ତି ?" ନବଲ ପୁଣି ସଚେତ ହୋଇଯାଇ ଉତ୍ତର ଦିଏ, "ଉଷା ! ମୁଁ ଭାବୁଛି ଭଗବାନ୍ କ'ଣ ତୁମପରି ଆଉ କାହାକୁ ଏତେ ସୁନ୍ଦର କରି ଗଢ଼ିଛନ୍ତି ?" ନବଲର ଉତ୍ତର ଶୁଣି ଉଷା ଖିଲ-ଖିଲ ହୋଇ ହସିଉଠେ, ସତେ ଯେମିତି ସେ ହସରୁ ଅସଂଖ୍ୟ ଫୁଲ ଝରିପଡ଼େ । ସେ କହେ, "ହିଁ ହିଁ, ଛାଡ଼ନ୍ତୁ ସେ ଗୁଡ଼ା । ଆପଣ ଖାଲି ମୋତେ ପରିହାସ କରନ୍ତି ।" ଏତିକି କହି ସେ ପଳାଏ । କିନ୍ତୁ ଦୂରକୁ ନୁହେଁ, କିଛି ବାଟ ଯାଇ ପୁଣି ଫେରିଆସି ଆଉଜେଇ ହୋଇ ବସେ, ଗମ୍ଭୀର ହୋଇ କଥାବାର୍ତ୍ତା କରେ । କେତେବେଳେ ସାହିତ୍ୟ କେତେବେଳେ ଇତିହାସ ବିଷୟରେ ପ୍ରଶ୍ନ ପଚାରି ନବଲକୁ ନିଜ ଭିତରେ ଛନ୍ଦି ଦିଏ ।

ଉଷା ଏ ବର୍ଷ ଆଇ. ଏ. ପରୀକ୍ଷା ଦେଇଛି । ପ୍ରାୟ ସପ୍ତାହେ ହେବ ତାର ପରୀକ୍ଷା ସରିଛି । କିନ୍ତୁ ଉଷା ସଙ୍ଗେ ତାର ମାସେ ହେଲା ଦେଖା ହୋଇନାହିଁ; କାରଣ ତାର ନିଜର ପରୀକ୍ଷା ଥିଲା । ଯାହା ହେଉ ଆଜି ତାର ପରୀକ୍ଷା ସରିଯାଇଛି ।

ଉଷା ରାୟବାହାଦୁର କାମତାନାଥଙ୍କ କନ୍ୟା ! କାମତାନାଥଙ୍କର ଗଙ୍ଗାପ୍ରସାଦ ସହିତ ଘନିଷ୍ଠ ବନ୍ଧୁତା ଥିଲା । ତେଣୁ କାମତାନାଥଙ୍କ ଘରେ ନବଲ ପୁଅପରି ଚଳୁଥିଲା । ନବଲ ଓ ଉଷା ଦୁହେଁ ଜାଣିଥିଲେ ଯେ ରାୟବାହାଦୁର ସେମାନଙ୍କୁ ବାନ୍ଧି କରି ଦେବାକୁ ଚାହୁଁଥିଲେ । ଏସବୁ ମନେ ପକାଇ ନବଲ ଟିକିଏ ପ୍ରସନ୍ନ ହୋଇଉଠେ । ସେଦିନ ଏମିତି ଭାବୁ ଭାବୁ ନବଲର ଆଖି ଷ୍ଟୋଭ ଉପରେ ପଡ଼ିଲା, ଦେଖିଲା ପାଣି ଫୁଟି ଗଲାଣି ।

ନବଲ ଉଠିପଡ଼ି ଟି' ତିଆରି କଲା ଓ ସବୁ ଦିନ ପରି ପାଟି କରି ଡାକ ପକାଇଲା, "ଆରେ ଭାଇ ପ୍ରେମଶଙ୍କର ! ଟି' ହୋଇଗଲାଣି, ଆସ ।"

ପାଖ ବଖରାର କବାଟ ଫିଟିବା ଓ ବନ୍ଦ ହେବାର ଶବ୍ଦ ଶୁଣାଗଲା ଓ ପ୍ରେମଶଙ୍କର ଆସି ଘରଭିତରେ ହାଜର ହୋଇଗଲେ ।

ପ୍ରେମଶଙ୍କର ଆସିଲା ମାତ୍ରେ ପଚାରିଲା, "କ'ଣ ନବଲ ! ଆଜି ପରୀକ୍ଷା କେମିତି ହେଲା ?

ନବଲ କହିଲା, "ଫାଷ୍ଟ କ୍ଲାସକୁ କିଛି ରହିଗଲା, ତେବେ ହାୟର୍ ସେକେଣ୍ଡ କ୍ଲାସ ତ ହୋଇଯିବ !

"ସେଇ ତ ତମର ଅସୁବିଧା, ଆଉ ଟିକିଏ ପରିଶ୍ରମ କରି ଦେଇଥିଲେ ଫାଷ୍ଟ କ୍ଲାସ ହୋଇଯାଇଥାନ୍ତା । ହଁ ଗୁଡ଼"—ଏତିକି କହି ପ୍ରେମଶଙ୍କର ଚୌକିରେ ବସିପଡ଼ିଲା ।

ପ୍ରେମଶଙ୍କର ଟି' ପିଉ ପିଉ କହିଲା, "ନବଲ, ତମେ ଚାହିଁଲେ ପରିଶ୍ରମ କରିପାରନ୍ତ । କିନ୍ତୁ ତମେ କେବେ କର ନାହିଁ । ବିନା ପରିଶ୍ରମରେ ତ ତମକୁ ସବୁ ମିଳିଯାଇଛି; ଏବେ ବି ମିଳିଯାଉଛି ।" ତାପରେ ଟିକିଏ ରହିଯାଇ ସେ ପଚାରିଲା, "ଅଚ୍ଛା, ଆଉ ତମର ଏବେ ପ୍ରୋଗ୍ରାମ କ'ଣ ?"

"ପ୍ରୋଗ୍ରାମ କଥା ଯାହା ପଚାରୁଛ, ବର୍ତ୍ତମାନ ମୁଁ କିଛି କହିପାରୁ ନାହିଁ । କିନ୍ତୁ ଖୁବ୍ ସମ୍ଭବ ମୁଁ ସେପ୍ଟେମ୍ବରରେ ଇଂଲଣ୍ଡ ଯାଇପାରେ । ସେଠି ଆଇ. ସି. ଏସ୍. ପରୀକ୍ଷା ଦେବି । ପାସପୋର୍ଟ୍ ହୋଇଯାଇଛି । ସେଠି ରହିବା ପାଇଁ ବାପା ଲେଖାଲେଖି କରୁଛନ୍ତି ।"

ପ୍ରେମଶଙ୍କର ମୁରୁକିହସା ଦେଇ କହିଲା, "ମୁଁ ଜାଣେ ତମେ ଆଇ. ସି. ଏସ୍. ହୋଇଯିବ ! କିନ୍ତୁ ତମକୁ ଆଜିର ପ୍ରୋଗ୍ରାମ କଥା ମୁଁ ପଚାରୁଥିଲି । ତମ ଯୋଗୁଁ ଏଠି

ସନ୍ଧ୍ୟାବେଳ ଗ୍ୟ’ଟା ମିଳିଯାଉଥିଲା। ବର୍ତ୍ତମାନ ସେଇଟା ବି ଗଲା ବୋଲି ବୁଝିବାକୁ ହେବ ।”

ପ୍ରେମଶଙ୍କର ଲ’ ଫାଇନାଲ କ୍ଲାସରେ ଥିଲା । ସେ ବୟସରେ ନବଲଠାରୁ ଟିକେ ବଡ଼ ହେଲେ ବି ଦୁହେଁ ଏକା ବୟସ ପରି ଦେଖାଯାଉଥିଲେ । ସେ ଯେମିତି ଗୋରା, ସେମିତି ସୁନ୍ଦର, ଉଚ୍ଚତା ମଧ୍ୟମ ଧରଣର, କଳା କଳା ବଡ଼ ବଡ଼ ଆଖି, ମୁଣ୍ଡବାଳ ମଝିରେ ସୁନ୍ଦା । ତା’ର ବ୍ୟକ୍ତିତ୍ୱରେ ଯେମିତି କୋମଳତା ଥିଲା, ଭାଷାରେ ମଧ୍ୟ ସେମିତି ମଧୁରତା ଥିଲା । ଆଖିରେ ଏକ ପ୍ରକାର ଉଦାସ ଭାବ ରହିଥିଲା । ସେ ପ୍ରଥମ ଶ୍ରେଣୀରେ ଏମ୍. ଏ. ପାସ୍ କରି ଲ’ ପଢ଼ୁଥିଲା ।

ନବଲ କହିଲା, “ବର୍ତ୍ତମାନ ମୁଁ ତ ଏଠାରେ ସପ୍ତାହ ପର୍ଯ୍ୟନ୍ତ ଅଛି । ବାପା ଲେଖିଛନ୍ତି, ଫତେପୁରରେ ମୋର ଜଣେ କାକା ଅଛନ୍ତି । ତାଙ୍କ ପୁଅର ବାହାଘର । ତେଣୁ ସେ ଚାହାଁନ୍ତି ମୁଁ ବି ତାଙ୍କ ସଙ୍ଗରେ ଫତେପୁର ଯିବି । ଯା’ହେଉ ଚା’ ତିଆରି ସରଞ୍ଜାମ ସବୁ ମୁଁ ଏଠି ଛାଡ଼ିଯାଉଛି । ତମେ ସୁଖଈ ହାତରେ ଚା’ କରିନେବ; ମୁଁ ତାଙ୍କୁ କହି କରି ଯାଉଛି । ଗଲାବେଳେ ମୋ ଜିନିଷପତ୍ରସବୁ ସୁଖଈକୁ ଦେଇଦେଲେ ସେ ନେଇ ଆମ ବଙ୍ଗଳାରେ ପହଞ୍ଚାଇ ଦେବ ।

ପ୍ରେମଶଙ୍କର ହସି ହସି କହିଲା, “ଏସବୁ କାମ ମୋ ହାତରେ ହୋଇପାରିବ ନାହିଁ । ତମଯୋଗୁ ମୋର ଚା’ ଅଭ୍ୟାସ ହୋଇଯାଇଥିଲା । ତମେ ଗଲେ ମୁଁ ଛାଡ଼ିଦେବି ।”

ହଠାତ୍ ନବଲର କ’ଣ ଗୋଟାଏ ମନେ ପଡ଼ିଗଲା । ସେ ପଚାରିଲା, “ଜୀବନଠାରୁ ଆଜି ଖାଇବେଳେ ଶୁଣିଲି, କାଲି ସନ୍ଧ୍ୟାବେଳେ କୁଆଡ଼େ ତମେ ସିଭିଲ୍ ଲାଇନରେ ଜଣେ ସାହେବ ସଙ୍ଗରେ ବୁଲୁଥିଲ ? କିଏ ସେ ସାହେବ ? ଆମକୁ ତାଙ୍କ ସଙ୍ଗେ ଟିକିଏ ଚିହ୍ନା କରେଇ ଦେଉନା ?”

ପ୍ରେମଶଙ୍କର କହିଲା, “ସେ ଜଣେ ଟୁରିଷ୍ଟ, ବୁଲୁବୁଲୁ ତାଙ୍କ ସଙ୍ଗେ ଏମିତି ମାମୁଲି ଦେଖା ହୋଇଗଲା ।” ତା’ପରେ ସେ ଟିକିଏ ହସି ଦେଇ କହିଲା, “ପ୍ରକୃତରେ କୌଣସି କଥା ଲୋକଙ୍କ ପାଖରେ ଅଛପା ରହେ ନାହିଁ । ତା’ଛଡ଼ା ଲୋକେ ବଢ଼େଇ କରି ବି କଥାଗୁଡ଼ା କହନ୍ତି ।”

ନବଲ ଜାଣିପାରିଲା ଯେ ପ୍ରେମଶଙ୍କର ପ୍ରକୃତ କଥାଟା କହିବାପାଇଁ ନାରାଜ । ତେଣୁ ସେ ଆଉ ବେଶୀ କିଛି ପଚାରିଲା ନାହିଁ । ପ୍ରେମଶଙ୍କର ବି ଚା’ ଖାଇ ସାରିଥିଲା । ନବଲ କହିଲା, “ନାହିଁ, ଏମିତି ଖାଲି ପଚାରୁଥିଲି, ତେବେ ପରୀକ୍ଷା ପରେ ତୁମର ପ୍ରୋଗ୍ରାମ୍ କ’ଣ ?”

ପ୍ରେମଶଙ୍କର ପକେଟରୁ କାଢ଼ି ଖଣ୍ଡେ ସିଗାରେଟ ଲଗାଇ କହିଲା, “ମୋର ପ୍ରୋଗ୍ରାମ

କ'ଣ ମୁଁ ନିଜେ ବି ଜାଣେ ନାହିଁ । ମୋର ତ କିଛି ଘରଦ୍ୱାର ନାହିଁ, କି ଠିକ୍ ଠିକଣା ନାହିଁ । ପରୀକ୍ଷା ଦେଇସାରିଲେ କ'ଣ କରିବି, କେଉଁଠିକି ଯିବି ସେ କଥା ଠିକ୍ କରିବି ।"
ତାପରେ ସେ ଉଠି ଠିଆହୋଇ ପଚାରିଲା, "ତମେ ବୋଧହୁଏ ଆଜି କୁଆଡ଼େ ବୁଲାବୁଲି କରିବା ପାଇଁ ଯିବ, ଡେରି ହୋଇଯାଉନାହିଁ ତ ? ମୁଁ ତ ଯାଇ ପୁଣି ସେହି ବହି ଧରି ବସିବି ।"

ପ୍ରେମଶଙ୍କର ଯେଉଁ ପାଇଜାମା ଓ କାମିଜ୍ ପିନ୍ଧିଥିଲା, ତାହା ଉନିଦିନ ହେଲା ଧୂଆ ନ ହୋଇ ବହୁତ ମଇଳା ହୋଇଯାଇଥିଲା । ତାହା ଦେଖି ନବଲ କହିଲା, "ହଁ, ପଢ଼ିବ ତ, ଆଗଯାଇ ତମ ଲୁଗାପଟା ବଦଳାଇପକା ।"

"ଆରେ ମୁଁ ଲୁଗା ବଦଳାଇବାକୁ ଭୁଲିଯାଇଥିଲି ।" ପ୍ରେମଶଙ୍କର ପୁଣି ହସି ହସି କହିଲା, "ବାସ୍ତବରେ ଆଜିକାଲି ଜୀବନ କେତେ ଜଟିଳ ହୋଇଗଲାଣି । ପ୍ରଥମେ ସଫା ଲୁଗା ଦରକାର, ପୁଣି କାମରେ ମନ ଲଗାଇବାକୁ ହେଲେ ସିଗାରେଟ୍ ଦରକାର । କେତେ ଯେ କ'ଣ ଦରକାର ତାର ଠିକଣା ନାହିଁ । କିନ୍ତୁ ସବୁ ଜିନିଷ ପାଇଁ ପଇସା ଦରକାର ଓ ସେହି ପଇସା ଆଜି ସବୁଠୁ ବଡ଼ ସମସ୍ୟା । ଆଚ୍ଛା, ଛାଡ଼ ସେ ସବୁ । ତମକୁ ଡେରି ହୋଇଯାଉଥିବ, ମୁଁ ଯାଉଛି ।" ଏତିକି କହି ପ୍ରେମଶଙ୍କର ଚାଲିଗଲା ।

ନବଲ ଗାଧୋଇ-ପାଧୋଇ ଲୁଗାପଟା ପିନ୍ଧିଲାବେଳକୁ ପାଞ୍ଚ ବାଜିଯାଇଥିଲା । ତାପରେ ସେ କାନ୍ଥଦେହରୁ ଟେନିସ ର୍‌ୟାକେଟ କାଢ଼ିଲା । ଗଲା ମାସେ ହେଲା ପ୍ରାୟ ସେ ର୍‌ୟାକେଟ୍ ଛୁଇଁ ନ ଥିଲା । ତା'ପରେ ସେ ସାଇକେଲ ଧରି ଆଲଫ୍ରେଡ଼ ପାର୍କକୁ ଚାଲିଲା ।

ମାସେ ହେଲା ଖେଳ ଅଭ୍ୟାସ ନ ଥିବାରୁ ସେ ମାତ୍ର ଦୁଇସେଟ୍ ଖେଳି ଥକି ପଡ଼ିଲା, ଅବଶ୍ୟ ତା' ଖେଳରେ କିଛି ତଫାତ ହୋଇ ନ ଥିଲା । ତାପରେ ଟିକିଏ ବିଶ୍ରାମ ନେଇ ସେ ରାୟବାହାଦୁର କାମତାନାଥଙ୍କ ଘରକୁ ବାହାରିଲା ।

ମୁଟ୍‌ଠିଗଞ୍ଜରେ କାମତାନାଥଙ୍କ କୋଠି । ବାହାରୁ ଯେମିତି କିଛି ଜଣାପଡ଼େ ନାହିଁ । ବାହାରେ ଗୋଟାଏ ଖୁବ୍ ବଡ଼ ପାଚେରି ଓ ପାଚେରିକୁ ଲଗି ଅନେକ ଛୋଟ ଛୋଟ ଦୋକାନ । ପାଚେରି ଆରକଡ଼େ ଗୋଟାଏ ବଡ଼ ଫାଟକ ଓ ଫାଟକ ପାରିହେଲେ ଗୋଟାଏ ବଡ଼ ବଗିଚା । ତା ଭିତରେ ରାୟବାହାଦୁରଙ୍କ ଦୋମହଲା କୋଠି । ଆଗ ଫାଳଟା ପଥରରେ ତିଆରି । ସେ କୋଠିର ଗୋଟାଏ ଗେଟ୍ ଓ ଗେଟ୍ ଦୁଇପାଖରେ ଦୁଇଟା ଓସାର ବାରଣ୍ଡା ଓ ବଗିଚା ଶେଷରେ ସ୍ତ୍ରୀଲୋକମାନଙ୍କର ରହିବା ଘର । ବାହାର ପାଖେ ପୁରୁଷମାନେ ଚଳାଚଳ କରନ୍ତି ।

କାମତାନାଥ ନବଲକୁ ବସିବାକୁ ଦେଇ ପଚାରିଲେ, "କ'ଣ ନବଲ, ବହୁତ ଦିନୁ ତମର ଦେଖାନାହିଁ, ପରୀକ୍ଷାରେ କେମିତି ହୋଇଛି ?"

"ହଁ ଭଲ ହୋଇଛି । ହାୟର ସେକେଣ୍ଡ କ୍ଲାସ ମିଳିଯିବ ।"

"ତା' ହେଲେ ବିଲାତ କେବେ ଯାଉଛ ?" ପୁଣି କ'ଣ ମନେ ପଡ଼ିଗଲା ପରି କାମତାନାଥ କହିଲେ, "ତମେ ଆମ ସଙ୍ଗେ ସ୍ୱିଜରଲାଣ୍ଡ ଚାଲ । ତମକୁ ତ ଯେମିତି ହେଲେ ବିଲାତ ଯିବାକୁ ହେବ । ତା'ହେଲେ ମୋ ସଙ୍ଗରେ ଚାଲୁନା ?"

ଏ କଥା ଶୁଣି ନବଲ ଚମକି ପଡ଼ି କହିଲା, "ପରୀକ୍ଷା ତ ମୋଟେ ଆଜି ସରିଛି । ଫଳ ଆଗେ ବାହାରୁ, ତାପରେ ଯିନା ବିଲାତ କଥା ଦେଖିବା !"

ରାୟବାହାଦୁର କାମତାନାଥ ନିଜ କଥାକୁ ପୁଣି ଜୋର୍ ଦେଇ କହିଲେ, "ପାସ୍ ତ ତମେ ଯେମିତି ହେଲେ କରିବ । ପରୀକ୍ଷାଫଳ କେବଲ୍ ଦ୍ୱାରା ସ୍ୱିଜରଲାଣ୍ଡ ଚାଲିଯିବ । ଆମେ ତ ଅପ୍ରେଲ ମାସ ଶେଷରେ ଯିବୁ; ଆଉରି ମାସେ ବାକି ଅଛି ।

ଏହି ସମୟରେ ଊଷା ମୁହଁ ହାତ ଧୋଇ ହୋଇ ଚୁପ୍‌ଚାପ୍ ଆସି ଗୋଟାଏ ଚୌକିରେ ବସି ପଡ଼ିଥିଲା । କାମତାନାଥ ଊଷାକୁ କହିଲେ, "ମୋର ବର୍ତ୍ତମାନ ଗୋଟାଏ ବଡ଼ କଥା ମନେ ପଡ଼ିଲା । ନବଲ ତ ଆଇ. ସି. ଏସ୍. ପାଇଁ ଇଂଲଣ୍ଡ ଯିବା କଥା । ମୁଁ ତାଙ୍କୁ କହୁଛି ସେ ଆମ ସଙ୍ଗରେ ସ୍ୱିଜରଲାଣ୍ଡ ଚାଲନ୍ତୁ । ଆମେ ତ ଅକ୍‌ଟୋବରରେ ଫେରିଆସିବା, ସେ ସେଇଠାରୁ ଇଂଲଣ୍ଡ ଚାଲିଯିବେ ।"

ଊଷାର ସମସ୍ତ ଉଦାସ ଭାବ ମୁହୂର୍ତ୍ତକେ ଉଡ଼ିଗଲା । ସେ କହିଲା, "ଆପଣ ଖୁବ୍ ଭଲ କଥାଟାଏ ଭାବିଛନ୍ତି ! ନବଲବାବୁ, ଆପଣଙ୍କୁ ଆମ ସଙ୍ଗେ ଯେମିତି ହେଲେ ଯିବାକୁ ହେବ । ନାହିଁ କରିବା କଥା ହେବ ନାହିଁ ।"

ଏହି ସମୟରେ କାମତାନାଥଙ୍କ ସ୍ତ୍ରୀ କହିଲେ, "ଆରେ ପୁଅ ନବଲ, ତମେ ଆମ ସଙ୍ଗେ ଗଲେ ଆମେ ନିଶ୍ଚିନ୍ତ ହୋଇଯିବୁ । ତମେ ତ ଯାଙ୍କ କଥା ଜାଣ, ଊଷା ବି ନିତାନ୍ତ ପିଲାଟା । ତମେ ଗଲେ ତମଠୁ ବହୁତ ସାହାଯ୍ୟ ମିଳିବ ।"

ବର୍ତ୍ତମାନ ନବଲର ଅଡୁଆରେ ପଡ଼ିବାବେଳ ଆସିଗଲା । ସେ ଏହି ପ୍ରସ୍ତାବର ଜବାବ ଦେବାପାଇଁ ଆଦୌ ପ୍ରସ୍ତୁତ ନ ଥିଲା । ତେଣୁ ସେ କ୍ଷୀଣ ସ୍ୱରରେ କହିଲା, "ଏ ବିଷୟରେ ମୋତେ ବାପାଙ୍କୁ ପଚାରିବାକୁ ହେବ । ସେ କହିଲେ ମୁଁ ଚାଲିଯିବି ।"

କାମତାନାଥଙ୍କ ସ୍ତ୍ରୀ ତାଙ୍କୁ କହିଲେ, "ଶୁଣ, ତୁମେ ସିଧା କଲେକ୍‌ଟର ସାହେବଙ୍କ ପାଖକୁ ଚିଠି ଲେଖିଦିଅ । ତମ କଥାକୁ ସେ କେବେ ନାହିଁ କରିପାରିବେ ନାହିଁ । ନବଲ ଠିକ୍ କହୁଛି, ବିଲାତ ଯିବା କଥା ଯେତେବେଳେ ବାପାଙ୍କୁ ପଚାରିବା ନିତାନ୍ତ ଦରକାର ।"

"ଆରେ ଚିଠି କ'ଣ ହେବ ? କାଲି କମ୍ପା ପଅରଦିନ ମୁଁ ନିଜେ ମୁଜାଫରପୁର ଚାଲିଯିବି, କେତେ ରାସ୍ତା ଯେ ! ଗଙ୍ଗାପ୍ରସାଦଙ୍କୁ ତ କିଛି ଟଙ୍କା ପଇସା ଯୋଗାଡ଼

କରିବାକୁ ପଡ଼ିବ ନାହିଁ । ନବଲ ତ ଆମ ସଙ୍ଗରେ ଯିବ । ମୁଁ ତିନି ଜଣଙ୍କର ଟିକେଟ୍ ଇତ୍ୟାଦି ଠିକ୍ କରି ଦେଉଛି ।"

ରାୟବାହାଦୁର କାମତାନାଥଙ୍କଠାରୁ ସାହାଯ୍ୟ ନେବା କଥାଟା ନବଲକୁ ଭଲ ଲାଗିଲା ନାହିଁ । ସେ ପୁଣି କହିଲା, "ମୁଁ ଆଗ ବାପାଙ୍କ ଅନୁମତି ପାଏ, ତାପରେ ଆପଣ ମୋ ଟିକେଟ ବନ୍ଦୋବସ୍ତ କରିବେ । ଆପଣ ବାପାଙ୍କୁ ଚିଠି ଲେଖିଦିଅନ୍ତୁ କିମ୍ବା ତାଙ୍କ ସଙ୍ଗେ ସାକ୍ଷାତ୍ କରନ୍ତୁ, ଯାହା ଆପଣଙ୍କର ଇଚ୍ଛା ।"

କାମତାନାଥ ଆତ୍ମବିଶ୍ୱାସ ସହିତ କହିଲେ, "ତମେ ବାପାଙ୍କ ଅନୁମତି ପାଇଲଣି ବୋଲି ମନେକର । ତମେ କାଲି ଉଷାକୁ ସଙ୍ଗରେ ନେଇ ଡେଭିଡ୍ ସନ ଦୋକାନକୁ ଚାଲିଯା । ସେଠି ତମ ସୁଟ୍ ବରାଦ ଦେଇଦେବ ଓ ଉଷାର ଲୁଗାପଟା କିଣି ଆଣିବ ।"

ନବଲ କହିଲା, "ଆଚ୍ଛା ହଉ ।" ତାପରେ ସେ ଉଷାକୁ କହିଲା, "ଏତେ କଥାବାର୍ତ୍ତା ଭିତରେ ମୁଁ ତୁମକୁ ପଚାରିବାକୁ ଭୁଲିଯାଇଥିଲି, ତମର ପରୀକ୍ଷାରେ କେମିତି ହେଲା ? କ'ଣ କହିବ, ମୋ ପରୀକ୍ଷାରେ ବ୍ୟସ୍ତ ରହି ମୁଁ ଆଉ ଆସିପାରିଲି ନାହିଁ ।"

ଉଷା ସାମାନ୍ୟ ଅଭିମାନ କଲାପରି କହିଲା, "ହଁ, ଆପଣ ନ ଆସିଲେ କ'ଣ ହେଲା । ଆପଣ ତ ପଢ଼ାଇ ଦେଇଥିଲେ । ସେଇଥିରେ ମୋର ସେକେଣ୍ଡ ଡିଭିଜନ ହୋଇଯିବ । କିନ୍ତୁ ମୋତେ ବି. ଏ. ରେ କିଏ ପଢ଼ାଇବ ?" ତା'ପରେ ସେ ବହୁତ ଜୋରରେ ହସି ହସି କହିଲା, "ମୁଁ ମୋର ବହିପତ୍ର ନେଇ ସ୍ୱିଜରଲାଣ୍ଡ ଯିବି । ଆପଣ ସେଇଠି ମୋତେ ପଢ଼ାଇଦେବେ ।"

ନବଲ ହସିଦେଇ କହିଲା, "ସେଠି ବୁଲାବୁଲି ଭିତରେ ସମୟ ମିଳିବ କେଉଁଠୁ ? ଆଚ୍ଛା ଉଷା, କାଲି ସନ୍ଧ୍ୟାବେଳେ ତମେ ପ୍ରସ୍ତୁତ ହୋଇଥିବ, ମୋର ଆଜି ଡେରି ହୋଇ ଗଲାଣି, ମୁଁ ଯାଉଛି ।" ଏତିକି କହି ନବଲ ଉଠି ଛିଡ଼ାହେଲା ।

ଉଷା ନବଲର ହାତ ଧରି ବସାଇ ଦେଇ କହିଲା, "ଆରେ, ଆପଣ ନ ଖାଇକରି କେମିତି ଚାଲିଯିବେ ?"

ରାୟବାହାଦୁର କାମତାନାଥଙ୍କ ଘରୁ ଖିଆପିଆ ସାରି ହଷ୍ଟେଲକୁ ଫେରିବା ବେଳକୁ ଏଗାର ବାଜିଯାଇଥିଲା । ସେଦିନ ନବଲର ମନ ବଡ଼ ପ୍ରସନ୍ନ ଥାଏ । ସେ ଆସି ଦେଖିଲା-ବେଳକୁ ପ୍ରେମଶଙ୍କରଙ୍କର ଘର ଖୋଲା ଅଛି । ସେ ବସିକରି କ'ଣ ପଢ଼ୁଛନ୍ତି । ନବଲକୁ ଦେଖିଲାମାତ୍ରେ ସେ ଉଠିପଡ଼ି ପଚାରିଲେ, "କ'ଣ ଖବର, ଆଜି ସନ୍ଧ୍ୟାଟା ବଡ଼ ମଜଲିସ୍‌ରେ କଟିଥିଲା ପରି ଜଣାପଡ଼ୁଛି !"

ପ୍ରେମଶଙ୍କରଙ୍କର ଚେହେରାରୁ ଜଣାପଡ଼ୁଥିଲା ସନ୍ଧ୍ୟାବେଳେ ସେ ବି କୁଆଡ଼େ

ବାହାରକୁ ଯାଇଥିଲେ । ନବଲ କହିଲା, "ହଁ ମୋ କଥା ଠିକ୍ ଯେ, ତମ ନିଜ କଥା କହ । ତମେ ତ କୁଆଡ଼େ ବାହାରକୁ ଯାଇଥିଲପରି ଜଣାପଡ଼ୁଛୁ ।"

ପ୍ରେମଶଙ୍କର ଟିକିଏ ଗମ୍ଭୀର ହୋଇ କହିଲା, "ନବଲ, ଆଜି ସନ୍ଧ୍ୟାବେଳେ ମୁଁ ତମକୁ ଯାହା କହିଥିଲି ପ୍ରକୃତରେ ତାହା ମିଛ; ବରଂ ସତ ନୁହେଁ ବୋଲି କହିଲେ ବେଶୀ ଠିକ୍ ହେବ । ସନ୍ଧ୍ୟାବେଳେ ତମେ ଯେଉଁ ସାହେବ କଥା ପଚାରୁଥିଲ ମୁଁ ତାଙ୍କର ପାଖକୁ ଯାଇଥିଲି । ବଡ଼ ବିଚିତ୍ର ସେ ଲୋକ । ସେ ଯାହା କହୁଛନ୍ତି, ବଡ଼ ବିଚିତ୍ର ଲାଗୁଛି; କିନ୍ତୁ କଥା ତ ମିଛ ନୁହେଁ । ଇଂରେଜ ଲୋକ ହେଲେ ବି ସେ ବ୍ରିଟିଶ ସରକାର ଓ ବ୍ରିଟିଶ ସାମ୍ରାଜ୍ୟର ଘୋର ଶତ୍ରୁ ବୋଲି ମୋର ମନେ ହୁଏ ।"

ନବଲ ଟିକିଏ କୌତୂହଳୀ ହୋଇ କହିଲା, "ମୋର ତାଙ୍କ ସଙ୍ଗେ ଦେଖା ହେବାକୁ ଭାରି ଇଚ୍ଛା । ମୋତେ ଟିକିଏ ତାଙ୍କ ସଙ୍ଗେ ଦେଖା କରେଇଦିଅ ।"

ପ୍ରେମଶଙ୍କର ମୁଣ୍ଡ ହଲାଇ କହିଲା, "ନାହିଁ ନାହିଁ, ମୁଁ ତମକୁ ବିପଦରେ ପକାଇବାକୁ ଚାହେଁ ନାହିଁ । ସେଇଥିପାଇଁ ସନ୍ଧ୍ୟାବେଳେ ମିଛ କହି ତମକୁ ଠକି ଦେଇଥିଲି । ସେ ଲୋକ କମ୍ୟୁନିଷ୍ଟ; ନଚେତ୍ ବ୍ରିଟିଶ ଗୁପ୍ତଚର । ସେପରି ଲୋକଙ୍କ ସଙ୍ଗେ ବନ୍ଧୁତା କରିବା ବିପଜ୍ଜନକ, ଅନ୍ତତଃ ତମପାଇଁ ନିଶ୍ଚୟ ।"

ନବଲ ପ୍ରେମଶଙ୍କରକୁ ତୀକ୍ଷ୍ଣଦୃଷ୍ଟିରେ ଚାହିଁ ପଚାରିଲା, "କିନ୍ତୁ ତମେ ତା'ହେଲେ ନିଜକୁ କାହିଁକି ଏ ବିପଦରେ ପକାଉଛ ପ୍ରେମଶଙ୍କର ?"

"ମୋ' କଥା କିଣ, ମୁଁ ତ ସାରା ଜୀବନ ସଂଘର୍ଷ କରି ଆସୁଛି । ବାପା କେବେ ମଲେ ମୋର ମନେନାହିଁ । ମା' ମୋତେ ପାଳିଲେ । ମୋତେ ବଂଚାଇବା ପାଇଁ ଓ ପାଠ ପଢ଼ାଇବାପାଇଁ ମା' କେତେ କଷ୍ଟ କରିଛନ୍ତି, କେତେ ଅପମାନ ସହିଛନ୍ତି, ତା' ତମେ କଳ୍ପନା କରି ପାରିବ ନାହିଁ । ମା'ଙ୍କୁ କକା ଏମିତି ହଇରାଣ କଲେ ଯେ ଶେଷରେ ସେ ଘର ଛାଡ଼ି ଚାଲିଆସିଲେ । ସେ ପାଠ ପଢ଼ିଥିଲେ ବୋଲି ମାଷ୍ଟ୍ରାଣୀ ଚାକିରି କରି ମୋତେ ପାଠ ପଢ଼ାଇଲେ । ମୋ କପାଳକୁ ମୁଁ ଆଇ. ଏ. ପଢ଼ିଲା ବେଳକୁ ସେ ବି ଚାଲିଗଲେ । ସେ ମୋତେ ଦୁଇ ହଜାର ଟଙ୍କା ଦେଇଯାଇଥିଲେ ଓ ତାଙ୍କର ଦେଢ଼ ହଜାର ଟଙ୍କାର ଗହଣା ଥିଲା । ସେହିଦିନୁ ମୁଁ ହଷ୍ଟେଲରେ ରହି ପଢ଼ିଆସୁଛି । ମୋର ମନେହେଉଛି ଏ ଦୁନିଆରେ ମୋର ନିଜର ବୋଲି କେହି ନାହିଁ । ସେହି ସାଢ଼େ ତିନି ହଜାର ଟଙ୍କାରୁ ଆଉ ମାତ୍ର ଛ'ଶହ ଟଙ୍କା ଅଛି, ଯେଉଁ ଦିନ ହେଲେ ସରିଯିବ ।"

ନବଲ କହିଲା, "କିନ୍ତୁ ମୋ ପ୍ରଶ୍ନ ସଙ୍ଗେ ତମର ଏ କାହାଣୀର ତ କୌଣସି ସମ୍ବନ୍ଧ ନାହିଁ ।"

"ସମ୍ବନ୍ଧ ଅଛି କହିଲେ ଚଳିବ; ନାହିଁ କହିଲେ ବି ଚଳିବ । ମୁଁ ଫାଷ୍ଟ କ୍ଲାସରେ

ଏମ୍. ଏ. ପାସ୍ କରି ଚାକିରି ପାଇଁ ସବୁଆଡ଼େ ଦର୍ଖାସ୍ତ କଲି; କିନ୍ତୁ କେଉଁଠି ମିଳିଲା ନାହିଁ । ଗୋଟାଏ ଅଧେ ପ୍ରାଇଭେଟ ସ୍କୁଲରେ ମାଷ୍ଟର ଚାକିରି ମିଳିଲା ଯେ ସେଥିରେ ପୁଣି ଦରମା କବେ ଟଙ୍କାରୁ ଦସ୍ତଖତ କରି ମାତ୍ର ପଚିଶ ଟଙ୍କା ନେବାକୁ ହେବ । ବିରକ୍ତ ହୋଇ ଶେଷରେ ଲ' ପଢ଼ିଲି । ମୁଁ ଜାଣିଛି ଏହି ଓକିଲ ଜୀବନରେ ମୋତେ ବହୁତ ସଂଘର୍ଷ କରିବାକୁ ପଡ଼ିବ । ଏହାପରେ ମୁଁ ବିପଦ ସଙ୍ଗେ ବରାବର ଖେଳ ଖେଳିଆସିଛି ।''

ନବଲ କିଛି ସମୟ ଚୁପରହି ଏକ ଦୀର୍ଘଶ୍ୱାସ ପକାଇ କହିଲା, "ପ୍ରେମଶଙ୍କର, ମୁଁ ଏବେ ବୁଝୁଛି ତମେ ତମ ଜୀବନରେ ନିଶ୍ଚୟ ସଫଳ ହେବ; ତେଣୁ ନିର୍ଗୁଣ ହୋଇ ବିପଦ ଭିତରକୁ ଡେଇଁ ପଡ଼ିବା ଉଚିତ ନୁହେଁ । ଏସବୁ ଲୋକଙ୍କ ସଙ୍ଗେ ତମେ ଆଉ ମିଳାମିଶା କର ନାହିଁ ।''

ପ୍ରେମଶଙ୍କର ହସି ଦେଇ କହିଲା, "ଉପଦେଶ ପାଇଁ ବହୁତ ଧନ୍ୟବାଦ । ମୋର ତ ଆଉ ଉପାୟ ନାହିଁ । ମୁଁ ତ ଆଗରୁ ପଶିଯାଇଛି, ଆଉ କହି ଲାଭ କ'ଣ ? ଆରେ ହଁ, ଗୋଟାଏ କଥା କହିବାପାଇଁ ଭୁଲିଯାଇଛି । ତମ ଜେଜେବାପା ଆସି ତମକୁ ଦୁଇଥର ଖୋଜି ଗଲେଣି; ସାଢ଼େ ନଅଟା ଓ ସାଢ଼େ ଦଶଟା ଏମିତି ଦୁଇ ଥର ଆସିଥିଲେ । କହିଯାଇଛନ୍ତି ଆସିଲାମାତ୍ରେ ଟିକିଏ ବଙ୍ଗଳାକୁ ପଠାଇଦେବେ, ବହୁତ ଜରୁରୀ କାମ ଅଛି ।''

ନବଲ ଘଣ୍ଟା ଦେଖି କହିଲା, "ଆଜି ତ ବହୁତ ଡେରି ହୋଇଗଲାଣି, କାଲି ସକାଳେ ଯିବି ।''

"ନାହିଁ ନାହିଁ, ତମେ ବର୍ତ୍ତମାନ ଯା, ତମେ ଆସିଲା ମାତ୍ରେ ତମକୁ ପଠାଇଦେବା-ପାଇଁ ସେ ବହୁତ ଜୋର କରି କହିଥିଲେ ।''

ନବଲ ଟିକିଏ ଚିନ୍ତିତ ହୋଇ ପଚାରିଲା, "କ'ଣ, କଥା କ'ଣ ? ସେ କ'ଣ ଖୁବ୍ ବ୍ୟସ୍ତ ଜଣାପଡ଼ୁଥିଲେ ? ଆଉ କିଛି କହି ଯାଇନାହାନ୍ତି ?''

"ନାଁ, କିଛି କହି ନାହାନ୍ତି; କିନ୍ତୁ ବହୁତ ଚିନ୍ତିତ ଜଣାପଡ଼ୁଥିଲେ । ତମେ ଯାଇ ଦେଖି ଆସ କ'ଣ ହୋଇଛି ।''

ନବଲ ଆଉ ନିଜ ଘର ନ ଖୋଲି ସେଇଠୁ ନିଜ ବଙ୍ଗଳାକୁ ଫେରିଗଲା । ତା' ଛାତି ଥରିଲା ଓ ମନରେ ଏକପ୍ରକାର ଭୟ ଆସିଗଲା ।

ନବଲ ବଙ୍ଗଳାରେ ପହଞ୍ଚି ଦେଖିଲା ଜ୍ୱାଲାପ୍ରସାଦ ବଡ଼ ଚିନ୍ତିତ ହୋଇ ବାରଣ୍ଡାରେ ବସିଛନ୍ତି । ନବଲକୁ ଦେଖିଲାମାତ୍ରେ ସେ ଉଠିପଡ଼ି କହିଲେ, "ନବଲ, ବହୁତ ବେଳୁ ମୁଁ ଅପେକ୍ଷା କରି ବସିଛି । ଆମର ବର୍ତ୍ତମାନ ଘୋର ବିପଦ ପଡ଼ିଛି ।''

ନବଲ କଥାଟା ଧରି ନ ପାରି ପଚାରିଲା, "ଆଉ ସବୁ ଭଲଟି ?''

"ଭଲ ଆଉ କ'ଣ ? ଗଙ୍ଗା ବର୍ତ୍ତମାନ ଭାରି ବେମାର । ଘରୁ ବନାରସରୁ ହଠାତ୍ ରକ୍ତବାନ୍ତି ହୋଇ ଶହେ ଚାରି ଡିଗ୍ରୀ ଜର ରହୁଛି । ସିଭିଲ ସର୍ଜନଙ୍କୁ ଡକାଇଥିଲି ସେ କହିଲେ ଦୁଇଟାଯାକ ଫୁସ୍‌ଫୁସ୍ ଖରାପ ହୋଇ ଯାଇଛି । ଏକ୍‌ସରେ କରିବାକୁ ହେବ, ମିର୍ଜାପୁରରେ ଚିକିତ୍ସା ପାଇଁ କୌଣସି ବ୍ୟବସ୍ଥା ନାହିଁ ।"

ନବଲ ବ୍ୟସ୍ତ ହୋଇ କହିଲା, "ଜେଜେ, ଆପଣ ମୋତେ ଆଗରୁ କାହିଁକି ଖବର ଦେଲେ ନାହିଁ ? ବର୍ତ୍ତମାନ କ'ଣ କରିହେବ ?"

"ତମର ପରୀକ୍ଷା ଚାଲିଥିଲା ନା, ଆଜି ତ ପରୀକ୍ଷା ସରିଲା । ଡାକ୍ତର ଶେରଉଡ଼୍ ସାହେବଙ୍କୁ ନେବାପାଇଁ ଆସିଛି । ସିଭିଲସର୍ଜନ କିଛି କରିପାରିବେ ନାହିଁ ।" ଜ୍ୱାଲାପ୍ରସାଦ ପୁଣି କହିଲେ, "ମୁଁ ଆଜି ଶେରଉଡ଼ଙ୍କୁ ଭେଟିଥିଲି । କାଲି ବାରଟା ବେଳେ ସେ ଯିବେ ବୋଲି କହିଛନ୍ତି । ତୁ ବି ଯିବାପାଇଁ ପ୍ରସ୍ତୁତ ହୋଇ ଯା ।"

ଏ କଥା ଶୁଣି ନବଲକିଶୋର ତାଟକା ହୋଇ ବସିଗଲା । ଜ୍ୱାଲାପ୍ରସାଦ କହିଲେ, "ଆମର ବଡ଼ ଖରାପ ସମୟ ପଡ଼ିଛି ନବଲ ! ଈଶ୍ୱରଙ୍କ ଇଚ୍ଛା କ'ଣ ସେ ଜାଣନ୍ତି । କ'ଣ ଥିଲା, କ'ଣ ହୋଇଗଲା !"

ଜ୍ୱାଲାପ୍ରସାଦଙ୍କ ମୁହଁର ଚମଡ଼ା ଧୂଡୁ଼କି ଯାଉଥିଲା, ଆଖିର ଆଲୋକ ଲିଭି ଯାଇଥିଲା । ନବଲ ଦେଖିଲା ଜେଜେ ବହୁତ ବୁଢ଼ା ହୋଇଯାଇଛନ୍ତି । ସେ କହିଲା, "ଜେଜେ, ଆପଣ ଧୈର୍ଯ୍ୟ ଧରନ୍ତୁ । କାଲି ଶେରଉଡ଼୍ ଦେଖିଲା ପରେ ବାପାଙ୍କର ଅବସ୍ଥା ଜଣା-ପଡ଼ିବ ।"

ଜ୍ୱାଲାପ୍ରସାଦଙ୍କର କୋହ ଉଠିଲା । ସେ କହିଲେ, "ଦେଖ ନବଲ, ଛାତିକୁ ପଥର କରିବା ଛଡ଼ା ମୋର ଆଉ କୌଣସି ଉପାୟ ନାହିଁ । ଯା, ଜିନିଷପତ୍ର ସବୁ ଠିକ୍ କରି ଦେଇ ସକାଳୁ ଚାଲିଆସିବୁ । ମୋର ତ ବଳ ପାଉନାହିଁ, ତୋତେ ହୁଏତ ଶେରଉଡ଼ଙ୍କ ପାଖକୁ ଯିବାକୁ ପଡ଼ିପାରେ !"

ଶେରଉଡ଼ଙ୍କୁ ସଙ୍ଗରେ ନେଇ ଜ୍ୱାଲାପ୍ରସାଦ ଓ ନବଲକିଶୋର ମିର୍ଜାପୁରରେ ପହଞ୍ଚିଲାବେଳକୁ ପ୍ରାୟ ଦୁଇ ବାଜିଯାଇଥିଲା । ବିଦ୍ୟା ଗଙ୍ଗାପ୍ରସାଦଙ୍କ ପାଖରେ ବସି-ଥିଲା । ସେ ଘରୁ ବାହାରି ଆସି ଏମାନଙ୍କୁ ନେଇ ତାଙ୍କ ପାଖରେ ପହଞ୍ଚାଇ ଦେଲା । ଗଙ୍ଗାପ୍ରସାଦ ଆଖି ବୁଜି ଚୁପ୍‌ଚାପ୍ ପଡ଼ିରହିଥିଲେ । କିନ୍ତୁ ତାଙ୍କ ମୁହଁରେ ଅସହ୍ୟ ଯାତନାର ରେଖା ଫୁଟିଉଠୁଥାଏ । ଶେରଉଡ଼୍ ତାଙ୍କୁ ଖୁବ୍ ଭଲ ଭାବରେ ପରୀକ୍ଷା କରି ଦେଖିଲେ । ସ୍ୱା ଭିତରେ ନବଲକିଶୋର ମିର୍ଜାପୁର ସିଭିଲ ସର୍ଜନଙ୍କୁ ବି ଡାକି ଆଣିଥିଲେ ।

ଡାକ୍ତର ଦୁହେଁ ଏକାଠି ବିଚାର କରି କହିଲେ, "ରୋଗୀକୁ ଆଲହାବାଦ ନେଇଯିବା

ଦରକାର । ମିର୍ଜାପୁରରେ ତ ଏକ୍‌ସ-ରେ ବ୍ୟବସ୍ଥା ନାହିଁ । ଆଲ୍‌ହାବାଦରେ ସ୍ବାଙ୍କର ଚିକିତ୍ସା କରିବାକୁ ହେବ ।''

ଜ୍ୱାଲାପ୍ରସାଦ କହିଲେ, "କିନ୍ତୁ ସରକାରଙ୍କର ବିନାନୁମତିରେ ତ କଲେକ୍‌ଟର ହେଡ୍‌କ୍ଲାର୍କର ଛୁଟି ପାଇବେ ନାହିଁ ।''

ସିଭିଲ ସର୍ଜନ କହିଲେ, "ଆପଣ ଶେରଉଡ଼ଙ୍କ ସଙ୍ଗରେ ଆଲ୍‌ହାବାଦ ଚାଲିଯାନ୍ତୁ । ମୁଁ ମେଡ଼ିକାଲ ସାର୍ଟିଫିକେଟ୍ ଲେଖିଦେଉଛି । ଆପଣ ସେଠି କମିସନରଙ୍କ ଅଫିସରେ ଛୁଟି ଦର୍ଖାସ୍ତ ଦେଇ ଦେବେ । ସ୍ବାଙ୍କର ଖୁବ୍ ଶୀଘ୍ର ମିର୍ଜାପୁରରୁ ଆଲ୍‌ହାବାଦ ଯିବା ଦରକାର ।''

ପ୍ରାୟ ଘଣ୍ଟାଏ ବାଦ୍ ଜ୍ୱାଲାପ୍ରସାଦ ଶେରଉଡ଼୍‌ଙ୍କ ସଙ୍ଗରେ ଆଲ୍‌ହାବାଦ ଚାଲିଗଲେ ।

ଡାକ୍ତରଙ୍କ ସଙ୍ଗରେ ଜେଜେବାପାଙ୍କୁ ପଠାଇ ଦେଇ ନବଲକିଶୋର ବାପାଙ୍କ ଘର ଭିତରକୁ ଲେଉଟି ଆସିଲା । ଗଙ୍ଗାପ୍ରସାଦଙ୍କର ଜର ସେତେବେଳକୁ ଖୁବ୍ ବଢ଼ି-ଯାଇଥିଲା । ସେ ନବଲକୁ ଦେଖି ନିଜ ପାଖରେ ବସିବାକୁ ସଙ୍କେତ ଦେଲେ ଓ କିଛି କାଳ ତାକୁ ଏକ ଆଖିରେ ଚାହିଁ ଶେଷରେ କ୍ଷୀଣସ୍ୱରରେ ପଚାରିଲେ, "ଶେରଉଡ କ'ଣ କହିଲେ ?''

ନବଲକିଶୋର ଅନୁଭବ କଲା ଯେ ଗଙ୍ଗାପ୍ରସାଦଙ୍କ କଣ୍ଠ ଥରୁଥିଲା ଓ ଆଖିରେ ଏକ-ପ୍ରକାର ଭୟ ଆଙ୍କି ହୋଇଯାଇଥିଲା । ସେ କହିଲା, "ଡାକ୍ତର କହୁଥିଲେ ଯେ ଆଲ୍‌ହାବାଦରେ ଚିକିତ୍ସା କରିବାକୁ ହେବ ଓ ସେଇଠି ଆପଣ ଭଲ ହୋଇଯିବେ ।''

"ସତ କହୁଛୁ, ଆଲ୍‌ହାବାଦରେ ମୁଁ ଭଲ ହୋଇଯିବି ? ମୋତେ ତ ଲାଗୁଛି ଗୋଟାଏ ଭଲ ନ ହେବା ରୋଗ ଆସି ମୋତେ ଆକ୍ରମଣ କରିଛି । ତା ହେଲେ ଶେରଉଡ଼ କହୁଛନ୍ତି ମୁଁ ଭଲ ହୋଇଯିବି ? କି ରୋଗ ହୋଇଛି ବୋଲି କହୁଛନ୍ତି ?'' ମନେ ହେଲା ସତେ ଯେମିତି ଗଙ୍ଗାପ୍ରସାଦ ନିଜ ଚାରିପାଖ ଘେରିଥିବା ନିରାଶା ଅନ୍ଧକାର ଭିତରୁ ଆଶାର ଆଲୋକରେଖାଟିଏ ଖୋଜୁଥିଲେ । ନବଲ ଦେଖିଲା, ଗଙ୍ଗାପ୍ରସାଦଙ୍କ ଦେହ ଏକଦମ ବିବର୍ଣ୍ଣ ହୋଇଯାଇଛି ଓ ଚେହେରା ପୁରାପୁରି ଭାଙ୍ଗି ପଡ଼ିଛି । ସେ ମିଛରେ କହିଲା, "ରୋଗର ନାଁ ତ ସେ କହି ନାହାନ୍ତି; କିନ୍ତୁ କହିଛନ୍ତି ଆପଣ ଆଲ୍‌ହାବାଦରେ ମାସଟିଏ ତାଙ୍କ ଚିକିତ୍ସାରେ ରହିଲେ ଭଲ ହୋଇଯିବେ । ଜେଜେ ଆପଣଙ୍କର ଛୁଟି ଦର୍ଖାସ୍ତ ଦେବାପାଇଁ ଯାଇଛନ୍ତି ।''

ଗଙ୍ଗାପ୍ରସାଦ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ହଁ, ମୋ ଛୁଟି ଦର୍ଖାସ୍ତ ଦେବା-ପାଇଁ ଯାଇଛନ୍ତି ! ଛୁଟି ତ ମୋତେ ନେବାକୁ ହିଁ ପଡ଼ିବ, ହୁଏତ ସବୁଦିନ ପାଇଁ ମୋର ଛୁଟି ହୋଇଯିବ ।''

ବିଦ୍ୟା ଗୋଟିଏ କୋଣରେ ଚୁପଚାପ ଠିଆ ହୋଇ ଏହିସବୁ କଥା ଶୁଣୁଥିଲା । ସେ ଆଗେଇ ଆସି କହିଲା, "ଭାଇ, ବାପା ରୋଗରେ ପଡ଼ିଲାଦିନୁ ଏମିତି ବରାବର କହୁଛନ୍ତି ! ତାଙ୍କୁ ଟିକିଏ ବୁଝାଇ ଦିଅ, ଏତେ ନିରାଶ ହେବା ଠିକ୍ ନୁହେଁ ।"

ଗଙ୍ଗାପ୍ରସାଦଙ୍କ ମୁହଁରେ ଏକ କରୁଣ ହସରେଖା ଦେଖାଦେଲା । ସେ କହିଲେ, "ଶୁଣିଲୁ ନବଲ, ଷୋଳ ସତର ବର୍ଷର ଝିଅ ବିଦ୍ୟା, ସେ ପୁଣି ମୋତେ ବୁଝାଉଛି !" ପୁଣି ସେ ବିଦ୍ୟାକୁ କହିଲେ, "ଯା' ତୋ ମା'କୁ ଏଠିକି ପଠାଇଦେବୁ । ଦିନରାତି ସେବା, କି କ୍ଲାନ୍ତି, କି କଷ୍ଟ !" ସେ ପୁଣି ନବଲକୁ କହିଲେ, "ଆଚ୍ଛା ମୋତେ ବର୍ତ୍ତମାନ ନିଦ ମାଡ଼ିଆସୁଛି, ତମେମାନେ ଟିକିଏ ବିଶ୍ରାମ କର । କିଛି ଦିନ ତ ତୁମକୁ ସେବା କରିବାକୁ ପଡ଼ିବ ।" ଏତିକି କହି ସେ ଆଖି ବନ୍ଦ କରିଦେଲେ ।

ନବଲକିଶୋର ବିଦ୍ୟା ସଙ୍ଗରେ ଘର ଭିତରୁ ବାହାରି ଆସିଲା । ବିଦ୍ୟା ନବଲ-କିଶୋରଠାରୁ ମାତ୍ର ଦୁଇବର୍ଷ ସାନ, ବେଶ ଉଚା, ହୃଷ୍ଟପୁଷ୍ଟ ଯୁବତୀ; ବଡ଼ ବଡ଼ ଆଖି ଓ ସେ ଆଖିରେ ଧୈର୍ଯ୍ୟ ଓ କଠୋରତାର ଚିହ୍ନ; ସଫେଦ ଗୋରା ରଙ୍ଗ । ବିଦ୍ୟାର ଏଥର ବି. ଏ. ପ୍ରଥମ ବର୍ଷ ! କାଶୀ ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେଇ ମିର୍ଜାପୁର ଚାଲି ଆସିଥିଲା । ସେ ନବଲକୁ କହିଲା, "ଭାଇ, ବଡ଼ ବିପଦ ଆସି ଆମ ଉପରେ ପଡ଼ିଛି ।"

"ହଁ, ଆସିଛି ବିଦ୍ୟା ! କିନ୍ତୁ ଆମକୁ ତ ସମ୍ଭାଳିବାକୁ ହେବ ।"

ବିଦ୍ୟା ଚୁପଚାପ ଠିଆ ହୋଇ କ'ଣ ଭାବ ଭାବ ଭାଇଙ୍କୁ ଚାହିଁରହିଲା । ବେଶ୍ ପତଳା ଦୀର୍ଘକାୟ ଯୁବକ, ମୁହଁରେ ଗଭୀର ଆତ୍ମବିଶ୍ୱାସ, ସୁନ୍ଦର ଚେହେରା, ସୁନ୍ଦର ସ୍ୱାସ୍ଥ୍ୟ । ବିଦ୍ୟା କହିଲା, "ବାପାଙ୍କୁ ଛାଡ଼ିଦେଲେ ତମେ ତ ମୋର ସବୁ । ତମେ ଯାହା କହିବ ମୁଁ ତା' କରିବି । ଏହି ବିପତ୍ତି ସଙ୍ଗରେ ତ ଆମକୁ ଲଢ଼ିବାକୁ ପଡ଼ିବ ।" ଏହି କଥା କହୁ କହୁ ଆଖିରେ ତାର ଲୁହ ଆସିଗଲା । ସେ ପୁଣି କହିଲା, "ଯାଉଛି, ମା'କୁ କହିଦେବି, ବାପା ଡାକୁଛନ୍ତି ।" ତା'ପରେ ସେ ଆଖିରୁ ଲୁହ ପୋଛି ପୋଛି ଚାଲିଗଲା ।

ଭିତର ଖଞ୍ଜା ପଟେ ନବଲର ଜେଜିବୁଢ଼ୀ ମୁହଁ ପୋତି ବସିଥିଲେ । ନବଲ ଯାଇ ତାଙ୍କ ପାଖରେ ବସିପଡ଼ିଲା । କିନ୍ତୁ ଯମୁନା ଏପରି ଚୁପ୍‌ଚାପ ନିଶ୍ଚେଷ୍ଟ ହୋଇ ବସିଥିଲେ, ଯେତେ ଯେମିତି ସେ କାଠ ପାଲଟିଯାଇଥିଲେ । ନବଲକୁ ଦେଖି ମଧ୍ୟ ସେ ନ-ଦେଖିଲା ପରି ରହିଯାଇଥିଲେ । ନବଲ ଡାକିଲା, "ଜେଜି !"

ଯମୁନାଙ୍କର ତନ୍ଦ୍ରା ତୁଟିଗଲା । କହିଲେ, "କିରେ ନବଲ, ତୁ ଆସିଲୁଣି ? ଡାକ୍ତର କ'ଣ କହିଲେ ?"

"ଡାକ୍ତର କହିଲେ ବାପାଙ୍କୁ ଆଲ୍ଲାହାବାଦ ନେବାକୁ ହେବ । ସେଇଠି ସେ ତାଙ୍କର ଚିକିତ୍ସା କରିବେ ।"

ଯମୁନା ପଚାରିଲେ, "ଗଙ୍ଗା ପାଖରେ ବର୍ତ୍ତମାନ କିଏ ଅଛି ?"

"ମା' ଅଛନ୍ତି, ବାପାଙ୍କୁ ନିଦ ଆସିବାରୁ ସେ ଆମକୁ ବାହାରକୁ ପଠାଇଦେଲେ ।"

"ଆଚ୍ଛା, ମୁଁ ତା'ହେଲେ ତା' ପାଖକୁ ଯାଉଛି ।" ଯମୁନା ଆଉ କିଛି କଥାବର୍ତ୍ତା ନ କରି ସିଧା ଗଙ୍ଗାପ୍ରସାଦଙ୍କର ପ୍ରକୋଷ୍ଠ ଭିତରକୁ ଚାଲିଗଲେ । ଦେହରେ ପ୍ରାଣ ନଥିଲା ପରି ପାଦ ତାଙ୍କର ଏ ପାଖ ସେପାଖ ପଡ଼ୁଥିଲା ।

ନବଲ ସେଠାରୁ ଉଦାସ ଭାବରେ ଲେଉଟି ଆସି ବାହାର ବାରଣ୍ଡାରେ ବସିଗଲା । ଚାରିଆଡ଼େ ଘନ ଅନ୍ଧକାର, ବାରଣ୍ଡାରେ ଲଣ୍ଠନ ଧକ୍ ଧକ୍ ହୋଇ ଜଳୁଥିଲା । ନବଲ ଚୁପ୍‌ଚାପ୍ ବସି ଭାବୁଥିଲା, ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ଭିତରେ ସମ୍ପର୍କ କ'ଣ ? ଯାହା ସବୁ ଘଟିଯାଇଛି ତାହା କେଉଁ ନିୟମରେ ଘଟୁଛି । ଏହି ଭାବନା ଭିତରେ ବୁଡ଼ି ରହି ସେ ଜାଣି ପାରିନଥିଲା ବିଦ୍ୟା କେତେବେଳେ ଆସି ତା'ପାଖ ଚୌକିରେ ଚୁପ୍ ହୋଇ ବସିଯାଇଥିଲା ।

ବିଦ୍ୟା ବେଶୀ ସମୟ ଅପେକ୍ଷା ନ କରି ପାରି ଡାକିଲା, "ଭାଇ !"

ନବଲ ଚମକି ପଡ଼ିଲାପରି କହିଲା, "କିଏ ବିଦ୍ୟା, ବାପାଙ୍କ ଦେହ ବର୍ତ୍ତମାନ କେମିତି ? ଶୋଇଛନ୍ତି ନାଁ ଚେଇଁଛନ୍ତି ?"

ବିଦ୍ୟା ଉତ୍ତର ଦେଲା, "ନିଦ କାହିଁ ଯେ ଶୋଇବେ ? ବହୁତ ଜ୍ୱରରେ ବେହୋସ୍ ହୋଇ ଆଖି ଆପେ ଆପେ ବୁଜି ହୋଇ ଯାଉଛି ।"

"ବାପାଙ୍କ ପାଖରେ ବର୍ତ୍ତମାନ କିଏ ଅଛି ?"

"ଜେଜୀ ଅଛନ୍ତି, ମା' ଖିଆପିଆ ଯୋଗାଡ଼ କରିବା ପାଇଁ ଗଲେଣି ।"

"ତାହେଲେ ଚାଲି ଯିବା, ଦେଖିବା କ'ଣ ହେଉଛି ।"

"ଦସ ଭାଇ, ଅବସ୍ଥା ତ ସେଇମିତି ଅଛି । ହଁ ତମେ ପରୀକ୍ଷା ପୂରା ଦେଇ-ଦେଇଛଟି ?"

ନବଲ ଏକପ୍ରକାର ବ୍ୟଙ୍ଗପୂର୍ଣ୍ଣ ହସ ହସି କହିଲା, "ପରୀକ୍ଷା ତ ବର୍ତ୍ତମାନ ଆରମ୍ଭ ହେଉଛି ବିଦ୍ୟା ! ବି. ଏ ପରୀକ୍ଷା କ'ଣ ଗୋଟାଏ ପରୀକ୍ଷା । ହଁ, ତୁ ତୋ ପରୀକ୍ଷା କଥା କିଛି କହୁନାହୁଁ ?"

"କହିବାର କ'ଣ ଅଛି ଭାଇ ! ବି. ଏ. ପ୍ରଥମ ବର୍ଷରୁ ଦ୍ୱିତୀୟ ବର୍ଷକୁ ଗଲି ।"

"ଏହି ସମୟରେ ରୁକ୍ମିଣୀ ଆସି ନବଲକୁ କହିଲେ, "ଆରେ ପୁଅ, ବାପା ଡାକୁଛନ୍ତି ଯା ।"

"ଯାଉଛି ମା" କହି ନବଲ ଗଙ୍ଗାପ୍ରସାଦଙ୍କ କୋଠରିରେ ପହଞ୍ଚିଲା ମାତ୍ରେ ସେ ପଚାରିଲେ, "ଆରେ ନବଲ, ସବୁ ଭଲଟି ? ପରୀକ୍ଷାରେ କେମିତି କଲୁ ?"

"ଭଲ ତ କରୁଛୁ, ଏଥର ଫାଷ୍ଟ କ୍ଲାସ ମିଳିଯିବ ବୋଲି ଆଶା ।"

ଗଙ୍ଗାପ୍ରସାଦ ନବଲଙ୍କୁ କିଛି ସମୟ ଏକଦୃଷ୍ଟିରେ ଚାହିଁ କ୍ଷୀଣକଣ୍ଠରେ ପଚାରିଲେ, "ଲଣ୍ଡନରେ ତୋର ରହିବା ଜାଗା ଠିକ୍ ହୋଇଗଲାଣି କି ? ସେପ୍ଟେମ୍ବର ପ୍ରଥମ ସପ୍ତାହରେ ତୋତେ ସେଠାକୁ ଯିବାକୁ ହେବ କି !"

"ସେଥିପାଇଁ ଏତେ ତରତର କ'ଣ ? ଆପଣ ଆଗ ଭଲ ହୋଇଯାନ୍ତୁ । ତା' ପୂର୍ବରୁ ମୁଁ ଯିବ ନାହିଁ ।"

"ନବଲ, ମୋ ରୋଗ ମୋତେ ଠିକ୍ ଜଣାଅଛି । ଏହା ରାଜଯକ୍ଷ୍ମା, ଏଥିରୁ କେହି କେବେ ଭଲ ହୁଏ ନାହିଁ । ମୋ ରୋଗର ବ୍ୟବସ୍ଥା ପାଇଁ ତୋର ଅଟକିବା ଉଚିତ ନୁହେଁ । ମୁଁ ତ ବର୍ତ୍ତମାନ ଭାଙ୍ଗୁଛି । ମୁଁ ଭାଙ୍ଗିବା ପୂର୍ବରୁ ତୁ ଗଢ଼ି ହୋଇଯିବା ଦରକାର ।"

ଗଙ୍ଗାପ୍ରସାଦଙ୍କ କଥାରେ ନୈରାଶ୍ୟର ଏକ ଅନ୍ତର୍ଦାହ ଭରିରହିଥିଲା । ପ୍ରଭୁତ୍ୱର ଭାବନା, ଅଧିକାରର ଅହଙ୍କାର ସବୁ ଏବେ ତାଙ୍କ ମନରୁ ପୋଛି ହୋଇଯାଇଥିଲା । ନବଲ ଯେତେବେଳେ ତାଙ୍କ କଥାର କୌଣସି ଉତ୍ତର ଦେଲା ନାହିଁ, ଗଙ୍ଗାପ୍ରସାଦ ପୁଣି ଟିକିଏ ହସି ଦେଇ କହିଲେ, "ନବଲ, ମୁଁ ଜୀବନରେ ସମ୍ପୂର୍ଣ୍ଣରୂପେ ବିଫଳ ହୋଇଯାଇଛି । ଏହି ଯେଉଁ ମାନ ମର୍ଯ୍ୟାଦା, ପଦ ପଦବୀ, ଏଗୁଡ଼ା ଖାଲି ଉପରର ଆଡ଼ମ୍ବର ! ଏଥିରେ ସାର କିଛି ନାହିଁ; କିନ୍ତୁ ପ୍ରକୃତରେ କେଉଁଠି କ'ଣ ସାର ଅଛି ମୁଁ ଏପର୍ଯ୍ୟନ୍ତ ବୁଝି ପାରିଲି ନାହିଁ ।"

ନବଲ ବେଶ୍ ଜାଣିପାରୁଥିଲା ଗଙ୍ଗାପ୍ରସାଦଙ୍କୁ କଥା କହିବା ପାଇଁ କଷ୍ଟ ହେଉଥିଲା । ତେଣୁ ସେ କହିଲା, "ବାପା, ଆପଣ ବର୍ତ୍ତମାନ ଶୋଇବା ପାଇଁ ଚେଷ୍ଟା କରନ୍ତୁ । ଏମିତି କଥାବାର୍ତ୍ତା କଲେ, ଏମିତି ଅନିଦ୍ରା ହେଲେ କଷ୍ଟ ଆହୁରି ବଢ଼ିବ । ଆପଣ ବିଶ୍ୱାସ କରନ୍ତୁ, ଆପଣଙ୍କର ସନ୍ତୋଷ ପାଇଁ ମୁଁ ସବୁପ୍ରକାର ଚେଷ୍ଟା କରିବ । ସମୟ ହୋଇଗଲାଣି, ଔଷଧ ପିଇଦିଅନ୍ତୁ ।"

"ଆଣ, ଔଷଧ ପିଇବା ତ ମୋର ଧର୍ମ; କାରଣ ମୁଁ ଜାଣିଛି ଔଷଧ ପିଇ ମୋର କିଛି ଲାଭ ନାହିଁ । ଔଷଧ ପିଇବା ପରେ ଶୋଇବା ପାଇଁ ଚେଷ୍ଟା କରିବା ମଧ୍ୟ ମୋର ଧର୍ମ । କାରଣ ମୁଁ ଜାଣେ ଔଷଧ ପିଇଲା ପରେ ମୋତେ ନିଦ ହେବ ନାହିଁ । ଯଦିବା ନିଦ ହେବ ତେବେ ଖୁବ୍ କମ୍ ସମୟ ପାଇଁ । ସେଥିରେ ପୁଣି ବହୁତ ବାଜେ ସ୍ୱପ୍ନ ।"

ଗଙ୍ଗାପ୍ରସାଦଙ୍କୁ ଔଷଧ ଓ ପଥ୍ୟ ଖୁଆଇସାରି ନବଲ ପଦାକୁ ଆସିଲାବେଳକୁ ରାତି ବହୁତ ହୋଇଯାଇଥିଲା, ଓ ଭାରି ଗରମ ମଧ୍ୟ ହେଉଥିଲା । ବିଦ୍ୟା ଭାଇକୁ ଅପେକ୍ଷା କରି ବସିରହିଥିଲା । ନବଲ ଆସିବା ମାତ୍ରେ ସେ କହିଲା, "ଚାଲ ଭାଇ, ଖାଇଦିଅ ।"

"ହଁ, ଯାଉଛୁ" କହି ନବଲ ବସିପଡ଼ିଲା । ଗୁରଆଡ଼େ ଶୂନଶାନ । ପଞ୍ଚମୀ ଜହ୍ନ ଧୀରେ ଧୀରେ ବୁଡ଼ିଯାଉଥିଲା । ଜହ୍ନଟା ବରଗଛ ଉପରେ ଅଟକିଲା ପରି ରହିଯାଇ ଥିବାର ଦେଖି ନବଲ କହିଲା, "ଦେଖୁଛୁ ବିଦ୍ୟା, ଏ ଜହ୍ନଟା ବର୍ତ୍ତମାନ କେତେ ନିଷ୍ପ୍ରଭ, କେତେ ନିସ୍ତେଜ, କେମିତି ବିବଶ ହୋଇ ଆକାଶରୁ ଧୀରେ ଧୀରେ ଓହ୍ଲାଉଛି । ତାର ଆଲୋକ କେତେ କ୍ଷୀଣ ହୋଇ ପଡ଼ିଛି ।"

ବିଦ୍ୟା କହିଲା, "ହଁ ଦେଖୁଛି ଭାଇ, ଚନ୍ଦ୍ରକୁ ତ ବୁଡ଼ିବାକୁ ହେବ ଏଥିରେ ନୂଆ କଥା କ'ଣ ? କାଲି ପୁଣି ଏହି ଚନ୍ଦ୍ର ଉଇଁବ, ତାର ଆଲୋକ ଆହୁରି ଉଜ୍ଜ୍ୱଳ ହେବ, ଆହୁରି ସୁନ୍ଦର ହେବ ।"

ନବଲ ଏକ ଦୀର୍ଘଶ୍ୱାସ ପକାଇ କହିଲା, "ହଁ, ତୁ ଯାହା କହୁଛୁ ସେ ସବୁ କାଲି ହେବ । ମୋର ପ୍ରଶ୍ନ ହେଉଛି ଆଜିର, ଏହି ବର୍ତ୍ତମାନର ।"

"ଭାଇ, ଆମର ସାରା ଜୀବନଟା ତ କାଲିକୁ ନେଇ ଗଢ଼ା । ଆମେ ଯଦି କାଲିର କଳ୍ପନା ନ କରନ୍ତେ ତା'ହେଲେ ଆଜିଟା ତ ଭୟଙ୍କର ହୋଇ ଉଠନ୍ତା !"

"ବିଦ୍ୟା, ତୁ ବୋଧହୁଏ ଠିକ୍ କଥା କହୁଛୁ ।" ନବଲ ବର୍ତ୍ତମାନ ଆକାଶକୁ ଗୁହିଁ ଦେଖିଲା ଜହ୍ନଟା ବରଗଛର ଉପର ଡାଳ ପାଖକୁ ଗୁଲିଆସି ଆସ୍ତେ ଆସ୍ତେ ବରଗଛ ତଳକୁ ସମ୍ପୂର୍ଣ୍ଣରୂପେ ଗୁଲିଗଲା । କିଛି ସମୟ ପର୍ଯ୍ୟନ୍ତ ବରଗଛ ଭିତର ଦେଇ ଟିକିଏ ଟିକିଏ ଆଲୁଅ ଆସୁଥିଲା ଓ ଶେଷରେ ସେତକ ପୁଣି କୁଆଡ଼େ ଛପିଗଲା । ବର୍ତ୍ତମାନ ତା' ଆଖିଆଗରେ ଅଭେଦ୍ୟ ଅନ୍ଧକାର ଜମିଯାଇଥିଲା । ସେ ଠିଆ ହୋଇପଡ଼ି କହିଲା, "ବିଦ୍ୟା, ଗୁଲ ।"

## ଦୁଇ

ଗଙ୍ଗାପ୍ରସାଦ ପଚ୍ଚରିଲେ, "ନବଲ, ଜ୍ଞାନ କାକାଙ୍କ କଥା କିଛି ଜାଣୁ ? ସେ ବିଲାତରୁ କେବେ ଫେରିବେ ?"

"ସେ' ମାସ ଶେଷ ସପ୍ତାହରେ ଆସିବା କଥା ଅଛି । କାହିଁକି, ତାଙ୍କଠି କିଛି କାମ ଅଛି କି ?"

"ନାହିଁ ଏମିତି ଖାଲି ପଚ୍ଚରୁଥିଲି । ଦୁଇବର୍ଷ ହେଲା ତାଙ୍କ ସଙ୍ଗେ ଦେଖା ହୋଇନାହିଁ । ମଝିରେ ମଝିରେ ବେଳେ ବେଳେ ଏମିତି ମନେ ପଡ଼ିଯାଏ ।"

ଏହି ସମୟରେ ଶେରଉଡ୍ ଜ୍ୱାଲାପ୍ରସାଦଙ୍କ ସଙ୍ଗରେ ଘର ଭିତରକୁ ଆସି ଗଙ୍ଗାପ୍ରସାଦଙ୍କୁ ପରୀକ୍ଷା କଲେ ଓ ଟିକିଏ ଗମ୍ଭୀର ହୋଇ କହିଲେ, "ବେଶୀ କିଛି ଉନ୍ନତି ଦେଖାଯାଉନାହିଁ । ଏଠି ବହୁତ ଗରମ ବି ହେଉଛି । ସ୍ୱାଙ୍କୁ ସ୍ୱାସ୍ଥ୍ୟ ନିବାସକୁ ନେଇଯିବାକୁ ହେବ ।"

ଗଙ୍ଗାପ୍ରସାଦ କହିଲେ, "ଠିକ୍ କହୁଛନ୍ତି ଡାକ୍ତର ସାହେବ, ମୁଁ ଏ ଗରମ ସମ୍ଭାଳି ପାରୁନାହିଁ ।"

ଡାକ୍ତର ଶେରଉଡ୍ ଜ୍ୱାଲାପ୍ରସାଦଙ୍କୁ ଚାହିଁ କହିଲେ, "ଭୁୱାଲୀ ସ୍ୱାସ୍ଥ୍ୟନିବାସକୁ ମୁଁ ଲେଖିଦେଉଛି । ସେଠି ତମକୁ ଗୋଟିଏ କଟେଜ୍ ମିଳିଯିବ । ସେପ୍ଟେମ୍ବର ପର୍ଯ୍ୟନ୍ତ ସେଠି ରହିଗଲେ ସ୍ୱାଙ୍କ ଦେହ ପୂରା ଭଲ ହୋଇଯିବ ।"

ଜ୍ୱାଲାପ୍ରସାଦ ଚୁପ୍ କରି ପଚାରିଲେ, "ଗଙ୍ଗାକୁ ଭୁୱାଲୀ ସ୍ୱାସ୍ଥ୍ୟନିବାସ ପର୍ଯ୍ୟନ୍ତ ଏତେବାଟ ନେବାକୁ ପଡ଼ିବ ? ଆଉ ଅନ୍ୟ କୌଣସି ଜାଗାରେ ବ୍ୟବସ୍ଥା ହୋଇ ପାରିବନାହିଁ ?"

"ହଁ ଆହୁରି ଅନେକ ସ୍ୱାସ୍ଥ୍ୟନିବାସ ବି ଅଛି; କିନ୍ତୁ ସେଠି ଚିକିତ୍ସା ହୋଇପାରିବ ନାହିଁ ।"

ଗଙ୍ଗାପ୍ରସାଦ ଚୁପ୍ ଚାପ୍ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲେ; କିନ୍ତୁ ତାଙ୍କର ସେଥିରେ କୌଣସି ଆଗ୍ରହ ନଥିଲା । ସେମାନେ ଚାଲିଯିବା ପରେ ଗଙ୍ଗାପ୍ରସାଦ ନବଲକୁ କହିଲେ— "ନବଲ, ଜେଜେବାପାଙ୍କୁ କହିଦେ, ଭୁୱାଲୀ ଠିକ୍ ହେବ । ସେଠି ଚିକିତ୍ସାପାଇଁ ଭଲ ବ୍ୟବସ୍ଥା ଅଛି । ତା ଛଡ଼ା ମୋ ସଙ୍ଗରେ ସେଠିକି କେହି ଯିବା ଦରକାର ହେବନାହିଁ ।"

"ଆପଣ ସେଠି ଏକା କିମିତି ରହିବେ ? ଶେରଉଡ୍ ତ ସେଠି ଗୋଟିଏ କଟେଜ ବନ୍ଦୋବସ୍ତ କରିଦେବେ ବୋଲି କହୁଛନ୍ତି । ମୁଁ ଆପଣଙ୍କ ସାଙ୍ଗରେ ଯିବି ।"

"ନାହିଁ ନବଲ, ତୁ ମୋ ସାଙ୍ଗରେ ଯାଇପାରିବୁ ନାହିଁ । ତୋତେ ବିଲାତ ଯିବାକୁ ହେବ, ମୋ ସାଙ୍ଗରେ ଜେଜେବାପା ଯିବେ ।"

ନବଲ ଦୃଢ଼ ସ୍ୱରରେ କହିଲା , "ନାହିଁ ବାପା, ଆପଣ ପୂରା ଭଲ ନ ହେବା ପର୍ଯ୍ୟନ୍ତ ମୁଁ କେବେ ବିଲାତ ଯିବି ନାହିଁ ।"

ଗଙ୍ଗାପ୍ରସାଦ ଆଉ କିଛି ନ କହି ଆଖି ବନ୍ଦକରି ଚୁପ୍ ରହିଗଲେ । ନବଲ ଘରୁ ପଦାକୁ ଚାଲିଆସିଲା । ମନ ତାର ବହୁତ ଉଦାସ ହୋଇଯାଇଥିଲା । ଭାବିଲା ବାପା ଠିକ୍ କହୁଥିଲେ ତାଙ୍କୁ ରାଜଯକ୍ଷ୍ମା ହୋଇଯାଇଛି ବୋଲି । ମିର୍ଜାପୁରରୁ ଆଲ୍ଲାହାବାଦ, ପୁଣି ଆଲ୍ଲାହାବାଦରୁ ଭୁୱାଲୀ !"

ଗଙ୍ଗାପ୍ରସାଦଙ୍କର ଆଲ୍ଲାହାବାଦ ଆସିବା ପ୍ରାୟ ମାସେ ହୋଇଗଲାଣି; କିନ୍ତୁ ଏହି ମାସକ ଭିତରେ ଦେହ ଦିନକୁଦିନ ବେଶୀ ଖରାପ ହେଉଛି । ଦେହର ରକ୍ତ ମାଂସ ଶୁଖି

ଖାଲି ହାଡ଼ ରହିଯାଇଛି, ଚଲାବୁଲା କରିବାପାଇଁ ବଳ ପାଉନାହିଁ । ବାପାଙ୍କର ଏହି ଅବସ୍ଥା ଦେଖି ନବଲ ମନେ ମନେ କାନ୍ଦି ପକାଏ; କିନ୍ତୁ ତା ହାତରେ କ'ଣ ବା ଥିଲା ? ସେ ଘରୁ ପଦାକୁ ବାହାରିଲାବେଳକୁ ବହୁତ ଖରା ଥିଲା । ବାରଣ୍ଡାରେ ଛିଡ଼ା-ହୋଇ ଜ୍ୱାଲାପ୍ରସାଦଙ୍କୁ ଆସୁଥିବାର ଦେଖି ଟିକିଏ ରହିଗଲା । ଜ୍ୱାଲାପ୍ରସାଦ ସେତେବେଳେ ଶେରଉଡ଼୍‌ଙ୍କ ଘରେ ପହଞ୍ଚାଇ ଦେଇ ଫେରିଆସୁଥିଲେ ।

ଜ୍ୱାଲାପ୍ରସାଦଙ୍କ ମୁହଁରେ ଚିନ୍ତାର ଗମ୍ଭୀର ରେଖା ଦେଖି ନବଲ ପଚାରିଲା, "ଜେଜେ, ଖବର କ'ଣ ?"

ଜ୍ୱାଲାପ୍ରସାଦ ବ୍ୟଥିତ କଣ୍ଠରେ କହିଲେ, "ଆରେ ପୁଅ, ବର୍ତ୍ତମାନ ଭଗବାନଙ୍କୁ ଡାକ୍ । ଗଙ୍ଗାକୁ ଯେମିତି ହେଲେ ଭୁୱାଲି ଯିବାକୁ ହେବ । ସେଠୁ ବହୁତ କମ୍-ଲୋକ ଭଲ ହୋଇଫେରି ଆସନ୍ତି । ଡାକ୍ତର ବି ବେଶୀ କିଛି ଆଶା ଦେଉନାହାନ୍ତି ।"

ନବଲ ପଚାରିଲା, "ଭୁୱାଲି କେବେ ଯିବାକୁ ହେବ ଜେଜେ ?"

"ଆସନ୍ତା ସପ୍ତାହ ଭିତରେ ଯିବାକୁ ହେବ । କାଲି ପଅରି ଦିନ ଭିତରେ କଟେଜ ବ୍ୟବସ୍ଥା ହୋଇଯିବ । ଗଙ୍ଗା ଶୋଇଯାଇଛି କି ?"

"ନାହିଁ, ଚେଇଁଛନ୍ତି । ଗ୍ଳଲନ୍ତୁ ।"

ସେମାନଙ୍କୁ ଦେଖି ଗଙ୍ଗାପ୍ରସାଦ ଆଖି ଖୋଲିଦେଲେ । ଜ୍ୱାଲାପ୍ରସାଦ କହିଲେ, "ଡାକ୍ତର କହୁଛନ୍ତି, ଆସନ୍ତା ସପ୍ତାହରେ ଭୁୱାଲି ଯିବାକୁ ହେବ । କଟେଜ୍‌ପାଇଁ ସେ ଲେଖି ଦେଇଛନ୍ତି । ତାର ବି କରି ଦେଇଛନ୍ତି ।

ଗଙ୍ଗାପ୍ରସାଦ କହିଲେ, "ହେଉ ହେଲା, ମୋ ସାଙ୍ଗରେ କିନ୍ତୁ କେହି ଯିବା ଦରକାର ନାହିଁ । ଏକା ଭିକ୍ଷୁ ଗଲେ ଚଳିବ ।"

ଜ୍ୱାଲାପ୍ରସାଦ କହିଲେ, "ଆରେ ପୁଅ, ଏ କିମିତି ହେବ ? ତୋ ଖାଇବା ପିଇବା ସେଠି କିଏ ବୁଝିବ ? ତୋ ମା ଓ ମୁଁ ସାଙ୍ଗରେ ଯିବୁ, ବୋହୂ ଏଠି ପିଲାପିଲିଙ୍କ କଥା ବୁଝିବେ ।"

ନବଲ କହିଲା, "ନାହିଁ ଜେଜେ, ଜେଜେମା' ସାଙ୍ଗରେ ମୁଁ ଯିବି । ତମକୁ ଏଠି ରହି ଘରକଥା ବୁଝିବାକୁ ହେବ ।"

ଗଙ୍ଗାପ୍ରସାଦ ନବଲ ଆଡ଼କୁ ଚାହିଁଲେ—ଦେଖିଲେ ଆଖି ଆଗରେ ନିଜର ସମର୍ଥ ପୁତ୍ର; ଆତ୍ମବିଶ୍ୱାସରେ ଭରା ଭବିଷ୍ୟତର ପ୍ରତୀକ । ଟିକିଏ ହସିବା ପାଇଁ ଚେଷ୍ଟାକରି ସେ ଜ୍ୱାଲାପ୍ରସାଦଙ୍କୁ କହିଲେ, "ନବଲ ଠିକ୍ କହୁଛି । ସେ ମୋ ସାଙ୍ଗରେ ଯିବ । ତମେ ଜୁଲାଇ ମାସରେ ଗଲେ ସେ ଫେରିଆସି ତା ପଢ଼ାପଢ଼ିର ବନ୍ଦୋବସ୍ତ କରିବ ।"

ଏକଥା ଶୁଣି ଜ୍ୱାଲାପ୍ରସାଦ ଚୁପ୍ ହୋଇଗଲେ । ଗୋଟିଏ ସଂକ୍ରାମକ ରୋଗ ସ୍ଥାନରେ

ନବଲ ଯାଇ କହିବା ଉଚିତ ନୁହେଁ ବୋଲି ସେ ଭାବୁଥିଲେ ବି ପାଟି ଫିଟାଇ ସେ କଥା କହିବା ପାଇଁ ତାଙ୍କର ସାହସ ନ ଥିଲା । ନିଜ ପୁଅ ତ ପୁଣି ଏହି ଭୟାନକ ରୋଗରେ ଆକ୍ରାନ୍ତ ! ଯଦି ସେ କହନ୍ତେ କ'ଣ କହନ୍ତେ; କାହା ଆଗେ ବା କହନ୍ତେ ! ତେଣୁ ଚୁପ୍‌ଚାପ୍ ଉଦାସ ହୋଇ ସେ ସେହି ଘର ଭିତରୁ ବାହାରି ଗଲେ । ସେ ଚାଲିଯିବା ପରେ ଗଙ୍ଗାପ୍ରସାଦ ନବଲଙ୍କୁ କହିଲେ, "ନବଲ, ଭୁୱାଲି ଯିବାପାଇଁ ସବୁ ଠିକ୍‌ଠାକ୍ କର । ଏଠିକା ଗରମ ମୁଁ ଆଉ ସମ୍ଭାଳି ପାରିବି ନାହିଁ । ମରିବାକୁ ଯଦି ହେବ ଭଲରେ ମରିବି ନାହିଁ କାହିଁକି ?"

"ବାପା, ଏମିତି କଥା ପାଟିରେ ଧରନ୍ତୁ ନାହିଁ । ଆପଣ ସେଠିକି ଗଲେ ନିଶ୍ଚୟ ଭଲ ହୋଇଯିବେ । ଆପଣ ଏତେ ନିରାଶ ହେଉଛନ୍ତି କାହିଁକି ?"

ଗଙ୍ଗାପ୍ରସାଦ କହିଲେ, "ନିରାଶ ହେବାର କିଛି କାରଣ ନାହିଁ । ଆଶା ନେଇ ତ ଏ ଦୁନିଆ ବଞ୍ଚିଛି । ଏମିତି ଗୋଟାଏ ଖାଲି କହିଦେଲି ।"

ଭୁୱାଲିରେ ରହିବା ଓ ଚିକିତ୍ସା ହେବାର ବ୍ୟବସ୍ଥା ହୋଇଗଲା । ସେଦିନଙ୍କୁ ବାହାରିବାକୁ ଗଙ୍ଗାପ୍ରସାଦ ଆହୁରି ଅସ୍ଥିର ହୋଇ ପଡ଼ିଥିଲେ । ସୋମବାର ଦିନ ବରେଲି ପର୍ଯ୍ୟନ୍ତ ଯିବାପାଇଁ ଗୋଟିଏ ସେକେଣ୍ଡକ୍ଲାସ ଡବା ରିଜର୍ଭ କରିବା ପାଇଁ ସେ ନବଲଙ୍କୁ କହିଲେ । ବରେଲିରୁ କାଠଗୋଦାମ ପର୍ଯ୍ୟନ୍ତ ରିଜର୍ଭପାଇଁ ତାର କରିଦେବାକୁ ମଧ୍ୟ କହିଲେ । ଷ୍ଟେସନ ଯାଇ ସେ କାମ ଶୀଘ୍ର କରିଦେବା ଦରକାର । ଏଠି ଆଉ ବେଶି ଦିନ ରହିବା ବୃଥା ।"

ସନ୍ଧ୍ୟାବେଳେ ନବଲ ଷ୍ଟେସନ ଯାଇ ରିଜର୍ଭେସନ୍ କରି ଫେରିଲା ବେଳକୁ ମନ ତାର ଟିକିଏ ହାଲୁକା ହୋଇ ଯାଇଥିଲା । ହଠାତ୍ ସେ କାମତାନାଥଙ୍କ ଘର ଆଡ଼କୁ ତାର ସାଇକେଲ ମୁହାଁଇଦେଲା ।

ରାୟବାହାଦୁର ଭିତର ବଗିଚାରେ ବସି କ'ଣ ପଢ଼ୁଥିଲେ । ନବଲଙ୍କୁ ଦେଖିଲା ମାତ୍ରେ କହିଲେ, "ଆରେ ନବଲ, ତମେ ତ ବହୁତ ଦିନ ପରେ ଦେଖା ଦେଉଛ ? ତମ ବାପାଙ୍କ ଦେହ କିମିତି ଅଛି ?"

"ଏଠି ତାଙ୍କ ଅବସ୍ଥାରେ କିଛି ପରିବର୍ତ୍ତନ ନ ହେବାରୁ ଡାକ୍ତର ତାଙ୍କୁ ଭୁୱାଲି ନେବାପାଇଁ ଉପଦେଶ ଦେଇଛନ୍ତି ।"

"ପରିବର୍ତ୍ତନ ହେବ କ'ଣ ? ଦେଖୁଛ ତ କିମିତି ଗରମ ପଡ଼ୁଛି । ମେ ଛ' ତାରିଖକୁ ଜାହାଜରେ ଜାଗା ମିଳିଛି । ତାହେଲେ ଆମେ ମେ ତିନି ତାରିଖରେ ବମ୍ବେ ଚାଲିଯିବା । ଆଜି ତ ବାଇଶ ଅପ୍ରେଲ । ତମେ ବି ମେ ତିନି ତାରିଖରେ ଏଠୁ ଯିବାପାଇଁ ପ୍ରସ୍ତୁତ ହୋଇଯାଅ । ତମପାଇଁ, ମୋପାଇଁ ଓ ଉଷାପାଇଁ ତିନିଟା ଜାଗା ରିଜର୍ଭ କରାଯାଇଛି ।"

"ମୁଁ ତ ଆପଣମାନଙ୍କ ସାଙ୍ଗରେ ଯାଇପାରିବି ନାହିଁ । ସୋମବାର ଦିନ ମୁଁ ବାପାଙ୍କ ସାଙ୍ଗରେ ଭୁବାଲି ଯାଉଛି ।"

ରାୟବାହାଦୁର କାମତାନାଥ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତମେ ଭୁବାଲି ଯାଉଛ ? ଗଙ୍ଗା ତୁମକୁ କମିତି ସାଙ୍ଗରେ ଭୁବାଲି ନେଉଛି ? ବିଲ୍‌କୁଲ୍ ଭୁଲ କଥା । ତମେ ମୋ ସାଙ୍ଗରେ ସ୍ୱିଜରଲଣ୍ଡ ଯିବ । ଜ୍ୱାଲାପ୍ରସାଦଙ୍କର ଗଙ୍ଗା ସାଥିରେ ଯିବା ଉଚିତ ଥିଲା ।"

ଏହି ସମୟରେ ଉଷା ଘରୁ ବାହାରି ଆସି ନବଲକୁ ଦେଖି ପଚାରିଲା, "ଆପଣ ଆସିଗଲେ ନବଲ ବାବୁ ! କାଲି ବାପାଙ୍କ ପାଖକୁ ବମ୍ବେରୁ ଚିଠି ଆସିଛି ଯେ—ଆମେ ମେ ଛ' ତାରିଖରେ ଜାହାଜ ଚଢ଼ିବା । ମେ' ଦିନ ତାରିଖରେ ଆମକୁ ଏଠୁ ବମ୍ବେ ଯିବାକୁ ହେବ ।"

ନବଲ ଉଦାସ ଭାବରେ କହିଲା, "କିନ୍ତୁ ଉଷା, ମୁଁ ତ ତୁମମାନଙ୍କ ସାଙ୍ଗରେ ଯାଇ ପାରିବି ନାହିଁ । ବାପାଙ୍କ ବେମାରିଯୋଗୁଁ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳି ଯାଇଛି । ଭୁବାଲି ଯିବାପାଇଁ ଡାକ୍ତର ତାଙ୍କୁ ଉପଦେଶ ଦେଇଛନ୍ତି । ମୁଁ ତାଙ୍କ ସାଙ୍ଗରେ ଭୁବାଲି ଯାଉଛି ।"

"ଯେଉଁ ଭୁବାଲି ସିନେଟୋରିଅମ୍‌ରେ ରାଜଯକ୍ଷ୍ମା ଜୀବାଣୁ ଭର୍ତ୍ତି ହୋଇଛନ୍ତି—ତମେ ଆଦୌ ସେଠିକି ଯାଇପାରିବ ନାହିଁ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଗଙ୍ଗା ତୁମକୁ ସାଙ୍ଗରେ ନେବାପାଇଁ କମିତି କହୁଛି । ତୁମକୁ ପୁଣି ବିଲାତରେ ଆଇ. ସି. ଏସ୍. ପଢ଼ି ପରୀକ୍ଷା ଦେବାକୁ ହେବ ।"

"ସେଥିପାଇଁ ତ ଅନେକ ସମୟ ଅଛି । ମେ ଜୁନ୍ ଦୁଇ ମାସ ମୁଁ ବାପାଙ୍କ ପାଖରେ ରହିବି—ତାପରେ ଜେଜେବାପା ଯାଇ ରହିବେ ।"

ବର୍ତ୍ତମାନ ଉଷା ନବଲକୁ ବୁଝାଇବା ପାଇଁ ଚେଷ୍ଟାକରି କହିଲା, "ମୁଁ ତ ପୂରାପୂରି ଆଶା କରି ବସିଥିଲି ଆପଣ ଯିବେ ବୋଲି । ବିପତ୍ତି ତ ସମସ୍ତଙ୍କର ଆସେ; କିନ୍ତୁ ବିପତ୍ତି ଭିତରେ ମଣିଷ ନିଜକୁ ହଜାଇଦେବ କାହିଁକି ମୁଁ ବୁଝିପାରୁନାହିଁ । ଆପଣ ଏଠି ରୁହନ୍ତୁ ବା ବିଲାତ ଯାଆନ୍ତୁ, ସେଥିରେ ବାପାଙ୍କ ବେମାରି ସଙ୍ଗେ କ'ଣ ସମ୍ପର୍କ ଅଛି ? ହୁଏତ ଆପଣ ଆମ ସାଙ୍ଗରେ ନ ଗଲେ, ଆପଣଙ୍କର ଯିବା ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇପାରେ ।"

ନବଲ ଉଷାକୁ ଚାହିଁ ଦେଖିଲା ଯେ, ତା ଉପରେ ଯେଉଁ ବିପତ୍ତି ପଡ଼ିଛି ସେଥିପାଇଁ ଉଷା ମନରେ କୌଣସି ସହାନୁଭୂତି ବା କୌଣସି ଭାବନା ନାହିଁ । ସେ ଟିକିଏ ବିରକ୍ତ ହୋଇ କହିଲା, "ହଁ ଉଷାରାଣୀ, ମୁଁ ଜାଣେ, ଖୁବ୍ ସମ୍ଭବତଃ ମୋ ଯିବା ବନ୍ଦ ହୋଇ-ଯାଇପାରେ; କିନ୍ତୁ ଏପରି ବେମାରି ଅବସ୍ଥାରେ ବାପାଙ୍କୁ କ'ଣ ମୁଁ ଛାଡ଼ି ଯାଇପାରେ ? ବର୍ତ୍ତମାନ ମୁଁ ଯଦି ତାଙ୍କ ପାଖରେ ନରହେ, ତାଙ୍କର କେତେ କଷ୍ଟ ହେବ, ତମେ ଟିକିଏ

ଭାବିଲି ଦେଖି । ଏ ପ୍ରକାର ଭାବନା ନ କରି ମଣିଷ ରହି ପାରିବ କିପରି ?''

ରାୟବାହାଦୁର କାମତାନାଥ ଉତ୍ତର ଦେଲେ, ''ମୁଁ କହୁଛି ତମର ଏହି ଭାବନା ତମକୁ ନଷ୍ଟ କରିଦେବ ନବଲ ! ମୁଁ ଭାବୁଛି ଜ୍ୱାଲାପ୍ରସାଦ ଓ ଗଙ୍ଗାପ୍ରସାଦ ଭୁବାଲି ଯିବାପାଇଁ ତମକୁ କେବେ କହି ନ ଥିବେ । ସେମାନେ ନିଶ୍ଚୟ ମନା କରିଥିବେ । କ'ଣ ମୁଁ ଭୁଲ କହୁଛି ?''

''ମୁଁ ଯିବାପାଇଁ କେଜେବାପା ଚାହାନ୍ତି ନାହିଁ—ମାତ୍ର ବାପା ମୋତେ ମନାକରି ନାହାନ୍ତି ।''

କାମତାନାଥ ରୁକ୍ଷ ସ୍ୱରରେ କହିଲେ, ''ତମ ବାପାଙ୍କର ବୁଦ୍ଧି ଭ୍ରମ ହୋଇଗଲାଣି । ଏଇ ରୋଗ ତାଙ୍କର ସବୁ ବୁଦ୍ଧି ନଷ୍ଟ କରିଦେଲାଣି । ଆଚ୍ଛା, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା କରିବି । ତମେ ମୋ ସଙ୍ଗେ ସ୍ୱିଜରଲାଣ୍ଡ ଯା' ବା ନ ଯା'; କିନ୍ତୁ ତୁମର ଭୁବାଲି ଯିବା ଆଦୌ ଉଚିତ ନୁହେଁ । ମୁଁ ଏହି ପ୍ରସ୍ତାବକୁ ବନ୍ଦ କରିବା ପାଇଁ ଅନ୍ତତଃ ଚେଷ୍ଟାକରିବି । ଏଟା ଗୋଟିଏ ଛୁଆଁ ରୋଗ । ତମେ ବାପାଙ୍କଠାରୁ ଅଲଗା ରହିବା ଉଚିତ ।''

କାମତାନାଥଙ୍କର ଏହି କଥା ଶୁଣି ନବଲକିଶୋର ବଡ଼ ମର୍ମାହତ ହୋଇପଡ଼ିଲା । ଛୁଆଁ ରୋଗ ବୋଲି ସେ ନିଜ ବାପାଙ୍କଠାରୁ ଭିନ୍ନ ରହିବ ? ଛୁଆଁ ରୋଗ ବୋଲି ପୁଅ ଯଦି ବାପାଙ୍କଠାରୁ ଦୂରେଇ ରହିବ ତାହେଲେ ଅନ୍ୟ କିଏ ତାଙ୍କର ସେବା କରିବ ? ଇଏ ମନୁଷ୍ୟର ସଂସାରୀ ବୁଦ୍ଧି ନା ସଂସାରର ଏହି ବିଧାନ ? ତାପରେ ସେ ଭଗ୍ନସ୍ୱରରେ ପଚାରିଲା, ''ତାହେଲେ ଆପଣ କହୁଛନ୍ତି—ମୁଁ ମୋ ବାପାଙ୍କଠାରୁ ଅଲଗା ରହିବି ? ଏପରି ଜଘନ୍ୟ ପାପ କରିବାପାଇଁ ଆପଣ ମୋତେ ଉପଦେଶ ଦେଉଛନ୍ତି ? ତାହେଲେ ତ ଦୁନିଆରେ ପର ଆପଣାର କେହି ରହିବେ ନାହିଁ । ଦୁନିଆଟା ଗୋଟିଏ ନରକରେ ପରିଣତ ହୋଇଯିବ । ନା—ଏସବୁ କଥା ହୋଇପାରିବ ନାହିଁ । ଶେଷପର୍ଯ୍ୟନ୍ତ ମୁଁ ବାପାଙ୍କ ସାଙ୍ଗରେ ରହିବି । ସୋମବାର ଦିନ ତାଙ୍କ ସଙ୍ଗେ ଯାଉଛି ବୋଲି କହି-ଦେବାପାଇଁ ମୁଁ ଆସିଥିଲି । ବର୍ତ୍ତମାନ ମୁଁ ଚାଲିଯାଉଛି, ବାପା ତେଣେ ଅନାଇ ବସିଥିବେ !''

ଉଷା ନବଲକୁ ଅଟକାଇ କହିଲା, ''ଅନେକ ଦିନ ପରେ ଆସିଛନ୍ତି । ଟିକିଏ ବସନ୍ତୁ, ବିଦ୍ୟା ତ ଆସିଥିବ । ସେ ପଢ଼ିବାପାଇଁ ବନାରସ ଗଲାଦିନୁ ଆଉ ଦେଖାସାକ୍ଷାତ୍ ହୋଇ-ନାହିଁ । ତାକୁ ଦେଖିବାପାଇଁ ମୋର ଭାରି ଇଚ୍ଛା ହେଉଛି ।''

''ବାପାଙ୍କ ସେବାରେ ସେ ବି ଲାଗିଛି । ଦିନରାତି ଚବିଶ ଘଣ୍ଟା ଦେଖାଶୁଣା କରୁଛି । ଆଚ୍ଛା ମୁଁ ତାକୁ କହିଦେବି । ଆମର ସେ ରୋଗୀ ଘରକୁ ଯିବାପାଇଁ ତମ ବାପା ତମକୁ ଛାଡ଼ିବେ ନାହିଁ । ଯାହାହେଉ ଆମ୍ଭେମାନେ ସୋମବାର ଦିନ ଚାଲିଗଲା ପରେ ବିଦ୍ୟାକୁ

ଟିକଏ ଫୁରୁସତ୍ ମିଳିବ ।''

ନବଲ କଥାରେ ଯେଉଁ ବ୍ୟଙ୍ଗ ରହିଥିଲା ଉଷା ତାକୁ ଧରିପାରିଲା ନାହିଁ; କିନ୍ତୁ କାମତାନାଥ ତାକୁ ଠିକ୍ ବୁଝିପାରି କହିଲେ, "ମୁଁ କାଲି ବା ପଅରଦିନ ଉଷାକୁ ସଙ୍ଗରେ ନେଇ ଯିବି । ତମେ ବିଦ୍ୟାକୁ କହିଦେବ, ଉଷା ତାକୁ ଭାରି ଖୋଜୁଛି ।'' ତାପରେ ସେ ଉଷାକୁ କହିଲେ, "ଖାଇବାକୁ ତ ହୋଇଗଲାଣି । ନବଲକୁ ଖାଇବାକୁ ଦିଅ । ତା'ପରେ ସେ ଯିବ ।''

କାମତାନାଥଙ୍କ ଘରେ ନବଲକୁ ରୁଦ୍ଧଶ୍ୱାସ ପରି ଲାଗୁଥିଲା । ସେ ଉଠିପଡ଼ି କହିଲା, "କ୍ଷମା କରିବେ ଆଜ୍ଞା, ଆଜି ଖାଇବା କଥା ହୋଇପାରିବ ନାହିଁ । ବାପା ତେଣେ ମୋତେ ଚାହିଁ ବସିଥିବେ ।'' ଏତିକି କହି ସେ ସେଠୁ ବାହାରିଗଲା ।

ନବଲ ଘରକୁ ଫେରିଲାବେଳକୁ ମୁହଁ ତାର ଶୁଖିଯାଇଥିଲା । କାମତାନାଥଙ୍କ ଘରଠି ତା'ର ଯେଉଁ ତିକ୍ତ ଅନୁଭୂତି ହୋଇଥିଲା, ସେଥିରେ ସେ ବହୁତ ବିଚଳିତ ହୋଇ ପଡ଼ିଥିଲା । ବିଦ୍ୟା ତା'ର ଶୁଖିଲା ଚେହେରା ଦେଖି ପଚାରିଲା, "କ'ଣ ହେଲା ଭାଇ ! କୁଆଡ଼େ ଯାଇଥିଲ, ତମେ ଏତେ ଶୁଖିଲା ଦେଖାଯାଉଛ କାହିଁକି ?''

"ଉଷା ଘରଠିକି ଯାଇଥିଲି ବିଦ୍ୟା, ସେ ତୋତେ ବହୁତ ମନେ ପକାଉଛି । ବହୁତ ଦିନହେଲା ତୋ ସଙ୍ଗେ ଦେଖାହୋଇ ନାହିଁ ବୋଲି କହୁଥିଲା ।''

"କ'ଣ କହିବି ଭାଇ, ତମେ ତ ଦେଖୁଛ ଆସିଲାଦିନୁ ଏଠି ଜଞ୍ଜାଳ ଲାଗିଛି । ତମେ ଭୁବାଲି ଯିବାପରେ ସମୟ ମିଳିବ, ସେତିକିବେଳେ ଯାଇ ଦେଖାକରିବି; କିନ୍ତୁ ତମର ଏଥିରେ ଏତେ ଉଦାସ ହେଣିବାର କଥା କ'ଣ ଅଛି ?''

"ନାହିଁ ବିଦ୍ୟା, ମୁଁ ଏଥିପାଇଁ ଉଦାସ ନୁହେଁ ଯେ ।'' ତାପରେ ଟିକଏ ଅଟକିଯାଇ ପୁଣି କହିଲା, "ଜାଣିଛୁ ନା, କାମତାନାଥ ଚାହାନ୍ତି, ମୁଁ ବାପାଙ୍କୁ ଛାଡ଼ି ତାଙ୍କ ସାଙ୍ଗରେ ବିଲାତ ଯିବି । ସେ ମୋ ପାଇଁ ସ୍ୱିଜରଲାଣ୍ଡ ପର୍ଯ୍ୟନ୍ତ ଟିକେଟ କରିଦେଇଛନ୍ତି ।''

ବିଦ୍ୟା ଚମକିପଡ଼ି ପଚାରିଲା, "ଭାଇ ! ତମେ କ'ଣ ସତରେ ସେମାନଙ୍କ ସଙ୍ଗେ ଯାଉଛ ?''

ନବଲ ହସିଦେଇ କହିଲା, "ତୁ ପାଗଳୀ ନା କ'ଣ ? ବାପାଙ୍କୁ ବେମାର ଅବସ୍ଥାରେ ଛାଡ଼ିଦେଇ ମୁଁ ବିଲାତ ଯିବି ? ମୁଁ ତ ମନା କରିଦେଲି; କିନ୍ତୁ ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଏମିତି ଗୋଟିଏ କଥା ସେ କହିଲେ କେମିତି ?''

ବିଦ୍ୟାର ଆଖିରେ ଲୁହ ପୂରିଗଲା । ସେ କହିଲା, "ଭାଇ ! ତମେ ମନା କରିଦେଇ ଆସିଲଟି ! ତମେ ସେଇଆ କରିବ ବୋଲି ମୋର ଆଶା ଥିଲା । ଆମ ଦୁହିଙ୍କର ବାପା ବେମାର । ଆମ ମୁଣ୍ଡ ଉପରେ ଯେଉଁ ବିପତ୍ତି ତାହା ସେ ବୁଝିବେ କିମିତି ? ବୋଧହୁଏ

ତୁମେ ତାଙ୍କ ଘରେ କିଛି ଖାଇନ, ମୁହଁ ତ ଶୁଖିଲା ଦିଶୁଛି । ଚାଲ ଭାଇ—ଖାଇବ ଚାଲ ।”

ଭୁବାଲୀ ଯାତ୍ରାପାଇଁ ଆବଶ୍ୟକୀୟ ଜିନିଷପତ୍ର କିଣିବାଲାଗି ଶନିବାର ଦିନ ସକାଳେ ନବଲ ବଜାରକୁ ବାହାରିଗଲା । ବେଶୀ କିଛି କିଣିବାକୁ ନ ଥିବାରୁ ସେ ପ୍ରାୟ ଦଶଟା ବେଳକୁ ଫେରିଆସିଲା । ଆସିଲାବେଳକୁ ଡ୍ରଇଂରୁମ୍ ପାଖରେ ଶୁଣିଲା କାମତାନାଥ ଜ୍ୱାଳାପ୍ରସାଦଙ୍କୁ କହୁଛନ୍ତି, “ଆପଣ ଏଡ଼େ ଅନୁଭବୀ ଲୋକ ହୋଇ ଏମିତି ମୂର୍ଖକାମ କେମିତି କରୁଛନ୍ତି ? ଆପଣ ନବଲକୁ ଗଙ୍ଗା ସାଙ୍ଗରେ ଭୁବାଲୀ ପଠାଉଛନ୍ତି, ଯାହାର ଫଳ କ’ଣ ହେବ ଜାଣିଛନ୍ତି !”

ଜ୍ୱାଳାପ୍ରସାଦ ଚୁପ୍ ଚୁପ୍ କରି କହିଲେ, “ମୁଁ କ’ଣ କରିବି, ମୁଁ ତ ଏତେ ମନାକଲି; କିନ୍ତୁ ସେ ମାନୁନାହିଁ । ଗଙ୍ଗାର କାହିଁକି ତା’ପ୍ରତି ଏତେ ମୋହ ମୁଁ ତା’ ବି ବୁଝିପାରୁ ନାହିଁ । ଗଙ୍ଗାକୁ ଏସବୁ କିଛି କହିବାକୁ ମୁଁ ଚାହେଁ ନାହିଁ ।”

“ଆପଣ ଯଦି କିଛି କହିବାକୁ ଚାହାନ୍ତି ନାହିଁ, ତାହେଲେ ନିଜର ଏହି କାପୁରୁଷତା ଯୋଗୁଁ ବଂଶଟାକୁ ଧ୍ୱଂସ କରିଦେବାକୁ କ’ଣ ଆପଣ ଚାହାନ୍ତି ! ଗୋଟିଏ ବିପଦ ତ ମୁଣ୍ଡ ଉପରକୁ ଆସିଛି; କିନ୍ତୁ ଆଉ ଗୋଟିଏ ବିପଦକୁ ତ ଆଡ଼େଇ ଦେଇ ହେବ ।”

ଜ୍ୱାଳାପ୍ରସାଦ ବହୁତ ହତାଶ ହୋଇ କହିଲେ, “କିନ୍ତୁ ଏ ବିପଦରୁ କିମିତି ରକ୍ଷା ପାଇବାକୁ ହେବ, ମୋ ବୁଦ୍ଧିକୁ କିଛି ଦିଶୁ ନାହିଁ ।”

“ହଁ, ସେହି କଥା କହୁଛି । ଆମେ ସ୍ୱିଜରଲାଣ୍ଡ ଯାଉଛୁ । ନବଲକୁ ଆମେ ସଙ୍ଗରେ ନେଇଯାଉଛୁ । ସେଇଠୁ ସେ ବିଲାତ ଚାଲିଯିବ ।”

ଜ୍ୱାଳାପ୍ରସାଦ ଟିକିଏ ଇତସ୍ତତଃ ହୋଇପଡ଼ି କହିଲେ, “ରାୟବାହାଦୁର, ଆପଣ ତ ଗଙ୍ଗା କଥା ଜାଣନ୍ତି । ଇଂଲଣ୍ଡ ଯିବା ଏବଂ ସେଠି ରହିବା ପାଇଁ ବର୍ତ୍ତମାନ ଯେତେ ଟଙ୍କା ଦରକାର ଗଙ୍ଗାକୁ ସେକଥା ବର୍ତ୍ତମାନ କହିବା ଉଚିତ ନୁହେଁ ।”

ରାୟବାହାଦୁର କାମତାନାଥ ଜୋରରେ ହସିଦେଇ କହିଲେ, “ଡେପୁଟି ସାହେବ, ନବଲ ଗଙ୍ଗାର ଯେମିତି ପୁଅ, ମୋର ବି ସେମିତି ପୁଅ । ଆପଣ କ’ଣ ଭାବୁଛନ୍ତି, ଆପଣଙ୍କ ଖର୍ଚ୍ଚରେ ମୁଁ ନବଲକୁ ସଙ୍ଗରେ ନେଇଯାଉଛି ? ବିଲାତ ଯିବା, ସେଠି ପଢ଼ିବା ଓ ଫେରିବା, ସବୁ ଖର୍ଚ୍ଚ ମୁଁ ଦେବି ।”

ଜ୍ୱାଳାପ୍ରସାଦଙ୍କଠାରେ ବର୍ତ୍ତମାନ ପ୍ରାଣ ପଶିଲା । ସେ କହିଲେ, “ତାହେଲେ ଆପଣ ଗଙ୍ଗା ସାଙ୍ଗରେ କଥା ହୋଇଯା’ନ୍ତୁ । ନବଲ ତ ମୋ କଥା ଶୁଣିବ ନାହିଁ । ଗଙ୍ଗା ଜୋର କଲେ ସେ ମନାକରି ପାରିବ ନାହିଁ । ଆଚ୍ଛା, ଆପଣ ଆସିଛନ୍ତି ବୋଲି ମୁଁ ଗଙ୍ଗାକୁ ଖବର ଦେଇଦେଉଛି ।”

ରାୟବାହାଦୁର କାମତାନାଥ ଜ୍ୱାଲାପ୍ରସାଦଙ୍କ ସଙ୍ଗରେ ଗଙ୍ଗାପ୍ରସାଦଙ୍କ ପ୍ରକୋଷ୍ଠରେ ପହଞ୍ଚିବା ପରେ ଗଙ୍ଗାପ୍ରସାଦ ସହାସ୍ୟ ଅଭିନନ୍ଦନ ଜଣାଇ କହିଲେ, "ଆସନ୍ତୁ ରାୟବାହାଦୁର ସାହେବ, ବଡ଼ ଦୟା ଆପଣଙ୍କର ।"

ରାୟବାହାଦୁର ଗଙ୍ଗାପ୍ରସାଦଙ୍କ ଖଟକୁ ଛାଡ଼ି ଅଳ୍ପ ଦୂରରେ ପଡ଼ିଥିବା ଗୋଟିଏ ଚଉକି ଉପରେ ବସି ଗଲା ପରେ କହିଲେ, "ଶୁଣିଲି ଆପଣ ପଅରଦିନ ଭୁବାଲି ଯାଉଛନ୍ତି । ମୋର ଧାରଣା ଆପଣଙ୍କର ବହୁତ ଆଗରୁ ଯିବା ଉଚିତ ଥିଲା । ଏଠି ଏମିତିଆ ଗରମରେ ଔଷଧ କ'ଣ କିଛି କାମ ଦେବ ?"

ଗଙ୍ଗାପ୍ରସାଦ କହିଲେ, "ଡାକ୍ତର ବି ସେଇଆ କହୁଛନ୍ତି । ସେଠି ସେପ୍‌ଟେମ୍ବର ପର୍ଯ୍ୟନ୍ତ ରହିବାକୁ ହେବ ।"

କାମତାନାଥ କହିଲେ, "ହଁ ଅନ୍ତତଃ ସେପ୍‌ଟେମ୍ବର ପର୍ଯ୍ୟନ୍ତ ରହିବାକୁ ହେବ; କିନ୍ତୁ ଭଲ ହୋଇଗଲା ପରେ ମଧ୍ୟ କେତେବର୍ଷ ପର୍ଯ୍ୟନ୍ତ ଖରାଦିନେ ଆପଣଙ୍କୁ ବରାବର ପାହାଡ଼ ଉପରକୁ ଯିବାକୁ ହେବ । ଭାରି କଷ୍ଟ ରୋଗ । ଏହାର ଏକମାତ୍ର ଔଷଧ ହେଉଛି ପାହାଡ଼ ଉପରର ପବନ ଓ ବିଶ୍ରାମ ।"

ଟିକିଏ ରହିଯାଇ କାମତାନାଥ ପୁଣି କହିଲେ, "କଲେକ୍‌ଟର ସାହେବ, ମୁଁ ନବଲ କଥା ଭାବୁଥିଲି । ମୁଁ ସ୍ୱିଜରଲାଣ୍ଡ ଯାଉଛି । ନବଲକୁ ସାଙ୍ଗରେ ନେଇଯିବା ପାଇଁ ଚାହୁଁଛି । ଆଇ. ସି. ଏସ୍. ପାଇଁ ତା'ର ଇଂଲଣ୍ଡ ଯିବା କଥା । ସ୍ୱିଜରଲାଣ୍ଡରୁ ସେ ଚାଲିଯିବ । ତା ପାଠପଢ଼ା ଖର୍ଚ୍ଚ ବିଷୟରେ ଆପଣ ଆଦୌ ଚିନ୍ତା କରିବେ ନାହିଁ । ସେ ଆପଣଙ୍କର ଯେମିତି ପୁଅ ମୋର ମଧ୍ୟ ସେମିତି ପୁଅ । ତାର ସବୁ ଖର୍ଚ୍ଚ ମୁଁ ବହନ କରିବି ।"

କାମତାନାଥଙ୍କର ଏହି କଥା ଶୁଣି, ଗଙ୍ଗାପ୍ରସାଦଙ୍କ ଚେହେରାରେ ପ୍ରସନ୍ନତା ଦେଖା ଦେଲା । ରୋଗରେ ପଡ଼ିବା ପରେ ଏମିତି ପ୍ରସନ୍ନତା ଏଇ ପ୍ରଥମ । ଗଙ୍ଗାପ୍ରସାଦ ରୋଗରେ ପଡ଼ିବାଦିନୁ ତାଙ୍କ ପରିବାର ଲୋକଙ୍କୁ ଭାରି ଚିନ୍ତା ହୋଇଯାଇଥିଲା । କାରଣ ସେ ଯେଉଁ ଦରମା ପାଉଥିଲେ, ତାକୁ ବରାବର ମୁକ୍ତହସ୍ତରେ ଖର୍ଚ୍ଚ କରି ଦେଉଥିଲେ । ଏବେ ମୃତ୍ୟୁର ଛାୟା ଆସି ଯେତେବେଳେ ମୁଣ୍ଡ ଉପରେ ଦେଖା ଦେଲା, ସେତେବେଳେ ତାଙ୍କର ଜ୍ଞାନ ଉଦୟ ହେଲା ।

ଗଙ୍ଗାପ୍ରସାଦ ଭଗ୍ନସ୍ୱରରେ କାମତାନାଥଙ୍କୁ କହିଲେ, "ହଁ, ବାପା ତ ମୋ ପାଖରେ ଅଛନ୍ତି, ଆପଣ ନବଲକୁ ସଙ୍ଗରେ ନେଇଯା'ନ୍ତୁ । ଯେଉଁଦିନଠାରୁ ଉଷା ସହିତ ନବଲର ବାହାଘର କଥା ଆପଣ ଉଠାଇଲେଣି, ସେଦିନ୍ ନବଲ ଆପଣଙ୍କର ହୋଇ-ସାରିଲାଣି ।" ତା'ପରେ ସେ ବାପାଙ୍କୁ ଚାହିଁ କହିଲେ, "ନବଲକୁ ଟିକିଏ ଡାକିଦିଅନ୍ତୁ,

ମୁଁ ତାକୁ କହିଦେବ ।"

ଜ୍ୱାଲାପ୍ରସାଦ ନବଲକୁ ଡାକ ଆଣିଲେ । ସେ ଆସି ଚୁପ୍‌ଚାପ୍ ମୁଣ୍ଡନୁଆଇଁ ଛିଡ଼ାହୋଇ ପଚାରିଲା, "କାହିଁକ ଡାକିଲେ ?"

ଗଙ୍ଗାପ୍ରସାଦ କହିଲେ, "ନବଲ, କାମତାନାଥ ହଷାକୁ ନେଇ ସ୍ୱିଜରଲଣ୍ଡ ଯାଉଛନ୍ତି । ସେ ତୋ ଯିବାପାଇଁ ମଧ୍ୟ ବନ୍ଦୋବସ୍ତ କରି ଦେଇଛନ୍ତି ।"

ନବଲ କହିଲା, "ହଁ, ମୁଁ ସେକଥା ଜାଣେ ।"

"ତୁ ତାଙ୍କ ସାଥିରେ ଚାଲିଯା, ସେଇଠୁ ବିଲାତ ଚାଲିଯିବୁ ।"

"ହଁ ମୁଁ ଏ କଥା ଶୁଣିଛି । ରାୟବାହାଦୁର ସାହେବ ମଧ୍ୟ ମୋ ବିଲାତଖର୍ଚ୍ଚ ଦେବାପାଇଁ ରାଜିଅଛନ୍ତି । କିନ୍ତୁ ମୋତେ ତ ଆପଣଙ୍କ ସଙ୍ଗରେ ଭୁବାଲି ଯିବାକୁ ହେବ । ଆପଣ ପ୍ରଥମେ ଭଲ ହୋଇଯାଆନ୍ତୁ—ପରେ ଯାହା କରିବାକଥା ମୁଁ ଠିକ୍ କରିବି ।"

ଅବଶ୍ୟ ନବଲ କଥା ଗଙ୍ଗାପ୍ରସାଦଙ୍କୁ କିଛି ଖରାପ ଲାଗିଲା ନାହିଁ । ସେ ରାୟବାହାଦୁରଙ୍କୁ ଚାହିଁ କହିଲେ, "ଆପଣ ତ ତା' କଥା ଶୁଣିଲେ । ଆପଣ ତାକୁ ଏବେ ବୁଝାନ୍ତୁ ।"

କାମତାନାଥ ନବଲକୁ ଚାହିଁ କହିଲେ, "ନବଲ, ଏମିତି ଜିଦ୍ କରିବା ଉଚିତ ନୁହେଁ । ଇଏ ତୋର ଜୀବନର ପ୍ରଶ୍ନଟି !"

ନବଲ ଧୀରସ୍ଥିର ଭାବରେ ଉତ୍ତର ଦେଲା, "ମନୁଷ୍ୟ ଜୀବନର ମାୟା ମମତାଠାରୁ ଭବିଷ୍ୟତର ପ୍ରଶ୍ନଟା ବେଶୀ ବଡ଼ ଜିନିଷ ନୁହେଁ । ବାପାଙ୍କୁ ଏହି ଅବସ୍ଥାରେ ଛାଡ଼ି ମୁଁ କୌଣସି ଆଡ଼େ ଯିବା ପାଇଁ କଳ୍ପନା ମଧ୍ୟ କରିପାରୁନାହିଁ । ଆପଣ ବୃଥାରେ ମୋତେ କର୍ତ୍ତବ୍ୟପଥରୁ ବିଚ୍ୟୁତ କରିବାପାଇଁ ଚେଷ୍ଟା କରୁଛନ୍ତି । ମୁଁ ଥରେ ନାହିଁ କରିଛି —ମୁଁ ଯିବି ନାହିଁ ।"

ନବଲର ଜିଦ୍ ଦେଖି କାମତାନାଥ ରାଗିଯାଇ କହିଲେ, "ନବଲ, ଶାସ୍ତ୍ରରେ ଠିକ ଲେଖା ହୋଇଛି, ବିନାଶ କାଳେ ବିପରୀତ ବୁଦ୍ଧି । ମୋର ଯାହା କହିବାର ଥିଲା ମୁଁ କହି ସାରିଛି ।" ତାପରେ ସେ ଯିବା ପାଇଁ ଉଠି ଛିଡ଼ା ହେଲେ ।

ନବଲର ମନେ ହେଉଥିଲା କାମତାନାଥଙ୍କୁ ଏ କଥାର କଡ଼ା କଡ଼ା ଜବାବ ଦେଇଥାନ୍ତା; କିନ୍ତୁ ସବୁ ସହିଯାଇ ସେ ସଂଯତ ଭାବରେ କହିଲା, "ଆପଣ ଠିକ୍ କହୁଛନ୍ତି । ହେଲେ ଏହି ବିପତ୍ତି କାଳରେ ମୋର ବୁଦ୍ଧି ମୋର ସହାୟକ ହେଉ । ଯେଉଁ ପିତାମାତା ମୋର ଜନ୍ମଦାତା ତାଙ୍କଠୁ ମୋତେ ଭିନ୍ନ କରିବାର ଚେଷ୍ଟା ଆପଣଙ୍କ ପକ୍ଷରେ ପ୍ରଶଂସନୀୟ ନୁହେଁ । ଭବିଷ୍ୟତ କଥା ଯାହା କହିଲେ, ଆଇ. ସି. ଏସ୍ ନ ହୋଇ

ମଧ୍ୟ ମୁଁ ବାହାର ପାରିବ ।" ଏତକ କହି ନବଲ ଚଟ୍‌କିର ଘର ଭିତରକୁ ଚାଲିଗଲା ।

ଗଙ୍ଗାପ୍ରସାଦ କାମତାନାଥଙ୍କୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିଲେ, "ତା କଥା କିଛି ଭୁଲ ବୁଝିବେ ନାହିଁ ରାୟବାହାଦୁର ସାହେବ । ସେ ମୋତେ ବହୁତ ଭଲପାଏ । ଆପଣ ବିଶ୍ୱାସ କରନ୍ତୁ, ମୁଁ ତାକୁ ଜୁଲାଇ କିମ୍ବା ଅଗଷ୍ଟ ମାସରେ ନିଶ୍ଚୟ ବିଲାତ ପଠାଇ ଦେବି ।"

ନବଲ ଧନସାର ଭୁବାଲି ଯାଆପାଇଁ ବ୍ୟବସ୍ଥା କରି ସନ୍ଧ୍ୟାବେଳେ ଗଙ୍ଗାପ୍ରସାଦଙ୍କ ରହିବା ଘରକୁ ଗଲା । ଗଙ୍ଗାପ୍ରସାଦ ତାକୁ କହିଲେ, "ବସ୍ ନବଲ, ଆଜି ମୋ ଦେହ ଟିକିଏ ଭଲ ଲାଗୁଛି ।"

ନବଲ ଗଙ୍ଗାପ୍ରସାଦଙ୍କ ପାଖରେ ଚଉକି ପକାଇ ବସିଗଲା ।

ଗଙ୍ଗାପ୍ରସାଦ ଟିକିଏ ରହିଯାଇ କହିଲେ, "ନବଲ, ତୁ ବୋଧହୁଏ ଶୁଣି ଆଶ୍ଚର୍ଯ୍ୟ ହେବୁ ଆଜି କାମତାନାଥଙ୍କ ସାମନାରେ ତୋର ରୂପ ଦେଖି ମୁଁ ଅବାକ୍ ହୋଇଗଲି ।"

"ମୋର ଯଦି କିଛି ଭୁଲ ହୋଇଥାଏ, ସେଥିପାଇଁ ମୁଁ କ୍ଷମା ମାଗୁଛି ।"

ଗଙ୍ଗାପ୍ରସାଦ ହସିଦେଲେ, ସେ ହସରେ କାରୁଣ୍ୟ ବା ନୂ୍ୟନତା ନ ଥିଲା, ଥିଲା ତାଙ୍କର ପୂର୍ବ ଅକୃତ୍ରିମତା । ସେ କହିଲେ, "ନାହିଁ ନବଲ, କ୍ଷମା ମାଗିବାର କୌଣସି ଆବଶ୍ୟକତା ନାହିଁ ।" ତୋର ସେ ରୂପ ଦେଖି କେବଳ ମୋ ମନରେ ଗର୍ବ ହେଲା ନାହିଁ, ବରଂ ମୋ ମନରେ ଯେତେ ଭୟ ଥିଲା ସବୁ ଚାଲିଗଲା ।"

ନବଲ ଟିକିଏ ଅନ୍ଧାରରେ ପଡ଼ିଗଲା ପରି କହିଲା, "ବାପା ! ମୁଁ ତ ଆପଣଙ୍କ କଥା କିଛି ବୁଝି ପାରିଲି ନାହିଁ ।"

"ଆଚ୍ଛା, ମୋ କଥା ଯେବେ ବୁଝି ପାରିନାହୁଁ, ତାହେଲେ ଶୁଣ । ତୁ ତ ଜାଣିଛୁ, ମୋତେ 'ଗାଲ୍‌ପିଙ୍ଗ୍ ଥାଇସିଜ୍' ହୋଇଛି । ସେ ରୋଗ କେବେ ଭଲ ହୁଏ ନାହିଁ । ମୋର ଯେଉଁଦିନ ପ୍ରଥମେ ରୋଗାକ୍ରାନ୍ତ ହେଲି—ସେଦିନୁ ମୁଁ ଏକଥା ଜାଣିଛି । ସେଦିନୁଁ ମୋ ମନରେ ଭୟ ହୋଇଯାଇଛି । ମୁଁ ଭାବୁଛି ତୁ, ବିଦ୍ୟା, ସୁଧା ଓ କେଓ୍ୱାଲ୍—ତମେ ସବୁ କମିତି କ'ଣ କରିବ । ତୁ ପାଠ ପଢ଼ୁଛୁ । ବିଦ୍ୟାର ବାହାଘର ହେବ । ସୁଧା ଓ କେଓ୍ୱାଲ ନିତାନ୍ତ ପିଲା । ମୋ ମନରେ କେତେ ଭୟ ହୋଇଛି ତୁ କଳ୍ପନା କରିପାରିବୁ ନାହିଁ । ବାପା ବି ବୁଢ଼ା ହୋଇ ଗଲେଣି । ତାଙ୍କର ବା କ'ଣ ଠିକଣା ଅଛି । ସେଥିପାଇଁ ମୁଁ ମରିବା ପାଇଁ ଚାହୁଁ ନାହିଁ । ଜୀବନରେ ମୁଁ କିଛି ସଞ୍ଚୟ କରିପାରି ନାହିଁ କିମ୍ବା ତୁମପାଇଁ କିଛି ବ୍ୟବସ୍ଥା କରି ନାହିଁ । ତମର ସବୁ କମିତି କଣ ହେବ, ସେଇଥିପାଇଁ ମୋ ପ୍ରାଣ ଛଟପଟ ହେଉଛି ।"

ନବଲ ଚୁପ୍‌ଚାପ୍ ବସି ସବୁ ଶୁଣୁଥିଲା । ଗଙ୍ଗାପ୍ରସାଦ ପୁଣି ନିଶ୍ୱାସ ନେଇ କହିଲେ,

"ଆଚ୍ଛା, ମୋତେ ପାଣି ଗ୍ଲାସଟାଏ ଦେ। ଏତିକି କଥା କହିବା ପାଇଁ ମଧ୍ୟ ଦମ୍ ରହୁନାହିଁ।"

ନବଲ ଉଠିକରି ଗଙ୍ଗାପ୍ରସାଦଙ୍କୁ ପାଣି ପିଇବାକୁ ଦେଲା।

ପାଣି ପିଇସାରି ଗଙ୍ଗାପ୍ରସାଦ ପୁଣି କହିଲେ, "କିନ୍ତୁ ଆଜି ଯେତେବେଳେ ମୁଁ ତୋର ଏହି ରୂପ ଦେଖିଲି, ମୋର ସବୁ ଭୟ କୁଆଡ଼େ ଉଭେଇ ଗଲା। ଆଜି ମୁଁ ଜାଣିଲି ତୁ କେତେ ସମର୍ଥ, କେତେ ସ୍ୱାଭିମାନୀ। ତୁ ସମ୍ପଦକୁ ଗୋଡ଼ରେ ଆଡ଼େଇ ଦେଇ ପାହାଡ଼ ପରି ବିପଦକୁ ମଧ୍ୟ ନିଜ ମୁଣ୍ଡ ଉପରେ ନେଇପାରୁ।"

ନିଜର ଏହି ପ୍ରଶଂସା ନବଲକୁ ବେଶୀ ଭଲ ଲାଗୁ ନ ଥିଲା। ସେ କହିଲା, "ଆଚ୍ଛା ସେତିକି ଥାଉ, ଆପଣ ଥକି ଗଲେଣି।"

ଗଙ୍ଗାପ୍ରସାଦ ନବଲକୁ ଧମକ ଦେଇ କହିଲେ, "ମୋ କଥାଟା ପୂରା ଶୁଣିଯା'। ପ୍ରତିବାଦ୍ କର ନାହିଁ। ତୁ ଜା'ଣୁନା, ମୋ ଜୀବନରେ ସମସ୍ତ ଅବସାଦ ଉଭେଇ ଯାଇଛି। ମୋର ବର୍ତ୍ତମାନ କୌଣସି ଚିନ୍ତା ନାହିଁ ବା କଷ୍ଟ ନାହିଁ। ମୁଁ ଏବେ ଶାନ୍ତିରେ ମରିପାରିବି। ମୁଁ ଠିକ୍ ଜାଣିଲି, ତୁ ସବୁ ସମ୍ଭାଳି ନେଇ ପାରିବୁ।" ଟିକିଏ ରହିଯାଇ ଗଙ୍ଗାପ୍ରସାଦ ପୁଣି କହିଲେ, "ନବଲ, ତୁ କ'ଣ ଜାଣୁ ମୁଁ କେମିତି ଭାଙ୍ଗି ପଡ଼ିଲି ଓ କାହିଁକି ଭାଙ୍ଗି ପଡ଼ିଲି ? ତୁ ଶୁଣି ଆଶ୍ଚର୍ଯ୍ୟ ହେବୁ। ମୁଁ ନିଜକୁ ନିଜେ କଷ୍ଟ ଦେଇଛି। ମୋର ଅନ୍ତରର ଭୟ ଓ ଏହି ଭୟର ଅନ୍ତର୍ଦାହ ମୋତେ ଜାଳିପୋଡ଼ି ନଷ୍ଟ କରି ଦେଇଛି।"

ବର୍ତ୍ତମାନ ନବଲର କୌତୂହଳ ଜାଗି ଉଠିଲା। ସେ ପଚାରିଲା, "ବାପା, ସେ ପୁଣି କ'ଣ ?"

"ସେହି କଥା ଏବେ କହୁଛି। ଦିନେ ମୁଁ ମୋର ଗୁଲାମି, ମୋର ପରାଧୀନତା ଓ ମୋର ଗୋଲାମୀ ବିରୁଦ୍ଧରେ ବିଦ୍ରୋହ କରି ଉଠିଥିଲି। ମୋର ଅନ୍ତରର ସେହି ବିଦ୍ରୋହ ଥିଲା ପ୍ରକୃତ ବିଦ୍ରୋହ। ଜ୍ଞାନକାକା ସେ ସବୁ କଥା ଜାଣନ୍ତି। ମୁଁ ଇସ୍ତଫା ଦେବାପାଇଁ ଠିକ୍ କରି ଦେଇଥିଲି; କିନ୍ତୁ ମୋର କାପୁରୁଷତାକୁ ସାମାନ୍ୟ ଟିକେ ସୁଯୋଗ ମିଳି ଯିବାରୁ ତାହା ମୋ ଉପରେ ଚଢ଼ି ବସିଲା। ସେହି ମୁହୂର୍ତ୍ତରେ ମୁଁ ମୋର ଇସ୍ତଫାପତ୍ର ଚିରିଦେଇ ଅପମାନ ଜହରକୁ ଜୀର୍ଣ୍ଣକରି ଦେଇଥିଲି; କିନ୍ତୁ ସେହି ଅପମାନ ବିଷ କେତେ କଠୋର, କେତେ ଧୀର ଅଥଚ ମାରାତ୍ମକ ହୋଇ ବସିଲା। ମୁଁ ମୋର ଇସ୍ତଫାପତ୍ର ଚିରିଦେଇ ନିଜକୁ ସମ୍ପୂର୍ଣ୍ଣରୂପେ ନଷ୍ଟ କରି ଦେଇଛି। ଗତ ଆଠ ଦଶ ବର୍ଷ ହେଲା ମୁଁ କେବଳ ଧୁଷୁରୁଛି। ସେହି ଧୁଷୁରିବାର ଶେଷ ମଧ୍ୟ ଆଜି ଆସି ପହଞ୍ଚି ଗଲାଣି। ସେଇଥିପାଇଁ ମୁଁ ଆଜି ଭାରି ଖୁସି।"

ନବଲ ଜ୍ଞାନପ୍ରକାଶଙ୍କଠାରୁ ଏହି କଥା ବିସ୍ତୃତ ଭାବରେ ଆଗରୁ ଶୁଣିଥିଲା। ଏହି

ଘଟଣା ତା'ର ପିତାଙ୍କୁ ଏପରଭାବରେ ପ୍ରଭାବିତ କରି ପକାଇଥିଲା । ଗଙ୍ଗାପ୍ରସାଦ ପୁଣି କହିଲେ, "ନବଲ, ମୋର କେତୋଟି କଥା ତୁ ମନେରଖିବୁ । ତୁ ଈଶ୍ୱରଙ୍କ ଛଡ଼ା କାହାର ପାଖରେ ମୁଣ୍ଡ ନୁଆଁଇବୁ ନାହିଁ—ନିଜର ବିବେକର ଡାକ ବିରୁଦ୍ଧରେ କୌଣସି କାର୍ଯ୍ୟ କରିବୁ ନାହିଁ ଓ ନିଜକୁ ଭୁଲିବା ପାଇଁ ତୁ କେବେ ମଦ ପିଇବୁ ନାହିଁ ।"

ନବଲ ଭାବାଭିଭୂତ ହୋଇ କହିଲା, "ବାପା, ମୁଁ ଆପଣଙ୍କ ନିକଟରେ ପ୍ରତିଜ୍ଞା କରି କହୁଛି, ଏ ତିନୋଟି କଥା ମୁଁ କେବେ କରିବି ନାହିଁ । ଆପଣ ବର୍ତ୍ତମାନ ଶୋଇପଡ଼ନ୍ତୁ ।"

"ହଁ ଆଜି ମୋର ଦେହ ବହୁତ ଭଲ ଲାଗୁଛି ଓ ଟିକିଏ ଭୋକ ବି ହେଉଛି । ମୁଁ ଖାଇସାରି ଶୋଇପଡ଼ିବି । ମୋତେ ଆଜି ଭଲ ନିଦ ବି ହୋଇଯିବ ।"

ତହିଁ ଆରଦିନ ସକାଳେ ଗଙ୍ଗାପ୍ରସାଦ ବେଶ୍ ପ୍ରସନ୍ନ ଦିଶୁଥିଲେ ଓ ତାଙ୍କର ଜର ପ୍ରାୟ ଏକ ଡିଗ୍ରୀ କମି ଯାଇଥିଲା । ସେ ନବଲକୁ କହିଲେ, "ନବଲ, ମୋର ମନେ ହେଉଛି, ଏଇଠି ମୋର ଦେହ ଭଲ ହୋଇଯିବ । ଭୁବାଲି ଯିବା କ'ଣ ଆଉ ଦରକାର ପଡ଼ିବ ?"

ନବଲ କହିଲା, "ସବୁ ବ୍ୟବସ୍ଥା ତ ମୁଁ କରି ଦେଇଛି । ସେଠି ଶୀଘ୍ର ଆପଣଙ୍କ ଦେହ ଭଲ ହୋଇଯିବ ।"

"ହଁ ସେଠିକି ତ ନିଶ୍ଚୟ ଯିବାକୁ ପଡ଼ିବ । ଏଠି ବହୁତ ଗରମ ହେଉଛି । ମୁଁ ଭାବୁଛି ଭୁବାଲିରେ ସଂପୂର୍ଣ୍ଣ ଆରୋଗ୍ୟ ହୋଇ ଫେରି ଆସିବି ।" ଏତିକି କହି ଗଙ୍ଗାପ୍ରସାଦ ଟିକିଏ ହସି ଦେଲେ ।

ନବଲ ଦେଖିଲା, ଗଙ୍ଗାପ୍ରସାଦଙ୍କ ମୁହଁରେ ଏକ ପ୍ରକାର ଉଜ୍ଜ୍ୱଳତା ଆସିଯାଇଛି । ତେଣୁ ସେ ନିଜେ ଟିକିଏ ପ୍ରସନ୍ନ ହୋଇ ଆସି ଡ୍ରଇଂ ରୁମ୍‌ରେ ବସିଲା । ସବୁ ଜିନିଷ ପତ୍ର ସେ ବନ୍ଧାବନ୍ଧି କରେଇ ନେଇଥିଲା । କାରଣ ତହିଁଆରଦିନ ସକାଳେ ସେମାନଙ୍କର ଭୁବାଲି ଯିବା କଥା । ଏହି ସମୟରେ ମାୟା ଓ ସତ୍ୟବ୍ରତ ଆସି ଡ୍ରଇଂ ରୁମ୍‌ରେ ପହଞ୍ଚିଲେ ।

ମାୟା ଆସିଲା ମାତ୍ରେ କହିଲା, "ହାୟରେ ନବଲ, କେଡ଼େ ବଡ଼ ବିପତ୍ତି ଆସି ପଡ଼ିଲା । କାହାନ୍ତି ସେ । ମୁଁ ତ ବହୁତ ଡେରିରେ କାନପୁରରେ ତାଙ୍କ ଖବର ପାଇଲି । ସେଠୁ ଆମେ ସିଧା ମିର୍ଜାପୁର ଯାଇ ସେଠି ବୁଝିଲୁ ସେ ଆଲହାବାଦ ଆସିଛନ୍ତି । କହ ନବଲ, ତାଙ୍କ ଦେହ ବର୍ତ୍ତମାନ କିମିତି ଅଛି ?" ନବଲ ସେମାନଙ୍କୁ ବସାଇ କହିଲା, "ଭୁବାଲି ଯିବାପାଇଁ ଡାକ୍ତର ପରାମର୍ଶ ଦେଇଛନ୍ତି । କାଲି ସକାଳେ ସେ ଭୁବାଲି ଯାଉଛନ୍ତି ।"

ମାୟା ପାଟିକରି କହି ପକାଇଲା, "ହାୟରେ ଭଗବାନ, ତାଙ୍କ ଅବସ୍ଥା ପୁଣି ଏମିତି

ହେଲା ଯେ, ତାଙ୍କୁ ଭୁବାଲୀ ଯିବାକୁ ପଡ଼ିଲା । ନବଲ, ମୋତେ ତାଙ୍କ ପାଖକୁ ନେଇ ଯା, ମୋ ଭଗବାନଙ୍କୁ ମୁଁ ଆଗ ଦର୍ଶନ କରେ ।''

ନବଲ କହିଲା, ''ଆଚ୍ଛା, ଆଗ ଦେଖେଁ, ସେ ଶୋଇଛନ୍ତି କି ନାହିଁ । ଅବଶ୍ୟ କାଲିଠାରୁ ଦେହ ଟିକିଏ ଭଲଅଛି । ଆପଣ ବସନ୍ତୁ । ମୁଁ ଆସୁଛି ।''

ନବଲ ଫେରି ଆସି କହିଲା, ''ଚାଲନ୍ତୁ, ଆପଣମାନଙ୍କୁ ସେ ଡାକୁଛନ୍ତି ।'' ନବଲ ମାୟା ଓ ସତ୍ୟବ୍ରତଙ୍କୁ ଗଙ୍ଗାପ୍ରସାଦଙ୍କ ପ୍ରକୋଷ୍ଠରେ ପହଞ୍ଚାଇ ଦେଲା ।

ଗଙ୍ଗାପ୍ରସାଦଙ୍କୁ ଦେଖି ମାୟା ପାଟିକରି ଉଠିଲା, ''ହେ ଭଗବାନ, ଆପଣଙ୍କର କ'ଣ ହୋଇଗଲା ସତେ ! ମୋ କପାଳରେ ପୁଣି ଏହି ଦିନ ଦେଖିବାକୁ ଥିଲା !'' ସେ ଧାଇଁ ଯାଇ ଗଙ୍ଗାପ୍ରସାଦଙ୍କ ଗୋଡ଼ ଧରି ଖୁବ୍ ପାଟିକରି କାନ୍ଦିଲା ।

ଗଙ୍ଗାପ୍ରସାଦ ବଡ଼ କଷ୍ଟରେ ମାୟାକୁ ଛଡ଼ାଇ ଦେଇ କହିଲେ, ''ବସ ମାୟାଦେବୀ, କେମିତି ଅଛ ? ପିଲାପିଲି ସବୁ ଭଲ ଅଛନ୍ତି ? ଏଠିକି କେବେ ଆସିଲ ?''

କିନ୍ତୁ ମାୟା ସେମିତି କାନ୍ଦୁଥାଏ ଓ ପାଗଳୀ ପରି କହୁଥାଏ, ''ଆପଣଙ୍କର ସତେ କ'ଣ ହୋଇଗଲା ! କେମିତି ହେଲା କୁହନ୍ତୁନା ! ଆପଣ ଆମକୁ ନିଜ ଦେହ କଥା କିଛି ଖବର ଦେଲେ ନାହିଁ । ଆପଣ ବେମାର ଅଛନ୍ତି ବୋଲି କାନପୁରରେ ଉଡ଼ା ଖବର ପାଇ ଆମେ ମିର୍ଜାପୁର ଗଲୁ ଓ ସେଠୁ ବର୍ତ୍ତମାନ ସିଧା ଏଠାକୁ ଆସୁଛୁ । ହେ ଭଗବାନ, ମୁଁ ଏ କ'ଣ ଦେଖୁଛି ସତେ !''

ସତ୍ୟବ୍ରତ ଚୁପ୍‌ଚାପ୍ ଏକ ଦୃଷ୍ଟିରେ ଗଙ୍ଗାପ୍ରସାଦଙ୍କୁ ଦେଖୁଥିଲେ । ସତେ ଯେମିତି ସେ ତାଙ୍କୁ ଚିହ୍ନି ପାରୁ ନ ଥିଲେ । ଖାଲି ଦେଖୁଥିଲେ, ହାଡ଼ ଓ ଚମର ଗୋଟି ଦୁର୍ବଳ, ଶିଥିଲ ଓ ଅସମର୍ଥ ପ୍ରତୀକ ତାଙ୍କ ଆଗରେ ଉଭା ହୋଇଛି । ଇଏ କ'ଣ ସେହି ଲୋକ, ଯାହାକୁ ଦେଖିଲେ ଲୋକେ ଡରୁଥିଲେ । ଯେ ବଡ଼ ବଡ଼ ସାହେବଙ୍କ ସଙ୍ଗେ ଲଢ଼ୁଥିଲେ ଓ ହଜାର ହଜାର ଲୋକଙ୍କ ଭିତରୁ ମାୟାକୁ ଉଦ୍ଧାର କରି ଆଣିଥିଲେ ! ଉତ୍ସାହ, ଉଦ୍‌ବେଳନ, ଶକ୍ତି ଓ କର୍ମର ଯିଏ ଥିଲେ ପ୍ରତୀକ, କର୍ତ୍ତବ୍ୟନିଷ୍ଠା ଭିତରେ ଯେ ନିଜକୁ ସଂପୂର୍ଣ୍ଣ ହଜାଇ ଦେଉଥିଲେ, ସେ ଆଜି କୁଆଡ଼େ ଗଲେ ! ଅଥଚ ସେହି ସ୍ଥାନରେ ତାଙ୍କରି ଆଖି ଆଗରେ ପଡ଼ି ରହିଥିଲେ, ଜଣେ ଶକ୍ତିହୀନ ରୁଗ୍‌ଣବ୍ୟକ୍ତି, ଯାହାଙ୍କୁ ଚିହ୍ନିବାକୁ ବି ଆଜି କଷ୍ଟ ହେଉଥିଲା । ଏହି ସମୟରେ ଗଙ୍ଗାପ୍ରସାଦଙ୍କର ପୁରୁଣା ପରିଚିତ ସ୍ୱର ସତ୍ୟବ୍ରତଙ୍କୁ ଶୁଣାଗଲା । ସେ କହିଲେ, ''କହ ସତ୍ୟବ୍ରତ, କ'ଣ ଚିନ୍ତା କରୁଛ ? ସାଇମନ କମିଶନକୁ ତ ତମେ ବଡ଼ ଜୋର୍‌ସୋର୍‌ରେ ତଡ଼ିଲ, ଏବେ ତମର ଆଉ କାର୍ଯ୍ୟକ୍ରମ କ'ଣ ?''

ସତ୍ୟବ୍ରତଙ୍କର ମନେହେଲା, ଗଙ୍ଗାପ୍ରସାଦଙ୍କର ଏବେ ବି ଚେତନା ଅଛି, ବର୍ତ୍ତମାନକୁ

ସେ ଭୁଲି ନାହାନ୍ତି । ସେ କହିଲେ, "ବର୍ତ୍ତମାନ ତ ସେମିତି କିଛି କାର୍ଯ୍ୟକ୍ରମ ନାହିଁ । ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଆମ ନୈତିକ ଜୀବନକୁ ଏକ ପ୍ରକାର ନଷ୍ଟକରି ଦେଇଛି; କିନ୍ତୁ ଦେଶରେ ଦାରିଦ୍ର୍ୟ ଖୁବ୍ ବଢ଼ିଯାଇଛି—ଏବଂ ଏହି ଦାରିଦ୍ର୍ୟ ସଙ୍ଗେ ଲୋକଙ୍କର ଅସନ୍ତୋଷ ବି ଖୁବ୍ ବଢ଼ିଛି ।"

ଗଙ୍ଗାପ୍ରସାଦ ଟିକିଏ ମୃଦୁକହସାଦେଇ କହିଲେ, "କିନ୍ତୁ ଏ ସବୁଠୁ ବେଶୀ ବଢ଼ିଛି ଦେଶର ଚେତନା । ନିକଟରେ କୌଣସି ଆନ୍ଦୋଳନ ଆରମ୍ଭ ହେବ ବୋଲି ତମେ ଭାବୁଛ କି ?"

ସତ୍ୟବ୍ରତ ଟିକିଏ ନିରାଶ ହୋଇ କହିଲେ, "ମୁଁ କିଛି ବୁଝିପାରୁନାହିଁ । ଲୋକେ ଏତେ ଗରିବ, ଏତେ ବେକାର ହେଲେ ମଧ୍ୟ ସେମାନଙ୍କ ମଧ୍ୟରେ କୌଣସି ବିଦ୍ରୋହ ବା ଚିନ୍ତାନାହିଁ । ମୁଁ ତ ଏକପ୍ରକାର ହତାଶ ହୋଇଗଲିଣି । ଚାରିପାଖେ କେବଳ ଚିନ୍ତା ଓ ଅନ୍ଧକାର ଘେରି ରହିଛି ।"

"ଏହି ଚିନ୍ତା ଓ ଏହି ଅନ୍ଧକାର ମଧ୍ୟରେ ବିଦ୍ରୋହର ବୀଜ ଅଛି ସତ୍ୟବ୍ରତ, କର୍ମ ହେଉଛି ଜୀବନର ନିୟମ । ଯେଉଁଠି କ୍ରିୟା ଅଛି, ସେଠି ପ୍ରତିକ୍ରିୟା ନିଶ୍ଚୟ ଅଛି । ସେହି ପ୍ରତିକ୍ରିୟାର ତ ଶେଷ ନିଶ୍ଚୟ ହେବ ।" ଏହାପରେ ଗଙ୍ଗାପ୍ରସାଦ ମାୟାଦେବୀଙ୍କୁ ଲକ୍ଷ୍ୟକରି ପଚାରିଲେ, "କ'ଣ ମାୟାଦେବୀ, ତମେ କଂଗ୍ରେସର ନେତ୍ରୀ ହୋଇପାରିଲ ନାହିଁ କାହିଁକି ? ମନେହେଉଛି ସତ୍ୟବ୍ରତ ତମକୁ ଈର୍ଷା କରୁଛନ୍ତି ।"

"ପୋଡ଼ିଯାଉ ସେ ନେତାଗିରି ! ପିଲାଙ୍କ ଜଞ୍ଜାଳରୁ ମୋତେ ଛୁଟି ମିଳେ କେଉଁଠି ? ଘରକାମରୁ ଯେତେବେଳେ ଛୁଟି ମିଳେ, ସେତେବେଳେ ଅରଟଫରଟ ଚଳେ; କିନ୍ତୁ ଯାହା ଦେଖିଲିଣି—ଏଗୁଡ଼ା ସବୁ ବେକାର । ଛାଡନ୍ତୁ ସେ ସବୁ କଥା—ଆପଣ ନିଜ କଥା କୁହନ୍ତୁ ।"

"ନିଜ କଥା ଆଉ କ'ଣ କହିବ ? ତମେ ଆଖି ଆଗରେ ଦେଖୁଛ, କାଲିଠାରୁ ଦେହ ଟିକିଏ ଭଲ ଲାଗୁଛି । ଭାବୁଛି, ସେପ୍ଟେମ୍ବର ଭିତରେ ମୁଁ ସଂପୂର୍ଣ୍ଣ ଭଲ ହୋଇଯିବି । କାଲି ସକାଳ ଗାଡ଼ିରେ ଭୁବାଲୀ ଯାଉଛି । ଏଠି ଏତେ ଗରମ ଯେ, ଦେହ ଆଦୌ ଭଲ ହେଉନାହିଁ ।"

ସତ୍ୟବ୍ରତ ଉଠୁ ଉଠୁ କହିଲେ, "ଆମେ କାଲି ଷ୍ଟେସନ ଆସିବୁ । ବର୍ତ୍ତମାନ ଆପଣ ବିଶ୍ରାମ କରନ୍ତୁ । କଥାବାର୍ତ୍ତା କରି ଥକି ଯିବେଣି ।"

ସତ୍ୟବ୍ରତ ଠିକ୍ କହିଥିଲେ । ଗଙ୍ଗାପ୍ରସାଦ ପ୍ରକୃତରେ ଥକି ଯାଇଥିଲେ । କଡ଼ ଲେଉଟାଇ ଗଙ୍ଗାପ୍ରସାଦ କହିଲେ, "ହଁ ମୁଁ ଥକିଗଲିଣି । କାରଣ ମୋର ଜୋର୍ ବହୁତ କମି ଗଲିଣି । ଅଚ୍ଛା, କାଲି ଷ୍ଟେସନଠାରେ ଦେଖା ହେବ ।" ଏତିକି କହି ସେ

ଆଖିବୁଜି ପଡ଼ିଗଲେ ।

ଗଙ୍ଗାପ୍ରସାଦଙ୍କ ସହିତ ସାକ୍ଷାତ କରିବା ପାଇଁ ସାରାଦିନ ଲୋକଙ୍କର ଧାଡ଼ି ଲାଗି ରହିଲା । ପ୍ରାୟ ରାତି ଆଠଟା ବେଳକୁ ଗଙ୍ଗାପ୍ରସାଦ, ନବଲକୁ ଡକାଇ ପଚାରିଲେ, "ନବଲ, କାଲି ସକାଳୁ ଭୁବାଲୀ ଯିବା କ'ଣ ନିତାନ୍ତ ଦରକାର ?"

ନବଲ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କାହିଁକି ବାପା, କ'ଣ ହେଲା କି ? ସବୁ ଜିନିଷ ପତ୍ର ବନ୍ଧା ସରିଛି, କେବଳ ବିଛଣା ବାନ୍ଧିବାକୁ ବାକିଅଛି ।"

"ଆଜିକାଲି ଭିତରେ ମୋ ଦେହ ଏତେ ଭଲ ହୋଇଗଲାଣି ଯେ ଭାବୁଛି ଏଇଠି ବୋଧହୁଏ ଭଲ ହୋଇଯିବି ।" ପୁଣି କ'ଣ ଭାବି ଗଙ୍ଗାପ୍ରସାଦ କହିଲେ, "ନାହିଁ ସେଠିକି ଯିବା ଦରକାର । ବିଦ୍ୟାର ବାହାଘର ନେଇ ମୁଁ ଚିନ୍ତିତ ଥିଲି । ନଭେମ୍ବରରେ ତାର ବାହାଘର କରିବାକୁ ହେବ । ମୁଁ ଭୁବାଲୀରେ ରହିଲେ ତା ବାହାଘର ବ୍ୟବସ୍ଥା କିଏ କରିବ ? ମିର୍ଜାପୁରର ବାବୁ ବିନ୍ଧେଶ୍ୱର ପ୍ରସାଦଙ୍କଠାରୁ ଚିଠି ଆସିଛି ଯେ ସେ ନବରାତ୍ରି ଦିନ ନିର୍ବନ୍ଧ କରିବାକୁ ଚାହାନ୍ତି ।"

"ଆପଣ ସେସବୁ ଚିନ୍ତା କିଛି କରନ୍ତୁ ନାହିଁ । ମୁଁ ଜୁଲାଇରେ ଆସି ସବୁ ଠିକ୍‌ଠାକ୍ କରିଦେବି । ତାଛଡ଼ା ବାହାଘର ଦିନ ବଢ଼ାଇ ଦିଆଯାଇପାରେ । ଯାହା ହେଲେ ବି ଆପଣଙ୍କ ଦେହ ତ ଭଲନାହିଁ । ସେ ବି ଖବର ପାଇଯିବେ ।"

ଗଙ୍ଗାପ୍ରସାଦ କିଛିଏ ଭାବିସାରି କହିଲେ, "ମୁଁ ତାଙ୍କୁ ଏ ପର୍ଯ୍ୟନ୍ତ କୌଣସି ଜବାବ୍ ଦେଇ ନାହିଁ । ଭୁବାଲୀଠାରୁ ତାଙ୍କୁ ଚିଠି ଲେଖିଦେବି ।" ହଠାତ୍ ଗଙ୍ଗାପ୍ରସାଦଙ୍କ ମୁହଁ କିଛିଏ ବିକୃତ ଦେଖାଗଲା । ସେ କହିଲେ, "ଆଚ୍ଛା ସେ ପାତ୍ରଟା କିଛିଏ ଉଠାଇଲୁ ?"

ନବଲ ସଙ୍ଗେ ସଙ୍ଗେ ପାତ୍ର ଉଠାଇଲା, କିନ୍ତୁ ଗଙ୍ଗାପ୍ରସାଦଙ୍କୁ ଏତେ ଜୋର୍‌ରେ କାଶ ହେଲା ଯେ, ପାତ୍ର ଉଠାଇବା ପୂର୍ବରୁ ସେ ରକ୍ତବାନ୍ତି କରି ପକାଇଲେ । ବିଛଣା ସାରା ରକ୍ତରେ ଭିଜିଗଲା ।

ନବଲ ବ୍ୟସ୍ତହୋଇ ସେଇଠୁ ଡାକ ପକାଇଲା, "ଜେଜେ, ଶୀଘ୍ର ଏଠାକୁ ଆସ ।"

ଏହି ସମୟରେ ଗଙ୍ଗାପ୍ରସାଦଙ୍କର ଆଉ ଥରେ ବାନ୍ତି ହେଲା । ବାନ୍ତିରେ ମୁଣ୍ଡା ମାଂସ ଓ ରକ୍ତ ପଡ଼ିଲା । ତାଙ୍କର ମୁହଁ କଳାପଡ଼ି ଆଖି ଓଲଟି ପଡ଼ିଲା । ଜ୍ୱାଲାପ୍ରସାଦ ଆସୁ ଆସୁ ଗଙ୍ଗାପ୍ରସାଦଙ୍କର ତୃତୀୟ ଥର ବାନ୍ତିହୋଇ ପଡ଼ିଲା । ପୂର୍ବପରି ଦୁର୍ଗନ୍ଧପୂର୍ଣ୍ଣ କଳା ମାଂସ ଖଣ୍ଡ ପଡ଼ିଲା ଓ ସେ ବେହୋସ ହୋଇ ପଡ଼ିଗଲେ ।

ଘରର ସମସ୍ତେ ଆସି ଏକାଠି ଜମା ହୋଇଗଲେ । ଜ୍ୱାଲାପ୍ରସାଦ ଡାକ୍ତର ଶେରଉଡ଼ଙ୍କୁ ଆଣିବା ପାଇଁ ଦୌଡ଼ିଲେ ।

ଡାକ୍ତର ଶେରଉଡ଼୍ ଆସି ଦେଖିଲେ, ଗଙ୍ଗାପ୍ରସାଦ ବେହୋସ ହୋଇ ପଡ଼ିଛନ୍ତି । ସେ ପରୀକ୍ଷା କରିସାରି କହିଲେ, "ଆଉ କିଛି କରିହେବ ନାହିଁ । ଯେ କୌଣସି ମୁହୂର୍ତ୍ତରେ ସେ ମରିଯାଇ ପାରନ୍ତି । ଖୁବ୍ ବେଶୀ ହେଲେ ସକାଳ ପର୍ଯ୍ୟନ୍ତ ବଞ୍ଚିପାରନ୍ତି ।

ଜ୍ୱାଲପ୍ରସାଦ କାନ୍ଦ କାନ୍ଦ ହୋଇ କହିଲେ, "କିଛି ଔଷଧ ଦେଇ କୌଣସି ମତେ ତାଙ୍କୁ ବଞ୍ଚାନ୍ତୁ ଡାକ୍ତର ସାହେବ !"

ଡାକ୍ତର ଶେରଉଡ଼ କହିଲେ, "ଔଷଧ ନ ଦେଇ ତାଙ୍କୁ ଗଙ୍ଗାଜଳ ଦିଅନ୍ତୁ । ଯାହାକୁ ଭଗବାନ ଗାଲ୍‌ଫିଙ୍ଗ ଟିକେଟ ଦେଇଛନ୍ତି ତାକୁ କିଏ ବଞ୍ଚାଇ ପାରିବ ! ସବୁ ସରିଗଲାଣି । ଏତିକି କହି ଶେରଉଡ଼ ଚାଲିଗଲେ ।

ଘରସାରା ସମସ୍ତେ ପାଟିକରି କାନ୍ଦି ଉଠିଲେ । ନବଲ ଓ ଜ୍ୱାଲପ୍ରସାଦ ଗଙ୍ଗାପ୍ରସାଦଙ୍କୁ ବିଛଣାରୁ ଉଠାଇ ଭୂଇଁରେ ଶୁଆଇ ଦେଲେ । ବ୍ରାହ୍ମଣଙ୍କୁ ଡକାଇ ଗୋଦାନ ଦିଆଗଲା । ବାହାରେ ପଣ୍ଡିତ ବସି ମହାମୃତ୍ୟୁଞ୍ଜୟ ପାଠ ଆରମ୍ଭ କରି ଦେଲେ । ନବଲକୁ ଜଣାଗଲା, ସତେ ଯେମିତି ଘରକୁ ମୃତ୍ୟୁ ସଂପୂର୍ଣ୍ଣରୂପେ ଅଧିକାର କରି ସାରିଲାଣି । ବାହାର ବାରଣ୍ଡାରେ ଯମୁନା ବେହୋସ ହୋଇ ପଡ଼ିଗଲେ । ରୁକ୍ମିଣୀ ମୁଣ୍ଡରେ ହାତ ପିଟି କାନ୍ଦିଲେ । ନବଲ ଓ ଜ୍ୱାଲପ୍ରସାଦ ଘରେ ଏମିତି ବସିଥିଲେ, ସତେ ଯେମିତି ଗଙ୍ଗାପ୍ରସାଦଙ୍କୁ ମୃତ୍ୟୁର ଆଘାତରୁ ବଞ୍ଚାଇବାକୁ ସେମାନେ ଚେଷ୍ଟା କରୁଥିଲେ । ସୁଧା ଓ କେଓ୍ୱଲକୁ ନେଇ ବିଦ୍ୟା ବାହାର ଅଗଣାକୁ ଚାଲିଯାଇଥିଲା ଓ ଭିକ୍ଷୁ ଏଣେ ତେଣେ ଧାଁ ଦଉଡ଼ କରୁଥିଲା ।

ରାତି ପ୍ରାୟ ଦିନଟା ବେଳକୁ ଗଙ୍ଗାପ୍ରସାଦ ଆଖି ଖୋଲିଲେ । ତାଙ୍କର ଦୃଷ୍ଟି ଯାଇ ନବଲ ଉପରେ ପଡ଼ିଲା । ସେ କହିଲେ, "ତୁ—ତୁ ।" ତାପରେ ସେ ବାପାଙ୍କୁ ଚାହିଁ କହିଲେ, "ବାପା, ଆପଣ ନବଲ ଉପରେ ଭରସା ରଖିବେ । ସେ ବିଦ୍ୟାର ବାହାଘର କରିଦେବ ।" ତାପରେ ସେ ଚାରିଆଡ଼କୁ ଚାହିଁ ପାଖରେ ଯମୁନାକୁ ଡାକି କହିଲେ, "ତମ ପାଦକୁ ମୋ ହାତରେ ଛୁଆଁଇ ଦିଅ ।" ତାପରେ ସେ ରୁକ୍ମିଣୀଙ୍କୁ ଚାହିଁ କହିଲେ, "ତମକୁ ବହୁତ କଷ୍ଟ ଦେଇଛି, କ୍ଷମା କରିବ ।" ତାପରେ ସେ ନିଜ ପିଲାଙ୍କ ଆଡ଼କୁ ଚାହିଁଲେ; କିନ୍ତୁ ସେତେବେଳକୁ ତାଙ୍କର ବାକ୍‌ଶକ୍ତି ଚାଲିଯାଇଥିଲା । ସେ ପ୍ରଥମେ ନବଲକୁ ଚାହିଁ ପରେ ପିଲାମାନଙ୍କ ଆଡ଼କୁ ଚାହିଁଲେ । ସତେ ଯେମିତି ସେ କହିବାକୁ ଚାହୁଁଥିଲେ, ସବୁ ପିଲାଙ୍କ ଭାର ସେ ନବଲ ଉପରେ ଛାଡ଼ିଗଲେ । ତାପରେ ତାଙ୍କ ଦୃଷ୍ଟି ଯାଇ ବିଦ୍ୟା ଉପରେ ଅଟକି ଗଲା । ସେତିକି ବେଳେ ତାଙ୍କର ହିକ୍‌କା ଆସିଗଲା ଓ ବେକ ଭାଙ୍ଗି ହୋଇଗଲା ।

ଘରସାରା ଚିତ୍କାରରେ ଭାଙ୍ଗି ପଡ଼ିଲା ।

## ତିନି

ଛଅଦିନ ହେଲା ଝଡ଼ବର୍ଷା ଲାଗି ରହିଥିଲା; କିନ୍ତୁ ଆଜି ଟିକିଏ ବଉଦ ଫାଟି ଯାଇଥିଲା। ନବଲ ଘରୁ ପିଇ ବାରଣ୍ଡାକୁ ଆସି ଦେଖିଲା ଆକାଶ ଅନେକ ନିର୍ମଳ ହୋଇ ଯାଇଥିଲା ଓ ଅସ୍ତ ସୂର୍ଯ୍ୟର ନିଷ୍ପ୍ରଭ ସୁନେଲି କିରଣ ବାରଣ୍ଡାରେ ପଡ଼ିଥିଲା । ଜୁଲାଇ ଶେଷ ସପ୍ତାହ । ଚାରିଆଡ଼େ ସବୁଜ ରଙ୍ଗ ଲିପି ହୋଇ ଯାଇଥିଲା । ନବଲ କିଛି ସମୟ ଆଗେ ୟୁନିଭରସିଟିରୁ ଖୁବ୍ କ୍ଳାନ୍ତ ହୋଇ ଫେରିଥିଲା । କ୍ଲାସପରେ କେତେକ ବନ୍ଧୁଙ୍କ ସଙ୍ଗେ ସେଠି ସେ ଅଟକି ଯାଇଥିଲା । ମଝିରେ ମଝିରେ ଅସରାକୁ ଅସରା ବର୍ଷା ହେଉଥିଲା । ସେ ୟୁନିଭରସିଟି ଗେଟ୍ ପର୍ଯ୍ୟନ୍ତ ଆସିଲା ବେଳକୁ ତା' ସାଇକେଲ ଚକ ଫାଟି ଯାଇଥିଲା । ତେଣୁ ସାଇକେଲ ଠିକ୍ କରିବାକୁ ତାକୁ କର୍ଣ୍ଣେଲଗଞ୍ଜ ଯିବାକୁ ପଡ଼ିଲା ।

ନବଲର ମନ ଅବସନ୍ନ ହୋଇ ପଡ଼ିଥିଲା । ସପ୍ତାହ ପୂର୍ବେ ସେ ବିଦ୍ୟାକୁ ନେଇ ବନାରସରେ ହଷ୍ଟେଲରେ ଛାଡ଼ି ଦେଇ ଆସିଥିଲା । ବିଦ୍ୟାର ଏବେ ବି. ଏ. ଶେଷ ବର୍ଷ ଥିଲା । ସେ ବି. ଏ. ଟା ପାସ୍ କରିନେବାକୁ ଚାହୁଁଥିଲା । ଜ୍ୱାଲାପ୍ରସାଦ ବିଦ୍ୟାକୁ ଆଉ ଅଧିକ ପଢ଼ାଇବା ପାଇଁ ଚାହୁଁ ନ ଥିଲେ; କିନ୍ତୁ ବିଦ୍ୟା ବି. ଏ. ପାସ୍ କରିବା ପାଇଁ ଜିଦ୍ ଧରି ବସିଲା ଓ ନବଲ ମଧ୍ୟ ତାକୁ ସମର୍ଥନ କଲା । ସେମାନଙ୍କର ଆଗ୍ରହ ଦେଖି ଜ୍ୱାଲାପ୍ରସାଦ ବାଧ୍ୟ ହୋଇ ରାଜି ହେଲେ । ବିଦ୍ୟା ଚାଲିଯିବା ପରେ ନବଲକୁ ଭାରି ଏକା ଏକା ଲାଗିଲା । ବିଦ୍ୟା ନବଲଠାରୁ ଦୁଇ ବର୍ଷ ସାନ; ତଥାପି ତା ଠାରୁ ସେ ବହୁତ ସାହାଯ୍ୟ ପାଉଥିଲା । ନବଲ ଆସି ବାରଣ୍ଡାରେ ଚୁପ୍ ଚାପ୍ ବସି ଭାବିବାକୁ ଲାଗିଲା; କିନ୍ତୁ ସେ କ'ଣ ଭାବୁଥିଲା ନିଜେ ମଧ୍ୟ ଜାଣି ପାରୁ ନ ଥିଲା । ନାନା ପ୍ରକାର ଖାପଛଡ଼ା ଚିନ୍ତା ମନ ଭିତରେ ଉଙ୍କି ମାରି ପୁଣି ଚାଲି ଯାଉଥାନ୍ତି । ଗଲା ତିନିମାସ ହେଲା ତାର ସଂସାର ବଦଳି ଯାଇଥିଲା । ତାର ଆଦର୍ଶ ଓ ଚିନ୍ତାଧାରା ମଧ୍ୟ ବଦଳି ଯାଇଥିଲା । ଖାଲି ସେତିକି ନୁହେଁ, ସେ ନିଜେ ସମ୍ପୂର୍ଣ୍ଣ ବଦଳି ଯାଇଛି ବୋଲି ମଧ୍ୟ ଅନୁଭବ କରୁଥିଲା ।

ଏହି ସମୟରେ ହଠାତ୍ ଜ୍ଞାନପ୍ରକାଶଙ୍କର ପାଟି ଶୁଣାଗଲା । ସେ ପଚାରିଲେ, କହି "ନବଲ, କ'ଣ ବସି ଚିନ୍ତା କରୁଛୁ ?"

ନବଲ ହଠାତ୍ ଚମକି ପଡ଼ିଲା । ଜ୍ଞାନପ୍ରକାଶ ଛିଡ଼ା ହୋଇ ହସୁଥାନ୍ତି । ନବଲ

ଦେଖିଲା ଜ୍ଞାନପ୍ରକାଶଙ୍କ ମୁହଁରେ ପୂର୍ବେ ଯେଉଁ ଶାନ୍ତ, ସାତ୍ତ୍ୱିକତା ଓ ଦୃଢ଼ତା ଥିଲା, ତାହା ସେମିତ ଅକ୍ଷୁଣ୍ଣ ରହିଛି । "କିଛି ନାହିଁ ଜେଜେ, ଟିକିଏ ଅବଶ ଲାଗିଲା ଯେ ଏଇଠି ବସି ଯାଇଥିଲି । ବହୁତ ଦିନ ପରେ ଆଜି ଖରା ପଡ଼ିଛି । ଭାବୁଥିଲି ଆଜି ବାହାରେ ଯାଇ ଟିକିଏ ବୁଲି ଆସିବି । ଆପଣ ତ ଆଜି କଂଗ୍ରେସ ଅଫିସ୍‌ରୁ ଖୁବ୍ ଶୀଘ୍ର ଫେରି ଆସିଲେ !"

"ହଁ, ଆଜି ବହୁତ କାମ କରିବାକୁ ଥିଲା । ଭାରି କ୍ଲାନ୍ତ ଲାଗିବାରୁ ଫେରି ଆସିଲି । ତମେ ଚା' ଟା ପିଇ ସାରିଲଣି ?"

"ହଁ, ଏଇ ପିଇକରି ଆସୁଛି । ଆପଣ ବସନ୍ତୁ, ମୁଁ ଚା' ନେଇ ଆସୁଛି ।" ଏହା କହି ନବଲ ଭିତରକୁ ଯାଇ ଭିକ୍ଷୁକୁ କହିଲା, "ଭିକ୍ଷୁ ଜେଜେ, ଜ୍ଞାନ ଜେଜେ ଆସି ବାରଣ୍ଡାରେ ବସିଛନ୍ତି । ତାଙ୍କ ପାଇଁ ଚା' ନେଇଯା ।"

"ଆଚ୍ଛା ନେଇ ଯାଉଛି । ଭାଇ ଶୋଇଛନ୍ତି ନା ଉଠିଲେଣି, ତାଙ୍କୁ ବି ଟିକିଏ ଡାକି ଦିଅ ।"

ଜ୍ୱାଲାପ୍ରସାଦ ନିଜ ବଖରାରେ ବସି ଗୀତା ପଢ଼ୁଥିଲେ । ନବଲ କହିଲା, "ଜେଜେ, ଚା' ତିଆରି ହେଉଛି । ଜ୍ଞାନ ଜେଜେ ବି ଆସିଗଲେଣି, ଦଶ ପନ୍ଦର ମିନଟ୍ ଭିତରେ ଆପଣ ବାରଣ୍ଡାକୁ ଆସନ୍ତୁ । ଆମେ ସେଠି ଅପେକ୍ଷା କରିଛୁ ।"

ଜ୍ୱାଲାପ୍ରସାଦ କହିଲେ, "ଆଚ୍ଛା ଚାଲ, ମୁଁ ଏଇ ଅଧ୍ୟାୟଟା ଶେଷ କରି ଦେଇ ଯାଉଛି ।"

ନବଲ ଯାଇ ଜ୍ଞାନପ୍ରକାଶଙ୍କ ପାଖରେ ବସିଗଲା

ଜ୍ଞାନପ୍ରକାଶ ପଚାରିଲେ, "ତା' ହେଲେ ତମେ ଲ'ରେ ଜଏନ କଲ ? ତମର ଆଉ ବିଲାତ ଯିବା ଦରକାର ନାହିଁ କି ?"

"ନା, ମୋଟେ ନାହିଁ ଜେଜେ । ଘର କଥା ତ ଆପଣ ଜାଣନ୍ତି । ଏ ବର୍ଷ ପୁଣି ବିଦ୍ୟାର ବାହାଘର କରିବାକୁ ହେବ । ବାହାଘରରେ ବହୁତ ପଇସା ଖର୍ଚ୍ଚ ହେବ । କେମିତି କ'ଣ ହେବ କିଛି ଜଣାପଡ଼ୁନାହିଁ ।"

"ନବଲ, ଗୋଟିଏ କଥା କହିବି, କିଛି ମନେ କରିବ ନାହିଁ । ଟଙ୍କା ପଇସା କିଛି ଚିନ୍ତା କର ନାହିଁ । ମୋ ପକ୍ଷରୁ ତମେ ବିଲାତ ଯାଅ । ଏହା ଏକ ଭବିଷ୍ୟତ ଜୀବନର ପ୍ରଶ୍ନ । ଗଙ୍ଗାପ୍ରସାଦ ରୋଗରେ ପଡ଼ିଥିଲାବେଳେ ମୁଁ ବିଲାତରେ ଥିଲି । ମୋତେ କେହି ଖବର ପର୍ଯ୍ୟନ୍ତ ଦେଲନାହିଁ ।

"ଆପଣ ତ ଆପେଣ୍ଡିକ୍ସ ଅପରେସନ କରି ହସପିଟାଲରେ ରହିଥିଲେ, ଆମେ ଆପଣଙ୍କୁ ଆଉ ଖବର ଦେଇଥାନ୍ତୁ କ'ଣ ?"

"ଛାଡ଼, ଯାହା ତ ହେଲଣି ହେଲଣି । ତମ ପାସପୋର୍ଟ ତ ତମ ପାଖରେ ଅଛି । ତମର ସେପ୍‌ଟେମ୍ବରରେ ଯିବାର ଥିଲା, ଡେରି ତ ହୋଇ ନାହିଁ । ମୁଁ କହୁଛି ତମେ ବିଲାତ ଚାଲି ଯା' । ତମେ କୌଣସି କଥା ପାଇଁ ଚିନ୍ତା କର ନାହିଁ ।"

ନବଲ ଟିକଏ ଚୁପ୍‌ରହି କହିଲା, "ନାହିଁ ଜେଜେ, ମୋତେ ତ ଏଠି ରହି ଘରକଥା ବୁଝିବାକୁ ହେବ । ବାପା ତ ବିଦ୍ୟାର ବାହାଘର ଠିକ୍ କରିଯାଇଛନ୍ତି । ଏଇ ନଭେମ୍ବରରେ ତାର ବାହାଘର ହେବ । ମୋର ଏବେ ଆଉ ଆଇ. ସି. ଏସ୍. ହେବାର ଆଗ୍ରହ ବି ନାହିଁ ।"

ଏହି ସମୟରେ ଜ୍ୱାଲାପ୍ରସାଦ ଆସି ବାରଣ୍ଡାରେ ପହଞ୍ଚିଲେ । ସେ ବହୁତ ଚିନ୍ତିତ ଦେଖାଯାଉଥିଲେ । ଭିକ୍ଷୁ ଯିବା ଭିତରେ ଚା' ରଖିଦେଇ ଚାଲି ଯାଇଥିଲା । ଜ୍ୱାଲାପ୍ରସାଦ ଆସିଲା ମାତ୍ରେ କହିଲେ, "ଶୁଣିଲୁ ଜ୍ଞାନୁ, ଆଜି ବିନ୍ଧେଶ୍ୱରୀପ୍ରସାଦଙ୍କର ଚିଠି ଆସିଛି । ଏ ବର୍ଷ ଆଉ ବାହାଘର ବନ୍ଦ କରିହେବ ନାହିଁ । ନବରାନିକୁ ନିବନ୍ଧ ନିଶ୍ଚୟ ।"

ଜ୍ଞାନପ୍ରକାଶ ଉତ୍ତର ଦେଲେ, "ହଁ, ଯଦି ବାହାଘର କରିବା କଥା ଆଉ ଡେରିକର ଲାଭ କ'ଣ ? ହଁ ମୁଁ ବି କହୁଛି ନବରାନିକୁ ନିବନ୍ଧ କରି ନଭେମ୍ବରରେ ବାହାଘର କରିଦିଅ ।"

ଜ୍ୱାଲାପ୍ରସାଦ ଶିଥିଳ ସ୍ୱରରେ କହିଲେ, "ସେ ତ ଠିକ୍ କଥା; କିନ୍ତୁ ନିବନ୍ଧ ବେଳେ ଆଠହଜାର ଟଙ୍କା ଦେବାକୁ ହେବ । ଟଙ୍କା ତ ବର୍ତ୍ତମାନ ଯୋଗାଡ଼ କରିବାକୁ ହେବ । ତେଣୁ ନିବନ୍ଧ ତ କିଛି ହସଖେଳ କଥା ନୁହେଁ ।"

ଜ୍ଞାନପ୍ରକାଶ ଚଉକିରୁ ଡେଇଁପଡ଼ି କହିଲେ, ନିବନ୍ଧରେ ଆଠହଜାର କ'ଣ ? ଭାଇ ତମେ ପାଗଳ ହେଲ ନା କ'ଣ ? ଘରର ଏ ଯେଉଁ ଅବସ୍ଥା, ସେଥିରେ ଆଠହଜାର ଟଙ୍କାର ନିବନ୍ଧ ?"

"କ'ଣ କହିବି, ଗଙ୍ଗା ତ ଠିକ୍ କରିଦେଇ ଯାଇଛି, ସିଦ୍ଧେଶ୍ୱରୀ ପି. ସି. ଏସ୍ ରେ ପାସ୍‌କରି ଯାଇଛି, ମେ' ମାସରେ ଯେତେବେଳେ ବିନ୍ଧେଶ୍ୱରୀ ଆମ ପାଖକୁ ଶୋକପତ୍ର ଲେଖିଥିଲେ, ସେଥିରେ ସେ କହିଥିଲେ ଯେ ତାଙ୍କ ପୁଅ ପାଇଁ ରାଜା ଯଶୋବନ୍ତ ରାୟଙ୍କ ଘରୁ ପ୍ରସ୍ତାବ ଆସିଛି ଓ ସେମାନେ ପଚିଶ ହଜାର ଟଙ୍କା ଯୌତୁକ ଦେବେବୋଲି କହୁଛନ୍ତି; କିନ୍ତୁ ଗଙ୍ଗା ସଙ୍ଗେ କଥା ହୋଇଯାଇଥିବାରୁ ସେ ଅନ୍ୟ କୌଣସି ପ୍ରସ୍ତାବକୁ ଗ୍ରହଣ କରିପାରୁନାହାନ୍ତି । ନବଲକୁ ମୁଁ ସେ ଚିଠି ଦେଖାଇ ଦେଇଛି ।"

"ତା'ହେଲେ ନିବନ୍ଧ ଯଦି ଆଠହଜାର—, ବାହାଘର ପନ୍ଦର ହଜାର ଟଙ୍କାର ଚୁକ୍ତି । କ'ଣ ନବଲ, ତମେ ବିନ୍ଧେଶ୍ୱରୀପ୍ରସାଦଙ୍କୁ ପନ୍ଦର ହଜାର ଟଙ୍କା ଦେଇ ସିଦ୍ଧେଶ୍ୱରୀ ସଙ୍ଗେ ବିଦ୍ୟାର ବାହାଘର କରିବଟି ?"

ନବଲ ଉତ୍ତର ଦେଲା, "ଜେଜେ, ବାପା ଯେତେବେଳେ ବାହାଘର ଠିକ୍ କରି ଯାଇଛନ୍ତି, ତାକୁ ଯେମିତି ହେଲେ କରିବାକୁ ହେବ ।"

ଜ୍ୱାଲପ୍ରସାଦ ଥ୍ୱ' ପିଚ୍ଚି ପିଚ୍ଚି କହିଲେ, "ଜ୍ଞାନୁ, ତୁ ତ ବିନ୍ଦେଶ୍ୱରୀ ବାବୁଙ୍କୁ ଭଲ ଭାବରେ ଜାଣୁ । ତାଙ୍କୁ କହ, ସେ ଟଙ୍କା କିଛି କମାଇ ଦିଅନ୍ତୁ । ପନ୍ଦର ହଜାର ଟଙ୍କା ଯଦି ସେ ଏମିତି ନିଅନ୍ତି ତା'ହେଲେ ବାହାଘର ଖର୍ଚ୍ଚ ତ ଆହୁରି ଦୁଇ ତିନି ହଜାର, ଏମିତି ଅଠର ହଜାର । ଅଠର ହଜାର ଆମ ପାଇଁ ବହୁତ ବେଶୀ । ତେଣେ ବାହାଘରର ତାରିଖ ବଢ଼ାଇବାକୁ ସେ ରାଜି ନୁହଁନ୍ତି ।"

ଜ୍ଞାନପ୍ରକାଶ କହିଲେ ଯେ ବିନ୍ଦେଶ୍ୱରୀପ୍ରସାଦ ମଣିଷ ନୁହେଁ, ଟଙ୍କା ରାକ୍ଷସ, ନିଜେ ଫୈଜାବାଦର ଡିଷ୍ଟ୍ରିକ୍ଟ ସେସନ୍‌ସ ଜଜ, ବହୁତ ଟଙ୍କା ଦରମା, ପୁଅ ପୁଣି ଡେପୁଟି କଲେକ୍ଟର ହୋଇଗଲାଣି; କିନ୍ତୁ ଗୋଟାଏ ଗୋଟାଏ ପଇସା ପାଇଁ ତାଙ୍କ ପ୍ରାଣ ଛୁଟିଯାଉଛି । ମୁଁ ତ କହୁଛି ତମେ ସେ ବାହାଘର ଭାଙ୍ଗି ଦିଅ । ତା'ଠୁ ଆହୁରି ଭଲ ପିଲା ବି ମିଳିବେ ।"

ଜ୍ୱାଲପ୍ରସାଦ କହିଲେ, "ଦେଖ ଜ୍ଞାନୁ, ଏହି ସମ୍ପର୍କ ଭାଙ୍ଗିବାର ସମ୍ଭାବନା ଆଉ ଖୁବ୍ କମ୍ । ମୁଁ ହୁଏତ ରାଜି ହୋଇଯାନ୍ତି; କିନ୍ତୁ ନବଲ କେବେ ରାଜି ହେବନାହିଁ । ଗଙ୍ଗା ଯାହା ଠିକ୍ କରିଯାଇଛି, ନବଲ ପାଇଁ ତାହା ବେଦର ଗାର ।"

ଜ୍ଞାନପ୍ରକାଶ ନବଲକୁ ଚାହିଁଲେ, ନବଲ ମୁହଁ ତଳକୁ କରି ଚୁପଚାପ ବସିଥାଏ । କିଛି ଭାବିଚିନ୍ତି ଜ୍ଞାନପ୍ରକାଶ ଜ୍ୱାଲଙ୍କୁ ପଚାରିଲେ, "ଆପଣଙ୍କ ପାଖରେ ବର୍ତ୍ତମାନ କେତେଟଙ୍କା ଅଛି ?"

"ମୋ ପାଖରେ ତ ବ୍ୟାଙ୍କ୍‌ରେ ମୋଟେ ଦୁଇହଜାର ଟଙ୍କା ଅଛି । ଗଙ୍ଗାର କରଜ ସୁଝା ସୁଝି କରି ତା' ପକ୍ଷରୁ ମୋଟେ ବାରଶହ ଟଙ୍କା ମିଳିଲା, ଗଙ୍ଗା ହାତରେ ଯେଉଁ ହୀରାମୁଦି ଥିଲା, କଲିକତାରେ ତାକୁ ବିକିବାରେ ସାଢ଼େ ପାଞ୍ଚହଜାର ଟଙ୍କା ମିଳିଲା । ଏମିତି ପ୍ରାୟ ନଅ ହଜାର ପାଖାପାଖି ଟଙ୍କା ଅଛି ।"

ଜ୍ଞାନପ୍ରକାଶ କହିଲେ, "ଧର ନଅ ହଜାର ଟଙ୍କା, ଯୌତୁକ ପାଇଁ ବାକି ଛଅ ହଜାର ଟଙ୍କା ଦରକାର । ଧରନ୍ତୁ ଆପଣ ନିବନ୍ଧ ପାଇଁ ଛଅହଜାର ଟଙ୍କା ଦେଇସାରିଛନ୍ତି, ତା'ହେଲେ ବାହାଘର ପାଇଁ ଆପଣଙ୍କୁ ଆହୁରି ଆଠ ନଅ ହଜାର ଟଙ୍କା ଯୋଗାଡ଼ କରିବାକୁ ପଡ଼ିବ । ଆପଣ ଏ ବିଷୟରେ କ'ଣ ଠିକ୍ କରିଛନ୍ତି ?"

"ଏ ପର୍ଯ୍ୟନ୍ତ ତ ଭାବିନାହିଁ; କିନ୍ତୁ ଭାବିବାକୁ ପଡ଼ିବ । ଗଙ୍ଗା ମୋଟର ଗାଡ଼ିରୁ ହଜାର ଟଙ୍କା ମିଳିବ । ବାକି ଛ' ସାତ ହଜାର ଟଙ୍କା କରଜ କରିବାକୁ ପଡ଼ିବ ।"

କ'ଣ କିଛିଏ ଭାବି ସେ କହିଲେ, "ଜ୍ଞାନୁ, ସତ୍ୟପ୍ରକାଶଙ୍କୁ ଲେଖି ତୁ ଦୁଇ ହଜାର ଟଙ୍କା

ଯୋଗାଡ଼ କରଦେ । ମୁଁ ଭାବୁଛି ଲକ୍ଷ୍ମୀଚନ୍ଦଠୁ ପ୍ରାପ୍ୟ ପାଞ୍ଚହଜାର ଟଙ୍କା ମୁଁ ଯୋଗାଡ଼ କରପାରିବ । ବାହାଘର ତ କୌଣସିମତେ କରିବାକୁ ହେବ ।''

ଜ୍ଞାନପ୍ରକାଶ ଜ୍ୱାଲପ୍ରସାଦଙ୍କ କଥାର କୌଣସି ଜବାବ ନ ଦେଇ ଚା' ପିଇ ଚୁପ୍‌ଚାପ୍ ନିଜ ବଖରାକୁ ଚାଲିଗଲେ ।

ଜ୍ୱାଲପ୍ରସାଦ ନବଲ୍‌କୁ ପଚାରିଲେ, ''ନବଲ୍, କ'ଣ କରିବା କହ ।''

''ଆମକୁ ତ ନିବନ୍ଧ ପଠାଇବାକୁ ହେବ । ଆମେ ଯେତେବେଳେ ଜବାବ୍ ଦେଇ ସାରିଛେ, ସେଇଠି ବାହାଘର କରିବାକୁ ହେବ ।''

ଜାଲପ୍ରସାଦ କହିଲେ, ''ହଉ ହେଲା, ମୁଁ ତା'ହେଲେ ତାଙ୍କୁ ଚିଠି ଲେଖି ଦେଉଛି —ନବରାଜକୁ ତାଙ୍କ ଚାହିଁବା ଅନୁସାରେ ଆଠହଜାର ଟଙ୍କା ନିବନ୍ଧ ଯିବ ।''

ବର୍ତ୍ତମାନ ଖରା ସମ୍ପୂର୍ଣ୍ଣ ଲିଭି ଯାଇଥିଲା, ନବଲ ଘର ଭିତରକୁ ଯାଇ ଲୁଗାପଟା ବଦଳାଇ ବୁଲିଯିବା ପାଇଁ ବାହାରିଲା । ସେ ବାରଣ୍ଡାକୁ ଆସିବା ମାତ୍ରେ ଜ୍ଞାନପ୍ରକାଶ ଡାକିଲେ, ''ନବଲ, ଟିକିଏ ଏଣିକି ଆସିଲୁ ।''

ନବଲ ଯାଇଁ ଦେଖିଲା ଜ୍ଞାନପ୍ରକାଶ ଘର ଭିତରେ ଏପଟ ସେପଟ ଟହଲ ମାରୁଛନ୍ତି । ନବଲ ପହଞ୍ଚିଲା ମାତ୍ରେ ସେ କହିଲେ, ''ମୋ ପାଖରେ ମୋଟେ ତିନି ହଜାର ଟଙ୍କା ଅଛି । ତମେ ଦୁଇହଜାର ଟଙ୍କା ନିଅ । କିନ୍ତୁ ଏ ଟଙ୍କା ଜେଜେ ବାପାଙ୍କୁ ନ ଦେଇ ତମ ମା'ଙ୍କ ହାତରେ ଦେଇଦେବ । ମୁଁ ତ ସତ୍ୟପ୍ରକାଶ ଭାଇଙ୍କୁ ଲେଖିବି; କିନ୍ତୁ ସେ ଠିକ୍ ସମୟରେ ଟଙ୍କା ପଠାଇବାର ଆଶା କମ୍ ।''

ନବଲ କହିଲା, ''ଏତେ ତରତର ଏବେ କାହିଁକି ଜ୍ଞାନ ଜେଜେ ?''

ଜ୍ଞାନପ୍ରକାଶ ଟିକିଏ ବିରକ୍ତ ହେଲାପରି କହିଲେ, ''ମୁଁ ଯାହା କହୁଛି କର । ମୋର କେଉଁ ଠିକଣା ଅଛି, କେତେବେଳେ ପଇସା କୁଆଡ଼େ ଖର୍ଚ୍ଚ ହୋଇଯିବ । ଆଗେ ଟଙ୍କାକୁ ମା' ପାଖେ ରଖିଦିଅ, ତା'ପରେ ଯା ବର୍ତ୍ତମାନ ଏଇଠୁ ସିଧା ମା' ପାଖକୁ ଯା ।'' ତା'ପରେ ଜ୍ଞାନପ୍ରକାଶ ଘର ଭିତରେ ସେମିତି ଟହଲିବାକୁ ଲାଗିଲେ ।

ସେପ୍ଟେମ୍ବର ମାସରେ ବିଦ୍ୟାର ନିବନ୍ଧ ସ୍ଥିର ହିବାକଥା । ଦଶହରା ଛୁଟିରେ ସେ ଘରକୁ ଆସିଥିଲା । କିନ୍ତୁ ତା'ମନରେ କିଛି ସୁଖ ନ ଥିଲା । ନିବନ୍ଧ ଯିବା ପୂର୍ବଦିନ ସନ୍ଧ୍ୟାବେଳେ ସେ ନବଲକୁ କହିଲା, ''ଚାଲ ଭାଇ, ଆଲଫ୍ରେଡ୍ ପାର୍କ ଆଡ଼େ ଟିକିଏ ବୁଲି ଆସିବା । ଘରେ ବସି ବସି ଭାରି ବିରକ୍ତ ଲାଗିଲାଣି ।''

ବିଦ୍ୟାର ଏ ପ୍ରସ୍ତାବ ଶୁଣି ନବଲ ଆଶ୍ଚର୍ଯ୍ୟ ହେଲା ସତ; କିନ୍ତୁ ବିଦ୍ୟା ସଙ୍ଗରେ ସେ ଆଲଫ୍ରେଡ଼ ପାର୍କ ଆଡ଼କୁ ଗଲା । ବହୁତବେଳରୁ ବର୍ଷା ବନ୍ଦ ହୋଇଥିଲେ ବି ଭାରି ଗରମ ଲାଗୁଥିଲା । ରାମଲୀଳା ଶୋଭାଯାତ୍ରା ଦେଖିବା ପାଇଁ ଲୋକେ ସହର ଆଡ଼କୁ ଚାଲିଯାଇ-

ଥିଲେ । ପାର୍କରେ ପହଞ୍ଚି ବିଦ୍ୟା କହିଲା, "ଭାଇ, ଗୋଟାଏ କଥା ମୁଁ ପଚାରିବାକୁ ଚାହେଁ । ମୋ ବାହାଘରରେ କେତେ ଯୌତୁକ ଦିଆଯାଉଛି ?"

ନବଲ କହିଲା, "ତୁ ସେଥିରୁ କ'ଣ ପାଇବୁ ? ବାପା ଯାହା କହି ଯାଇଥିଲେ ସେୟା ଦିଆଯିବ ।"

"ମୋ ବାହାଘର ଯେତେବେଳେ ମୁଁ ପାଇବ ନାହିଁ ? ନାହିଁ ଭାଇ, ତମକୁ କହିବାକୁ ହେବ ।"

"ଅଠ ହଜାରର ଜିନିଷ ଯାଉଛି—ଚାରିହଜାର ଟଙ୍କା ଓ ଚାରିହଜାରର ଜିନିଷ ।"

ବିଦ୍ୟା କହିଲା, "ହିଁ ଚାରି ହଜାର ଟଙ୍କା ଓ ଚାରି ହଜାରର ଜିନିଷ । ତା ମାନେ ଯୌତୁକ ପନ୍ଦର ହଜାର ଠିକ୍ ହୋଇଛି ।"

ନବଲ କହିଲା, "ହିଁ, ବାପା ସେୟା ଠିକ୍ କରିଥିଲେ ।"

" ତା ହେଲେ ତମେ ବିଲାତ କାହିଁକି ଯାଉନା ମୁଁ ଏବେ ବୁଝିଲି । ଆଚ୍ଛା ଭାଇ, ବାପାତ କିଛି ଟଙ୍କା ରଖିଯାଇ ନଥିଲେ । ତେବେ ଏ ଟଙ୍କା ଆସିଲା କେଉଁଠୁ ?"

ନବଲ କହିଲା, "ମୁଁ ତ ଓକିଲାତି ପଢ଼ୁଛି, ତୁ ଜେରା କରୁଛୁ କ'ଣ ? ଛାଡ଼ ସେ ସବୁ କଥା । ଜେଜେବାପା ଏହି ଟଙ୍କା ଯୋଗାଡ଼ କରିଛନ୍ତି ଓ ଆହୁରି ମଧ୍ୟ କରିବେ । କ'ଣ ଏହି କଥା ସବୁ ପଚାରିବା ପାଇଁ ମୋତେ ଏଠାକୁ ଆଣିଛୁ ?"

"ହିଁ ଭାଇ, ଏ ସବୁ ପଚାରିବା ପାଇଁ ଏଠାକୁ ଆସିଛୁ । ତା ହେଲେ ମୋ ବାହାଘର ଯୋଗୁ ଏହି ଘର ଧ୍ୱଂସ ହେବାକୁ ଯାଉଛି । ଶୁଣିଲି ଜେଜେବାପା ଯୌତୁକ କମାଇ ଦେବା ପାଇଁ ବିନ୍ଦେଶ୍ୱରୀ ପ୍ରସାଦଙ୍କୁ ଲେଖିଥିଲେ; କିନ୍ତୁ ରୁକ୍ଷ ଭାବରେ ତାହା ସେ ଅସ୍ୱୀକାର କରିଦେଲେ । ଭାଇ ଏ କଥା କ'ଣ ସତ ?"

ନବଲ ହସି ହସି କହିଲା, "ହିଁ ସେ କଥା ସତ ଯେ, ତୁ ନିଜ ଶଶୁରର ନାଁ ଧରୁଛୁ, ତୋତେ ଲଜ ମାଡ଼ୁନାହିଁ ?"

କିଛି ସମୟ ଚୁପରହି ବିଦ୍ୟା ପୁଣି କହିଲା, "ଭାଇ, ତମେ ସେଠି ମୋ ବାହାଘର କରନାହିଁ । ତା' ଛଡ଼ା ମୁଁ ମଧ୍ୟ ବାହା ହେବାକୁ ଚାହେଁ ନାହିଁ ।" ଏତକ କହି ବିଦ୍ୟା କାନ୍ଦି ପକାଇଲା ।

ନବଲ ବିଦ୍ୟା ହାତକୁ ନିଜ ହାତରେ ରଖି କହିଲା, "ବିଦ୍ୟା, କଥାଟା ତ ବହୁତ ଆଗେଇ ଗଲାଣି । ବାପା ଯାହା କହିଯାଇଛନ୍ତି ଆମକୁ ନିଶ୍ଚୟ ତାହା କରିବାକୁ ହେବ । ଆଉ ଧ୍ୱଂସ ହେବା କଥା ଯାହା କହୁଛୁ, ଭଲ ମନ୍ଦ କରିବା ଲୋକ ତ ଭଗବାନ । ଏ ବାହାଘରରେ ପରିବାରର କ୍ଷତି ହେବ ନାହିଁ, କମ୍ବା ମୋର କ୍ଷତି ହେବନାହିଁ, ତୁ ଏହି ବିଶ୍ୱାସ ରଖ ।"

"ଭାଇ, ମୁଁ କିନ୍ତୁ ନଷ୍ଟ ହୋଇଯିବି । ମୁଁ ତମକୁ ହାତଯୋଡ଼ି କହୁଛି, ତମେ ମୋତେ ସେ ଧନପିଶାଚ ଘରକୁ ଜବରଦସ୍ତ ଠେଲି ଦିଅ ନାହିଁ । ସେଥିପାଇଁ ବର୍ତ୍ତମାନ ସମୟ ଅଛି ।"

ତ୍ୟାଗ, ସାଧୁତା ଓ କର୍ତ୍ତବ୍ୟ ନିଶାରେ ଅଭିଭୂତ ନବଲ ବିଦ୍ୟାର ମନକଥାକୁ ବୁଝି ପାରିଲା ନାହିଁ । ସେ ବିଦ୍ୟାକୁ ବିରକ୍ତ ହୋଇ କହିଲା, "ଦେଖ ବିଦ୍ୟା, ତୁ ବର୍ତ୍ତମାନ ଆଉ ଏମିତି କଥା କହନାହିଁ । ଏ ହେଉଛି ବାପାଙ୍କ କଥା, ବାପା ତୋର ସବୁ ଦାୟିତ୍ୱକୁ ମୋ' ଉପରେ ଛାଡ଼ି ଯାଇଛନ୍ତି । ମୁଁ ସତ କହୁଛି, ମୁଁ ବିଲାତ ଯିବାକୁ ଚାହୁଁ ନାହିଁ । ନଚେତ୍ ଜ୍ଞାନ ଜେଜେ ତାଙ୍କର ଖର୍ଚ୍ଚରେ ବର୍ତ୍ତମାନ ମୋତେ ବିଲାତ ପଠାଇ ଦେବାକୁ ଚାହାନ୍ତି । ଚାଲ, ଘରକୁ ଯିବା, ବହୁତ ଡେରି ହୋଇଗଲାଣି । ଆଉ ଏ ବିଷୟରେ ପଦେ କଥା ତୁ ମୋତେ କହନା ।"

ବିଦ୍ୟା ଆଖିରୁ ଲୁହ ପୋଛୁ ପୋଛୁ କହିଲା, "ଭାଇ, ତମେ ମୋ କଥା ବୁଝିପାରୁ ନାହଁ କିମ୍ବା ବୁଝି ପାରିବ ନାହିଁ ।" ତା ପରେ ସେ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲା, "ହଁ, ତମେ ଯେମିତି କହିବ ମୁଁ ସେମିତି କରିବି; କିନ୍ତୁ ଭାଇ, ଇଏ ମୋର ବି. ଏ. ଶେଷ ବର୍ଷ । ଏହି ବାହାଘରରେ ମୋର ଯେମିତି ପଢ଼ା ନଷ୍ଟ ନ ହୁଏ । ତମେ ପ୍ରତିଜ୍ଞା କର ତମେ ମୋତେ ବି. ଏ. ପାସ କରାଇଦେବ । କହ ଭାଇ, ବି. ଏ. ପାସ୍ କରାଇ ଦେବଟି ?"

ନବଲ ବିଦ୍ୟାର ଏହି ଭଙ୍ଗୀରେ ଅଭିଭୂତ ହୋଇ କହିଲା, "ବିଦ୍ୟା, ମୁଁ ଶପଥ କରି କହୁଛି ମୁଁ ତୋତେ ବି. ଏ. ପାସ୍ କରାଇ ଦେବି ।"

ନିର୍ଦ୍ଧାରିତ ଦିନ ସକାଳେ ନବଲ ନିର୍ବନ୍ଧ ଭାର ନେଇ ଫୈଜାବାଦରେ ପହଞ୍ଚିଲା । ତାକୁ ନେବା ପାଇଁ ବିନ୍ଦେଶ୍ୱରୀ ପ୍ରସାଦ ସ୍ୱୟଂ ଷ୍ଟେସନକୁ ଆସିଥିଲେ । କେଡ଼େ ଉଦାର ତାଙ୍କର ଚେହେରା ! ନବଲ ବିନ୍ଦେଶ୍ୱରୀଙ୍କୁ ଏହି ପ୍ରଥମଥର ଦେଖିଲା । ବିନ୍ଦେଶ୍ୱରୀ ପଚାରିଲେ, "ଭଲରେ ଆସିଲଟି ? ଗାଡ଼ିରେ କିଛି ଅସୁବିଧା ହୋଇ ନାହିଁ ତ ?"

ନବଲ ବିନ୍ଦେଶ୍ୱରୀଙ୍କର ଏହି ହାବଭାବ ଦେଖି ଭାରି ଖୁସି ହୋଇଗଲା । ସନ୍ଧ୍ୟାରେ ନିର୍ବନ୍ଧ ପୂର୍ବରୁ ବିନ୍ଦେଶ୍ୱରୀ ନବଲକୁ କହିଲେ, "ନିର୍ବନ୍ଧ ପାଇଁ ଯେଉଁ ଜିନିଷ ଆସିଲା ଟିକିଏ ଦେଖିବା ।"

ନବଲ ଟ୍ରଙ୍କ ଖୋଲି ଗୋଟାଏ ବଡ଼ ଥାଳି ଦେହରେ ଜିନିଷ ସବୁ ସଜାଇ ରଖିଲା । ଜିନିଷପତ୍ର ଦେଖିବା ମାତ୍ରେ ବିନ୍ଦେଶ୍ୱରୀଙ୍କର ମୁହଁ ଆମ୍ବିଲା ପଡ଼ିଗଲା । ସେ କହିଲେ, "ନଗଦ ଚାରିହଜାର ଟଙ୍କା ତ ଠିକ୍ ଅଛି, କିନ୍ତୁ ବାକି ଜିନିଷ ଚାରିହଜାର ଟଙ୍କାର ନୁହେଁ । ଏ ଗୁଡ଼ାକ ତ ସବୁ ବଡ଼ ଅସୁବିଧା କଥା ।"

ନବଲ ତାର ଜେଜେବାପାଙ୍କ ଚିଠିଟା ବିନ୍ଧେଶ୍ୱରୀଙ୍କର ହାତରେ ଦେଇ କହିଲା, "ଜେଜେବାପା ଚିଠି ପଠାଇ ଅଛନ୍ତି ।"

"ବିନ୍ଧେଶ୍ୱରୀପ୍ରସାଦ ବିଦ୍ରୂପ କରି କହିଲେ, "ସେ ଚିଠିଟା ନେଇ କ'ଣ ଗୁଡ଼ିକିବି ? ସବୁ ଜିନିଷର ଦାମ୍ ଶତକଡ଼ା ପଚିଶ ବଢ଼ାଇ ଲେଖା ହୋଇଛି ମୁଁ ଜାଣେ ।" ବର୍ତ୍ତମାନ ନବଲ ବିନ୍ଧେଶ୍ୱରୀଙ୍କର ଦ୍ୱିତୀୟ ରୂପ ଦେଖିବାକୁ ପାଇଲା—"ଯଦି ଏତିକି ବଳ ପାଉ ନଥିଲ, ମୋ ଘରେ ବାହାଘର ଠିକ୍ କରିବାର କ'ଣ ଦରକାର ଥିଲା ?"

ନବଲ ଜାଣିଥିଲା ସବୁ ଜିନିଷର ଦାମ୍ ଶତକଡ଼ା ପଚିଶ ବଢ଼ାଇ ଲେଖାଯାଇଥିଲା; କିନ୍ତୁ ସେ ଯେତେବେଳେ ବଳ କଥା କହିଲେ ତାକୁ ଭାରି ଖରାପ ଲାଗିଲା । ସେ କହିଲା, "ଆଜ୍ଞା, ଝିଅ ପକ୍ଷର ପୁଣି ବଳ ଗୋଟାଏ କ'ଣ ? ତା'ଛଡ଼ା ଯାହାଙ୍କର ବଳ ଥିଲା ସେ ତ ଏବେ ନାହାନ୍ତି । ଆମେ ତ ଆଗରୁ ଏ ସବୁ ଲେଖିଦେଇଥିଲୁ । ଯେଉଁ ଭଗବାନ ଏ ସବୁ ଘଟାଇଲେ ତାଙ୍କୁ ଆଉ କ'ଣ କହିବା ?"

ନବଲ ବିନମ୍ର ହୋଇ ଯାହା ସବୁ କହିଲା, ବିନ୍ଧେଶ୍ୱରୀଙ୍କ ଉପରେ ତାର କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ କହିଲେ, "ତମେ ଜାଣି ଆଜି ଆମ ନାକ କାଟିଦେଲ । ଏ ଭାର ଦେଖି ଲୋକେ ଆମକୁ କ'ଣ କହିବେ ! ବହୁତ ବଡ଼ ବଡ଼ ଅଫିସର, ଜମିଦାର ଓ ଧନୀ ଲୋକଙ୍କୁ ଆମେ ନିମନ୍ତ୍ରଣ କରିଛୁ । ତମ ଜେଜେବାପାଙ୍କୁ କହିଦେବ,ଆମ ସଙ୍ଗେ ଏ ଧୋକାବାଜି ଚାଲିବ ନାହିଁ । ଏ ଜିନିଷପତ୍ର ଆମର ଦରକାର ନାହିଁ । ବାହାଘର ବେଳେ ଆମର ନଗଦ ପୂରିହଜାର ଟଙ୍କା ଦରକାର । ଏମିତି ଜିନିଷ ଆମର ବହୁତ ଏଠି ପଡ଼ିଛି ।"

ମନେହେଲା ନବଲ ଯେମିତି ଦାନ୍ତକାମୁଡ଼ି ରହିଗଲା । ନିବନ୍ଧ ସାରି ତହିଁ ଆରଦିନ ସକାଳେ ସେ ଆଲହାବାଦ ଫେରିଆସିଲା । ଜ୍ୱାଲାପ୍ରସାଦଙ୍କୁ ନିବନ୍ଧ କଥା ସବୁ ଶୁଣାଉ ଶୁଣାଉ ସେ କହିଲା, "ଜେଜେ, ଆମେ ଗୋଟାଏ କି ଅର୍ଥପିଶାଚ ପାଖରେ ଯାଇ ଜୁଟିଗଲେ ! ଜ୍ଞାନ ଜେଜେ ଠିକ୍ କହୁଥିଲେ । ତାଙ୍କ ଘରେ ବିଦ୍ୟାର ବାହାଘର ସ୍ଥିର କରି ଆମେ ଭୁଲ କରିଛେ ।"

ଏ କଥା ଶୁଣି ଜ୍ୱାଲାପ୍ରସାଦ ତାଟକା ହୋଇ ରହିଗଲେ । ଜ୍ୱାଲାଙ୍କ ପାଖରେ ଆଉ ମୋଟେ ତିନିହଜାର ଟଙ୍କା ଥିଲା ଓ ବାହାଘର ପାଇଁ ମୋଟେ ଦୁଇ ମାସ ସମୟ ଥିଲା । ବଡ଼ ଚିନ୍ତିତ ହୋଇ ସେ କହିଲେ, "ନବଲ, ଯାହା ହୋଇଗଲଣି, ଗଲଣି । ବର୍ତ୍ତମାନ ଆମର ନଅ ହଜାର ଟଙ୍କା ଦରକାର । ମୋ ପାଖରେ ମୋଟେ ତିନି ହଜାର ଟଙ୍କା ଅଛି । ଆମକୁ ଆହୁରି ଛଅ ହଜାର ଟଙ୍କା ଯୋଗାଡ଼ କରିବାକୁ ହେବ ।"

ନବଲ କ୍ଷୀଣ କଣ୍ଠରେ କହିଲା, "ହଁ ଜେଜେ, ଛଅ ହଜାର ଟଙ୍କା ଯୋଗାଡ଼ ନ କରି

ଆମର ଆଉ ସୁଖ ନାହିଁ ।''

ଜ୍ୱାଲାପ୍ରସାଦ ହତାଶ ହୋଇ କହିଲେ, ''କ'ଣ କହିବ, ମୁଁ ଜ୍ଞାନପ୍ରକାଶଙ୍କୁ କହିଥିଲି ସତ୍ୟପ୍ରକାଶଠାରୁ ଦୁଇ ହଜାର ଟଙ୍କା ମଗାଇ ଦେବା ପାଇଁ । ମୁଁ ବି ଦୁଇ ଖଣ୍ଡ ଚିଠି ଲେଖିଲି; କିନ୍ତୁ ସେ କିଛି ଜବାବ ଦେଲା ନାହିଁ କିମ୍ବା ଜ୍ଞାନ ମୋତେ ଆଉ କିଛି କହିଲା ନାହିଁ ।''

ନବଲ ଜ୍ଞାନପ୍ରକାଶଙ୍କ ଟଙ୍କାକଥା ସମ୍ପୂର୍ଣ୍ଣ ଭୁଲିଯାଇଥିଲା । ସେ ବର୍ତ୍ତମାନ କହିଲା, ''ଜେଜେ, ଜ୍ଞାନ ଜେଜେ ମୋତେ ଦୁଇମାସ ପୂର୍ବେ ଦୁଇ ହଜାର ଟଙ୍କା ଦେଇଥିଲେ । ମୁଁ ମା' ପାଖରେ ସେ ଟଙ୍କା ରଖିଦେଇଛି । ବର୍ତ୍ତମାନ ଆମକୁ କେବଳ ଚାରି ହଜାର ଟଙ୍କା ଯୋଗାଡ଼ କରିବାକୁ ହେବ ।''

ଜ୍ୱାଲାପ୍ରସାଦଙ୍କ ମୁହଁରେ ଏବେ ପ୍ରସନ୍ନତା ଦେଖାଦେଲା । ସେ କହିଲେ, ''ଭଗବାନ ଚାହିଁଲେ ବାକି ଟଙ୍କା ବି ମିଳିଯିବ । ମୁଁ ଲକ୍ଷ୍ମୀଚନ୍ଦଙ୍କୁ ଆଜି ଲେଖୁଛି । ତାଠୁ ହୁଏତ ପାଞ୍ଚ ହଜାର ଟଙ୍କା ମିଳିଯାଇପାରେ ।''

ଏହି ସମୟରେ ଜ୍ୱାଲାପ୍ରସାଦଙ୍କୁ ଜ୍ଞାନପ୍ରକାଶଙ୍କର ପାଟି ଶୁଣାଗଲା । ସେ କହିଲେ, ''ଭାଇ ! ତମେ ଲକ୍ଷ୍ମୀଚନ୍ଦଠାରେ ଆଶା ରଖନାହିଁ; ବରଂ ଅନ୍ୟ କେଉଁଠି ଦେଖ ।'' ସତ୍ୟପ୍ରକାଶ ମୋ ପାଖକୁ ଶୁଖିଲା ଜବାବ ପଠାଇ ଦେଇଛି ।''

''ଜ୍ଞାନୁ, ତୁ ଦୁଇ ହଜାର ଟଙ୍କା ଦେଇ ବହୁତ ସାହାଯ୍ୟ କରିଛୁ । ମୋର ବିଶ୍ୱାସ ଲକ୍ଷ୍ମୀଚନ୍ଦ ଏହି ଅସମୟରେ ନିଶ୍ଚୟ ଆମକୁ ସାହାଯ୍ୟ କରିବ । ମୁଁ ଭାବୁଛି, ମୁଁ ନିଜେ କାନପୁର ଯାଇ ତା ସଙ୍ଗେ ସାକ୍ଷାତ୍ କରିବି ।''

''ହଁ, ଆପଣ ଯଦି ନିଜେ ଯାଇ ଦେଖା କରିବେ, ତାହେଲେ ମୁହଁ ମୁଲାଜାରେ ହଜାରେ ପାଞ୍ଚଶହ ଅବା ଦେଇପାରେ ।''

ସେହି ଦିନ ସନ୍ଧ୍ୟାରେ ବିଦ୍ୟା ନବଲକୁ କହିଲା, ''ଭାଇ ! ମୁଁ ତମକୁ ଆଉ କିଛି କହିବି ନାହିଁ । ଯାହାସବୁ ଘଟିଲା ତମେ ତ ନିଜେ ଦେଖିଲ । ଭବିଷ୍ୟତରେ ଯାହା ହେବ ସେ ସବୁ ମୁଁ ନିଜେ ଭୋଗିବି । ମୋତେ କାଲି ନେଇ ତମେ ବନାରସରେ ଛାଡ଼ି ଦେଇ ଆସ ।''

ନବଲର ପ୍ରାଣ ସତେ ଯେପରି କାନ୍ଦିଉଠିଲା । ସେ କହିଲା, ''ବିଦ୍ୟା, ମୋତେ ତୁ କ୍ଷମା କର । ଆମର ବହୁତ ବଡ଼ ଭୁଲ ହୋଇଯାଇଛି ।''

''ଭୁଲ ତ ହୋଇଗଲାଣି । ସେ ଭୁଲ ତ ଆଉ ସୁଧାରିବାର ବାଟ ନାହିଁ; କିନ୍ତୁ ମୁଁ ତୁମକୁ ତୁମ ପ୍ରତିଜ୍ଞା ମନେ ପକାଇ ଦେଉଛି । ତମେ କହିଛ ମୋତେ ବି. ଏ. ପାସ୍ କରାଇ ଦେବ ବୋଲି ।''

ନବଲ କହିଲା, "ହଁ ମୁଁ ନିଶ୍ଚୟ ମୋର କଥା ରକ୍ଷା କରିବି । ମୁଁ କାଲି ତୋତେ ନେଇ ବନାରସରେ ଛାଡ଼ି ଦେଇ ଆସିବି । ତୁ ନିଶ୍ଚିନ୍ତ ହୋଇ ପଢ଼ । ତୋ ପଢ଼ାରେ ଯେମିତି କୌଣସି ବାଧା ଆସିବ ନାହିଁ, ସେ ଦାୟିତ୍ୱ ମୋର ।"

ଦିନ ଶୀଘ୍ର ଶୀଘ୍ର ଗଡ଼ିଚାଲିଲା; କିନ୍ତୁ ଜ୍ୱାଲାପ୍ରସାଦ ଟଙ୍କା ଯୋଗାଡ଼ କରି ପାରିଲେ ନାହିଁ । ଜ୍ଞାନପ୍ରକାଶ ଯାହା କହିଥିଲେ ସେଇଆ ହେଲା । ଲକ୍ଷ୍ମୀଚନ୍ଦ ନିଜର ଅସୁବିଧା ଦେଖାଇ ଜ୍ୱାଲାପ୍ରସାଦଙ୍କୁ କହିଲେ, "କାକା ମୋର ଅବସ୍ଥା ବର୍ତ୍ତମାନ ବଡ଼ ଖରାପ । ଝିଅ ବାହାଘରରେ କନ୍ୟାଦାନ ସ୍ୱରୂପ ମୁଁ ତମକୁ ହଜାରେ ଟଙ୍କା ଦେଇ ଦେଉଛି; କିନ୍ତୁ ମୁଁ ବାହାଘରକୁ ଯାଇପାରିବି ନାହିଁ ।" ଏତିକି କହି ଜ୍ୱାଲାପ୍ରସାଦଙ୍କୁ ସେ ହଜାରେ ଟଙ୍କା ଦେଲେ । ବାକି ରହିଲା ତିନିହଜାର । ଜ୍ୱାଲାପ୍ରସାଦ ଜାଣିଥିଲେ ବାହାଘରରେ ଯୌଷର ସ୍ୱରୂପ ଆଉ ହଜାରେ ଟଙ୍କା ମିଳିଯାଇପାରେ; କିନ୍ତୁ ସେ ତ ଭବିଷ୍ୟତ, ଅନିଶ୍ଚିତ କଥା ।

ନଭେମ୍ବର ତୃତୀୟ ସପ୍ତାହ ଶେଷ ହୋଇ ଯାଇଥିଲା । ଜ୍ୱାଲାପ୍ରସାଦଙ୍କ ଭାଇବନ୍ଧୁ ସବୁ ଆସିବା ଆରମ୍ଭ କରି ଦେଇଥିଲେ । ଘରେ ଖୁବ୍ ଚହଳ ହେଉଥିଲା । ନବଲ ବିଦ୍ୟାକୁ ଆଣିବା ପାଇଁ ବନାରସ ଯାଇଥିଲା । ବିଦ୍ୟାକୁ ସାଙ୍ଗରେ ଧରି ସେ ନଭେମ୍ବର ତେଇଶି ତାରିଖରେ ଫେରି ଆସିଲାପରେ ବିଦ୍ୟାର ମଙ୍ଗଳକ୍ରିୟା ଆରମ୍ଭ ହୋଇଗଲା ।

କାମଦାମର ସବୁ ଭାର ନବଲ ଉପରେ ଥିଲା । ଆସିଲା ମାତ୍ରେ ସେ କାମରେ ଲାଗିଗଲା ଓ ସବୁ ଭଲ ଭାବରେ କରି ନେଲା । ଜ୍ଞାନପ୍ରକାଶ ଘରକଥା ସବୁ ବୁଝାସୁଝା କରୁଥିଲେ; କିନ୍ତୁ ସେ ଖାଲି ନାମକୁ । ପ୍ରକୃତ କାମ ସବୁ ଭିକ୍ଷୁ କରୁଥିଲା । ନବଲ ଭିକ୍ଷୁକୁ ସଙ୍ଗରେ ଧରି ବାହାରୁ ଜିନିଷପତ୍ର ସବୁ ଆଣୁଥିଲା ।

ନବଲ ଗୋଟାଏ ଠେଲାରେ ଜିନିଷ ଧରି ଯେତେବେଳେ ଘରେ ଆସି ପହଞ୍ଚିଲା ଭିକ୍ଷୁ ତାକୁ କହିଲା, "ଆରେ ପୁଅ, ସେ ଗୋଲ ବଖରାରେ ଭାଇ ଜ୍ଞାନୁଭାଇ ସଙ୍ଗେ କ'ଣ କଥାବାର୍ତ୍ତା କରୁଛନ୍ତି । ମୋର ମନେ ହେଉଛି ତାଙ୍କ ଦୁହିଁଙ୍କ ଭିତରେ କ'ଣ ଝଗଡ଼ା ଲାଗିଛି । ଟିକିଏ ଯାଇ ଦେଖିଲୁ !"

ନବଲ ଡ୍ରଇଁ ରୁମ୍‌ରେ ଯାଇ ପହଞ୍ଚିଲା ବେଳକୁ ଜ୍ଞାନପ୍ରକାଶ କହୁଥିଲେ, "ମୁଁ ଆପଣଙ୍କୁ କୌଣସି ମତେ କରଜ କରାଇ ଦେବି ନାହିଁ, ବର୍ତ୍ତମାନ ବନ୍ଧାଣ ଥାଳୀରେ ଦୁଇ ହଜାର ଟଙ୍କା ଦିଅନାହିଁ । କହିଦିଅ ପରେ ସେ ଟଙ୍କା ପଠାଇ ଦିଆ ହେବ ।"

"ତୁ ବୁଝୁ ନାହୁଁ, ସେମିତି କଲେ ଭାରି ଗଣ୍ଡଗୋଳ ହୋଇଯିବ । ଏହି ଦୁଇହଜାର ଟଙ୍କା ମୋତେ କେଉଁଠୁ ହେଲେ ଯୋଗାଡ଼ କରିବାକୁ ପଡ଼ିବ ।"

ଜ୍ଞାନପ୍ରକାଶ କହିଲେ, "ପଅରି ଦିନ ବାହାଘର; ଆପଣ ଆଜି ଯିବେ ଯୋଗାଡ଼

କରିବା ପାଇଁ । ଟଙ୍କା କ'ଣ ବଜାରରେ ପଡ଼ିଛି କେଉଁଠୁ ଗୋଟାଇ ଆଣିବେ ନା କ'ଣ ? ପାଖରେ ଯାହା ଅଛି ସେଥିରେ କାମ ଚଳାନ୍ତୁ । ଝିଅ ବାହାଘର କରିବେ ବୋଲି କ'ଣ ନିଜର ମାନ ମହତ ସବୁ ବିକିଦେବେ ?''

ଜ୍ୱାଳାପ୍ରସାଦ ଏକ କଷ୍ଟ ହସ ହସି କହିଲେ, ''ବୁଝିଲୁ ଜାନୁ, ଝିଅ ବାହାଘର କରିବା, ଇଜ୍ଜତ ବିକିବା ଏକା କଥା । ଆମ ଏଇ ଘରଟା ବନ୍ଧା ପକାଇ ଦେଲେ ଦୁଇ ହଜାର ଟଙ୍କା ମିଳିଯିବ । କିଏ ନେବ ତୁ ଟିକିଏ ଠିକ୍ କରିଦେ ।''

''ଏତେବେଳେ ବଙ୍ଗଳା ବନ୍ଧା ପକାଇବେ, କାଗଜପତ୍ର କରିବେ, ମହାଜନ ଖୋଜିବେ—ଆପଣଙ୍କ ବୁଦ୍ଧି କ'ଣ ଭୂତ ଖାଇଗଲାଣି କି ? ପୁଣି କେତେ ଯେ ସୁଧ ଗଣିବାକୁ ହେବ । ନାହିଁ, ସେ ସବୁ ଚଳିବ ନାହିଁ । ଆମର ଏତେ ସମୟ ନାହିଁ ।''

ଜ୍ୱାଳାପ୍ରସାଦ କିଛି ସମୟ ଚିନ୍ତାକରି ନବଲକୁ କହିଲେ, ''ଗଲୁ ଟିକିଏ ତୋ ଜେଜାକୁ ଡାକି ଆଣିଲୁ !''

ନବଲ ଯମୁନାଙ୍କୁ ଡାକି ଆଣିବାରୁ ଯମୁନା କହିଲେ, ''କ'ଣ କହୁଛ ଶୀଘ୍ର କହ । ଦୁଆରେ ଦେବୀପୂଜା ପାଇଁ ଲୋକ ଠିଆ ହୋଇଛନ୍ତି, ମୁଁ ଯିବି ।''

ଜ୍ୱାଳାପ୍ରସାଦ କହିଲେ, ''ଦୁଇ ହଜାର ଟଙ୍କା ଆଉ କମ୍ ପଡ଼ୁଛି । କେଉଁଠୁ ଯୋଗାଡ଼ କରି ହେଉନାହିଁ ।''

''ସେଥିପାଇଁ ମୁଁ କ'ଣ କରିବି ? ସେଗୁଡ଼ାକ ତ ତମ ମରଦଙ୍କ କାମ, ତମେ ଅଛ । ଜାନୁ ଅଛନ୍ତି······।''

ଜ୍ୱାଳାପ୍ରସାଦ ଟିକିଏ ବିରକ୍ତ ହୋଇ କହିଲେ, ''ମଲା, ଆମେ ଯଦି ମାରନ୍ତୁ ତମକୁ କାହିଁକି ଡାକନ୍ତୁ ?''

ଯମୁନା ଟିକିଏ ଭୟଭୀତ ହୋଇ ପଚାରିଲେ, ''ତାହେଲେ କହୁନ କାହିଁକି ଡକାଇଲ ?'

''କଣ କହୁଛି କି ତମର ଆଉ ବୋହୂଙ୍କର କିଛି ଗହଣା ଦେଇଦିଅ ବନ୍ଧା ପକାଇ ଟଙ୍କା ଆଣିବା ।''

ଯମୁନା ପାଟିକରି ଉଠିଲେ, ''ହେ ଭଗବାନ, ତମ ଅବସ୍ଥା ଆସି ଏଠି ପହଞ୍ଚିଲାଣି !''

ଜ୍ୱାଳାପ୍ରସାଦ କହିଲେ, ''ଆଉ ତ କିଛି ଉପାୟ ନାହିଁ । ପାଖରେ ତ ଯାହା ଥିଲା ସବୁ ଶେଷ ହୋଇଯାଇଛି । ଘର ବନ୍ଧା ପକାଇବାକୁ ଆଉ ବେଳ ନାହିଁ । ଏଇ ଗୋଟିଏ ମାତ୍ର ବାଟ ଅଛି । କାଲି ସକାଳେ ମୋତେ ଗହଣା ଦେଇ ଦେବ । ପଅରିଦିନ ବାହାଘରିଆ ଆସିବେ ।''

ସବୁ ଶୁଣି ଯମୁନା କାନ୍ଦପକାଇ କହିଲେ, ''କେଉଁ ମୁହଁରେ ବୋହୂକୁ ଏକଥା

ମୁଁ କହିବି ? ମୁଁ ହେଲେ ଗହଣା ନ ପିନ୍ଧିବି କିଛି ଯାଏ ଆସେ ନାହିଁ; କିନ୍ତୁ ବୋହୂର ଝିଅ ବାହାଘର ହେଉଛି । ତା ଦେହରେ ଖଣ୍ଡେ ଗହଣା ରହିବ ନାହିଁ । ହେ ଭଗବାନ, ବଡ଼ ବଦନାମ ହେବ ସତେ ?''

''ଆରେ ଭଲ ନାଁ ମନ୍ଦ ନାଁର ପ୍ରଶ୍ନ ନାହିଁ । ଏ କାମ ତ ଯେମିତି ହେଲେ କରିବାକୁ ହେବ । କାଲି ସକାଳେ ଗହଣା ଦେଇ ଦେବ ।''

ଯମୁନା କାନ୍ଦି କାନ୍ଦି ଚାଲିଗଲେ । ଅଗଣାରେ ସ୍ତ୍ରୀ ଲୋକମାନେ ହସ ଖୁସି ଭିତରେ ମଙ୍ଗଳ କ୍ରିୟାରେ ଲାଗି ଯାଇଥିଲେ । ଯମୁନା ଚୁପ୍‌ଚାପ୍ ଯାଇ ସେମାନଙ୍କ ସଙ୍ଗରେ ମିଶିଗଲେ । ରୁକ୍ମଣୀ ଯମୁନାର ଏ ଅବସ୍ଥା ଦେଖି ପାଖକୁ ଆସି ଚୁପ୍‌କରି ପଚାରିଲେ, ''ମା, କଣ ହେଲା କି ? ଦେହ ଭଲ ଲାଗୁନାହିଁ କି ?'' ଯମୁନା ରୁକ୍ମଣୀଙ୍କୁ ନିରୋଳାକୁ ଡାକିନେଇ ସବୁକଥା ବତାଇ ଦେଲେ ।''

ସେତିକିବେଳୁ ଘରେ ଏକପ୍ରକାର ଉଦାସୀନତା ଭରିଗଲା । ସବୁକାମ ଚାଲିଥିଲେ ବି କେଉଁଥିରେ ଉତ୍ସାହ ନଥିଲା ପରି ମନେହେଲା; କିନ୍ତୁ କାହିଁକି ଏମିତି ହୋଇଛି ବାହାରର କୌଣସି ବନ୍ଧୁବାନ୍ଧବ ଜାଣି ପାରିଲେ ନାହିଁ, ସମସ୍ତେ ଏକ ପ୍ରକାର ବ୍ୟସ୍ତତା ଅନୁଭବ କଲେ ।

ସନ୍ଧ୍ୟାବେଳକୁ ଘରର ବାତାବରଣ ବହୁତ ବଦଳି ଯାଇଥିଲା ଓ ଭିକ୍ଷୁ ସବୁଠାରୁ ବେଶୀ ସେହି ପରିବର୍ତ୍ତନ ଅନୁଭବ କରିଥିଲା; କିନ୍ତୁ ଏମିତି କାହିଁକି ହେଲା ସେ ନିଜେ କିଛି ବୁଝି ପାରୁ ନଥିଲା । ସେ ସମ୍ଭାଳି ନପାରି ଯମୁନାଙ୍କୁ ଭଣ୍ଡାର ଘରକୁ ଡାକିନେଇ ପଚାରିଲା, ''ଭାଉଜ, କ'ଣ ହେଲା କି ? ସବୁ ହସଖୁସି କାହିଁକି ମଉଳି ଯାଇଛି ?''

ଯମୁନା କାନ୍ଦି-ପକାଇ କହିଲେ, ''ଭିକ୍ଷି, ଏସବୁ ଭଗବାନଙ୍କ ମାୟା । ଭଗବାନ ତ ଆମକୁ ମାଟିରେ ମିଶାଇ ଦେବାକୁ ବିଚାର କରିଛନ୍ତି । ପୁଅକୁ ତ ନେଲେ; ଏବେ ଦେହରୁ ହାତରୁ ଗହଣା ବି କାଢ଼ି ନେଉଛନ୍ତି ।'' ତାପରେ ଯମୁନା ସବୁକଥା ଭିକ୍ଷୁକୁ କହିଦେଲେ ।

ଭିକ୍ଷୁ ଟିକିଏ ହସିଦେଇ କହିଲା, ''କଥା ଏତେଦୂର ହୋଇ ଗଲଣି ! ନାହିଁ ନାହିଁ, ତମ ଗହଣା ଯିବନାହିଁ । ଯା, ଯା, ମନ ଖୁସିରେ ଝିଅ କଥାରେ ଲାଗ । ଭାଇ ଘରେ ଅଛନ୍ତି କି ?''

''ହଁ ଅଛନ୍ତି । ଜ୍ଞାନ ଓ ନବଲ ସଙ୍ଗରେ ବସି କଥାବାର୍ତ୍ତା କରୁଛନ୍ତି ।'' ଏତିକି କହି ଯମୁନା ଚାଲିଗଲେ ।

ନବଲ ଓ ଜ୍ଞାନପ୍ରକାଶ ବସି ଲୋକଙ୍କ ଖିଆପିଆ ବିଷୟରେ ବିଚାର କରୁଥିଲେ ।

ବରଯାତ୍ରୀ ତ ମୋଟେ ନାହେଁ; କିନ୍ତୁ ସହରର ବନ୍ଧୁବାନ୍ଧବ, ପ୍ରିୟପ୍ରୀତ ମିଶି ପ୍ରାୟ ସ୍ତ୍ରିଶହ । ଜ୍ୱାଳାପ୍ରସାଦ ଖଣ୍ଡେ ଦୂରରେ ବସି ଏମାନଙ୍କ କଥା ଶୁଣୁଥାନ୍ତି, ମନରେ ତାଙ୍କର କୌଣସି ଉତ୍ସାହ ନଥାଏ । ଏହି ସମୟରେ ଭିକ୍ଷୁ ଗୋଟାଏ ଟିଣ ବାକ୍ସ ଧରି ଡ୍ରଇଂ ରୁମ୍ ଭିତରକୁ ଆସିଲା । ଟିଣ ବାକ୍ସକୁ ଜ୍ୱାଳାପ୍ରସାଦଙ୍କ ଆଗରେ ଥୋଇଦେଇ କହିଲା, "ବିଦ୍ୟା ବାହାଘର ପାଇଁ ଇଏ ମୋର ଉପହାର ।"

ଜ୍ୱାଳାପ୍ରସାଦ ଚମକି ପଡ଼ି କହିଲେ, "ତୋର ଉପହାର ! କ'ଣ କହୁଛୁ ? ଏଥିରେ କ'ଣ ଅଛି ?"

"ମୁଁ ତ ଗଣିନାହିଁ; କିନ୍ତୁ ଏଥିରେ ବହୁତ ଟଙ୍କା ଅଛି । ଭାଉଜ ଓ ବୋହୂଙ୍କର ଗହଣା ବନ୍ଧା ପକାଇବାର ଆବଶ୍ୟକତା ନାହିଁ । ବିଦ୍ୟା କ'ଣ ମୋର ନୁହେଁ, ମୁଁ ତ ପୁଣି ତାକୁ କାଖରେ କୋଳରେ ଖୁଆଇ ପିଆଇ ଏଡ଼ୁଟିଏ କରିଛି ।"

ଜ୍ଞାନପ୍ରକାଶ ଓ ନବଲ ଦୁହେଁ ଭିକ୍ଷୁ ପାଖକୁ ଉଠି ଆସିଲେ । ଜ୍ଞାନପ୍ରକାଶ ପଚାରିଲେ, "ଏଥିରେ କେତେ ଟଙ୍କା ଅଛି ?"

"କହିଲି ପରା ମୋତେ ଗଣି ଆସେ ନାହିଁ; କିନ୍ତୁ ଜୀବନଯାକର ସବୁ ରୋଜଗାର ଏଥିରେ ଅଛି । ଏହି ଘରେ ତ ବହୁକାଳ କଟିଛି, ଯାହା ମିଳିଛି ରଖିଦେଇଛି । ମା' ଯାହା ଦେଇଛନ୍ତି ସବୁ ଏଥିରେ ଅଛି ଦେଖିନେବ ।"

ଜ୍ୱାଳାପ୍ରସାଦ କହିଲେ, "ଭିକ୍ଷୁ, ଏ ତୋର ସାରା ଜୀବନର ସଞ୍ଚୟ । ଏହାକୁ ଆମେ କେବେହେଲେ ନେଇ ପାରିବୁ ନାହିଁ ।"

ଭିକ୍ଷୁ କହିଲା, "ଭାଇ, ମୋତେ ପରବୋଲି ଭାବୁଛ କାହିଁକି ? ମୋର କେଉଁ ଘରଦ୍ୱାର ନାଁ ପରିବାର ଅଛି ? ଏହି ପୁଅଝିଅମାନଙ୍କୁ ହାତରେ ପକାଇ ମୁଁ ମଣିଷ କରିଛି ।" ଭିକ୍ଷୁ ଆଖିରୁ ଲୁହ ଝରି ପଡ଼ିଲା । ସେ କହିଲା, "ଭାଇ, ଗଙ୍ଗା ମୋତେ ସବୁଠାରୁ ବେଶୀ କରି ମାନୁଥିଲା । ତା ଯୋଗୁ କେତେ ଗର୍ବ ମୋର ଥିଲା; କିନ୍ତୁ ଭଗବାନ କେଡ଼େ ନିର୍ଦ୍ଦୟ, ତାକୁ ମୋ ହାତରୁ ଛଡ଼ାଇ ନେଲେ ।" ତାପରେ ସେ ଲୁହ ପୋଛି କହିଲା, "ଗଙ୍ଗାର ଝିଅ କେମିତି ହାତକୁ ଦହାତ ହୋଇଯିବ, ସେଇ କଥାକୁ ଅନାଇଁ ଥିଲି । ଭଗବାନ ସେଇ ଦିନ ଏବେ ଆଣି ଜୁଟାଇଲେ । ମୁଁ ତ ବିଦ୍ୟା ନାଁରେ ଏହି ବାକ୍ସକୁ ମନାସି କରି ଆସିଛି । ତମେ ଏହାକୁ ରଖ ।"

ଜ୍ୱାଳାପ୍ରସାଦଙ୍କ ଆଖି ବି ଲୁହରେ ଭିଜିଗଲା । ସେ ଭିକ୍ଷୁକୁ ଚାହିଁ ଦେଖିଲେ ସେହି ବୃଦ୍ଧର ଅସୁନ୍ଦର ମୁହଁରେ କେତେ ଦୟା, କେତେ ସ୍ନେହ ମାୟା ଭରି ରହିଛି । ଛାତି ତାଙ୍କର ଖିନ୍ନ ବାଜିଗଲା । ସେ କହିଲେ, "ନବଲ, ଏ ବାକ୍ସକୁ ଛୁଇଁବା ପାଇଁ ଅଧିକାର ମୋର ନାହିଁ, ତୁ ନିଜେ ଏହାକୁ ଖୋଲି ଦେଖ ।"

ନବଲ ବାକ୍ସ ଖୋଲି ଦେଖିଲା ସେଥିରେ ପଚ୍ଚିଶଟା ସୁନା ମୋହର, ଦେଢ଼ଶହ ଟଙ୍କା ଓ ଆଉ କିଛି ରୁପା ଗହଣା ଥିଲା । ଏହି ଗହଣା ଛୁନକା ଭିକ୍ଷୁକୁ ଦେଇଥିଲା ।

ଜ୍ଞାନପ୍ରକାଶ ସେଥିରୁ ବାରଶହ ଟଙ୍କା ଓ ପଚିଶ ମୋହର କାଢ଼ିନେଇ ଭିକ୍ଷୁକୁ କହିଲେ, "ଏତିକ ଆମର ଦରକାର ଥିଲା—ଆମେ ନେଉଛୁ । ବାକିତକ ତମେ ରଖ । ନବଲ ବାହାଘରକୁ ତ ତୁମକୁ କିଛି ଦେବାକୁ ହେବ । ପୁଣି ନିକଟରେ ସୁଧା ବାହାଘରରେ ବି କିଛି ଦାନ କରିବାକୁ ହେବ ।"

ଭିକ୍ଷୁ ଆନନ୍ଦରେ ହସି ହସି କହିଲା, "ହଁ, କାହିଁକି କରିବି ନାହିଁ, ବଞ୍ଚିଥିଲେ ନିଶ୍ଚୟ କରିବି ।"

ଠିକଣା ତାରିଖରେ ବରଯାତ୍ରୀ ଆସିଲେ ଓ ଭଲରେ ବାହାଘର ହୋଇଗଲା । ବିନ୍ଧେଶ୍ୱରୀପ୍ରସାଦଙ୍କ ଆଉ୍ କୌଣସି ପ୍ରକାର ଆପତ୍ତି ଅଭିଯୋଗ ନଥିଲା । ବିଦାୟ ଦିନ ସକାଳେ ନବଲ ବିନ୍ଧେଶ୍ୱରୀଙ୍କ ପାଖକୁ ଯାଇ ହାତ ଯୋଡ଼ି କହିଲା, "ଆମର ଅତିଥି ସତ୍କାରରେ ଯଦି କିଛି ଅସୁବିଧା ହୋଇଥାଏ ତେବେ କ୍ଷମା କରିବେ ।"

ବରଯାତ୍ରୀଙ୍କ ଆଦର ଅଭ୍ୟର୍ଥନାରେ ବିନ୍ଧେଶ୍ୱରୀ ବଡ଼ ପ୍ରସନ୍ନ ଥିଲେ । ସେ କହିଲେ, "ନବଲ, ଆମେ ତମ ଆତିଥ୍ୟରେ ବହୁତ ଖୁସି । ପ୍ରକୃତରେ ତମେ ଯୋଗ୍ୟ ପିତାଙ୍କର ସୁଯୋଗ୍ୟ ପୁତ୍ର । ତୁମେ ଯେମିତି ହୃଦୟବାନ ସେମିତି ସାବଧାନ ମଧ୍ୟ ।"

"ମୋର ଆପଣଙ୍କ ନିକଟରେ ଗୋଟିଏ ଛୋଟ ମାଗୁଣି ଅଛି । ବିଦ୍ୟା ବର୍ତ୍ତମାନ ବି. ଏ. ଶେଷ ବର୍ଷରେ ପଢ଼ୁଛି । ସେ ଯେମିତି ଏ ବର୍ଷ ବି. ଏ. ପରୀକ୍ଷାଟା ଦେବ ।"

ବିନ୍ଧେଶ୍ୱରୀପ୍ରସାଦ ହସି ହସି କହିଲେ, "ଆରେ ତାର କ'ଣ ଚାକିରି ଦରକାର ଯେ ସେ ବି. ଏ ପାସ୍ କରିବ !"

"ଆଜ୍ଞା, ଆପଣଙ୍କ ବୋହୂ ଚାକିରି କାହିଁକି କରିବ ? କିନ୍ତୁ ସିଦ୍ଧେଶ୍ୱରୀ ବାବୁ ବର୍ତ୍ତମାନ ଡେପୁଟୀ କଲେକ୍ଟର । ଭବିଷ୍ୟତରେ ସେ ପୁଣି କଲେକ୍ଟର ହେବେ । ତାଙ୍କ ସ୍ତ୍ରୀ ଯଦି ବି. ଏ. ପାସ୍‌ବାଲି ହୁଏ, ତାହେଲେ ସମାଜରେ ତାଙ୍କ ମାନ ସମ୍ମାନ ଆହୁରି ବଢ଼ିଯିବ ।"

ନବଲ ଠିକ୍ କଥା କହିଥିଲା । ବିନ୍ଧେଶ୍ୱରୀ ସିଦ୍ଧେଶ୍ୱରୀଙ୍କୁ ପଚାରି କହିଲେ, "ନଲେ କଥା ଶୁଣିଲୁଟି ! ତୋର କ'ଣ ଇଚ୍ଛା ?"

"ବାପା, ଆପଣ ଯାହା ଠିକ୍ ଭାବିବେ କରିବେ । ତେବେ ସେ 'ବି.ଏ ପାସ୍ କରିନେଲେ ଭଲ । ମୋଟେ ଦୁଇଚାରି ମାସର କଥା ତ ।"

ବିନ୍ଧେଶ୍ୱରୀପ୍ରସାଦ ହସିଦେଇ କହିଲେ, "ହଁ ନୂଆ ଯୁଗ ହୋଇଗଲା ନା : ସମସ୍ତେ ଏକା କଥା ଭାବୁଛନ୍ତି । ଆଚ୍ଛା ହେଉ, ସପ୍ତାହ ପରେ ମୁଁ ତାକୁ ବିଦାୟ କରିଦେବି; କିନ୍ତୁ ସେ ପରା ବନାରସରେ ହଷ୍ଟେଲରେ ରହି ପଢ଼ୁଛନ୍ତି !"

ନବଲ କହିଲା, "ଆଜ୍ଞା, ହଁ ।"

"ତାହେଲେ ହଷ୍ଟେଲରେ ରହିବା ଖର୍ଚ୍ଚ ତ ତମକୁ ଦେବାକୁ ହେବ । କ'ଣ ସିଦ୍ଧେଶ୍ବର, ମୁଁ କ'ଣ ଭୁଲ କହୁଛି ?"

ସିଦ୍ଧେଶ୍ବରପ୍ରସାଦ କହିଲେ, "ବାପା, ଇଏ କ'ଣ ଗୋଟାଏ କହିବା କଥା । ଯେ ଭଉଣୀକୁ ଆଜଯାଏ ପଢ଼ାଇ ଆସିଲେ, ସେ କ'ଣ ଆଉ ପାଞ୍ଚ ଛ'ମାସ ପଢ଼ାଇ ପାରିବେ ନାହିଁ ?" ଏତିକି କହି ସିଦ୍ଧେଶ୍ବର ଖୁବ୍ ଜୋରରେ ହସିଲେ ।

ସିଦ୍ଧେଶ୍ବରଙ୍କର ଏହି ହସରେ କି ବିଭତ୍ସତା ଓ ବିନ୍ଦେଶ୍ବରଙ୍କ ହସରେ କି କୃତ୍ରିମ ସ୍ୱାର୍ଥପରତା ଭରିରହିଥିଲା ସତେ ! କିନ୍ତୁ ନବଲ ଯେତେବେଳେ ଭଉଣୀକୁ ଜବାବ୍ ଦେଇଥିଲା, ସେ ତାକୁ ନିଶ୍ଚୟ ପଢ଼ାଇବ—ଏଇ କଥା ଭାବି ତା' ମନରେ କୌଣସି ଅସନ୍ତୋଷ ନ ଥିଲା ।

## ତୀର

ରାୟବାହାଦୁର କାମତାନାଥ ଖୁବ୍ ପାଟିକରି କହିଲେ, "ବାବୁ ସ୍ବରାଜ୍ୟ ଦେବାକୁ ଆସିଛନ୍ତି, ଅଥଚ କମିସନ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରୁନାହାନ୍ତି; ଏହାଠୁ ବଳି ମୂର୍ଖତା ଆଉ କ'ଣ ହୋଇପାରେ ? ହିନ୍ଦୁସ୍ଥାନକୁ ସ୍ବାଧୀନତା ମିଳିବ ନା ଛେନାଗୁଡ଼ ମିଳିବ !"

ଜ୍ଞାନପ୍ରକାଶ ଉତ୍ତର ଦେଲେ, "ହଁ, ରାୟସାହେବ, ମିଳିବ ତ ପ୍ରକୃତରେ ଛେନାଗୁଡ଼, ସେଇଥିପାଇଁ ତ ଆମେ ସାଇମନ କମିସନକୁ ବାସନ୍ଦ କଲୁ । ସେମାନଙ୍କ ସଙ୍ଗେ କଥାବାର୍ତ୍ତା କଲେ ଯଦି କିଛି ଲାଭ ହେଉଥାନ୍ତା ତା'ହେଲେ ତ ଆମେ ନିଶ୍ଚୟ କରିଥାନ୍ତୁ ।"

"ଆରେ, ଆମେ ତ ଆଜି ଆମ ପ୍ରାଚୀନ ପରମ୍ପରା ହରାଇ ବସିଛେ । ସାତସମୁଦ୍ର ତେରନଈ ପାରିହୋଇ କମିସନ ଲୋକେ ଆମ ପାଖକୁ ଆସିଛନ୍ତି । ଆମର କର୍ତ୍ତବ୍ୟ ହେଉଛି ସେମାନଙ୍କୁ ଖୁଆଇପିଆଇ, ବୁଲାବୁଲି କରେଇ ସେମାନଙ୍କ ସଙ୍ଗରେ ଭଲରେ କଥାବାର୍ତ୍ତା କରିବା । ତା' ହେଲେ କାମ ଶୀଘ୍ର ହୋଇଥାନ୍ତା । ଆପଣ ଗୋଟାଏ ମାଗିଲାବେଳେ ସେମାନେ ଚାରିଟା ଦେଉଥିଲେ । ସେତିକ ଏବେ ପୁଣି ମୂଳରୁ ଗଲା । ଓଲଟି କଂଗ୍ରେସ ଲୋକେ ସେମାନଙ୍କୁ ବେଇଜତ୍ କରିବାକୁ ବସିଲେ । ସେମାନେ ଏଠି

ବର୍ଷେକାଳ ଅପେକ୍ଷା କରି ରହିଲେ, କାଳେ ଲୋକଙ୍କର ବୁଦ୍ଧି ଫେରିବ, ଲୋକେ ତାଙ୍କ ସଙ୍ଗେ କଥାବାର୍ତ୍ତା କରିବେ ଓ ତାଙ୍କ କଥା ବି ଶୁଣିବେ; କିନ୍ତୁ ତା' ଆଦୌ ହୋଇ ପାରିଲା ନାହିଁ । ବିଚାରି ଅପମାନିତ ହୋଇ ଫେରିଗଲେ । ସେମାନେ ଭାବିଥିବେ କେମିତି ଜଙ୍ଗଲୀ ମୂର୍ଖ ଲୋକଙ୍କ ସଙ୍ଗେ ତାଙ୍କୁ କାମ କରିବାକୁ ପଡ଼ିଲା !"

ରାୟବାହାଦୁରଙ୍କ କଥା ଶୁଣି ଜ୍ଞାନପ୍ରକାଶଙ୍କୁ ଭାରି ମଜା ଲାଗୁଥିଲା । ସେ କହିଲେ, "ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ଆପଣଙ୍କୁ କେହି କେମିତି କମିସନଙ୍କ ପାଖକୁ ଡାକିଲେ-ନାହିଁ ! ଆପଣଙ୍କର ଏତେ ବଡ଼ ପୋଜିସନ, ଏତେ ଧନ-ସମ୍ପତ୍ତି, ଏତେ କ୍ଷମତା !"

"କଣ କହିବା, ଏହି ବଜାତ୍ ଇଂରେଜ ଅଫିସରଗୁଡ଼ା ହଜାର ହଜାର ଟଙ୍କା ଚାନ୍ଦା ନେଇଯାଉଛନ୍ତି; କିନ୍ତୁ କମିସନଙ୍କ ସଙ୍ଗରେ ସାକ୍ଷାତ୍ କରାଇ ଦେବାପାଇଁ କଂଗ୍ରେସ-ବାଲାଙ୍କୁ ଖୁସାମଦ କରୁଛନ୍ତି । ମୁଁ ଯଦି ଯାଆନ୍ତି, ମୁଁ କ'ଣ କମିସନ ଲୋକଙ୍କୁ ସ୍ୱରାଜ୍ୟ ଦେବାପାଇଁ ରାଜି କରାଇ ନଥାନ୍ତି ନାହିଁ ? ମୁଁ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କୁ ଲେଖିଥିଲି; କିନ୍ତୁ ତାଙ୍କର ଚିଠିର ଜବାବ ବି ମିଳିନାହିଁ । ଯଦି ଭବିଷ୍ୟତରେ ଆଉ କେହି ଚାନ୍ଦା ମାଗିବାକୁ ଆସନ୍ତି, ତେବେ ସେ ନିକମାଗୁଡ଼ାଙ୍କୁ ମୁଁ ଆଉ ଗୋଟାଏ ପଇସା ବି ଦେବି ନାହିଁ ।"

ଜ୍ୱାଲାପ୍ରସାଦ କହିଲେ, "କିନ୍ତୁ ଆପଣ ତ ୟୁରୋପରୁ ଫେରୁ ଫେରୁ ବହୁତ ଡେରି ହୋଇଗଲା । ଆପଣଙ୍କର ଅକ୍‌ଟୋବରରେ ଫେରିବାର ଥିଲା; କିନ୍ତୁ ଆପଣ ଫେରିଲେ ଡିସେମ୍ବରରେ । ଆପଣ ବୋଧହୁଏ ସାରା ୟୁରୋପଟାକୁ ଘାଣ୍ଟି ପକାଇଲେ ।"

ରାୟବାହାଦୁର ଟିକିଏ ହସି ଦେଇ କହିଲେ, "କ'ଣ କହିବି, ସେମାନେ ତ ଏମିତି ମାତିଗଲେ ଯେ ସେଠୁ ଫେରିବାପାଇଁ ମୋଟେ ଇଚ୍ଛା କଲେ ନାହିଁ; କିନ୍ତୁ ମୁଁ ସେ ଥଣ୍ଡାଟା ମୋଟେ ସହିପାରିଲି ନାହିଁ । ସେଠୁ ଫେରିଲା ପରେ ଆପଣମାନଙ୍କ ସହିତ ସାକ୍ଷାତ୍ କରିବାପାଇଁ ମୋର ମୋଟେ ସମୟ ହେଲାନାହିଁ । ଝିଅର ବି ଗୋଟାଏ ବର୍ଷ ନଷ୍ଟ ହୋଇଗଲା, ଆସନ୍ତା ବର୍ଷକୁ ଯାଇ ସେ ବିଶ୍ୱବିଦ୍ୟାଳୟରେ ଯୋଗଦେବ ।"

ଏହି ସମୟରେ ନବଲ ଆସି ଘରଭିତରେ ପହଞ୍ଚିଲା । ଭିକ୍ଷୁ ଗୋଟାଏ ଟ୍ରେରେ ଚାରି ଗ୍ଲାସ ସର୍ବତ ଧରି ତା' ସଙ୍ଗରେ ବି ଆସିଲା ।

ଜ୍ଞାନପ୍ରକାଶ ପଚାରିଲେ, "ଏଥର ଖରାଦିନେ କୁଆଡ଼େ ଯିବେ ବୋଲି ଭାବୁଛନ୍ତି ?"

"ଏ ବର୍ଷ ମସୌରୀରେ ମୁଁ ଗୋଟାଏ ଘର କିଣି ନେଇଛି । ଭାବିଲି ପ୍ରତିବର୍ଷ ଖରାଦିନେ ତ କେଉଁଠିକି ନା କେଉଁଠିକୁ ଯିବାକୁ ପଡ଼ୁଛି । ତାହେଲେ ସବୁଦିନ ପାଇଁ ଗୋଟାଏ କୋଠି କାହିଁକି କିଣି ଦେବିନାହିଁ ? ଖୁବ୍ ଶସ୍ତାରେ ମିଳିଗଲା, ମୋଟେ ବାର ହଜାର ଟଙ୍କା ।"

ତା'ପରେ ସେ ପୁଣି ଜ୍ୱାଲପ୍ରସାଦଙ୍କୁ କହିଲେ, "ମୋ ପକ୍ଷରୁ ମୁଁ ଆପଣଙ୍କୁ ନିମନ୍ତ୍ରଣ କରୁଛି, ମେ ମାସ ଆରମ୍ଭ ହୋଇଗଲାଣି । ଏହି ଦୁଇଗୃହ ଦଳ ଭିତରେ ମୁଁ ଏକା ଏକା ଚାଲିଯିବି । ଆପଣ ମୋ ସଙ୍ଗରେ ଚାଲନ୍ତୁ ।"

ଜ୍ୱାଲପ୍ରସାଦ ହସି ହସି ଉତ୍ତର ଦେଲେ, "ମୁଁ ମସୌରୀ କ'ଣ ଯିବି ? ଏଠି ଆଲହାବାଦରେ ବି ମୋର କିଛି ଅସୁବିଧା ନାହିଁ ।"

କାମତାନାଥ ସବଂଡ ପିଉ ପିଉ କହିଲେ, "ଆଚ୍ଛା ନବଲ, ତମେ ତ ଏବେ ଆମ ଘରଆଡ଼େ ଯିବା ଆସିବା ବନ୍ଦ କରି ଦେଇଛ, କଥା କଣ ? ହଁ, ତମେ ବିଲାତ କେବେ ଯାଉଛ ? ଏ ବର୍ଷଟା ତ ତମର ବେକାର ଗଲା ।"

"ଅଜ୍ଞା, ବର୍ତ୍ତମାନ ତ ଆଉ ବିଲାତ ଯିବାର କୌଣସି ବିଚାର ନାହିଁ । ଲ' ପ୍ରଥମ ଭାଗ ପରୀକ୍ଷା ମୁଁ ଦେଇସାରିଛି ଓ ପରୀକ୍ଷାରେ ଭଲ ବି କରିଛି ।"

କାମତାନାଥ ଟିକିଏ ଚକିତ ହୋଇ ପଚାରିଲେ, "ତା'ହେଲେ କଣ ଓକିଲାତି କରିବାପାଇଁ ତମର ଇଚ୍ଛା ?"

ଜ୍ଞାନପ୍ରକାଶ ଉତ୍ତର ଦେଲେ, "କାହିଁକି, ଓକିଲାତିରେ କ'ଣ କିଛି ଖରାପ ଅଛି ? ଆପଣଙ୍କ ପୁଅ ଗୌରୀନାଥ ବି ତ ଓକିଲାତି କରୁଛନ୍ତି ।"

କାମତାନାଥ କହିଲେ, "ଓକିଲାତି କ'ଣ କରୁଛି, ଖାଲି ବେକାର ବୁଲୁଛି । ମାସକୁ ପଚାଶ ଷାଠିଏ ଟଙ୍କା ମିଳିଯାଉଛି । ବୁଝିଲ ନବଲ, ଓକିଲାତି ଗୋଟାଏ ବେକାର କାମ, ମୁଁ କହୁଛି ତମେ ବିଲାତ ଚାଲିଯା ।" ତାପରେ ସେ ଜ୍ୱାଲପ୍ରସାଦଙ୍କୁ ଚାହିଁ କହିଲେ, "ଆମର କେହି ଜଣେ ବଡ଼ ଅଫିସର ହେଉ । ଗୌରୀନାଥ ତ ଗଧଟାଏ, ଘୁଷୁରି ଘୁଷୁରି ଲ' ପାସ୍ କଲା ତିନିବର୍ଷରେ; ଏବେ ଶହେ ପଚାଶ ରୋଜଗାର କରୁଛି; ବରଂ ସୀତାନାଥଟା ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ଘର ବି ସମ୍ଭାଳୁଛି । ଏ ବର୍ଷ ପ୍ରାୟ ଲକ୍ଷେ ପଚାଶ ହଜାର ଟଙ୍କା ଲାଭ ହୋଇଛି । ତେବେ ମୁଁ ଭାବୁଛି ପୁଅ ନହେଲେ ନାହିଁ, କୋଉଁ ଯଦି କଲେକ୍ଟର ହୋଇଯାନ୍ତେ ତାହେଲେ ମୋର ଗୋଟାଏ ଅଭିଳାଷ ମେଣ୍ଟିଥାନ୍ତା, ଖର୍ଚ୍ଚପାଇଁ କିଛି ଚିନ୍ତା ନାହିଁ ।"

ନବଲ କାମତାନାଥଙ୍କ କଥାରେ ଟିକିଏ ବିରକ୍ତ ହୋଇଯାଇଥିଲା । କହିଲା, "ଯାହା ହେଲେ ବି ତ ମୋତେ ଲ' ଫାଇନାଲ ପାସ୍ କରିବାକୁ ପଡ଼ିବ । ତାଛଡ଼ା ଆମ ବଂଶରେ ସରକାରୀ ଚାକିରିର ଯେଉଁ ପରମ୍ପରା ଚାଲିଆସିଛି, ମୁଁ ତାକୁ ଭାଙ୍ଗିବାକୁ ଚାହେଁ । ମୁଁ ଭାବୁଛି ଓକିଲାତିରେ ମୋର ଭବିଷ୍ୟ ଭଲ ହେବ ।"

କାମତାନାଥ ଯିବାପାଇଁ ଉଠି ଠିଆହୋଇ କହିଲେ, "ମୋର ଯାହା କର୍ତ୍ତବ୍ୟ ମୁଁ କରିବାପାଇଁ ରାଜି , ମନକୁ ଟିକିଏ ଥଣ୍ଡା କରି ମୋ କଥା ବିଚାର କର । ଆପଣମାନେ

ମଧ୍ୟ ତାଙ୍କୁ ଚୁଟ୍‌'ଇ ଦେଇନ୍ତୁ ଓକିଲାତିରେ କିଛି ନାହିଁ । ମୁଁ ତ ଦୁଇ ମାସପାଇଁ ମଫସଲ ଯାଉଛି । ଆଚ୍ଛା ନବଲ, ଉଷା ତମକଥା ବହୁତ ମନେ ପକାଉଛି; ତମେ ଆମ ଘରକୁ ମଝିରେ ମଝିରେ ଆସୁଥିବ । ତାର ବି ମନ ଟିକିଏ ବଦଳି ଯାଉଥିବ । ଆଚ୍ଛା, ଉଷାକୁ ଘରଆଡ଼ୁ ଡାକିଆଣ, ମୋର ଡେରି ହୋଇଗଲାଣି ।"

ଉଷା ଘର ଭିତରେ ବିଦ୍ୟା ସଙ୍ଗେ ବସି କଥାବାର୍ତ୍ତା କରୁଥିଲା । ବିଦ୍ୟା ବି. ଏ. ପରୀକ୍ଷା ଦେଇ ଛୁଟିଦିନ ହେଲା ବନାରସରୁ ଫେରିଥିଲା । ଉଷାକୁ ମଟରରେ ବସାଇ ଦେଇ ନବଲ ଯେତେବେଳେ ବିଦ୍ୟା ସଙ୍ଗରେ ଫେରିଆସିଲା ବିଦ୍ୟା କହିଲା, "ଭାଇ, ତମେ କାହିଁକି ବିଲାତ ଯିବାକୁ ରାଜି ହେଉନା ? ତମକୁ ଜୋର କରିବାପାଇଁ ଉଷା ମୋତେ କହୁଥିଲା ।"

ନବଲ ବିରକ୍ତ ହୋଇ କହିଲା, "ମୁଁ ବିଲାତ ଯିବି ନାହିଁ, ଯିବି ନାହିଁ, ଯିବି ନାହିଁ । ମୁଁ କାମତାନାଥଙ୍କ ଝିଅକୁ ବିଭା ହୋଇପାରେ; ମାତ୍ର ମୁଁ ତ କାମତାନାଥଙ୍କର ଗୋଲାମ ହୋଇ ପାରିବି ନାହିଁ ।"

"ତାହେଲେ ଭାଇ, ତମେ ତାଙ୍କ ଝିଅକୁ ବାହାହୋଇ ପାରିବ ନାହିଁ । ଉଷାର ତ ପୁଣି ବଡ଼ ଆଶା, ବଡ଼ ସ୍ୱପ୍ନ ରହିଛି ।" ତାପରେ ବିଦ୍ୟା ଏକ ଦୀର୍ଘନିଶ୍ୱାସ ପକାଇ କହିଲା, "ଭାଇ, ଯେଉଁମାନଙ୍କର ବିଚାର ଓ ଆଦର୍ଶ ଆମଠାରୁ ଭିନ୍ନ, ସେପରି ଲୋକଙ୍କ ଘରେ ବାହାଘର କରିବା ବଡ଼ ବିପଦ । ମୋ କଥା ଦେଖୁନା, ମୋ ପୁଆଣୀଘର ଯେତିକି ପାଖେଇ ଆସୁଛି, ମୋର ଚିନ୍ତା ସେତିକି ବଢ଼ିଯାଉଛି ।"

ନବଲ ବିଦ୍ୟାର ଏ କଥା ଶୁଣି ଚିନ୍ତିତ ହୋଇ କହିଲା, "ତୁ ତୋ ଶଶୁର ଘରର କୌଣସି କଥା ମୋତେ କେବେ କହିନାହୁଁ । ସତ କହ, ତୋର କ'ଣ ସେଠି କିଛି ଅସୁବିଧା ହୋଇଥିଲା ?"

ବିଦ୍ୟା ହସିଦେଇ କହିଲା, "ଭାଇ, ମୁଁ ତ ମୋଟେ ସପ୍ତାହେ ସେଠି ରହିଥିଲି, କହିଲେ କ'ଣ ଅବା କହିବି ! କିନ୍ତୁ ଗୋଟିଏ କଥା ସତ ଯେ ସେମାନଙ୍କ ପ୍ରତି ମୋର ଭାରି ଘୃଣା । ଯେଉଁ ଲୋକେ ମୋର ଘରକୁ ଲୁଟପାଟ କରି ଉଜାଡ଼ି ଦେଇଛନ୍ତି— ସେମାନଙ୍କ ପ୍ରତି ମୋର ମାୟାମମତା ଆସିବ କେଉଁଠୁ ? ସେ ଘରର ପ୍ରତ୍ୟେକ ଲୋକ ମୋତେ ଗୋଟାଏ ଗୋଟାଏ ରାକ୍ଷସ ପରି ଜଣାଯାନ୍ତି । ମନେମନେ କେତେ ଚେଷ୍ଟା କରେ ଏମିତି ଭାବନା ମନରୁ ପୋଛି ଦେବାପାଇଁ; କିନ୍ତୁ କେବେ ପାରେନାହିଁ । ସେହି ପରିବାର ପାଇଁ ମୋ ଅନ୍ତରରେ ଭୟଙ୍କର ଘୃଣା ପୂରିରହିଛି ।"

ବିଦ୍ୟା କଥା ଶୁଣି ନବଲ ଚିନ୍ତିତ ହୋଇ କହିଲା, "ଦେଖ ବିଦ୍ୟା, ଜୀବନଟା ଗୋଟାଏ ପରସ୍ପର ସହିତ ବୁଝାମଣାର କଥା । ଏପରି ଚିନ୍ତା ତୁ ମନରୁ ପୋଛି ଦେ ।

ତୁ ଆଜ ମୋତେ ଜବାବ୍ ଦେ, ଯେମିତ ଭାବପ୍ରବଣ ହୋଇ ତୁ କୌଣସି ଅନ୍ୟାୟ କଥା କେବେ କର ନ ବସୁ ।"

"ଭାଇ, ମୁଁ ତୁମକୁ କହିରଖୁଛି ଯେ ମୋ ବରୁଦ୍ଧରେ ତମେ କେବେ କୌଣସି ଅଭିଯୋଗ ପାଇବ ନାହିଁ । ଜୀବନ ଗୋଟାଏ ବୁଝାମଣା ବୋଲି ମୁଁ ବେଶ୍ ବୁଝି-ପାରୁଛି; କିନ୍ତୁ ଏହି ବୁଝାମଣାରେ ଦୁଇଟା ପକ୍ଷ ଅଛି । ମୋ ପକ୍ଷରୁ ସବୁବେଳେ ମାନମର୍ଯ୍ୟାଦା ରଖି କାମ କରିବ ।" ଏହି କଥା କହି ବଦ୍ୟା ଘର ଭିତରକୁ ଚାଲିଗଲା ।

ବଦ୍ୟାର ପୁଣି ପୁଆଣୀଘର ଜୁନ ତୃତୀୟ ସପ୍ତାହରେ ହେବ ବୋଲି ଠିକ୍ ହୋଇଥିଲା । ସେତେବେଳକୁ ସିଦ୍ଧେଶ୍ୱରୀଙ୍କର ଉନ୍ନାବ ଜିଲାରେ ନୂତନ ନିଯୁକ୍ତ ହୋଇ ଯାଇଥିଲା । ପୁଆଣୀଘର ପାଇଁ ତାଙ୍କୁ ଆଉ ଛୁଟି ମିଳିଲା ନାହିଁ । ତେଣୁ ଠିକ୍ ହୋଇଥିଲା ଯେ ସିଦ୍ଧେଶ୍ୱରୀ ଆଲାହାବାଦଠାରୁ ବଦ୍ୟାକୁ ସିଧା ଉନ୍ନାବ ନେଇଯିବେ । ନବଲ ଖୁସି ହେଲା ଯେ ବଦ୍ୟାକୁ ଆଉ ଫୈଜାବାଦ ଯିବାକୁ ପଡ଼ିବ ନାହିଁ । କାରଣ ବନ୍ଦେଶ୍ୱରୀ-ପ୍ରସାଦଙ୍କ ପ୍ରତି ତା ମନରେ ଭାରି ଘୃଣା ହୋଇଯାଇଥିଲା ।

ବଦ୍ୟା ଉନ୍ନାବ ଚାଲିଗଲା ପରେ ନବଲର ମନ ଦେଶର ରାଜନୈତିକ ବିପ୍ଳବ ପ୍ରତି ଆକୃଷ୍ଟ ହୋଇପଡ଼ିଲା । ଏବେ ଜ୍ଞାନପ୍ରକାଶଙ୍କ ସହିତ ଦେଶର ରାଜନୀତି ବିଷୟ ଚର୍ଚ୍ଚା କରିବାରେ ତାର ବେଶୀ ସମୟ କଟିଲା । ସାରା ଦେଶରେ ଦମନଲୀଳା ଚାଲିଥିଲା ଓ ଦୂରଦୂରାନ୍ତରୁ ଗିରଫଦାରୀ ଖବର ଆସି ପହଞ୍ଚୁଥିଲା । ନବଲ ଆଗରୁ କେବେ ରାଜନୀତି କଥା ଭାବୁ ନ ଥିଲା; ଏବେ କିନ୍ତୁ ରାଜନୀତି ପ୍ରତି ସେ ଖୁବ୍ ଆକୃଷ୍ଟ ହୋଇ ପଡ଼ିଲା ।

ଜୁଲାଇ ମାସ, ଖୁବ୍ ଜୋରରେ ବର୍ଷା ଆରମ୍ଭ ହୋଇ ଯାଇଥିଲା । ନବଲକୁ ଏଲ୍. ଏଲ୍. ବି. ପ୍ରଥମ ଭାଗରେ ଓ ବଦ୍ୟାକୁ ବି. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀ ମିଳି-ଯାଇଥିଲା । ତାର ପୂର୍ବଦିନ ବଦ୍ୟାର ଯେଉଁ ଚିଠି ଆସିଥିଲା, ସେଥିରେ ବହୁତ ଦୁଃଖ-କଥା ଲେଖା ହୋଇଥିଲା । ଉନ୍ନାବରେ ସିଦ୍ଧେଶ୍ୱରୀର ଜଣେ ବିଧବା ପିଉସୀ ରହି ଘର ବୁଝାଶୁଝା କରୁଥିଲେ । ଘରର ସବୁ କଥା ତାଙ୍କର ହାତରେ ଥିଲା । ସେହି ଘରେ ବଦ୍ୟାର ଅଧିକାର ଅଛି ବୋଲି ସେ କେବେ ଅନୁଭବ କରି ପାରୁନଥିଲା । ତେବେ ବି ବଦ୍ୟା ସବୁ ସହିଯାଉଥିଲା । ସେ ଜଣେ ଡେପୁଟି କଲେକ୍ଟରଙ୍କ ସ୍ତ୍ରୀ ହେଲେ ବି ସାଧାରଣ ଘରର ସ୍ତ୍ରୀଲୋକଙ୍କ ପରି ତାକୁ ସବୁବେଳେ ପରଦା ଭିତରେ ରହିବାକୁ ପଡ଼ୁଥିଲା ।

ସେଦିନ ନିଦରୁ ଉଠିଲାବେଳକୁ ନବଲର ମନ ବହୁତ ଉଦାସ ହୋଇପଡ଼ିଥିଲା । ଜ୍ଞାନପ୍ରକାଶ ବାରଣ୍ଡାରେ ବସି ଚା' ପିଇ, ଖବରକାଗଜ ପଢୁଥିଲେ । ନବଲ ଯାଇ

ତାଙ୍କ ପାଖରେ ବସି "ଲିଡ଼ର" କାଗଜଟା ନେଇ ପଢ଼ିବସିଲା । ସେଥିରେ ବିଶେଷ କିଛି ଖବର ନ ଥିଲା । ଦେଖିଲା ଖାଲି ବିପ୍ଳବୀମାନଙ୍କ ନାଁରେ ମକଦ୍ଦମା ଚାଲିଛି ଓ ଆସେମ୍ବ୍ଲିରେ ସରକାରୀ ବେସରକାରୀ ଉଭୟ ପକ୍ଷଙ୍କ ମଧ୍ୟରେ ବାଦ-ବିବାଦ ଚାଲିଛି ।

ନବଲ କାଗଜ ଥୋଇ ଦେଇ ଜ୍ଞାନପ୍ରକାଶଙ୍କୁ ପଚାରିଲା, "ଜେଜେ, ଆପଣ କ'ଣ ଭାବୁଛନ୍ତି ଏଥିରେ ହିନ୍ଦୁସ୍ଥାନର କିଛି ଲାଭ ହେବ ? ଏମିତି ଦମନନୀତି ଚାଲିଛି ଯେ କଥାକଥାକେ ଲୋକଙ୍କୁ ଜେଲରେ ବନ୍ଦ କରିଦିଆଯାଉଛି; ଅଥଚ ଲୋକେ ଚୁପ୍ ହୋଇ ବସିଛନ୍ତି ।"

ଜ୍ଞାନପ୍ରକାଶ ମୁରୁକିହସା ଦେଇ କହିଲେ, "କିନ୍ତୁ ନବଲ, ଲୋକଙ୍କର ଯେ ଚେତନା ଜାଗି ଉଠିଲାଣି ଏ କଥା ତ ସ୍ପଷ୍ଟ ଜଣାପଡ଼ୁଛି । ମଧ୍ୟବିତ୍ତ ଲୋକଙ୍କ ମଧ୍ୟରେ ବେକାରି ଯେମିତି ବଢ଼ିଲାଣି, ତାର ଫଳ ନିଶ୍ଚୟ ଫଳିବ ।"

"ମଧ୍ୟବିତ୍ତ ଲୋକଙ୍କ ବେକାରି ସଙ୍ଗରେ ସ୍ୱାଧୀନତାର କ'ଣ ସମ୍ପର୍କ, ମୁଁ ତ କିଛି ବୁଝିପାରୁନାହିଁ ।"

"ନବଲ, କଥାଟା ଖୁବ୍ ସହଜ । ତମେ ତ ଜାଣ ଦେଶରେ ଶତକଡ଼ା ନବେଜଣ ଅଶିକ୍ଷିତ । ସେମାନେ କିଛି ଭାବନ୍ତି ନାହିଁ କି ବୁଝନ୍ତି ନାହିଁ । ସେମାନେ ନେତୃତ୍ୱ ଚାହାନ୍ତି; କିନ୍ତୁ ଦେଶର ନେତୃତ୍ୱ ସବୁବେଳେ ଦେଶର ଶିକ୍ଷିତ ଲୋକମାନଙ୍କ ହାତରେ ଅଛି । ଏ ଦେଶର ବଡ଼ ବଡ଼ ହାକିମ, ଧନୀ ଲୋକ ଓ ଜମିଦାରମାନେ କେବଳ ଶିକ୍ଷା ପାଇଛନ୍ତି; କିନ୍ତୁ ସେମାନଙ୍କର ସ୍ୱାର୍ଥ ଓ ସାଧାରଣ ଲୋକଙ୍କର ସ୍ୱାର୍ଥ ସମାନ ନୁହେଁ । କିଛି ଏବେ ବୁଝିଲୁଟି ?"

ନବଲ କହିଲା, "ହଁ, ଇଏ ତ ଖୁବ୍ ସ୍ପଷ୍ଟ କଥା ।"

"କିନ୍ତୁ ବର୍ତ୍ତମାନ ଦେଶରେ ହଜାର ହଜାର ଶିକ୍ଷିତ ଯୁବକ ଅଛନ୍ତି, ଯେଉଁମାନେ ଗରିବ ଓ ବେକାର । ବର୍ତ୍ତମାନ ଯେଉଁ କ୍ରାନ୍ତିକାରୀ ଆନ୍ଦୋଳନ ଆରମ୍ଭ ହୋଇଛି ତାହା କ'ଣ ଏହି ବେକାରୀର ଅଭିଶାପ ନୁହେଁ କି ? ଇଂରେଜମାନେ ଅନେକ ଦିନ ପର୍ଯ୍ୟନ୍ତ ହିନ୍ଦୁ-ମୁସଲମାନ ବିବାଦ ସୃଷ୍ଟି କରି ଏହି ବେକାରୀ ଅସନ୍ତୋଷକୁ ଚପାଇ ରଖିଥିଲେ; କିନ୍ତୁ ମିଥ୍ୟା ସାହାଯ୍ୟରେ ସତ୍ୟର କେବେ ସମାଧାନ ହୋଇପାରେ ନାହିଁ । ହିନ୍ଦୁ-ମୁସଲମାନ ବିବାଦ ଏବେ ଦବିଗଲାଣି; କିନ୍ତୁ ବେକାରୀ ଅସନ୍ତୋଷ ତ ଏବେ ଉଭୟଙ୍କ ଭିତରେ ସମାନ ହୋଇଯାଇଛି । ମୁଁ ଭାବୁଛି, ରାଜନୀତି କ୍ଷେତ୍ରରେ ଏ ପ୍ରକାର ପଚାସଢ଼ା ପରିସ୍ଥିତି ବେଶୀ ଦିନ ରହିପାରିବ ନାହିଁ ।"

"ଆପଣ କ'ଣ ଭାବୁଛନ୍ତି ଇଂରେଜମାନେ ଭାରତବର୍ଷକୁ ଆଉ କିଛି ଅଧିକା ସୁବିଧା ଦେବେ ?"

ଜ୍ଞାନପ୍ରକାଶ ଟିକିଏ ଭାବିଲା ପରେ କହିଲେ, "ଏ କଥା ନିଶ୍ଚୟ ଯେ ବିନା ଆନ୍ଦୋଳନରେ ବ୍ରିଟିଶ୍ ସରକାର କିଛି ଦେବେ ନାହିଁ । ନିକଟ ଭବିଷ୍ୟତରେ ଦେଶବାସୀଙ୍କୁ ଏକ ଭୟଙ୍କର ଆନ୍ଦୋଳନର ସମ୍ମୁଖୀନ ହେବାକୁ ପଡ଼ିବ ।"

ନବଲ କହିଲା, "ଦେଶବାସୀ ତ କୌଣସି ଆନ୍ଦୋଳନ ପାଇଁ ପ୍ରସ୍ତୁତ ଥିଲା ପରି ମୋର ମନେ ହେଉ ନାହିଁ । ସବୁଆଡ଼େ ଏକପ୍ରକାର ବିବଶତା ଓ ନିଷ୍ପେଷଣ ଦେଖାପଡ଼ୁଛି । ମହାତ୍ମା ଗାନ୍ଧି ଆନ୍ଦୋଳନକୁ ବନ୍ଦ କରିଦେଇ ଭୁଲ୍ କରିଛନ୍ତି ।"

"କିଏ ଜାଣେ ନବଲ, ମୋର ତ ଧାରଣା ସେ ଠିକ୍ କରିଛନ୍ତି । ସେତେବେଳେ ଗାଁ ଲୋକେ କିଛି ଜାଣି ନ ଥିଲେ, କଂଗ୍ରେସ କଥା ଖାଲି ସହର ଭିତରେ ସୀମିତ ଥିଲା; କିନ୍ତୁ ଏଇ ସାତ ଆଠ ବର୍ଷ ଭିତରେ ଗାଁଗହଳରେ ବି କଂଗ୍ରେସର ଚେର ମାଡ଼ି-ଗଲାଣି । ଅଳ୍ପ କେତେ ଜଣ ଶିକ୍ଷିତ ଲୋକଙ୍କ ଆନ୍ଦୋଳନ କେବେ ସଫଳ ହୋଇ ପାରେ ନାହିଁ । ଦେଶର କୋଟି କୋଟି ଜନତା ଯେତେବେଳେ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ବାହାରି ପଡ଼ିବେ ସେତେବେଳେ ଯାଇ ଆନ୍ଦୋଳନ ସଫଳ ହେବ ।"

ନବଲ ଚୁପ୍ ରହିଗଲା । ଜ୍ଞାନପ୍ରକାଶ ପୁଣି କହିଲେ, "କିନ୍ତୁ ନବଲ ! ଏହି କୋଟି କୋଟି ଲୋକଙ୍କର ନେତା ଦରକାର, ସାଧୁ ଓ ସଚ୍ଚରିତ୍ର ଲୋକଙ୍କର ସହାନୁଭୂତି ଦରକାର । ହେଲେ ଆମ ଦେଶରେ ସାଧୁ ଓ ସଚ୍ଚରିତ୍ର ଲୋକ ଖୁବ୍ କମ୍ ।"

ନବଲ ଦୀର୍ଘଶ୍ୱାସ ପକାଇ କହିଲା, "ଆପଣ ଠିକ୍ କହୁଛନ୍ତି ଜେଜେ !" ଏତିକି କହି ସେ ଚା' ପିଇବାକୁ ଲାଗିଲା ।

## ପାଞ୍ଚ

ଲର୍ଡ଼ ଇରଉଇନ୍ ବିଲାତରୁ ଫେରି ୧୯୨୭ ଅକ୍ଟୋବର ୩୧ ତାରିଖରେ ଯେଉଁ ଘୋଷଣା କଲେ, ସେଥିରେ ଦେଶରେ ଚହଳ ପଡ଼ିଗଲା । କନ୍‌ଭୋକେସନ ସପ୍ତାହରେ ୟୁନିଭର୍‌ସିଟୀ ୟୁନିୟନରେ ଯେଉଁ ବକ୍ତୃତା ପ୍ରତିଯୋଗିତା ହେବାର ଥିଲା, ସେଥିରେ ବିଷୟ ଥିଲା, "ଔପନିବେଶିକ ସ୍ୱରାଜ୍ୟରେ ଭାରତର ସମସ୍ୟା ସମାଧାନ ହୋଇ ପାରିବ କି ?" ନବଲ ଏହି ବିଷୟରେ ବକ୍ତୃତା ଦେବାପାଇଁ ପ୍ରସ୍ତୁତ ହେଉଥିଲା । ବିଷୟ କଠିନ ଥିବାରୁ ସେ ଜ୍ଞାନପ୍ରକାଶଙ୍କ ସହିତ ପରାମର୍ଶ କରିବା ପାଇଁ ଗଲା ।

ଜ୍ଞାନପ୍ରକାଶ ଜଳଖିଆ ଖାଇ କଂଗ୍ରେସ ଅଫିସକୁ ବାହାରୁଥିବାବେଳେ ନବଲ ଯାଇ ପହଞ୍ଚିଲା । ଜ୍ଞାନପ୍ରକାଶ କିଛି ସମୟ ବସିଯାଇ ନବଲକୁ ସବୁକଥା ବୁଝାଇଦେଲେ । ହଠାତ୍ ତାଙ୍କର ଗୋଟିଏ କଥା ମନେପଡ଼ିଗଲା । ସେ କହିଲେ, "ଆରେ ନବଲ, ୧୬ ତାରିଖରେ ଆଲ୍ଲାହାବାଦଠାରେ ସର୍ବଦଳ ସମ୍ମିଳନୀ ହେଉଛି, ତମେ ଜାଣିଛ କି ? ସେଠାରେ ଏ ବିଷୟରେ ଖୁବ୍ ବିଶେଷଧରଣର ଆଲୋଚନା ହେବ ।"

ନବଲ କହିଲା, "ହଁ ଜେଜେ, ମୁଁ ଜାଣେ; କିନ୍ତୁ ମୁଁ ସେଠିକୁ କିମିତି ଯିବି ?"

"ହଁ, ମୁଁ ସେଇ କଥା କହୁଥିଲି । ସର୍ବଦଳ ସମ୍ମିଳନୀକୁ ଦେଶର ସବୁଜାଗାରୁ ଲୋକେ ଆସିବେ । ସେଥିପାଇଁ ଆମର ଅନେକ ସୁଶିକ୍ଷିତ ସ୍ୱେଚ୍ଛାସେବକ ଦରକାର । ତମେ ମୁନିଭରସିଟିରୁ ପନ୍ଦର କୋଡ଼ିଏ ଜଣ ସ୍ୱେଚ୍ଛାସେବକ ଠିକ୍ କରିପାରିବ କି ?"

ନବଲ ବଡ଼ ଉତ୍ସାହରେ କହିଲା, "ବାଃରେ ଜ୍ଞାନ ଜେଜେ ! ଆପଣ ଆଗରୁ ମୋତେ କାହିଁକି କହିଲେ ନାହିଁ ? ଆଚ୍ଛା, କାଲି ସନ୍ଧ୍ୟା ସୁଦ୍ଧା ମୁଁ ଆପଣଙ୍କୁ ସ୍ୱେଚ୍ଛାସେବକ-ମାନଙ୍କର ତାଲିକା ଦେଇଦେବି । ସେମାନଙ୍କର କିଛି ବିଶେଷ ପୋଷାକ ହେବା ଦରକାର କି ?"

ଜ୍ଞାନପ୍ରକାଶ ଟିକିଏ ଚିନ୍ତା କରି କହିଲେ, "ମୁଁ ତ ସେକଥା ବିଶେଷ ଭାବିନାହିଁ । ତେବେ ଖଦଡ଼ ପାଇଜାମା, ଖଦଡ଼ କୁର୍ତ୍ତା ଓ ଗାନ୍ଧିଟୋପି ହେଲେ ଭଲ । ଟିକିଏ ଶୀତ ବି ପଡ଼ୁଛି—ତେଣୁ ମୋଟା ଚଦର ଚଳିବ । ଏମିତି ଗ୍ରୁପ ହେବା ଦରକାର, ଯେ ନିଜ ହାତରୁ ପାଞ୍ଚ ଛ' ଟଙ୍କା ଖର୍ଚ୍ଚ କରି ପୋଷାକ ତିଆରି କରିପାରିବେ ।"

ସର୍ବଦଳ ସମ୍ମିଳନୀ ହେଲା ସତ; କିନ୍ତୁ ବାତାବରଣ ବଡ଼ ନୈରାଶ୍ୟଜନକ ଥିଲା । ବଡ଼ଲାଟ୍ ଯେଉଁ ଘୋଷଣା କଲେ ଓ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଯେ ବିଷୟରେ ବ୍ରିଟିଶ୍ ମନ୍ତ୍ରୀମାନେ ତାର ଯେଉଁ ପ୍ରକାର ଅର୍ଥ କଲେ, ସେଥିରେ ଦେଶର ନବଯୁବକମାନେ ବିଶେଷ କ୍ଷୁବ୍ଧ ହୋଇଉଠିଲେ । କାରଣ ସେମାନେ ବ୍ରିଟିଶ୍ ସରକାରଙ୍କର ଛଳନାପୂର୍ଣ୍ଣ ରାଜନୀତିର ଶିକାର ହେବାକୁ ରାଜି ନ ଥିଲେ । ବରଂ ସେମାନଙ୍କ ଭିତରେ ଏତେ ଉତ୍ସାହ, ଏତେ ଉନ୍ମାଦନା ଥିଲା ଯେ ସେମାନେ ଜୀବନ ଦେଇ ଲଢ଼େଇ କରିବାପାଇଁ ପ୍ରସ୍ତୁତ ଥିଲେ । ଏହି ନବଯୁବକମାନଙ୍କର ନେତା ଥିଲେ ଜବାହରଲାଲ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ ।

ଏସବୁ ଦେଖି ନବଲର ଅନ୍ତର୍ନିହିତ ଚେତନାର ଏକ ପରିବର୍ତ୍ତନ ହୋଇଗଲା । ସେ ଦେଖିଲା ଦେଶରେ ଲଢ଼ାଇ ସୁନିଶ୍ଚିତ ଓ ଭବିଷ୍ୟତରେ ତାକୁ ମଧ୍ୟ ସେହି ଲଢ଼େଇରେ ଭାଗ ନେବାକୁ ହେବ । ତେଣୁ ତାର ଅଜ୍ଞାତରେ ମଧ୍ୟ ସେ ସେହିଆଡ଼କୁ ସକ୍ରିୟ ଭାବରେ ଟାଣିହୋଇଗଲା ।

ନଭେମ୍ବର ଶେଷ ସପ୍ତାହ । ଖୁବ୍ ଜୋରରେ ଶୀତ ପଡ଼ିଯାଇଥିଲା । ତେଣୁ ଜ୍ୱାଲା-ପ୍ରସାଦ ପରିବାରର ଲୋକଙ୍କ ପାଇଁ ଶୀତଲୁଗା ବ୍ୟବସ୍ଥା କରିବାପାଇଁ ଇଚ୍ଛା କରି ନବଲକୁ ଡାକି କହିଲେ, "ଆରେ ନବଲ, ଗଲା ବର୍ଷ ବିଦ୍ୟା ବାହାଘର ଯୋଗୁଁ ତୋପାଇଁ କିଛି ଲୁଗାପଟା ହୋଇପାରି ନ ଥିଲା । ଦେଖୁଛି ତୋ ଲୁଗାପଟା ସବୁ ପୁରୁଣା ହୋଇ ଚିରି-ଗଲାଣି । ଏ ବର୍ଷ ତୁ ଗୋଟିଏ ଗରମ ସୁଟ୍, କାମିଜ୍ ଓ ପାଇଜାମା ମଧ୍ୟ ତିଆରି କରିନେ ।" ଏତିକି କହି ଜ୍ୱାଲାପ୍ରସାଦ ନବଲ ହାତରେ ଟଙ୍କା ଧରେଇଦେଲେ ।

ନବଲ ପଚାରିଲା, "ଜେଜେ ! ମୁଁ ମୋ ମନ ମୁତାବକ ଜାମା ଇତ୍ୟାଦି ତିଆରି କଲେ ଆପଣଙ୍କର କୌଣସି ଆପତ୍ତି ଅଛି କି ?"

ଜ୍ୱାଲାପ୍ରସାଦ କହିଲେ, "ନବଲ, ଆଜିକାଲି ଦୁନିଆରେ ତ ସମସ୍ତେ ମନକୁ ମନ କାମ କରୁଛନ୍ତି । ସେଥିରେ ଆପତ୍ତି କରି ଲାଭ କ'ଣ ? ତୋ ଇଚ୍ଛା, ତୁ ଯାହା କର । ଲୁଗା ତ ତୁ ପିନ୍ଧିବୁ, ମୋର ସେଥିରେ କ'ଣ ଅଛି ?"

ନବଲ ଟଙ୍କା ଧରି ଚଟାପଟ ବଜାରକୁ ଚାଲିଗଲା । ମନରେ ତାର ଭାବନା ଭାରି ଜୋରରେ ଚାଲିଥାଏ । ହଠାତ୍ ଦେଖିଲା ସେ ଗୋଟିଏ ଖଦଡ଼ ଲୁଗା ଦୋକାନରେ ଠିଆ ହୋଇଛି । ତାକୁ ନିଜକୁ ବି ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ସେ ଭାବିଲା, ସେଇଠୁ ଫେରିଯିବ; କିନ୍ତୁ ଫେରିବା ପାଇଁ ତାର ପାଦ ଚାଲିଲା ନାହିଁ । ସେ ଗରମ କପଡ଼ା ମଗେଇବାରୁ ଦୋକାନୀ କହିଲା, "ଗୋଟିଏ ଥାନରେ କୋଟ୍ ଓ ଫତେଇ ହୋଇଯିବ । ତାପରେ ଛ'ଟା କୁର୍ତ୍ତା ଓ ଦୁଇଟା ପାଇଜାମା ପାଇଁ ସେ ଆଉ ଦୁଇ ଥାନ ଖଦଡ଼ କପଡ଼ା କିଣିଲା । ଦୋକାନଦାର କହିଲା, "ଆପଣ ଯଦି କପଡ଼ା ସିଲାଇ କରିବାକୁ ଚାହାନ୍ତି, ଆମ ଦୋକାନରେ ଦର୍ଜି ଅଛି । ସିଲାଇ ମୋଟେ ଦଶଟଙ୍କା ଲାଗିବ ।" ନବଲ ସେହି ଦୋକାନରେ ସିଲାଇ ପାଇଁ ବରାଦ ଦେଇଦେଲା ।

ନବଲ ଖଦଡ଼ ଭଣ୍ଡାରରୁ ସିଧା ଜ୍ଞାନପ୍ରକାଶଙ୍କ ଅଫିସକୁ ଚାଲିଲା । ଦେଖିଲା ଜ୍ଞାନପ୍ରକାଶ କଂଗ୍ରେସର ବିଜ୍ଞାପନ ବାହାର କରିସାରି ବସି ଚାହା ପିଉଛନ୍ତି । ନବଲକୁ ଦେଖିଲାମାତ୍ରେ ସେ ପଚାରିଲେ, "ଆଜି କମିତି କଂଗ୍ରେସ ଅଫିସରେ ପାଦ ପଡ଼ିଗଲା ନବଲ ? ଆଚ୍ଛା, ବସି ଚାହା ପିଅ । ମୋଠି କ'ଣ କାମ ଅଛି ?"

ନବଲ ବସି ନିଜପାଇଁ ଚାହା ଢାଳୁ ଢାଳୁ କହିଲା, "ଜ୍ଞାନ ଜେଜେ, ମୁଁ ଆଜି ଗୋଟିଏ ବଡ଼ କାମ କରିଦେଇଛି ।"

"ହଁ, ତମର ଗମ୍ଭୀର ଚେହେରା ଦେଖି ତ ଜଣାପଡ଼ି ଯାଉଛି । ତେବେ କ'ଣ କରିଛ କୁହ ।"

"ମୁଁ ଆଜିଠାରୁ ଖଦଡ଼ ପିନ୍ଧା ଆରମ୍ଭ କରି ଦେଇଛି । ଜେଜେ, ବିଦେଶୀ ଗରମ

କପଡ଼ାରେ ସୁଟ୍ କରିବାପାଇଁ କହିଥିଲେ; କିନ୍ତୁ ମୁଁ ଖଦଡ଼ରେ କରିବାପାଇଁ ବନ୍ଦୋବସ୍ତ ଦେଇ ଆସିଛି । ଚାଳିଶ ଟଙ୍କାରେ ଛ'ଟା କୁର୍ତ୍ତା, ଦୁଇଟା ପାଇଜାମା, ଗୋଟିଏ ଗରମ କୋଟ୍, ଗୋଟିଏ ଫତେଇ ଓ ଛ'ଟା ଗାନ୍ଧିଟୋପି । ବହୁତ ଶସ୍ତାରେ ହୋଇଗଲା । ସେଥିରେ ସିଲାଇ ଖର୍ଚ୍ଚ ବି ଅଛି ।''

ଜ୍ଞାନପ୍ରକାଶ ଗମ୍ଭୀର ହୋଇ କହିଲେ, ''ଏସବୁ ଠିକ୍ ଅଛି; କିନ୍ତୁ ପ୍ରଥମେ ତୁମର ଏଲ୍. ଏଲ୍. ବି. ପାସ୍ କରିବା ଦରକାର । ମନେରଖ, ତମେ ଓକିଲାତି ପାସ୍ ନ କଲା ପର୍ଯ୍ୟନ୍ତ ମୁଁ ତୁମକୁ ସକ୍ରିୟ ରାଜନୀତିରେ ପଶିବା ପାଇଁ ଅନୁମତି ଦେବିନାହିଁ । ନୋହିଲେ ଜ୍ୱାଲାଭାଇ ମୋତେ ଦୋଷ ଦେବେ ।''

''ଆପଣ ବିଶ୍ୱାସ କରନ୍ତୁ ବର୍ତ୍ତମାନ ସକ୍ରିୟ ରାଜନୀତିରେ ପଶିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ; କିନ୍ତୁ ମୁଁ ଆଜିଠାରୁ ଖଦଡ଼ପିନ୍ଧା ଆରମ୍ଭ କରି ଦେଉଛି ।''

''କିନ୍ତୁ ସି. ଆଇ. ଡି. ଦୃଷ୍ଟିରେ ପଡ଼ିବ । ଏ ବିପଦ ବରାବର ଅଛି । ତେବେ ଯେତେଦିନ ପର୍ଯ୍ୟନ୍ତ ସକ୍ରିୟ ରାଜନୀତିରେ ଭାଗ ନେଇନାହଁ, ସେତେଦିନ ଯାଏ ପୋଲିସ ତମର କିଛି କ୍ଷତି କରିବ ନାହିଁ । ତାଛଡ଼ା ତମେ ତ ସରକାରୀ ଚାକିରି କରିବ ନାହିଁ—ଚିନ୍ତା କ'ଣ ?''

ଡିସେମ୍ବର ଆରମ୍ଭ ବେଳକୁ ବହୁତ ଶୀତ ପଡ଼ୁଥାଇଥିଲା । ଶନିବାର ଦିନ ସନ୍ଧ୍ୟା-ବେଳେ ରାୟବାହାଦୁର କାମତାନାଥ ଜ୍ୱାଲାପ୍ରସାଦଙ୍କ ସହିତ ସାକ୍ଷାତ୍ କରିବାକୁ ଆସିଲେ । ସେଦିନ ରାୟବାହାଦୁର ବଡ଼ ଗମ୍ଭୀର ଥିଲେ । ଜ୍ୱାଲାପ୍ରସାଦ ତାଙ୍କୁ ଡ୍ରଇଂ-ରୁମ୍‌ରେ ବସାଇ ଦେଇ ପଚାରିଲେ, ''ରାୟବାହାଦୁର ସାହେବ, ଆପଣ ଆଜି ଏତେ ଗମ୍ଭୀର ଦିଶୁଛନ୍ତି କାହିଁକି ?''

''ନାହିଁ ସେମିତି କିଛି ନାହିଁ । ଖାଲି କାମଭିଡ଼ । ସୀତାନାଥ ବହୁତ କାମ ବଢ଼ାଇ ଦେଇ ଆସିଛି । ମୋତେ ଧାଁଦଉଡ଼ କରିବାକୁ ପଡ଼ୁଛି । ଆଜି ସାରାଦିନ କାମରେ ଲାଗିଛି, ଭାବିଲି ବହୁତ ଦିନ ହେଲା ଦେଖା ହୋଇନାହିଁ । ଆଜି ଯାଉଛି ଟିକିଏ ଦେଖା ହୋଇ ଚାଲିଆସିବି ।''

ଜ୍ୱାଲାପ୍ରସାଦ ଚାହା ଆଣିବା ପାଇଁ ଭିକ୍ଷୁକୁ କହିଦେଇ କାମତାନାଥଙ୍କୁ କହିଲେ, ''ହଁ ରାୟବାହାଦୁର ସାହେବ ! କାମଦାମରେ ତ କଷ୍ଟ କରିବାକୁ ପଡ଼େ; କିନ୍ତୁ ଆପଣଙ୍କର ଏମିତି କି କାମ ଯେ, ଆପଣଙ୍କ ମୁଣ୍ଡକୁ ଏତେ ଜୋରରେ ଧରିଛି ?''

''ବୁଝିଲେ ଡେପୁଟି ସାହେବ ! ଏ ଜୀବନଟା ତ ଗୋଟିଏ ଜଞ୍ଜାଳ । ଭାବିଥିଲି ବହୁତ ହୋଇଗଲାଣି । ଆଠଟା ଗାଁ ଓ ସହରରେ ପାଞ୍ଚଟା ବଙ୍ଗଳା କିଣିସାରିଲିଣି; କିନ୍ତୁ ସୀତାନାଥର ମନ ଏଥିରେ ମାନୁନାହିଁ । ଗୌରୀକୁ ଜମିବାଡ଼ି ଭାର ଓ ସୀତାନାଥକୁ

ବ୍ୟବସାୟଭାର ଦେଇ ମୁଁ ନିଶ୍ଚିନ୍ତ ହୋଇଯାଇଥିଲି; କିନ୍ତୁ ସୀତାନାଥ ବ୍ୟବସାୟ ଏତେ ବଢ଼େଇଦେବ, ମୁଁ ଭାବି ନଥିଲି । ଏହି ମାସେ ତଳେ ସେ ଗୋଟିଏ ଅଟ୍ଟାଳିକା କିଣି ନେଇଛି ।"

କାମତାନାଥ ନିଜ ଧନସମ୍ପଦ କଥା କହିବାକୁ ବହୁତ ଭଲ ପା'ନ୍ତି, ଜ୍ୱାଲାପ୍ରସାଦ ଏ କଥା ବେଶ୍ ଜାଣିଥିଲେ । ବେଳେବେଳେ କିନ୍ତୁ ଜ୍ୱାଲାପ୍ରସାଦଙ୍କୁ ସେଗୁଡ଼ା ଭଲ ଲାଗେ ନାହିଁ । ସେ କହିଲେ, "ଛାଡ଼ନ୍ତୁ ସେ ସବୁକଥା । ଆଜିକାଲି ଜମିଦାରୀରେ ଆଉ କିଛି ଲାଭ ନାହିଁ । ଇଏ ବର୍ତ୍ତମାନ ବାଣିଜ୍ୟ-ବ୍ୟବସାୟର ଯୁଗ । ଏବେ ତ ଜମିଦାର, ତାଲୁକଦାର, ସମସ୍ତେ ନଷ୍ଟ ହୋଇଗଲେଣି ।"

କାମତାନାଥ ଚା' ପିଉ ପିଉ ପଚାରିଲେ, "ଆଚ୍ଛା ଡେପୁଟି ସାହେବ, ଆପଣ ନବଲ କଥା କ'ଣ ବିଚାର କରୁଛନ୍ତି ?"

ଜ୍ୱାଲାପ୍ରସାଦ ଜବାବ ଦେଲେ, "ମୁଁ ତ ଏବେ କୌଣସି କଥା ବିଚାର କରିବା ଛାଡ଼ି ଦେଇଛି । କାରଣ ମଣିଷ ଯାହା ବିଚାରୁଛି, ତାହା ହୋଇ ପାରୁନାହିଁ । ତାଛଡ଼ା ନବଲ ତ ଜାଣିବା-ଶୁଣିବାର ହୋଇଗଲାଣି । ସେ ଏବେ ମୋ କଥା ଶୁଣେ ନାହିଁ । ସେ ମୋତେ କିଛି ପଚାରେ ନାହିଁ । ତା ମନକୁ ଯାହା ଆସେ, କରେ ।"

କାମତାନାଥ କହିଲେ, "ଏଗୁଡ଼ା ତ ଭଲ କଥା ନୁହେଁ । ମୁଁ ଶୁଣିଥିଲି, ସେ କୁଆଡ଼େ କଂଗ୍ରେସ ସ୍ୱେଚ୍ଛାସେବକ ହୋଇ ଦୌଡ଼ିପିଡ଼ା ଆରମ୍ଭ କରିଦେଇଛି !"

"ହଁ, ଯେଉଁ ସର୍ବଦଳ ସମ୍ମିଳନୀ ହୋଇଥିଲା, ସେଥିରେ ସେ ସ୍ୱେଚ୍ଛାସେବକ କାମ କରୁଥିଲା । ମୁଁ ଅବଶ୍ୟ ତାକୁ ମନା କଲିନାହିଁ; କାରଣ ସେଥିରେ ତ ବିଶେଷ କିଛି ଅସୁବିଧା ନଥିଲା । ତାଛଡ଼ା ଆଜିକାଲି ନୂଆ ଯୁଗ; ନୂଆ ଯୁଗର ଚିନ୍ତା ନୂଆ ହୋଇ ଗଲାଣି । ମୁଁ ମନାକଲେ ସେ ଯଦି ନ ମାନିବ, ଅକାରଣରେ ମୋର ମନ କଷ୍ଟ ହେବ; କିନ୍ତୁ ମୋର ଆନନ୍ଦ ତାର ଚରିତ୍ରଟା ସଦାବେଳେ ଭଲ ଆଡ଼କୁ । ସେ ଯେମିତି ସଚ୍ଚରିତ୍ର, ସେହିପରି ସଚ୍ଚୋଟ । ମୋର ତ ଧାରଣା ଏ ଦୁନିଆରେ ସାଧୁତା ଓ ସଚ୍ଚରିତ୍ରତା ସବୁଠୁ ବଡ଼ ସମ୍ପଦ ।"

"ହଁ ଆପଣ ବିଲକୁଲ ଠିକ୍ କହୁଛନ୍ତି; କିନ୍ତୁ ଏ ଦୁନିଆରେ ସେଗୁଡ଼ା ଚଳୁଛି କେଉଁଠି ? ସଂସାରରେ ଚଳିବାକୁ ହେଲେ ସଂସାର ଯିମିତି, ନିଜେ ସିମିତି ହେବାକୁ ପଡ଼ିବ । ସାଧୁ ଓ ସଚ୍ଚୋଟ ରହି ପଇସା ରୋଜଗାର କରିହେବ ନାହିଁ । ଆପଣଙ୍କୁ ବୋଧହୁଏ ଜଣାନାହିଁ, ସି. ଆଇ. ଡ଼ି.ଙ୍କ ନୋଟ ବହିରେ ନବଲର ନାମ ଚଢ଼ିଯାଇଥିଲା । ମୁଁ ଦୁଇଶ' ଟଙ୍କା ଦେଇ ବହୁତ କଷ୍ଟରେ ତା ନାଁ କଟାଇଦେଇଛି ।"

ଜ୍ୱାଲାପ୍ରସାଦ ଚକିତ ହୋଇ କହିଲେ, "ନବଲ କ'ଣ ସି. ଆଇ. ଡ଼ି଼ଙ୍କ ଦୃଷ୍ଟିରେ

ପଢ଼ିଲଣି ? ସେ ତ ସରକାରଙ୍କ ବିରୁଦ୍ଧରେ କେବେ କିଛି କରିନାହିଁ !"

"ମୁଁ କହିଦେଲିନା, ମୁଁ ତା ନାଁ କଟେଇ ଦେଇଛି । ଆପଣ ସେଗୁଡ଼ା ଭୁଲିଯା'ନ୍ତୁ । ଅସଲ କଥା ହେଉଛି, ମୁଁ ଆସିଥିଲି ନବଲକୁ ବୁଝାଇ ଦେବାପାଇଁ, ସେ ଯିମିତି ବୁଝି-ବିଚାରି କାମ କରିବ । ବ୍ରିଟିଶ ସରକାର ବର୍ତ୍ତମାନ ବଡ଼ ଜୋର୍‌ସୋରରେ କାମ ଚଳାଉଛନ୍ତି । ସୈନ୍ୟମାନଙ୍କୁ ସତର୍କ ରହିବାପାଇଁ ଜଣାଇ ଦିଆଗଲାଣି । କର୍ଣ୍ଣେଲ ତଗ୍‌ବି ଦୁଇ ଲକ୍ଷ ସୈନ୍ୟପାଇଁ ଅର୍ଡର ଦେଇସାରିଲେଣି । ସେ ମୋତେ କହୁଥିଲେ ଯେ, ଇଂଲଣ୍ଡରୁ ଦୁଇଲକ୍ଷ ସୈନ୍ୟ ଆସୁଛନ୍ତି । କଲିକତା, ବମ୍ବେ ଓ କରାଚୀରେ ତୋପ ଓ ମେସିନ୍‌ଗନ୍ ସଜା ହୋଇଗଲାଣି ।"

ଜ୍ୱାଲାପ୍ରସାଦ ଆଉ ଟିକିଏ ବ୍ୟସ୍ତ ହୋଇପଡ଼ି କହିଲେ, "ରାୟସାହେବ, ଆପଣ ତ ବହୁତ ବଡ଼ ଦୁଃସମ୍ବାଦ ଶୁଣାଇଲେ । ଯଦି ଇଂରେଜ ସରକାର ଏତେ ସାଜସଜାରେ ରହିଛନ୍ତି, ତା'ହେଲେ ପୁଣି 'ଔପନିବେଶିକ ସ୍ୱରାଜ୍ୟ' କଥା ଉଠାଉଛନ୍ତି କାହିଁକି ?"

"ବୁଝିଲେ, ଏଗୁଡ଼ା ସବୁ ଖାଲି ଛଳନା ଓ ଧୋକାବାଜି ଛଡ଼ା ଆଉ କିଛି ନୁହେଁ । ଅସଲ କଥା ହେଉଛି, ଆହୁରି ପଚିଶ ବର୍ଷ ଭାରତବର୍ଷକୁ କିଛି ମିଳିବ ନାହିଁ କିମ୍ବା ମିଳିବା ଉଚିତ ନୁହେଁ । ଦେଖନ୍ତୁ ଡେପୁଟି ସାହେବ, ପଚିଶ ବର୍ଷପରେ କ'ଣ ହେବ କିଏ ଜାଣେ !"

ଜ୍ୱାଲାପ୍ରସାଦ କାମତାନାଥଙ୍କର ଏହି କଥାର କିଛି ଉତ୍ତର ନ ଦେଇ ଚୁପ୍ ରହିଲେ ।

କାମତାନାଥ ପୁଣି କହିଲେ, "ମୁଁ ନବଲର ବାହାଘର ବିଷୟରେ କଥାବାର୍ତ୍ତା କରିବାପାଇଁ ଆସିଥିଲି । ଉଷାକୁ ବି ଅଠର ପୂରି ଉଣେଇଶ୍ ଚାଲିଲାଣି । ମୁଁ ଭାବୁଛି ଏହି ବର୍ଷ ଖରାଦିନେ ତା'ର ବାହାଘର କରିଦେବି । ଆପଣଙ୍କର କିଛି ଅସୁବିଧା ହେବ ନାହିଁ ତ ?"

"ଅସୁବିଧା ଯାହା କିଛି ଅପକ୍ଷ ଆପଣଙ୍କର । ଆମର କ'ଣ ଅଛି ? ମୁଁ ତ ବରଯାତ୍ରୀ ନେଇ ଆପଣଙ୍କ ପାଖରେ ଠିଆ ହୋଇଯିବି ।"

"କ'ଣ କହିବି, ମୁଁ ତ ଯାହା ଆଶା କରିଥିଲି ତାହା ପୂରଣ ହେଲାଭଳି ଦେଖା-ଯାଉନାହିଁ । ଭାବୁଥିଲି ନବଲ ଆଇ. ସି. ଏସ୍. ହୋଇ ଯାଇଥା'ନ୍ତା; କିନ୍ତୁ ସେ ତ ଜିଦ୍‌ଖୋର ହୋଇ ବସିଛି । ତାର ଏ ଜିଦ୍ ଗୌରୀକୁ ଆଦୌ ଭଲ ଲାଗୁନାହିଁ । ତାର ବିଲାତ ଯିବା ଆସିବା, ରହିବା, ପଢ଼ିବା, ସବୁ ଖର୍ଚ୍ଚ ତ ଆମେ ଦେଇଥାନ୍ତୁ; କିନ୍ତୁ ସେ ତ ମୋଟେ କଥା ମାନୁନାହିଁ ।"

ଜ୍ୱାଲାପ୍ରସାଦ କହିଲେ, "ବୁଝିଲେ, ଏସବୁ ଭଗବାନଙ୍କ ଇଚ୍ଛା ।"

"ଠିକ୍ କହିଲେ ଡେପୁଟି ସାହେବ ! ଲୋକେ ପରା କହନ୍ତି ହାନିଲାଭ, ଜୀବନ, ମରଣ,

ଯଶ, ଅପଯଶ—ସବୁ ଭଗବାନଙ୍କ ହାତରେ ।”

ଏହି ସମୟରେ ଜ୍ୱାଲାପ୍ରସାଦ ବାରଣ୍ଡାଆଡ଼କୁ ଚାହିଁ ଦେଖିଲେ, ନବଲ ଗୋଟିଏ ବଡ଼ ପାକେଟ୍‌ରେ ଲୁଗାଗୁଡ଼ାଏ ଧରି ଆସୁଛି । ସେ ଡାକ ପକାଇଲେ, “ନବଲ, ଇଆଡ଼କୁ ଆ । କ’ଣ ସେଗୁଡ଼ା ? ଲୁଗା ସିଲେଇ କରି ଆଣିଛୁ କି ?”

ନବଲ ବୋଧହୁଏ କାମତାନାଥଙ୍କୁ ଦେଖି ନ ଥିଲା; ନଚେତ୍ ସେ ଲୁଗାପାକେଟ୍ ଧରି ଘର ଭିତରକୁ ପଶି ନ ଆ’ନ୍ତା । ଜ୍ୱାଲାପ୍ରସାଦ ନବଲ ହାତରୁ ଲୁଗା-ପାକେଟ୍ ନେଇ ଖୋଲିଦେଇ କହିଲେ, “ବହୁତ ଗୁଡ଼ାଏ ତ ତିଆରି କରିଛୁ । ଦେଖି, କିମିତି ହୋଇଛି !”

ଲୁଗାପଟା ଦେଖି ଜ୍ୱାଲାପ୍ରସାଦ ଯେତିକି ଚମକି ପଡ଼ିଲେ, କାମତାନାଥ ତା’ଠୁ ବେଶୀ ଚମକି ଉଠିଲେ । ଜ୍ୱାଲାପ୍ରସାଦ କହିଲେ, “ତୁ ଏତେଗୁଡ଼ାଏ ଖଦଡ଼ ପୋଷାକ ତିଆରି କରିପକାଇଛୁ ! ତୁ କ’ଣ କଂଗ୍ରେସରେ ମିଶିଗଲୁଣି କି ?”

ନବଲ ବର୍ତ୍ତମାନ ଜାଣିଲା, କାମତାନାଥ ବି ସେଇ ଘରେ ବସିଛନ୍ତି । ସେ କହିଲା, “ନାହିଁ କଂଗ୍ରେସରେ ମିଶିନାହିଁ ଯେ, ଖଦଡ଼ ପିନ୍ଧିବା ଆରମ୍ଭ କରି ଦେଇଛି ।”

କାମତାନାଥ ମୁହଁ ଫୁଲାଇ କହିଲେ, “ଏ ଖଦଡ଼ଗୁଡ଼ା ଦେହକୁ ଭଲଲାଗେ ନାହିଁ । ଏ ଢେଙ୍ଗପିନ୍ଧା ତମ ମୁଣ୍ଡରେ ପଶିଲା କିମିତି ?”

“ନାହିଁ ସେମିତି କିଛି ନାହିଁ । ଯେବେ ମୋତିଲାଲ, ଜବାହାରଲାଲ ଯଦି ଖଦଡ଼ ପିନ୍ଧୁଛନ୍ତି, ଆମେ ପିନ୍ଧିବା ନାହିଁ କାହିଁକି ? ଆଚ୍ଛା ମୁଁ ଲୁଗା ଥୋଇଦେଇ ଆସୁଛି ।” ଏହା କହି ନବଲ ଝଟ୍‌କାଭିତରକୁ ଚାଲିଗଲା ।

କାମତାନାଥ କିଛିକାଳ ମର୍ମାହତ ହେଲାପରି ରହି ପୁଣି କହିଲେ, “ବୁଝିଲେ ଡେପୁଟି ସାହେବ, ପିଲାଟା ହାତରୁ ଖସିଗଲା ଜାଣ ।”

ଜ୍ୱାଲାପ୍ରସାଦ ଦୀର୍ଘଶ୍ୱାସ ପକାଇ କହିଲେ, “ହଁ ସେମିତି ଜଣାପଡ଼ୁଛି ତ, ମନୁଷ୍ୟ କ’ଣ କରିବ ? ଭଗବାନଙ୍କର ଯାହା ଇଚ୍ଛା !”

କାମତାନାଥ ବିଗିଡ଼ିଯାଇ କହିଲେ, “ରଖ ତମର ସେ ଭଗବାନ; ଅପେକ୍ଷା କର, ମୁଁ ନବଲକୁ ଠିକ୍ କରିଦେବି । ଅପ୍ରେଲ ମାସରେ ବାହାଘର ହୋଇଯିବା ଉଚିତ । କାରଣ ଜାନୁୟାରୀରେ ତ କୌଣସି ଲଗ୍ନ ନାହିଁ । ତାପରେ ଉଷା ସାଙ୍ଗରେ ମୁଁ ତାକୁ ବିଲାତ ପଠାଇଦେବି । ଉଷା ନାଁରେ ମୁଁ ନଗଦ ପଚିଶ ହଜାର ଟଙ୍କା ବ୍ୟାଙ୍କରେ ରଖିଛି । ଥରେ ସେ ପଇସା ଲୋଭରେ ପଡ଼ିଲେ ମନରୁ ଦେଶଭକ୍ତି ଛାଡ଼ିଯିବ ।”

କାମତାନାଥଙ୍କର ଏପ୍ରକାର ମନ୍ତବ୍ୟ ଜ୍ୱାଲାପ୍ରସାଦଙ୍କୁ ଭଲ ଲାଗିଲା ନାହିଁ । କାମତା-ନାଥଙ୍କ ପିତା ରାମସଞ୍ଜୀବନ ମିଲିଟାରୀରେ ଷ୍ଟୋରକିପର୍ କାମ କରୁଥିଲେ । ତାଙ୍କ ପରି

ଅସାଧୁ ଧୂର୍ତ୍ତ ଲୋକ ଖୁବ୍ କମ୍ ଥିଲେ । ସେ ତାଙ୍କ ପୁଅ କାମତାନାଥଙ୍କୁ ମିଲିଟାରୀ କଣ୍ଟ୍ରାକ୍ଟର କରି ରଖି ଦେଇଥିଲେ । ୧୯୧୪ରୁ ୧୯୧୬ ଭିତରେ କାମତାନାଥ ପ୍ରାୟ ପାଞ୍ଚ ଲକ୍ଷ ଟଙ୍କା ଲାଭ କରିଥିଲେ ଓ ରାୟବାହାଦୂର ପଦ ପାଇଥିଲେ । ରାମସଞ୍ଜୀବନ ସବୁବେଳେ ଜ୍ୱାଲାପ୍ରସାଦଙ୍କ ନିକଟକୁ ଯୋଡ଼ହସ୍ତ ହୋଇ ଆସୁଥିଲେ; ଅଥଚ ଆଜି ତାଙ୍କର ପୁଅ ଜ୍ୱାଲାପ୍ରସାଦଙ୍କ ନାତିକୁ ଟଙ୍କା ଦେଇ କିଣିନେବ ବୋଲି ବସିଛି । ତେଣୁ କାମତାନାଥଙ୍କ କଥା ଶୁଣି ଜ୍ୱାଲାପ୍ରସାଦଙ୍କ ପ୍ରାଣରେ ଦାରୁଣ ଆଘାତ ଲାଗିଲା; କିନ୍ତୁ ସେ ତାଙ୍କ କଥାର କୌଣସି ଜବାବ ଦେଲେ ନାହିଁ ।

କାମତାନାଥ ଉଠି ଛିଡ଼ାହୋଇ କହିଲେ, "ଆଚ୍ଛା ବର୍ତ୍ତମାନ ମୁଁ ଯାଉଛି । ଗୌରୀ-ନାଥ ସଙ୍ଗେ କଥାବାର୍ତ୍ତା କରି ବାହାଘର ଦିନ ଠିକ୍ କରିବି । ଆପଣ ପ୍ରସ୍ତୁତ ହୁଅନ୍ତୁ ।"

ଜ୍ୱାଲାପ୍ରସାଦ କାମତାନାଥଙ୍କ ସଙ୍ଗେ ଯାହା କଥାବାର୍ତ୍ତା ହୋଇଥିଲେ, ଟିକିନିଖି ସବୁ ନ କହି କେବଳ ଏତିକି କହିଲେ, "ନବଲ, ରାୟବାହାଦୁର କହିଛନ୍ତି—ଅପ୍ରେଲ୍ ମେ ଭିତରେ ସେ ଉଷାର ବାହାଘର କରିବେ । ତାରିଖ ଠିକ୍ କରି ସେ ଆମକୁ ଜଣାଇବେ ।"

"ଏତେ ତରତର କ'ଣ ଜେଜେ ! ମୁଁ ଆଗ ଲ' ପାଶ୍ କରିଦିଏ !"

ନବଲ ଗୋଡ଼ରୁ ମୁଣ୍ଡଯାଏ ଖଦଡ଼ ପୋଷାକ ପିନ୍ଧି ଘରୁ ବାହାରିବାବେଳେ ଜ୍ୱାଲା-ପ୍ରସାଦ କିଛିକାଳ ତାକୁ ଅନାଇ ରହିଲେ ଓ ଅଳପ ଟିକିଏ ହସିଦେଇ କହିଲେ, "ଖଦଡ଼ ପୋଷାକ ତ ଖୁବ୍ ଭଲ ଦିଶୁଛି । ଭଗବାନ ତୋତେ ରକ୍ଷା କରନ୍ତୁ ।"

ତହିଁ ଆରଦିନ ଜ୍ଞାନପ୍ରକାଶ ନବଲକୁ କହିଲେ, "ନବଲ, ଯୁବକମାନେ ଲାହୋର କଂଗ୍ରେସକୁ ଯାଇ ଜବାହରଲାଲ ନେହେରୁଙ୍କ ହାତମୁଠା ଟାଣ କରିବା ଆବଶ୍ୟକ । ତମେ ଆଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ଦଶଜଣ ଯୁବକଙ୍କୁ ସେଠିକି ନେଇ ପାରିବ କି ?"

ନବଲ ଉତ୍ସାହିତ ହୋଇ କହିଲା, "ଆପଣ ମୋ ନାଁ ଆଗ ଲେଖିଦିଅନ୍ତୁ । ସପ୍ତାହକ ଭିତରେ ମୁଁ ଆଉ ଦଶଜଣଙ୍କ ନାଁ ଦେଇଦେବି ।"

"ନବଲ ! କାମଟା ଯେତେ ସହଜ ବୋଲି ତମେ ମନେ କରୁଛ, ପ୍ରକୃତରେ ସେତେ ସହଜ ନୁହେଁ । ଲାହୋର ଯିବାପାଇଁ ପ୍ରତ୍ୟେକଙ୍କୁ ପ୍ରାୟ ପଚିଶି ପଚିଶି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ଯାହାର ଖର୍ଚ୍ଚ କରିବାକୁ ବଳ ଅଛି ସେମାନେ ଯିବେ ନାହିଁ; କିନ୍ତୁ ଯେଉଁମାନେ ଯିବାକୁ ରାଜି ଥିବେ ସେମାନଙ୍କ ହାତରେ ପଇସା ନ ଥିବ । ମୋ ପାଖରେ ଗୋଟିଏ ପ୍ରାଇଭେଟ୍ ଫଣ୍ଡ ଟଙ୍କା ଅଛି; ସେଥିରୁ ମୁଁ ଅଧା ଖର୍ଚ୍ଚ ଦେଇଦେବି ।'

ନବଲ କହିଲା, "ତାହେଲେ ତ କାମ ସହଜରେ ହୋଇଯିବ ।"

"ନାହିଁ ନବଲ, ତେବେ ବି ସେଥିରେ ଅସୁବିଧା ଅଛି । ତମେ ଆଜିଠାରୁ କାମ ଆରମ୍ଭ କରିଦିଅ । ଲାହୋର ଅଧିବେଶନ ବହୁତ ମହତ୍ତ୍ୱପୂର୍ଣ୍ଣ ହେବ । ଡିସେମ୍ବର ୨୩ ତାରିଖରେ

ଦଲ୍ଲୀଠାରେ ମହାତ୍ମା ଗାନ୍ଧି, ପଣ୍ଡିତ ମୋତିଲାଲ ଓ ଲର୍ଡ଼ ଇରଵିନଙ୍କ ମଧ୍ୟରେ କଥାବାର୍ତ୍ତା ହେବାର ଅଛି । ଦେଖାଯାଉ କ'ଣ ହେଉଛି । ଯାହା ହେଲେ ବି ଲାହୋର ଅଧିବେଶନ ଖୁବ୍ ମହତ୍ତ୍ୱପୂର୍ଣ୍ଣ ହେବ ।''

ନବଲ ଜ୍ଞାନପ୍ରକାଶଙ୍କ କାମ କରିବାପାଇଁ ଚାଲିଗଲା । ପ୍ରକୃତରେ କାମଟା ଏତେ ସହଜ ନୁହେଁ । ସେଦିନ ବଡ଼ କଷ୍ଟରେ ସେ ମୋଟେ ଦୁଇଜଣଙ୍କୁ ଲାହୋର ଯିବାପାଇଁ ରାଜି କରେଇ ପାରିଲା । ଧାଁଦଉଡ଼ରେ ସେ ଏକଦମ୍ ଥକିପଡ଼ିଲା । ଘରକୁ ଫେରିଲାବେଳକୁ ପ୍ରାୟ ନଅ ବାଜିଯାଇଥିଲା ।

ଘରକୁ ଫେରି ନବଲ ଦେଖିଲା ଘରେ ବଡ଼ ବିଚିତ୍ର ଅବସ୍ଥା । ଘରଯାକ ଲୋକେ ଡ୍ରଇଁ-ରୁମ୍‌ରେ ରୁଣ୍ଡ ହୋଇଛନ୍ତି । ଜ୍ୱାଲାପ୍ରସାଦ ହାତରେ ଗୋଟିଏ ଟେଲିଗ୍ରାମ ଧରିଛନ୍ତି ଓ ଯମୁନା କାନ୍ଦି କାନ୍ଦି କହୁଛନ୍ତି, ''କେଉଁ କଂସାଇ ଘରେ ମୋ ବିଦ୍ୟାକୁ ଦେଇଦେଲ । ଘରଦ୍ୱାର ତ ସବୁ ଖାଲିକରି ନେଇଗଲା । ତାପରେ ପୁଣି ଏଇଆ କପାଳରେ ଥିଲା ! ନବଲକୁ ନ ପଠାଇ ତମେ ନିଜେ ଯାଇ ବୁଝିଆସ କ'ଣ ହୋଇଛି ।''

ନବଲ ଆସିଲାମାତ୍ରେ ଜ୍ୱାଲାପ୍ରସାଦ ତାକୁ ତାରଟା ଧରାଇଦେଲେ । ସେଟା ଉନ୍ନାବରୁ ସିଦ୍ଧେଶ୍ୱରୀ ପାଖରୁ ଆସିଥିଲା । ସେଥିରେ ଲେଖାଥିଲା, ''ଶୀଘ୍ର ଆସି ତମ ଭଉଣୀଙ୍କୁ ନେଇ ଯା ।''

ନବଲ ସେହି ଟେଲିଗ୍ରାମ୍‌କୁ ଦୁଇ ତିନି ଥର ପଢ଼ି କହିଲା, ''କଥା କ'ଣ, କିଛି ତ ବୁଝାପଡ଼ୁ ନାହିଁ ।''

ରୁକ୍ମିଣୀ କହିଲେ, ''ଏଥିରେ ବୁଝିବାକୁ କ'ଣ ଅଛି ? ସେମାନେ ବିଦ୍ୟାକୁ ଘରୁ ବାହାର କରିଦେବାକୁ ଚାହାନ୍ତି । କାଲି ବିଦ୍ୟାର ଚିଠି ଆସିଥିଲା ତାଙ୍କ ଘରର ସବୁଲୋକେ ବର୍ତ୍ତମାନ ଆସି ଉନ୍ନାବରେ ଜମା ହୋଇଛନ୍ତି । ଝିଅ ମୋର ପେଷି ହୋଇ ଯାଉଛି ।''

ଜ୍ୱାଲାପ୍ରସାଦ ନବଲକୁ କହିଲେ, ''କାଲି ସକାଳ ଗାଡ଼ିରେ ଚାଲିଯା, ବିଦ୍ୟାକୁ ଟିକିଏ ବୁଝାଇ ଶୁଝାଇ କହିବୁ, ସେ ଟିକିଏ ରାଗିଟା ନା; କିନ୍ତୁ ଶାଶୁଘରେ ତ ଚପିକରି ଚଳିବାକୁ ପଡ଼ିବ ।''

ରୁକ୍ମିଣୀ କହିଲେ, ''ଆରେ ପୁଅ ନବଲ, ତୁ ବିଦ୍ୟାକୁ ସଙ୍ଗରେ ଧରି ଚାଲିଆସିବୁ । ବିଦ୍ୟାର ତ କିଛି ଦୋଷ ନାହିଁ । ସେଗୁଡ଼ା ସବୁ ଚଣ୍ଡାଳ; ସେମାନେ ତାକୁ ମାରିଦେବାକୁ ବସିଛନ୍ତି । ହେ ଭଗବାନ !'' ଏତିକି କହି ରୁକ୍ମିଣୀ ସକ ସକ ହୋଇ କାନ୍ଦିବାକୁ ଲାଗିଲେ ।

ଏହି ସମୟରେ ଜ୍ଞାନପ୍ରକାଶ ଘର ଭିତରକୁ ପଶିଆସିବାରୁ ରୁକ୍ମିଣୀ ଓଢ଼ଣା

ଟାଣିଦେଇ ଗୋଟିଏ କଡ଼କୁ ଆଡ଼େଇ ହୋଇଗଲେ । ଜ୍ଞାନପ୍ରକାଶ ପଚାରିଲେ, "ଭାଇ, କଥା କ'ଣ ? ଏତେ କନ୍ଦାକଟା କାହିଁକି ?"

ନବଲ ଜ୍ଞାନପ୍ରକାଶଙ୍କ ହାତକୁ ତାରଟା ବଢ଼ାଇଦେବାରୁ ସେ ଦେଖିସାରି କହିଲେ, "ଓଃ, ଘଟଣା ଏତେଦୂର ଗଲାଣି ! ନବଲକୁ ପଠାଇବା ଠିକ୍ ହେବ ନାହିଁ, ଭାଇ ତମେ ନିଜେ ଯାଅ ।"

ଜ୍ୱାଲାପ୍ରସାଦ କ୍ଷୀଣକଣ୍ଠରେ କହିଲେ, "ଜ୍ଞାନୁ, ମୋତେ ତମେ ପଠାଅ ନାହିଁ । ନବଲ ଗଲେ ଠିକ୍ ହେବ । କାଲି ସକାଳ ଗାଡ଼ିରେ ମୁଁ ନବଲକୁ ପଠାଇ ଦେଉଛି ।"

"ନାହିଁ, କାଲି ସକାଳ ଗାଡ଼ି କଥା ନୁହେଁ, ନବଲ ଆଜି ରାତି ଗାଡ଼ିରେ ଚାଲିଯାଉ । ବର୍ତ୍ତମାନ ତ ମୋଟେ ନ' ବାଜିଛି । ରାତି ଏଗାରଟାରେ କାନପୁରକୁ ଗୋଟିଏ ପାସେଞ୍ଜର ଗାଡ଼ି ଅଛି । ଏସବୁ କଥାରେ ଡେରି କରିବା ଉଚିତ ନୁହେଁ । ଯା ନବଲ, ଯିବା ପାଇଁ ପ୍ରସ୍ତୁତ ହୋଇଯା ।" ଏତିକି କହି ଜ୍ଞାନପ୍ରକାଶ ଚାଲିଗଲେ । ନବଲ ଯେତେବେଳେ ଯିବାପାଇଁ ପ୍ରସ୍ତୁତ ହୋଇ ବାହାରି ଆସିଲା, ଦେଖିଲା ଜ୍ଞାନପ୍ରକାଶ ବି ବିଛଣାପତ୍ର ବାନ୍ଧି ଛିଆ । ସେ କହିଲେ, "ତମେ ଏକାକୀ ଏସବୁ କଥାରେ ପାରିବ ନାହିଁ । ମୁଁ ତମ ସଙ୍ଗରେ ଯିବି । ତମେ ପିଲାଲୋକ, ସେମାନଙ୍କ ସଙ୍ଗରେ ତୁମେ ପାରିବ ନାହିଁ ।"

ଜ୍ଞାନପ୍ରକାଶ ଓ ନବଲ ଉନ୍ନାବ ଷ୍ଟେସନରେ ପହଞ୍ଚିଲାବେଳକୁ ଭୋର ଝରା ହେଉଥିଲା । ଷ୍ଟେସନରେ ବିଛଣାପତ୍ର ରଖିଦେଇ ଦୁହେଁଯାକ ଗୋଟିଏ ଘୋଡ଼ାଗାଡ଼ିରେ ବସି ବାହାରିଗଲେ । ସିଦ୍ଧେଶ୍ୱରୀଙ୍କ ବଙ୍ଗଳାରେ ପହଞ୍ଚି ଜ୍ଞାନପ୍ରକାଶ ଚୌକିଦାରକୁ କହିଲେ, "ସିଦ୍ଧେଶ୍ୱରୀବାବୁଙ୍କୁ କହିଦିଅ, ଆଲାହାବାଦରୁ ଲୋକ ଆସିଛନ୍ତି ।"

"ସାନ ସାହେବ ତ ଶୋଇଛନ୍ତି, ବଡ଼ ସାହେବଙ୍କୁ ମୁଁ ଖବର ଦେଇଦେଉଛି ।" କହି ଚୌକିଦାର ଭିତରକୁ ଚାଲିଗଲା ।

ଦୁହେଁଯାକ ବାରଣ୍ଡାରେ ବସିଗଲେ । ଏହି ସମୟରେ ବନ୍ଦେଶ୍ୱରୀପ୍ରସାଦ ବାହାରି ଆସି କହିଲେ, "ଆପଣମାନେ ତ ବହୁତ ଶୀଘ୍ର ଆସିଗଲେ, ଈଶ୍ୱରଙ୍କୁ ବହୁତ ଧନ୍ୟବାଦ ।" ସେ ଡ୍ରଇଁରୁମ୍ ଖୋଲିବା ପାଇଁ ଚୌକିଦାରକୁ କହି ସେମାନଙ୍କୁ ପଚାରିଲେ, "ଆପଣମାନଙ୍କର ଜିନିଷପତ୍ର କାହିଁ ?"

ନବଲ କହିଲା, "ଷ୍ଟେସନରେ ଛାଡ଼ି ଆସିଛୁ ।"

"ଭଲ କଲ, ନୋହିଲେ ଜିନିଷପତ୍ର ଆଣି ପୁଣି ଫେରେଇ ନେବାକୁ ପଡ଼ିଥା'ନ୍ତା । ତମର ଏହି ରାକ୍ଷସୀ ଭଉଣୀକୁ ଶୀଘ୍ର ନେଇଯାଇ ଆମ ପ୍ରାଣରକ୍ଷା କର ।"

ଜ୍ଞାନପ୍ରକାଶ ପଚାରିଲେ, "କ'ଣ ହୋଇଛି—କଥା କ'ଣ ?"

"ଆମେ କ'ଣ କହିବୁ, ତା'ଠାରୁ ସବୁ ଶୁଣିନେବେ । କାଲିଠାରୁ କବାଟ କିଲି

ଶୋଇଛୁ, ମରିବା ପାଇଁ ଓ ମାରିବା ପାଇଁ ଜିଦ୍ ଧରି ବସିଛୁ ।" ଏତିକ କହି ସେ ସିଦ୍ଧେଶ୍ୱରୀଙ୍କୁ ଡାକ ପକାଇଲେ, "ଏଇ ଆଲ୍ଲାହାବାଦରୁ ଲୋକେ ଆସିଲେଣି ।"

ଏହି ସମୟରେ ବଦ୍ୟା ଘର ଭିତରକୁ ଦୌଡ଼ିଆସି କହିଲା, "ଭାଇ, ମୋତେ ଏ ରାକ୍ଷସଙ୍କ ହାତରୁ ରକ୍ଷାକର । ଜେଜେ ଆପଣ ବି ଆସିଛନ୍ତି ? ଯାହା ହେଉ, ମୋ ଜୀବନ ରହିଗଲା ।"

ଜ୍ଞାନପ୍ରକାଶ ଦେଖିଲେ ବଦ୍ୟାର ଦେହ ଠାଏ ଠାଏ ଫାଟିଯାଇଛି । ବନ୍ଦେଶ୍ୱରୀ କର୍କଶ କଣ୍ଠରେ କହିଲେ, "ନବଲ, ଏ ହାରାମଜାଦୀକୁ ଭିତରକୁ ନେଇଯାଇ ତା ଜିନିଷପତ୍ର ବନ୍ଧାବନ୍ଧି କରିଦିଅ । ସ୍ୱା ଭିତରେ ମୁଁ ଜ୍ଞାନପ୍ରକାଶଙ୍କ ସହିତ କଥାବାର୍ତ୍ତା କରୁଛି ।"

ନବଲ ବଦ୍ୟାର ହାତ ଧରି ତାକୁ ଘର ଭିତରକୁ ଟାଣି ନେଇଗଲା । ସ୍ୱା ଭିତରେ ସିଦ୍ଧେଶ୍ୱରୀ ଆସି ପହଞ୍ଚିବାରୁ ଜ୍ଞାନପ୍ରକାଶ ପଚାରିଲେ, "ଆଚ୍ଛା, ସିଦ୍ଧେଶ୍ୱରୀ ବାବୁ ! କ'ଣ ହୋଇଛି, ମୁଁ ଟିକିଏ ଶୁଣେ ।"

ସିଦ୍ଧେଶ୍ୱରୀ ସେତେବେଳେ ଉତ୍ତେଜିତ ଅବସ୍ଥାରେ ଥିଲେ । ସେ କହିଲେ, "ମୋ ମା ଭଉଣୀଙ୍କୁ ବେଇଜତ୍ କଲାବେଳେ ମୁଁ ଚୁପ୍ ରହିଲି; କିନ୍ତୁ ବାପା ପ୍ରତିବାଦ କରିବାରୁ ସେ ଯେତେବେଳେ ବାପାଙ୍କୁ ବେଇଜତ୍ କରିବାକୁ ବସିଲା, ସେତେବେଳେ ମୋ ହାତ ଆଉ ସମ୍ଭାଳିଲା ନାହିଁ ।"

ବନ୍ଦେଶ୍ୱରୀପ୍ରସାଦ କହିଲେ, "ସେ କେବଳ ଗୋଟିଏ ଚାପୁଡ଼ା ତାକୁ ମାରିଦେଇଥିଲା ।"

ଜ୍ଞାନପ୍ରକାଶ କହିଲେ, "ହଁ ଗୋଟିଏ ଚାପୁଡ଼ା ନିଶ୍ଚୟ ମାରିଥିବ । ନୋହିଲେ ଦେହଯାକ ଫାଟିଯାଇଥାନ୍ତା କେମିତି ? ହଁ, ଆଚ୍ଛା ଆଉ କୁହନ୍ତୁ !"

"ତାପରେ ସେ ତ ହାତଗୋଡ଼ ପିଟି ଆକାଶ ଫଟାଇଲା । ପୁଣି ସିଦ୍ଧେଶ୍ୱରୀ ଯେତେବେଳେ ଆଉ ଗୋଟିଏ ଚାପୁଡ଼ା ମାରିଲା, ଜାଣ ପୃଥିବୀ ପ୍ରଳୟ ହୋଇଗଲା । ସେ ଓଲଟି ପଡ଼ି ସିଦ୍ଧେଶ୍ୱରୀଙ୍କୁ ଚାପୁଡ଼ା ମାରିଲା । ସ୍ତ୍ରୀ ଜଣେ ତା ପୁରୁଷକୁ ମାରିବ, ଜୀବନରେ ଏଇ ପ୍ରଥମ ଥର ମୁଁ ଦେଖିଲି । ଏମିତି ମାଇକିନିଆକୁ ତ ଗୁଳି କରିଦେବା ଦରକାର ।"

"କ'ଣ କହିବ, ଦୌଡ଼ିଯାଇ ନିଜ ଘରେ ପଶି କବାଟ କିଲିଦେଲି; ନହେଲେ ତ ମୁଁ ସେ ହାରାମଜାଦୀର ଜୀବନ ନେଇଯାଇଥାନ୍ତି । ଆପଣ ତାକୁ ଏଠୁ ଶୀଘ୍ର ନେଇଯା'ନ୍ତୁ; ନଚେତ୍ ବହୁତ ଗଣ୍ଡଗୋଳ ହେବ ।"

ଜ୍ଞାନପ୍ରକାଶ ଧୀରସ୍ଥିର ହୋଇ କହିଲେ, "ହଁ ଆଜ୍ଞା ! ଆମେ ତ ସେଇଥିପାଇଁ ଆସିଛୁ । ଖାଲି ତା'ର ଜୀବନ ତ ଯାଇ ନଥା'ନ୍ତା, ଆପଣମାନଙ୍କୁ ବି ଫାଶିରେ

ଚଢ଼ିବାକୁ ପଡ଼ୁଥା'ନ୍ତା । ଗଙ୍ଗାପ୍ରସାଦର ଝିଅ ନା !''

ବଦ୍ରେଶ୍ୱରପ୍ରସାଦ କହିଲେ, ''ସେ ଗଙ୍ଗାପ୍ରସାଦ ତ ନରକକୁ ଗଲଣି । ଆମେ ବି ଏ ହାରାମଜାଦକୁ ନରକକୁ ପଠାଇ ଦେଇଥା'ନ୍ତୁ ।''

ଜ୍ଞାନପ୍ରକାଶ ଟିକିଏ ସିଧା ଛିଡ଼ାହୋ'ଇପଡ଼ି କହିଲେ, ''ବଦ୍ରେଶ୍ୱରପ୍ରସାଦ ! ଟିକେ ସଭ୍ୟ-ସମ୍ଭ୍ରାନ୍ତ କଥାବାର୍ତ୍ତା କର । ଗଙ୍ଗାପ୍ରସାଦ ନାହିଁ ବୋଲି ତା' ଝିଅକୁ ଅନାଥ ମନେ କରିବା ଉଚିତ ନୁହେଁ ।''

ସିଦ୍ଧେଶ୍ୱର ତାଙ୍କ ବାପାଙ୍କୁ ବାରଣ କରି କହିଲେ, ''ଏ ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରି କିଛି ଲାଭ ନାହିଁ ।''

ସ୍ୱୀ ଭିତରେ ନବଲ ବିଦ୍ୟାର ଦୁଇଟା ଟ୍ରଙ୍କ ଆଣି ଡ୍ରଇଁ ରୁମ୍‌ରେ ପହଞ୍ଚି ଯାଇଥିଲା ଓ କହିଲା, ''ବେଶ୍, ବିଦ୍ୟା ଏତିକି ନେଇଯିବାକୁ ଚାହେଁ । ଆମର ବର୍ତ୍ତମାନ ଏଠୁ ଚାଲିଯିବା ଉଚିତ ।''

ଜ୍ଞାନପ୍ରକାଶ ସିଦ୍ଧେଶ୍ୱରଙ୍କୁ ଚାହିଁ ପଚାରିଲେ, ''ତମର ଏଠି କିଛି ଗାଡ଼ି ଇତ୍ୟାଦି ଅଛି, ମଗାଇଦେବ ?''

ବଦ୍ରେଶ୍ୱରପ୍ରସାଦ ଏତିକିବେଳକୁ ଅନେକ ଶାନ୍ତ ହୋଇଯାଇଥିଲେ । ସେ ଚାକରକୁ ଡାକି କହିଲେ, ''ଭବାନୀ, ଡ୍ରାଇଭରକୁ କହି ଗାଡ଼ି ଆଣ ।'' ତାପରେ ସେ ବିଦ୍ୟାକୁ ଚାହିଁ କହିଲେ, ''ଆଉ ଏ ଘରେ ପୁଣି ପାଦ ପକାଇବାକୁ ହେବ ନାହିଁ । ତେଣୁ ଅଲଙ୍କାର ଇତ୍ୟାଦି କାଢ଼ି ରଖିଦେଇ ଯାଅ ।''

ବିଦ୍ୟା ବିଗିଡ଼ି ଯାଇ କହିଲା, ''ଇଏ ତ ଘର ନୁହେଁ, ଏକ ନରକ । ମୁଁ ଯଦି ବାପର ପିଲା ହୋଇଥିବି, ତାହେଲେ ଏଠି ପାଦ ଦେବି ନାହିଁ । ତମ ଗହଣାଗଣ୍ଠି କାଢ଼ି ନେଇଯା ।'' ଏହା କହି ବିଦ୍ୟା ସିଦ୍ଧେଶ୍ୱରପ୍ରସାଦ ଆଗକୁ ଚାବି ଫିଙ୍ଗିଦେଲା; କିନ୍ତୁ ସିଦ୍ଧେଶ୍ୱର ଚାବି ନେବା ପୂର୍ବରୁ ଜ୍ଞାନପ୍ରକାଶ ତାହା ଉଠାଇ ନେଇ କହିଲେ, ''ଗହଣା ଝିଅର; ସେଥିରେ ଆପଣମାନଙ୍କର କୌଣସି ଅଧିକାର ନାହିଁ ।''

ବଦ୍ରେଶ୍ୱରପ୍ରସାଦ ଗର୍ଜି ଉଠିଲେ, ''ଆମ ମଝିରେ କଥାବାର୍ତ୍ତା କରିବା ପାଇଁ ଆପଣ କିଏ ସେ ? ଚାବି ଏଣେ ମୋତେ ଦିଅନ୍ତୁ ।''

ଜ୍ଞାନପ୍ରକାଶ କହିଲେ, ''ମୁଁ ଝିଅର ବାପ, ତାର ରକ୍ଷାକର୍ତ୍ତା ।'' ଏତିକି କହି ସେ ଚାବିକୁ ପକେଟରେ ପୂରାଇଲେ ।

ବଦ୍ରେଶ୍ୱରପ୍ରସାଦ ସିଦ୍ଧେଶ୍ୱରକୁ କହିଲେ, ''ଦେଖୁଛୁ କ'ଣ ? ଗହଣା ଟ୍ରଙ୍କ ଉଠାଇନେ ।''

ଜ୍ଞାନପ୍ରକାଶ କଠୋର ସ୍ୱରରେ କହିଲେ, ''ଖବରଦାର, ଟ୍ରଙ୍କ ଛୁଇଁଲେ ପୁଣି ଦେଖିବ

ବନ୍ଦେଶ୍ବରୀପ୍ରସାଦ ! ପନ୍ଦର ହଜାର ଟଙ୍କାର ଯୌତୁକ ନେଇ ବର୍ତ୍ତମାନ ଝିଅକୁ ଘରୁ ବାହାର କରିବାକୁ ବସିଛ ! କେହି ଯଦି ଚନ୍ଦ୍ରଙ୍କ ଛୁଏଁ, ତେବେ ପରିସ୍ଥିତି ଖରାପ ହେବ ।" ତାପରେ ସେ ପକେଟରୁ ପିସ୍ତଲ କାଢ଼ି ହାତରେ ଧରି ପଚାରିଲେ, "ବନ୍ଦେଶ୍ବରୀପ୍ରସାଦ ! ବର୍ତ୍ତମାନ ପୁଲିସ୍ ଡକାଅ । ତୁମେ ପରା ଡିଷ୍ଟ୍ରିକ୍ଟ ଜଜ ! ଆଇନ୍ ମାଲୁମ୍ ଅଛି ଟି ? ନବଲ, ଚନ୍ଦ୍ରଙ୍କ ଧରି ଗାଡ଼ିପାଖକୁ ଚାଲ । ବନ୍ଦେଶ୍ବରୀପ୍ରସାଦ, ତୁମେ ପୁଲିସ୍ ଡକାଇଲେ, ମୁଁ କ'ଣ ଅଟକ ଯିବି ? ଏଠି କୁଶଲ ସିଂହ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ । ସେ ଗଙ୍ଗା-ପ୍ରସାଦଙ୍କର ଜଣେ ବଡ଼ ବନ୍ଧୁ ବୋଲି ଜାଣିଛ ତ ?"

ବନ୍ଦେଶ୍ବରୀପ୍ରସାଦ ଦାନ୍ତ କଡ଼ମଡ଼ କରି କହିଲେ, "ତମ କଥା ବୁଝିନେବି । ତୁମକୁ ଠିକ୍ କରିଦେଇ ଛାଡ଼ିଦେବି ।"

"ମୋତେ ଠିକ୍ କରିବା ପାଇଁ ମୁଁ ସମୟ ଦେଉଛି । ମୁଁ ତ କହୁଛି ଜଣେ ପୋଲିସ୍ ଡକାଇ ମୋତେ ଡକାୟତି ଦଫାରେ ଗିରଫ କରିନିଅ; କିନ୍ତୁ ସେଥିପାଇଁ ତମର ସାହସ ଅଛି ତ ? ପାର୍ପା କାହିଁକି ?"

ସିଦ୍ଧେଶ୍ବରୀ କହିଲେ, "ଚାଲ ବାପା, ଭିତରକୁ ଚାଲ । ଏ ଗ୍ରେଟଲୋକଗୁଡ଼ାଙ୍କୁ ମୁହଁ ଦେଉଛ କାହିଁକି ?" ଏହା କହି ସେ ବନ୍ଦେଶ୍ବରୀପ୍ରସାଦଙ୍କ ହାତ ଧରି ତାଙ୍କୁ ଘରଭିତରକୁ ଟାଣିନେଲେ ।

ନବଲ ଓ ଜ୍ଞାନପ୍ରସାଦ ଚନ୍ଦ୍ରାଙ୍କ ଧରି ଉନ୍ନାବରୁ ଆଲହାବାଦ ଚାଲିଗଲେ ।

## ଛଅ

ଜ୍ଞାନପ୍ରକାଶ ପଚାରିଲେ, "ସମୁଦାୟ କେତେ ଜଣ ହେଲେ ?"

ନବଲ କହିଲା, "ମୋତେ ମିଶାଇ ମୋଟେ ସାତ । ଜ୍ଞାନ ଜେଜେ, ଆପଣ ଠିକ୍ କହୁଥିଲେ । ଯେତେ ସହଜ ବୋଲି ମୁଁ ଭାବିଥିଲି, କାମ ପ୍ରକୃତରେ ସେତେ ସହଜ ନୁହେଁ; କିନ୍ତୁ ଆମେ ଯିବା କେବେ ? ପଚିଶ ଡିସେମ୍ବରକୁ କଂଗ୍ରେସ ବସିବ । ଏହା ଭିତରେ ମୁଁ ଆଉ ଦିନଜଣ ଯୋଗାଡ଼ କରିଦେବି ।"

ଜ୍ଞାନପ୍ରକାଶ ହସିଦେଇ କହିଲେ, "ନାହିଁ ଦରକାର ନାହିଁ । ଢେର୍ ହେଲଣି । ମୋତେ ଦି'ଦିନ ଆଗରୁ ଯିବାକୁ ହେବ । ତେଣୁ ମୁଁ ବାଇଶିରେ ଚାଲିଯିବି । ତମେମାନେ ଚବିଶରେ ଯିବ । ତୁମମାନଙ୍କର ରହିବାପାଇଁ ମୁଁ ସେଠାରେ ବନ୍ଦୋବସ୍ତ

କରିଦେଇଥିବ ।"

ବିଦ୍ୟା ପାଖରେ ବସି ଖବରକାଗଜ ପଢ଼ୁଥିଲା । ସେ କାଗଜ ରଖିଦେଇ କହିଲା, "ଭାଇ, ମୁଁ ବି ତମମାନଙ୍କ ସଙ୍ଗରେ ଯିବି । ଜ୍ଞାନ ଜେଜେ ! ବର୍ତ୍ତମାନ ତ ଆମେ ସାତ ଜାଗାରେ ଆଠ ହୋଇଗଲୁ ।"

ବିଦ୍ୟା ଉନ୍ନାବରୁ ଫେରିଲାବେଳୁ ବରାବର ଚୁପ୍ ରହୁଥିଲା । ବେଶୀ କଥା କହୁ ନ ଥିଲା କିମ୍ବା ଘରୁ ବାହାରକୁ ଯାଉ ନ ଥିଲା; ବରଂ ଘରଭିତରେ ପଡ଼ିରହି ଏଣୁତେଣୁ ଚିନ୍ତା କରୁଥିଲା । ତାର କଥା ଶୁଣି ନବଲକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ପଚାରିଲା, "କ'ଣ କହୁଛୁ ! ତୁ କଂଗ୍ରେସକୁ ଯିବୁ ?"

"ହଁ ଭାଇ, ମୁଁ ଯିବି, ବସି ବସି ଭାରି ବିରକ୍ତ ଲାଗିଲାଣି । କ'ଣ ଜ୍ଞାନ ଜେଜେ, ମୁଁ ଲାହୋର କଂଗ୍ରେସକୁ ଗଲେ କ'ଣ ଅସୁବିଧା ହେବ ? କ'ଣ କହନ୍ତୁ— ଚୁପ୍ ରହିଲେ କାହିଁକି ?"

ଜ୍ଞାନପ୍ରକାଶ ବିଦ୍ୟାକୁ କିଛି ସମୟ ଚାହିଁରହିଲେ, ଦେଖିଲେ ମୁହଁରେ ଯେମିତି ଦୃଢ଼ତା ଆଖିରେ ସେମିତି ପ୍ରଗାଢ଼ର ଅତଳ ଗମ୍ଭୀରତା । କେଡ଼େ ଶାନ୍ତ, କେଡ଼େ ସୁନ୍ଦର ! ଜ୍ଞାନପ୍ରକାଶଙ୍କର ଅତୀତର ଚିତ୍ର ମନେ ପଡ଼ିଗଲା । ସେ କହିଲେ, "ନାହିଁ ମା, ତୋର ଯିବାରେ କୌଣସି ଆପତ୍ତି ନାହିଁ; କିନ୍ତୁ ବର୍ତ୍ତମାନ ତୋର ଲାହୋର ଯିବା ଠିକ୍ ନୁହେଁ । ଲୋକେ କ'ଣ କହିବେ ?"

ବିଦ୍ୟା କିଛି ସମୟ ଚୁପ୍‌ରହି ପୁଣି କରୁଣ କଣ୍ଠରେ କହିଲା, "ଲୋକେ କ'ଣ କହିବେ, ସେଥିରେ ଆମର ଯାଏ ଆସେ କେତେ ? କିନ୍ତୁ ମୁଁ ଜବରଦସ୍ତ କିଛି କରିବାକୁ ଚାହେଁ ନାହିଁ । ଆପଣ ଯଦି ଭାବୁଥା'ନ୍ତି ମୁଁ ବସି ବସି ଖାଲି ଚିନ୍ତା କରୁଥିବି, ତେବେ ମୋର କୌଣସି ଆପତ୍ତି ନାହିଁ । ସ୍ତ୍ରୀଜୀବନ କ୍ରୀତଦାସୀର ଜୀବନ । କ'ଣ ଭାଇ, ମୁଁ ଠିକ୍ କହୁଛି ନା ନାହିଁ ?"

ବିଦ୍ୟାର କଥାରେ ଯେଉଁ ନିଃସହାୟତା ଓ ଯେଉଁ ତୀବ୍ର ବ୍ୟଙ୍ଗ ଥିଲା ତାହା ଜ୍ଞାନପ୍ରକାଶଙ୍କ ମନରେ ଖୁବ୍ ଜୋର୍‌ରେ ଲାଗିଲା । ନିଜର କାପୁରୁଷତାରେ ସେ ଲଜ୍ଜିତ ହୋଇ ତଳକୁ ଚାହିଁ ରହିଲେ । ପୁଣି ସାହସ ଧରି କହିଲେ, "ନାହିଁ ମା, ତୋତେ ଦାସୀ ହେବାକୁ କିମ୍ବା ଚିନ୍ତାରେ ପାଣ୍ଡି ହେବାକୁ ପଡ଼ିବ ନାହିଁ । ତୁ ଯିବୁ । ଶୀଘ୍ର ପ୍ରସ୍ତୁତ ହୋଇଯା । ତୁ ମୋ ସଙ୍ଗରେ ଯିବୁ । ଏମାନେ ଥାର୍ଡ଼ କ୍ଲାସରେ ଯିବେ । ତାଙ୍କ ସଙ୍ଗରେ ଗଲେ ତୋର ଅସୁବିଧା ହେବ ।"

ବିଦ୍ୟା ହସିଦେଇ କହିଲା, "ଜ୍ଞାନଜେଜେ, ଆପଣ କେଡ଼େ ଭଲ ଲୋକ ସତେ ! ଆପଣ ଆଉ ନବଲ ଭାଇ ମୋର କେଡ଼େ ବଡ଼ ଆଶ୍ରା; କିନ୍ତୁ ଜେଜେ, ମୁଁ ନବଲ

ଭାଇଙ୍କ ସଙ୍ଗରେ ଆଉ ଟ୍ରକ୍ଲାସରେ ଯିବ । ଯଦି ଜୀବନରେ ସଂଘର୍ଷକୁ ସ୍ୱାଗତ କରିନେଇଛୁ, ତେବେ ଏହି ଶ୍ରେଷ୍ଠ ଶ୍ରେଷ୍ଠ ସୁଖ-ସୁବିଧାପାଇଁ ଏତେ ମୋହ କାହିଁକି ? ନବଲ ଭାଇ, ମୋତେ ସଙ୍ଗରେ ନେବନି ! ମୁଁ ତମର ଖିଆପିଆ କଥା ପୂରା ବୁଝିଦେବି ।"

ବିଦ୍ୟାର ଲାହୋର ଯିବାକଥା ଯେତେବେଳେ ଜଣାଗଲା, ସେତେବେଳେ ଘରସାରା ଚହଳ ପଡ଼ିଗଲା । ଯମୁନା ରୁକ୍ମଣୀକୁ କହିଲେ, "ବୋହୂ, ବିଦ୍ୟାକୁ ଲାହୋର ଯିବାକୁ ମନା କର । ଉନ୍ନାବ ଲୋକେ କ'ଣ କହିବେ ? ସେମାନଙ୍କ ସଙ୍ଗେ ପୁଣି ବନ୍ଧୁତାର ଯେଉଁ ଆଶା ଟିକକ ଅଛି, ସେତକ ବି ଯିବ । ଘରର ଝିଅ ପର୍ଦ୍ଦା ଛାଡ଼ି ପୁଅଙ୍କ ସଙ୍ଗେ ଦେଶ-ବିଦେଶରେ ବୁଲିବ, କେହି ପସନ୍ଦ କରିବେ ନାହିଁ । ସମସ୍ତେ ଛି, ଛି କରିବେ ।"

ରୁକ୍ମଣୀ କାନ୍ଦି କାନ୍ଦି କହିଲେ, "ହଁ ମା, ବିଦ୍ୟା ଲାହୋର ଯିବା କଥା ତ ମୋତେ ଭଲ ଲାଗୁନାହିଁ; କିନ୍ତୁ ସେ ଯଦି ଏହି ଅବସ୍ଥାରେ ରହେ, ତାହେଲେ ବେଶୀ ଦିନ ସେ ବଞ୍ଚିବ ନାହିଁ । ଦେଖୁଛନ୍ତି ତ ତା ଅବସ୍ଥା ! ଶୁଖିକରି କଣ୍ଟା ରହିଲାଣି ।"

ଯମୁନା ବର୍ତ୍ତମାନ ଟିକିଏ କଠୋର କଣ୍ଠରେ କହିଲେ, "ହଁ ସେକଥା ଜାଣୁଛୁ ଯେ, କିନ୍ତୁ କୁଳମର୍ଯ୍ୟାଦା ତ ପୁଣି ଦେଖିବାକୁ ହେବ । ଏ ହତଭାଗିନୀ ଜନ୍ମବେଳେ ଯଦି ମରିଯାଇଥା'ନ୍ତା, ଭଲ ହୋଇଥା'ନ୍ତା । ଜଣାପଡ଼ୁଛି, ଶେଷରେ ଇଏ ଆମ ମାନ-ମହତ ସବୁ ତଳେ ପକାଇବ ।"

"ମା ମୁଁ ହାତ ଧରୁଛି, ଏମିତି କଥା ମୁହଁରେ ଧରନ୍ତୁ ନାହିଁ । ବିଦ୍ୟା ଶୁଣିବ ଯଦି କୁଆଡ଼େ କ'ଣ କରିବସିବ । ମୁଁ ଠିକ୍ ଜାଣେ, ବିଦ୍ୟା କେବେ କିଛି ଅନୁଚିତ କାମ କରିବ ନାହିଁ ।"

"ଅନୁଚିତ କାମ କରିବ ନାହିଁ ତ ନିଜ ସ୍ୱାମୀ ଉପରକୁ ହାତ ଉଠାଇଲା କିମିତି ? ସେଇଟା କ'ଣ ଉଚିତ କାମ !"

ରୁକ୍ମଣୀ କହିଲେ, "ଆଉ କ'ଣ ସେଠି ସେ ଜୀବନ ହରେଇ ଦେଇଥା'ନ୍ତା ! ଦେଖିଲେ ତ ଦେହଗୋଟାଯାକ ଫାଟିଯାଇଥିଲା । କଂଶ ସାରା ମିଶିକରି ତାକୁ ମାରିଲେ । କଂସେଇଙ୍କ ଘରକୁ ମୋ ଝିଅକୁ ପଠାଇଦେଲେ । ଜୀଅନ୍ତା ଫେରିଆସିଲା କ'ଣ କମ୍ କଥା !"

ଯମୁନା ବିଗିଡ଼ିକରି କହିଲେ, "ହଉ ତୁ ତାକୁ ଏବେ ମୁଣ୍ଡଉପରେ ବସା । ତା ଭାଗ୍ୟ ତ ଆଉ ତୁ ଭୋଗକରିବୁ ନାହିଁ । ମୋତେ ଏଗୁଡ଼ା ଭଲ ଲାଗୁନାହିଁ । ମୁଁ ଯାଉଛି ତାଙ୍କୁ କହିଦେବି, ସେ ତାକୁ ମନା କରିବେ ।" ଏତିକି କହି ସେ ଜ୍ୱାଲାପ୍ରସାଦଙ୍କ ପାଖକୁ ଚାଲିଗଲେ ।

ଜ୍ୱାଲାପ୍ରସାଦ ପୂଜାସାରି ଡ୍ରଇଁ ରୁମ୍‌ରେ ବସିଥିଲେ । ବିଦ୍ୟାର ଲାହୋର ଯିବାକଥା

ତାଙ୍କୁ ଆଦୌ ଭଲ ଲାଗୁ ନଥିଲା । ସେ ଜ୍ଞାନପ୍ରକାଶଙ୍କୁ କହିଲେ, "ବିଦ୍ୟାର ଲାହୋର ଯିବା ଆଦୌ ଉଚିତ ନୁହେଁ । ଆମର ତା ଘରଲୋକଙ୍କୁ ପଚାରିଦେବା ଉଚିତ ।"

ଜ୍ଞାନପ୍ରକାଶ ପଚାରିଲେ, "ଭାଇ ଆପଣ କହିପାରିବେ କି—ତା ଘରଲୋକ କିଏ ? ଯେଉଁମାନେ ତାକୁ ନିଜ ଘରୁ ବାହାର କରିଦେଇଛନ୍ତି, ସେହିମାନେ କ'ଣ ତା'ର ଘରଲୋକ ?"

ଜ୍ୱାଲାପ୍ରସାଦ ଅଡ଼ୁଆରେ ପଡ଼ିଯାଇ କହିଲେ, "ସେମାନେ ନୁହିଁନ୍ତି, କ'ଣ ଆମେ ଆଉ ତା ଘରଲୋକ !"

"ହିଁ ଆପଣ ଥିଲେ ଯେ, ଏବେ ଅବଶ୍ୟ ଆଉ ନାହାନ୍ତି; କାରଣ ସେ ରାକ୍ଷସଙ୍କ ହାତରେ ଆପଣ ତାକୁ ଟେକି ଦେଇଛନ୍ତି । ଭାଇ, ଏ ଦୁନିଆରେ ତା'ର କେହି ନାହିଁ । କାହା ଉପରେ ତା'ର ଅଧିକାର ନାହିଁ କିମ୍ବା କେହି ତା'ର ଆଶ୍ରା ନାହିଁ । ଏବେ ତ ସେ ଭିକାରୁଣୀପରି ଅନ୍ୟର ଦୟା ଉପରେ ନିର୍ଭର କରି ବଞ୍ଚିବ । ତା ଆଗରେ ଗେ'ଲାମୀ କିମ୍ବା ମୃତ୍ୟୁ—ଇଆ ଛଡ଼ା ଆଉ କିଛି ବାଟ ନାହିଁ ।"

ଏହି ସମୟରେ ଯମୁନା ଆସି ପଚାରିଲେ, "ଜ୍ଞାନ, ତମେ କ'ଣ ବିଦ୍ୟାକୁ ଲାହୋର ଯିବାପାଇଁ ପରାମର୍ଶ ଦେଇଛ ?"

"ନାହିଁ ଭାଉଜ, ମୁଁ ସେ ପରାମର୍ଶ ଦେଇନାହିଁ । ଗଲା ଦଶ ବାରଦିନ ହେବ ତାର ଯେଉଁ ଜୀବନ ମୃତ୍ୟୁ ସଙ୍ଗେ ଲଢ଼େଇ ହେଉଥିଲା, ସେହି ବୋଧହୁଏ ତାକୁ ଏହି ପରାମର୍ଶ ଦେଇଛି । ତମେ ବୋଧହୁଏ ଦେଖିନାହିଁ, ଉନ୍ନାବରୁ ଫେରିଲା ଦିନୁ ସେ କମିତି ମୁହଁ ଢାଙ୍କି ମଲାପରି ତା ଘରେ ଦିନରାତି ଚୁପ୍‌ଚାପ୍ ପଡ଼ିରହିଛି । ତା ମୁହଁରେ କେବେ ହସ ଫୁଟିନାହିଁ କିମ୍ବା ଆଖିରୁ କେବେ ପାଣି ଶୁଖିନାହିଁ । କିନ୍ତୁ ଆଜି ପ୍ରଥମେ ବୋଧହୁଏ ତା' ଜୀବନ ଟିକିଏ ଜାଗିଉଠିଛି; ଆଜି ପ୍ରଥମେ ବୋଧହୁଏ ଜୀବନ ସଙ୍ଗେ ଲଢ଼େଇ କରିବାପାଇଁ ସେ ବାହାରିଛି । ତା'ର ଜୀବନ ଯେତେବେଳେ ମୋଠାରୁ, ନବଲଠାରୁ ଆଶ୍ରା ଖୋଜୁଥିଲା, କହିଲୁ ଭାଉଜ, ଆମେ ସେତେବେଳେ କ'ଣ କରିଥା'ନ୍ତୁ । ସେ ଲାହୋର ଯିବାପାଇଁ କହିଲା । ଆମେ ହଁ କହିବାରୁ ଏତେ ଦିନେ ତା ମୁହଁରେ ଟିକିଏ ହସ ଫୁଟିଲା, ଆଖିରେ ଟିକିଏ ଜ୍ୟୋତି ଦେଖାଦେଲା । ଭାଉଜ, ସେ ମରିଯିବ ବୋଲି ତମେ ଚାହୁଁଛ ନା କ'ଣ ?"

ଯମୁନା ହଠାତ୍ କାନ୍ଦିପକାଇ କହିଲେ, "ହାୟରେ କପାଳ, କେତେ ଆଦର ଯତ୍ନରେ ପାଳିଥିଲି ଶେଷରେ ଏହି ଚଣ୍ଡାଳଙ୍କ ହାତରେ ପଡ଼ିବାପାଇଁ । ଜ୍ଞାନୁ, ମୁଁ ତାକୁ ଆଉ ମନାକରିବି ନାହିଁ । ତା ମନ ଯାହା, ତାହା ସେ କରୁ ।" ଏହି କଥା କହି କହି ଯମୁନା ଚାଲିଗଲେ ।

ଏହାପରେ ଜ୍ୱାଲାପ୍ରସାଦ ସେକଥାକୁ ଆଉ ଆଗକୁ ବଢ଼ାଇଲେ ନାହିଁ ।

ତେଇଶ ତାରିଖ ସନ୍ଧ୍ୟାବେଳେ ଆଲ୍ହାବାଦରେ ଚହଳ ପଡ଼ିଗଲା 'ଲିଡ଼ର' ଓ 'ପାୟୋନିଅର' କାଗଜ ଦୁଇଟିର ବିଶେଷାଙ୍କରେ ବାହାରିଲା ଯେ ବଡ଼ଲାଟ ସକାଳେ ଦିଲ୍ଲୀ ଫେରୁଥିବା ବାଟରେ ପୁରୁଣା କିଲ୍ଲା ଅଞ୍ଚଳରେ ତାଙ୍କ ସ୍ୱତନ୍ତ୍ର ଟ୍ରେନ ତଳେ ବୋମା ଫୁଟିଲା । ବଡ଼ଲାଟ ଅଳ୍ପକେ ରକ୍ଷା ପାଇଗଲେ; କିନ୍ତୁ ତାଙ୍କ ଡାଇନିଙ୍ଗ୍ କାର୍ ନଷ୍ଟ ହୋଇ ଜଣେ ଚାକର ଆହତ ହୋଇଗଲା ।

ଏହି ଖବର ପଢ଼ି ଜ୍ୱାଲାପ୍ରସାଦ ଖୁବ ଚିନ୍ତିତ ହୋଇପଡ଼ିଲେ । ସେ ବିଦ୍ୟା ଓ ନବଲକୁ ଡାକି ପଚାରିଲେ, "ଆଜି ଖବର ପଢ଼ିଲଟି ! କ'ଣ ଭାବୁଛ ତମେ ?"

ନବଲ ଉତ୍ତର ଦେଲା, "ଜେଜେ, ଖବର ତ ନିଶ୍ଚୟ ଖରାପ । ଏହାର ଫଳ ହୁଏତ ଭଲ ହେବନାହିଁ । ମୋର ଧାରଣା ଗାନ୍ଧି ଓ ଇର୍‌ଉଇନ୍‌ଙ୍କ ଭିତରେ ଯେଉଁ କଥାବାର୍ତ୍ତା ହେବାର ଥିଲା, ତାହା ବୋଧହୁଏ ସଫଳ ହେବନାହିଁ ।"

ଜ୍ୱାଲାପ୍ରସାଦ କହିଲେ, "ମୁଁ ସେକଥା ପଚାରୁନାହିଁ । ମୁଁ ପଚାରୁଛି, ଏହି ପରିସ୍ଥିତିରେ ଏବେ ମଧ୍ୟ ତୋର ଓ ବିଦ୍ୟାର ଲାହୋର ଯିବାର ବିଚାର ଅଛି କି ?"

"ହଁ ଅଛି, ସରକାର ତ କଂଗ୍ରେସ ଉପରେ ଏପର୍ଯ୍ୟନ୍ତ କୌଣସି ନିଷେଧାଜ୍ଞା ଜାରି କରିନାହାନ୍ତି; କରିଥିଲେ ଖବର ବାହାରନ୍ତାଣି । ମୋର ଧାରଣା ସେମାନେ ନିଷେଧାଜ୍ଞା ଜାରି କରିବେ ନାହିଁ । ଏସବୁ କାମ ତ ସେହି ବିପ୍ଳବୀମାନଙ୍କର, ଯେଉଁମାନେ ହିଂସାରେ ବିଶ୍ୱାସ କରନ୍ତି । ମହାତ୍ମା ଗାନ୍ଧି ଓ କଂଗ୍ରେସର ମାର୍ଗ ତ ଅହିଂସାର ମାର୍ଗ ।"

ଜ୍ୱାଲାପ୍ରସାଦ କହିଲେ, "ତା'ହେଲେ ଦେଖୁଛି, ତମେ ଲାହୋର ଯିବାପାଇଁ ଠିକ୍ କରି ସାରିଲଣି ।"

"ଏହି ଘଟଣା ପରେ ତ ଲାହୋର କଂଗ୍ରେସ ଦେଖିବା କଥା । ବହୁତ ମଜା ହେବ ଜେଜେ ।"

"ଯାହା ମଜାହେବ ତ ମୁଁ ଜାଣେ । ହେଲେ ତମକୁ କହିବ କିଏ ? ଯାହାହେଉ, ସଙ୍ଗରେ ବେଶି ଶୀତ ଲୁଗା ନେଇଯିବ । ସେଠି ବର୍ତ୍ତମାନ ଖୁବ ଶୀତ ପଡ଼ୁଛି । ତାଛଡ଼ା ଲାହୋର ଖୁବ ଥଣ୍ଡା ଜାଗା । ସେ ତ ଗଞ୍ଚାର ଓଭରକୋଟ୍ ନେଇଯିବ । ବିଦ୍ୟା ! ମୋର କେବଳ ତୋ'ର ପାଇଁ ଚିନ୍ତା ।"

ବିଦ୍ୟା ହସିଦେଇ କହିଲା, "ମୋ ଚିନ୍ତା କରିବେ ନାହିଁ । ମୋ ପାଇଁ ବାପା ଗୋଟିଏ ଫର୍‌କୋଟ୍ ତିଆରି କରି ଦେଇଥିଲେ ।"

ଡିସେମ୍ବର ଚବିଶ ତାରିଖ ସକାଳେ ବିଦ୍ୟା ଓ ନବଲ ଷ୍ଟେସନରେ ପହଞ୍ଚିଲା ବେଳକୁ ଭୟଙ୍କର ଶୀତ ହେଉଥାଏ । ଗତ ରାତସାରା ବର୍ଷା ହେଉଥିଲା । ଅବଶ୍ୟ

ସେତେବେଳକୁ ବର୍ଷା ଛାଡ଼ିଯାଇଥିଲା; କିନ୍ତୁ ଖୁବ୍ ଜୋର୍‌ରେ ଥଣ୍ଡା ପବନ ମାରୁଥିଲା । ଷ୍ଟେସନ୍‌ରେ ନବଲ ଦେଖିଲା, ତାଙ୍କ ଦଳର ଅଠଜଣ ଭିତରୁ ମୋଟେ ପାଞ୍ଚଜଣ ଆସିଥିଲେ ।

ଗାଡ଼ି ବହୁତ ଡେରି ପଡ଼ିଥିଲା । ଏତେ ଶୀତରେ ଘରୁ ବାହାରିବାକୁ ଲୋକଙ୍କର ସାହସ ହେଉ ନଥିଲା । ଥାର୍ଡ଼ କ୍ଲାସରେ ପାଞ୍ଚଜଣଯାକ ମନ ଖୁସିରେ ଆରାମରେ ବସିଗଲେ ।

ଜ୍ଞାନପ୍ରକାଶ ପୂର୍ବକଥା ଅନୁସାରେ ଷ୍ଟେସନରେ ଆସି ଅପେକ୍ଷା କରିଥିଲେ । ନବଲକୁ ଦେଖିଲାମାତ୍ରେ ସେ କହିଲେ, "ଏଠି ଆଜିକାଲି ଭାରି ଶୀତ ହେଉଛି । ମୁଁ ଆଗରୁ ଜାଣିଥିଲେ ତମମାନଙ୍କୁ ଆସିବା ପାଇଁ କହି ନ ଥାନ୍ତି ।"

ନବଲ ଟିକିଏ ହସିଦେଇ କହିଲା, "ଯାହା ହେଉ, ଆମେ ତ ଆସିଗଲୁଣି । ଏଠିକା ଶୀତ ମଜା ଟିକେ ଚାଖିବା ଦରକାର ।"

ନବଲ ଓ ତା'ର ସାଥୀମାନଙ୍କୁ ଗୋଟିଏ ଜାଗାରେ ରଖାଇ ସେ ବିଦ୍ୟାକୁ ନିଜ ପାଖରେ ରଖାଇଲେ ।

ସନ୍ଧ୍ୟାବେଳେ ଅଧିବେଶନ ଶେଷ ହେଲା । ସେତେବେଳକୁ ଭୟଙ୍କର ଶୀତ ହେଉଥିଲା; କିନ୍ତୁ ବିଦ୍ୟାକୁ ସେ ଶୀତ ଆଦୌ ଜଣା ପଡ଼ୁ ନଥିଲା । କାରଣ ସେ ତା ଜୀବନରେ ଆଜି ଏକ ନୂଆ ସଂସାର ଦେଖିଲା, ଯେଉଁଠି କର୍ମ ଓ ସଂଘର୍ଷ ପୂରି ରହିଥିଲା । ସେହି କର୍ମ ଓ ସଂଘର୍ଷ ତା' ଜୀବନର ଏକ ଅଙ୍ଗରେ ପରିଣତ ହୋଇଯାଇଥିଲା । ସେ ଦେଖିଲା ହଜାର ହଜାର ସ୍ତ୍ରୀ ପୁରୁଷ ଜୀବନର ସମସ୍ତ ତ୍ୟାଗକରି ଆତ୍ମବଳି ଦେବାପାଇଁ ପ୍ରତିଜ୍ଞାବଦ୍ଧ ହୋଇ ଛିଡ଼ା ହୋଇଛନ୍ତି । ସେମାନଙ୍କ ତୁଳନାରେ ତା'ର ଜୀବନର ଦୁଃଖ କିଛି ନୁହେଁ କହିଲେ ଚଳେ । କଂଗ୍ରେସ ଅଧିବେଶନରୁ ଫେରିଆସି ବିଦ୍ୟା ନବଲକୁ କହିଲା, "ଭାଇ, ବର୍ତ୍ତମାନ ତ ବେଶୀ ରାତି ହୋଇନାହିଁ । ମୋତେ ଟିକିଏ ସହରଆଡ଼େ ବୁଲେଇ ଆଣ ! ଭାରି ବଢ଼ିଆ ସହର ବୋଲି ଶୁଣିଛି ।"

ଏତେବଡ଼ ବରଫ ଶୀତରାତିରେ ପଦାକୁ ବାହାରିବା ପାଇଁ ନବଲର ସାହସ ନ ଥିଲା । ତଥାପି ବିଦ୍ୟାମୁହଁରେ ଉଲ୍ଲାସର ଚିହ୍ନ ଦେଖି ନାହିଁ କହିବାକୁ ମଧ୍ୟ ତାର ସାହସ ହେଲା ନାହିଁ । ତେବେ ବି କଥାଟାକୁ ଟାଳିବା ପାଇଁ ସେ ସାମାନ୍ୟ ସାହସ କରି କହିଲା, "ଦେଖ ବିଦ୍ୟା, କେତେ ଜୋର୍‌ରେ ଥଣ୍ଡା ହେଉଛି ।"

"ହଁ ଭାଇ, କିନ୍ତୁ ଏହି ଥଣ୍ଡାରେ ଅନ୍ତର୍ଦାହର ଯନ୍ତ୍ରଣା ନାହିଁ । ତମ ଓଭରକୋଟ ତମେ ପିନ୍ଧିପକା । କେଡ଼େ ସୁନ୍ଦର ଏ ରାତି ! ମୋର ଜୀବନ ପ୍ରତି ପୁଣି ମୋହ ଫେରିଆସିଲା ପରି ଜଣାପଡ଼ୁଛି । ଚାଲନା ଭାଇ, ଘଣ୍ଟାଏ ଭିତରେ ଫେରିଆସିବା ।"

ନବଲ ବିଦ୍ୟାର ଆଗ୍ରହ ଭାଙ୍ଗି ନ ପାରି ତା ସାଙ୍ଗରେ ବାହାରିଗଲା । ଅବଶ୍ୟ ଏ କଥା ସତ୍ୟ, ବୁଲାବୁଲି କରିବାର ବାତାବରଣ ସେତେବେଳେ ନ ଥିଲା । ସଡ଼କ ଏକଦମ୍ ଶୂନଶାନ୍ । କେଉଁଠି କେମିତି ଜଣେଅଧେ ଯିବାଆସିବା କରୁଥିଲେ । ସିନେମା ଘର ଆଗରେ ସାମାନ୍ୟ ଟିକିଏ ଭିଡ଼ ଥିଲା ଓ ହୋଟେଲରେ ଅଳ୍ପ କେତେ ଲୋକ ବସି ଖାଉ-ଥିଲେ । ନବଲ ଏବଂ ବିଦ୍ୟା ମାଲରୋଡ଼ ଆଗରେ ଘୋଡ଼ାଗାଡ଼ି ଛାଡ଼ିଦେଇ ପାଦରେ ବୁଲିବାକୁ ଗଲେ ।

ବିଦ୍ୟା ନବଲକୁ ଅନେକ କଥା ପଚାରିବାକୁ ଓ ତାଠୁ ଅନେକ କଥା ଜାଣିବାକୁ ଚାହୁଁଥିଲା; କିନ୍ତୁ ଭାବିଲା, ବର୍ତ୍ତମାନ ବୋଧହୁଏ ଜାଣିବାର କିଛି ଆବଶ୍ୟକତା ନାହିଁ । ବରଫ ଗାତଭଳି ଦେହକୁ କାଟିଯାଉଥିବା ଜୀବନର ରୂପକୁ ସେ ଦେଖୁଥିଲା । କିନ୍ତୁ ଏତେ ଥଣ୍ଡାରେ ବି ତାକୁ ଥଣ୍ଡା ଜଣା ପଡ଼ୁ ନଥିଲା । ତା ଦେହର ରକ୍ତ ଗରମ ହୋଇ ଉଠୁଥିଲା । ସେହି ତୀବ୍ର ଥଣ୍ଡା ପବନ ଭିତରେ ସେ ଏକପ୍ରକାର ପୁଲକ ଅନୁଭବ କରୁଥିଲା । ଏହି ଭୀଷଣ ତୀବ୍ର ଥଣ୍ଡା ଗାତଭଳି ଦୁଃଖମୟ ଜୀବନ ସହିତ ତାର ହୃଦୟର ଉଷ୍ଣତା ଓ ଧମନୀର ରକ୍ତପ୍ରବାହ ନିଶ୍ଚୟ ଲଢ଼ିପାରିବ ବୋଲି ତା'ର ଧାରଣା ହେଉ-ଥିଲା ।

ସେଦିନ କଂଗ୍ରେସ ଅଧିବେଶନରେ ଯୁବକମାନଙ୍କର ନେତା ଜବାହରଲାଲ ସଭାପତି ଭାବରେ ଯେଉଁ ଭାଷଣ ଦେଇଥିଲେ, ତାହା ସେ ଶୁଣିଥିଲା । ସେହି ଭାଷଣର ଅଧିକାଂଶ ସେ ବୁଝି ପାରୁ ନଥିଲା; କାରଣ ସେଥିରେ ଅନେକ ଗମ୍ଭୀର ରାଜନୀତି ଓ ତଥ୍ୟସବୁ ଥିଲା । ତଥାପି ସେ ଅନେକ କିଛି ବୁଝିଥିଲା । ସେ ଜାଣିଥିଲା ଯେ ମନୁଷ୍ୟ ସ୍ୱାଧୀନ । ସକ୍ରିୟ ଭାବରେ ଅନ୍ୟାୟର ପ୍ରତିରୋଧ କରିବା ତା'ର କର୍ତ୍ତବ୍ୟ । ଜୀବନ କର୍ମ ଓ ସଂଘର୍ଷ ଛଡ଼ା ଅନ୍ୟ କିଛି ନୁହେଁ । ବାସ୍ତବରେ ସେହି ଭାଷଣ ଶୁଣି ସେ ମୁଗ୍ଧ ହୋଇଥିଲା ।

ବିଦ୍ୟା ପାଖେ ପାଖେ ଚାଲୁଥିବା ତା'ର ଭାଇକୁ ଚାହିଁ ଦେଖିଲା ତାଙ୍କ ମୁହଁରେ ଦୃଢ଼ତା ଓ ଆତ୍ମବିଶ୍ୱାସର ଚିହ୍ନ ଫୁଟିଉଠିଛି । ସେ ଭାବିଲା ତା'ର ଭାଇ କ'ଣ ଦିନେ ଜବାହରଲାଲ୍‌ଙ୍କ ପରି ହୋଇପାରିବେ !

କିନ୍ତୁ ବିଦ୍ୟାର ମୁହଁ ମଉଳିଗଲା । ଜବାହରଙ୍କ ବାପା ଅଛନ୍ତି । ତାଙ୍କର ଶକ୍ତିର ସହାୟତା ତାଙ୍କୁ ମିଳୁଛି; କିନ୍ତୁ ନବଲ ଯେ ପିତୃହୀନ । ଏତେ କମ୍ ବୟସରେ ଏତେ ବଡ଼ ପରିବାରର ଦାୟିତ୍ୱ ତାଙ୍କ କାନ୍ଧରେ ପଡ଼ିଛି । କେବଳ ଶ୍ରେଷ୍ଠ ଭାଇଭଉଣୀ ନୁହଁନ୍ତି, ସେ ନିଜେ ବି ଗୋଟିଏ ଭାର ହୋଇ ଭାଇଙ୍କ କାନ୍ଧରେ ବସିଛି । ସେ ହଠାତ୍ ନବଲର ହାତ ଧରି ପକାଇ ପଚାରିଲା, "ଭାଇ, ତମେ କ'ଣ କେବେ ଭାବିଛ ଯେ, ମୁଁ ଚିରକାଳ ପାଇଁ ମୋର ଶ୍ୱଶୁରଘର ଛାଡ଼ି ଚାଲିଆସିଛି ଓ ମୁଁ ଆସି ତମ ଉପରେ ଏକ ବିରାଟ

ବୋଝପରି ଲଦି ହୋଇ ରହିଛୁ ?''

ନବଲ ହସିଦେଇ କହିଲା, "ପାଗଳୀଙ୍କ ପରି ତୁ କ'ଣ କଥାବାର୍ତ୍ତା କରୁଛୁ ବିଦ୍ୟା ! ତୁ କ'ଣ କାହାର କେବେ ବୋଝ ହୋଇ ପାରୁ ! ତୋର ସାହସ ଅଛି, ଶକ୍ତି ଅଛି । ତୁ ବି ଅନ୍ୟ ଲୋକଙ୍କୁ ଆଶ୍ରା ଦେଇ ପାରୁ । ତୁ ତୋର ଦୁଃଖ ଓ ବିଷାଦର ଆବେଗରେ ଏପର୍ଯ୍ୟନ୍ତ ନିଜକୁ ଚିହ୍ନି ପାରି ନଥିଲୁ । ଏବେ ତୋତେ ମୁଁ ଚିହ୍ନାଇ ଦେଉଛି ।''

ବିଦ୍ୟାର ସମସ୍ତ କ୍ଷୋଭ, ସମସ୍ତ ବିଷାଦ ଏକାଥରେ ମଉଳିଗଲା । ଏଇ ଅଳ୍ପକ୍ଷଣ ପୂର୍ବରୁ ଯେ ଜୀବନର ଶୀତଳ ତିକ୍ତତା ଅନୁଭବ କରୁଥିଲା, ଏଇ ଅଳ୍ପକ୍ଷଣ ଭିତରେ ତା'ର ଅନ୍ତର ଉଷ୍ମତାରେ ଭରିଗଲା ଓ ସେହି ବିଷାଦ ପୁଲକରେ ପରିଣତ ହୋଇଗଲା । ସେ କହିଲା, "ଭାଇ, ତମେ କ'ଣ ସତରେ ବିଶ୍ୱାସ କରୁଛ ଯେ ମୁଁ ମୋର ବୋଝ ନିଜେ ସମ୍ଭାଳି ନେଇ ପାରିବି ? ସେହି ଘଣା ଓ ଦାସତ୍ୱର ବାତାବରଣକୁ ବିଧ୍ୱସ୍ତ କରି ନିଜେ ମୁଁ ମୋର ମାର୍ଗ ପ୍ରସ୍ତୁତ କରି ପାରିବି ? ସତ କୁହ ଭାଇ, ତମେ କ'ଣ ଏଥିରେ ମୋତେ ସାହାଯ୍ୟ କରିବ ? ତମକୁ ମୋତେ ଏଥିରେ ନିଶ୍ଚୟ ସାହାଯ୍ୟ କରିବାକୁ ପଡ଼ିବ ।''

"ମୁଁ ପ୍ରତିଜ୍ଞା କରୁଛି ବିଦ୍ୟା, ମୁଁ ତୋତେ ସାହାଯ୍ୟ କରିବି । ଆଚ୍ଛା, ବହୁତ ଥଣ୍ଡା ପଡ଼ିଲାଣି, ଚାଲ ଆମେ ଫେରିଯିବା ।''

"ଚାଲ ଭାଇ, ସତରେ ଭାରି ଥଣ୍ଡା ପଡ଼ିଲାଣି । ମୁଁ ତମପାଇଁ ଚା' ତିଆରି କରିଦେବି । ଜ୍ଞାନ କେଜେ ବି ଫେରିଆସିବେଣି ।''

ଲାହୋର କଂଗ୍ରେସର ବାତାବରଣରେ ଉତ୍ତେଜନା ଭରି ରହିଥିଲା । ମହାତ୍ମା ଗାନ୍ଧି ଓ ଲର୍ଡ ଇରଉଇନଙ୍କ ଭିତରେ କିଛି ବୁଝାମଣା ହୋଇପାରି ନଥିଲା । ଦେଶବାସୀ ନୈରାଶ୍ୟ ଓ କ୍ରୋଧ ପୂରିରହିଥିଲା । ଲଢ଼ିବାକୁ ହେବ, ସଂଘର୍ଷ କରିବାକୁ ହେବ—ମାଗିଲେ କିଛି ମିଳିବ ନାହିଁ, ଏ କଥା ସ୍ପଷ୍ଟ ହୋଇଯାଇଥିଲା । ଯାହା ପାଇବା କଥା ତାକୁ ଛଡାଇ ଆଣିବାକୁ ହେବ; କିନ୍ତୁ ଏସବୁ କରିବା ପାଇଁ ନେତା କାହାନ୍ତି ?

ଗାନ୍ଧିଜୀ ଚୁପ୍‌ଚାପ୍ ଶାନ୍ତ ଅଥଚ ଦୃଢ଼ହୋଇ ବସିଛନ୍ତି । ସେ ନେତୃତ୍ୱ ଦେଇ ପାରିବେ; କିନ୍ତୁ ସେଥିପାଇଁ ତାଙ୍କର ସର୍ତ୍ତ ଅଛି । ବହୁତ କଠିନ ସର୍ତ୍ତ । ଲୋକେ କ'ଣ ସେହି ସର୍ତ୍ତ ପାଳନ କରିପାରିବେ ? ସେହି ସର୍ତ୍ତ ହେଉଛି ପ୍ରେମ, ଅହିଂସା ଓ ତ୍ୟାଗ । ସେ କହନ୍ତି "କାହାକୁ ଘୃଣା କର ନାହିଁ, କିନ୍ତୁ ଦୃଢ଼ତାର ସହିତ ବିରୋଧ କର । ହିଂସା କର ନାହିଁ; କିନ୍ତୁ ଜୀବନ-ମରଣର ଲଢ଼େଇ କର । ସବୁକିଛି ତ୍ୟାଗ କର; କିନ୍ତୁ ନିଜର ଅଧିକାରକୁ ଜବରଦସ୍ତି ଛଡ଼ାଇ ନିଅ ।'' ଏ ପ୍ରକାର ସର୍ତ୍ତ କ'ଣ କେହି ପାଳନ କରି ପାରିବେ ? ଜେଲ ଯାଅ, ଲାଠିମାଡ଼ ଖାଅ, ଗୁଳି ବି ବାଜୁ; କିନ୍ତୁ ସେଥିପାଇଁ ଦୁଃଖ କର

ନାହିଁ । ଏ କଥା କ'ଣ ସମ୍ଭବ ? ଏ କଥା କଣ କେବେ ହୋଇପାରେ ?

ହଜାର ହଜାର ସ୍ତ୍ରୀ ପୁରୁଷ ଓ ଯୁବକ ଉପସ୍ଥିତ ଥିଲେ । ସମସ୍ତଙ୍କ ମୁହଁରେ ଦୃଢ଼ତା, ବିଶ୍ବାସ ଓ ସଂକଳ୍ପ ଥିଲା; କିନ୍ତୁ ଏମାନେ କ'ଣ ଗାନ୍ଧିଙ୍କର ପ୍ରେମ ଓ ଅହିଂସା ମାର୍ଗରେ ଚାଲିପାରିବେ ? ଗାନ୍ଧି ପଚାରୁଥିଲେ, 'ଏସବୁ କ'ଣ ହୋଇପାରିବ ?'

ଗାନ୍ଧିଙ୍କର ଏହି ପ୍ରଶ୍ନର ଉତ୍ତର ଥିଲା ଜବାହରଲାଲଙ୍କଠାରେ; କାରଣ ସେ ଥିଲେ କଂଗ୍ରେସର ସଭାପତି । ଜବାହରଲାଲ କହୁଥିଲେ, "ଆମକୁ ଏସବୁ କରିବାକୁ ହେବ । ହିଂସାରେ କାମ ଚାଲିବ ନାହିଁ । ଯେଉଁଠାରେ ସଂଘର୍ଷ ହିଂସାତ୍ମକ ହୁଏ, ସେଠାରେ ବିଜୟଲାଭ କରିବା ପାଇଁ ଅଧିକ ସମର୍ଥ ଓ ଶକ୍ତିଶାଳୀ ହିଂସାର ଆବଶ୍ୟକତା ହୁଏ । ଗାନ୍ଧିଙ୍କର ଏହି କଥା ନୀତିର କଥା । ବିକ୍ଷିପ୍ତ ଭାବରେ ପଡ଼ିରହିଥିବା ଚିରହୀନ ଦେଶରେ ହିଂସାର ସଂଗଠନ ସହଜ ନୁହେଁ । ଆମ୍ଭମାନଙ୍କ ଭିତରେ ଏହି କଂଗ୍ରେସ ପେଣ୍ଡାଲ ଭିତରେ ମଧ୍ୟ ଅନେକ ଗୁପ୍ତଚର ଅଛନ୍ତି । ସେହିମାନଙ୍କୁ ଆମର ଚିହ୍ନିବା ଦରକାର । ସେମାନେ ସମସ୍ତେ ଆମ୍ଭମାନଙ୍କର ଭାଇବନ୍ଧୁ କୁଟୁମ୍ବ ।"

ଜବାହରଲାଲ କହନ୍ତି, 'ଆମକୁ ଅହିଂସାର ମାର୍ଗ ସ୍ୱୀକାର କରିବାକୁ ପଡ଼ିବ କେବଳ ବିଶ୍ବାସ ରୂପରେ ନୁହେଁ, ନୀତି ରୂପରେ ।' ଜବାହରଲାଲ ଜଣେ ବେଶ୍ ବାସ୍ତବବାଦୀ ଲୋକ । ସେ ଏହି ଦେଶର ଆତ୍ମା ଏବଂ ଚେତନାର ପ୍ରତିନିଧି । ସେ ଗାନ୍ଧିଙ୍କ ଭଳି ଦେବତା ନୁହନ୍ତି । ଅତୀତର ପୁନଃପ୍ରତିଷ୍ଠାରେ ସେ ବିଶ୍ବାସ କରନ୍ତି ନାହିଁ । ସେ ମୁନିଋଷିମାନଙ୍କର ପରଂପରାକୁ ମାନନ୍ତି ନାହିଁ । ଯାହା ନଷ୍ଟ ହୋଇଗଲାଣି, ତାହା ଅସତ୍ୟ ହୋଇଥିବ । ଅସତ୍ୟ ନ ହୋଇଥିଲେ ତାହା ନଷ୍ଟ ହୁଅନ୍ତା ନାହିଁ । ଜବାହରଲାଲ ଏହି ବସ୍ତୁବାଦୀ ଯୁଗର ଲୋକ । ସେ ସାମ୍ୟବାଦ ଅଧ୍ୟୟନ କରିଛନ୍ତି ଓ ଏହି ସାମ୍ୟବାଦ ନୀତିରେ ଭବିଷ୍ୟତ ନିର୍ମାଣ କରିବାକୁ ଚାହାନ୍ତି; ତଥାପି ଜବାହରଲାଲଙ୍କ ଆତ୍ମା ଏହି ଭାରତୀୟ ସଂସ୍କୃତି ଓ ପରଂପରାକୁ ଭୁଲି ନାହିଁ । ହିଂସାରେ ତାଙ୍କର ସ୍ପୃହା ନାହିଁ । ତାଙ୍କ ପାଇଁ ଅହିଂସା କେବଳ ନୀତି ନୁହେଁ; ଅହିଂସା ତାଙ୍କର ବିଶ୍ବାସ । ଜବାହରଲାଲ ଗାନ୍ଧିଙ୍କର ପରିପୂରକ । ସେ ଉତ୍ସାହପୂର୍ଣ୍ଣ ସକ୍ରିୟ, ଉଷ୍ଣ-ରକ୍ତଭରା ଯୁବକମାନଙ୍କର ପ୍ରତିନିଧି । ନବଯୁବକମାନେ ହିଁ ଭାରତର ସ୍ୱାଧୀନତା ପାଇଁ ଅହିଂସା ଭାବରେ ଲଢ଼ିବେ । କାରଣ ସେମାନଙ୍କ ମଧ୍ୟରେ ଭବିଷ୍ୟତର ସ୍ୱପ୍ନ ଅଛି ଓ ସେହି ସ୍ୱପ୍ନକୁ ରୂପ ଦେବାପାଇଁ ସେମାନଙ୍କର ପ୍ରବୃତ୍ତି ଓ କ୍ଷମତା ମଧ୍ୟ ଅଛି ।

ବର୍ତ୍ତମାନ ଲୋକଙ୍କର ଆଶା ଧୂଳିସାତ୍ ହୋଇଯାଇଛି ଓ ଦେଶରେ ଭୟଙ୍କର କ୍ଷୋଭ ଦେଖାଦେଇଛି । କ'ଣ ହେବ କେହି କିଛି ଜାଣିପାରୁ ନାହାନ୍ତି; କିନ୍ତୁ ଭବିଷ୍ୟତରେ ଯାହା ହେଲେ ତ ନିଶ୍ଚିତ ହେବ । ଲାହୋର କଂଗ୍ରେସ ଅଧିବେଶନ ଏକ ଭାବାତ୍ମକ

ପ୍ରଦର୍ଶନ । ନେତାମାନଙ୍କର ସମ୍ମୁଖରେ ବର୍ତ୍ତମାନ କୌଣସି ବୌଦ୍ଧିକ ଉପାସ୍ଥ ନାହିଁ । ତେଣୁ ସଂଘର୍ଷ ସୁନିଶ୍ଚିତ ପରି ଜଣାପଡ଼ୁଛି; କିନ୍ତୁ ଏହି ସଂଘର୍ଷର ସ୍ୱରୂପ କ'ଣ ହେବ, ସେ ବିଷୟରେ କୌଣସି ଯୋଜନା ନାହିଁ ।

ଲାହୋର କଂଗ୍ରେସରେ ପ୍ରସ୍ତାବ ଉପରେ ପ୍ରସ୍ତାବ ଆସୁଛି । ସେ ବିଷୟରେ ବିସ୍ତୃତ ଆଲୋଚନା ହେଉଛି ଓ କାଗଜରେ ତାହା ପ୍ରକାଶିତ ହେଉଛି । ସଭାରେ ଭାଷଣ, ପ୍ରସ୍ତାବ ଉପସ୍ଥାପନ ଓ ପ୍ରସ୍ତୁତ ଏଗୁଡ଼ା ତ କଂଗ୍ରେସର ବାହ୍ୟ ଉପଚାର; କିନ୍ତୁ ଲାହୋର ଅଧିବେଶନରେ କଂଗ୍ରେସର କୌଣସି ସ୍ପଷ୍ଟ କାର୍ଯ୍ୟକ୍ରମ ନାହିଁ । ଦେଶର ସବୁଲୋକେ ଲାହୋର ଅଧିବେଶନକୁ ଅନାଇଁ ରହିଛନ୍ତି । ଅଥଚ ସେଠି ଯାହା ହେଉଛି, ସେଥିରେ ନୈରାଶ୍ୟ ଛଡ଼ା ଆଉ କିଛି ଦେଖାଯାଉ ନାହିଁ ।

କିନ୍ତୁ ଲାହୋର ଅଧିବେଶନରେ ଯେଉଁମାନେ ଯୋଗ ଦେଇଛନ୍ତି, ସେମାନଙ୍କ ଭିତରେ ନୈରାଶ୍ୟ ନାହିଁ; ବରଂ ଅଛି ଦୃଢ଼ତା । ସେଠି ଅଛି ଜୀବନ-ମରଣର ସଂକଳ୍ପ । ଏମିତି ଶୀତ ପଡ଼ୁଛି, ମନେ ହେଉଛି ଲୋକେ ଯିମିତି କାଠ ପାଲଟିଯିବେ; କିନ୍ତୁ ଏହି ବାହ୍ୟ ଶୀତଳତା ସତ୍ତ୍ୱେ ପ୍ରତ୍ୟେକଙ୍କ ହୃଦୟରେ ଉଷ୍ଣ ରକ୍ତ ପ୍ରବାହିତ ହେଉଛି ଓ ପ୍ରତ୍ୟେକଙ୍କର ଶ୍ୱାସ-ପ୍ରଶ୍ୱାସରେ ପ୍ରଗତିର ସୂଚନା ମିଳୁଛି ।

ନବଲ ଓ ବିଦ୍ୟା ଏସବୁ ଦେଖିଲେ—ନୂଆ ଦୁନିଆ, ନୂଆ ବାତାବରଣ ଓ ନୂଆ ଦୃଷ୍ଟିକୋଣ ।

ନବଲ ଓ ବିଦ୍ୟା ଦିଲ୍ଲୀ ହୋଇ ଆଲ୍ଲାହାବାଦ ଫେରିଆସିଲେ । ଜ୍ଞାନପ୍ରକାଶ କିଛି ଦିନ ପାଇଁ ଦିଲ୍ଲୀରେ ରହିଗଲେ । ଘରେ ପହଞ୍ଚି ସେମାନେ ଦେଖିଲେ, ଯମୁନା ବେମାର ଅଛନ୍ତି । ପ୍ରଥମେ କାଶ ଓ ସର୍ଦ୍ଦି ହୋଇ ଏବେ ନିମୋନିଆ ହୋଇଯାଇଛି । ଯମୁନା ବେମାର ଅଛନ୍ତି ଶୁଣିଲା ମାତ୍ରେ ଭାଇଭଉଣୀ ଦୁହେଁ ଯାଇ ଯମୁନାଙ୍କ ଶୋଇବା ଘରେ ପହଞ୍ଚିଲେ । ଦେଖିଲେ ଜ୍ୱର ବହୁତ ବଢ଼ିଯାଇଛି ଓ ଯମୁନା ଆଖି ବନ୍ଦକରି କଷ୍ଟରେ କୁନ୍ଥେଇ ହେଉଛନ୍ତି । ରୁକ୍ମଣୀ ତାଙ୍କ ପାଖରେ ବସିଛନ୍ତି ଓ ଜ୍ୱାଲାପ୍ରସାଦ ଡାକ୍ତର ଡାକି ଯାଇଛନ୍ତି । ରୁକ୍ମଣୀ ଯମୁନାକୁ କହିଲେ, "ମା, ନବଲ ଓ ବିଦ୍ୟା ଦୁହେଁ ଲାହୋରରୁ ଫେରିଆସିଲେଣି । ଦେଖ, ସେମାନେ ଏଠି ଛିଡ଼ା ହୋଇଛନ୍ତି ।"

ରୁକ୍ମଣୀଙ୍କ ପାଟି ଶୁଣିଲାମାତ୍ରେ ଯମୁନା ଆଖି ଖୋଲିଦେଲେ । ମନେହେଲା ତାଙ୍କୁ ଏକପ୍ରକାର ଶାନ୍ତି ଲାଗିଲା । ସେମାନଙ୍କୁ ଦେଖି ସେ କ୍ଷୀଣ କଣ୍ଠରେ କହିଲେ, "ଦୁହେଁ-ଯାକ ଫେରିଆସିଲଟି ? କେତେ କାଳ ମୁଁ ତମ ବାଟକୁ ଅନାଇଁ ବସିଛି । ଭାବୁଥିଲି, କାଳେ ତମକୁ ନ ଦେଖି ମୁଁ ଚାଲିଯିବି ।"

ବିଦ୍ୟା କହିଲା, "ନାହିଁ ନେଜିମା, ତୋର କିଛି ହେବ ନାହିଁ । ତୁ ଭଲ ହୋଇଯିବୁ ।"

ଯମୁନା ଅଳ୍ପ ଟିକିଏ ହସିଦେଇ କହିଲେ, "କିଏ ଜାଣେ କ'ଣ ହେବ ? ମୋ ପାଖରେ ଆସି ଟିକିଏ ବସ ଓ ମୁଣ୍ଡରେ ହାତ ଦିଅ । ଆହା, କେତେ ଆରାମ ଲାଗିଲା ସତେ !" ତାପରେ ଯମୁନା ପୁଣି ଆଖି ବନ୍ଦ କରିଦେଲେ ।

ରୁକ୍ମଣୀ ନବଲର ହାତ ଧରି ବାହାରକୁ ଚାଲିଆସି କହିଲେ, "ନବଲ, ତୁ ଶୁଣିଲୁଣି କି ବିନ୍ଧେଶ୍ୱରୀପ୍ରସାଦ ସିଦ୍ଧେଶ୍ୱରୀଙ୍କୁ ଆଉ ଗୋଟିଏ ଜାଗାରେ ବାହା କରାଉଛନ୍ତି । ଜାନୁଆରୀ ଅଠାଇଶ ତାରିଖରେ ବାହାଘର । ମା ଏହି ଖବର ଶୁଣିଲାଦିନୁ କେମିତି ପଡ଼ିଛନ୍ତି ।" ରୁକ୍ମଣୀ ପୁଣି ଟିକିଏ ବାହୁଯାଇ କହିଲେ, "ଆରେ ନବଲ, ଏସବୁ କ'ଣ ହେଉଛି ? ସେମାନଙ୍କ ସଙ୍ଗେ କ'ଣ କିଛି ବୁଝାମଣା ହୋଇପାରନ୍ତା ନାହିଁ ?"

ନବଲ ମଧ୍ୟ ଏହି ସମ୍ବାଦ ଶୁଣି ଟିକିଏ ଉଦାସ ହୋଇପଡ଼ିଲା । ଟିକିଏ ଚିନ୍ତା କରି କହିଲା, "କ'ଣ ବୁଝାଶୁଝା କରିବା ମା, ଇଏତ ସବୁ ହେବାର ଥିଲା । ଆଉ ଗୋଟିଏ ଦୃଷ୍ଟିରୁ ଯାହା ହେଉଛି, ସେ ବି ଏକପ୍ରକାର ଭଲ ।"

"ହେ ଭଗବାନ, ତୁ କ'ଣ କହୁଛୁ ! ଝିଅଟାର ସାରାଜୀବନ ପଡ଼ିଛି, କିଏ ତାକୁ ସମ୍ଭାଳିବ କହିଲୁ ?"

"କେହି ନାହିଁ ମା, ଭଗବାନ ସମ୍ଭାଳିବେ । ଭଗବାନ ତାକୁ ଏତେ ଶକ୍ତି ଦେବେ ଯେ, ସେ ନିଜେ ନିଜକୁ ସମ୍ଭାଳିବ । ହଁ, ଜେଜେବାପା କାହାନ୍ତି ?"

"ଡାକ୍ତର ଡାକିବାକୁ ଯାଇଛନ୍ତି । ବଡ଼ ପଥର ତାଙ୍କ ଛାତି ! ଦୁଃଖର ପାହାଡ଼ ଆସି ତାଙ୍କ ଛାତିରେ ଜମା ହୋଇଛି; ତଥାପି କିଛି ଦୁଃଖ ନାହିଁ । ଚୁପ୍‌ଚାପ୍ ନିଜ କର୍ତ୍ତବ୍ୟ କରିବାରେ ଲାଗିଛନ୍ତି । ଜେଜେମାଙ୍କ ଦେହ ଟିକେ ବି ଭଲ ହେଉନାହିଁ । ଚାରି ପାଞ୍ଚଦିନ ହେଲା ସେ ଶୋଇ ନାହାନ୍ତି । ଆଚ୍ଛା ଯା, ଭକ୍ତୁକୁ କହିଦେ, ପାଣି ଗରମ କରିଦେବ । ଧୋଇଧାଇ ହୋଇପଡ଼ । ଥକିସିଣି ।"

ରୁକ୍ମଣୀ ଯମୁନାଙ୍କ ପାଖକୁ ଫେରିଗଲେ, ବିଦ୍ୟା ବୁଢ଼ୀ ମା' ମୁଣ୍ଡରେ ହାତ ଦେଇ ଚୁପ୍‌ଚାପ୍ ବସିରହିଥିଲା ଓ ଯମୁନା ଶୋଇଲା ପରି ଆଖି ବନ୍ଦକରି ପଡ଼ି ରହିଥିଲେ । ରୁକ୍ମଣୀ ବିଦ୍ୟାକୁ କହିଲେ, "ଯା' ତୁ ଧୋଇଧାଇ ହୋଇ ପଡ଼ିବୁ । ମୁଁ ଏଠି ବସିଛି ।"

ଯମୁନା କହିଲେ, "ନାହିଁ ବୋହୂ, ମୋ ଝିଅ ମୋ ପାଖରେ ଆଉ ଟିକିଏ ବସୁ । ରୁକ୍ମଣୀ ଦେଖିଲେ ଯମୁନାଙ୍କ ଆଖିରେ ଲୁହ ପୂରିରହିଛି । ଯମୁନା କହିଲେ, "ମା ମୋତେ କ୍ଷମା କର । ତୋ ପ୍ରତି ଆମେ ବହୁତ ଅନ୍ୟାୟ କରିଛୁ । ତୁ କ୍ଷମା ନ କଲେ, ମୁଁ ସୁଖରେ ମରିପାରିବି ନାହିଁ । ବଡ଼ ଭୁଲ ହୋଇଯାଇଛି; ତୁ ମୋତେ କ୍ଷମା କଲୁ ବୋଲି କହିଦେ ।"

ବିଦ୍ୟା ଆଶ୍ଚର୍ଯ୍ୟ ହୋଇ ତା ମା' ମୁହଁକୁ ଚାହିଁ ପଚାରିଲା, "ମା' କ'ଣ ହୋଇଛି କି ? ଜେଜେମା ଏମିତି କ'ଣ କହୁଛି ?"

ରୁକ୍ମଣୀ ମୁହଁ ତଳକୁ କରି କହିଲେ, "ସିଦ୍ଧେଶ୍ୱର ଆଉ ଗୋଟିଏ ବିଭା ହେଉଛି । ଏହି ଅଠାଇଶ ତାରିଖରେ ତା'ର ବାହାଘର ।"

ବିଦ୍ୟା ଟିକିଏ ହସିଦେଇ କହିଲା, "ମା ତୁ ଠିକ୍ କହୁଛୁ ଟି ! ତାହାହେଲେ ତ ଭଲ ହେଲା । ମୋର ବନ୍ଧନ କଟିଗଲା । ମୋତେ ମୁକ୍ତି ମିଳିଗଲା ।"

ବିଦ୍ୟା ନିଜ ହାତରେ ଯମୁନାଙ୍କ ହାତକୁ ରଖି କହିଲା, "ଜେଜେମା, ଏ'ତ ବଡ଼ ଶୁଭ ଖବର ! ମୋର ବନ୍ଧନ କଟିଯାଇ ମୋତେ ମୁକ୍ତି ମିଳିଲା । ଭଗବାନଙ୍କୁ ଅଶେଷ ଧନ୍ୟବାଦ । ଏଥିରେ ଦୁଃଖ କ'ଣ ଅଛି ଜେଜେମା ?'

ଯମୁନା କରୁଣ ସ୍ୱରରେ କହିଲେ, "ତୁ ତ ମା' ସେ କଥା ବୁଝିପାରିବୁ ନାହିଁ, ଅନ୍ତତଃ ବର୍ତ୍ତମାନ ବୁଝିପାରିବୁ ନାହିଁ । ହାୟରେ କପାଳ ! ଏସବୁ କ'ଣ ହୋଇଗଲା !"

"ଜେଜେମା, ନୂଆ ତ କିଛି ହୋଇନାହିଁ । ଏ ଘଟଣା ତ ସବୁଦିନେ ଘଟୁଛି । ଏଥିରେ ଦୋଷ କାହାର ନାହିଁ । ଏହା ଭଗବାନଙ୍କର ଲୀଳା । ଏ ଖବର ଶୁଣି ମୁଁ ଆଜି ବହୁତ ଖୁସି ହୋଇଛି ।"

ଯମୁନା ବିକଳ ହୋଇ କହିଲେ, "ମା' ! ତୁ ମୋତେ କ୍ଷମା କରିଛୁ ବୋଲି ନିଜ ପାଟିରେ କହିଦେ ।"

ରୁକ୍ମଣୀ ବିଦ୍ୟାକୁ କହିଲେ, "କହିଦେଉନାହୁଁ କାହିଁକି ? ତାଙ୍କୁ ହେଲେ ଟିକିଏ ଶାନ୍ତି ମିଳିବ !"

ବିଦ୍ୟା ଯମୁନାଙ୍କ ହାତକୁ ଧରି କହିଲା, "ତମେମାନେ ମୋର ଭଲପାଇଁ ସବୁ କରିଛ । ଭଗବାନ ତା'ର ସାକ୍ଷୀ । ଏମିତିକି ମୋ ପାଇଁ ତମର ସବୁ ନଷ୍ଟ ହୋଇଯାଇଛି । ଯଦି ତମ ଅଜଣାରେ ମୋର କିଛି କ୍ଷତି ହୋଇଯାଇଥାଏ, ସେଥିପାଇଁ ମୁଁ ତୁମକୁ କ୍ଷମା ଦେଉଛି । ମୁଁ ଭଗବାନଙ୍କୁ ପ୍ରାର୍ଥନା କରୁଛି, ତୁ କମିତି ଭଲ ହୋଇଯା' ଜେଜେମା !"

ଭାବାବେଶରେ ଯମୁନାଙ୍କର ଶୋକ ବନ୍ଦ ହୋଇଗଲା ଓ ସେ ବେହୋସ ହୋଇ ପଡ଼ିଲେ । ତା'ପରେ ତାଙ୍କର ଆଉ ଚେତା ଫେରିଲା ନାହିଁ ।

ଜ୍ଞାନପ୍ରକାଶ ଦିଲ୍ଲୀରୁ ବମ୍ବେ ଚାଲିଯାଇଥିଲେ । ବମ୍ବେରୁ ଆସି ଆଲହାବାଦରେ ପହଞ୍ଚିଲାବେଳକୁ ବହୁତ ରାତି ହୋଇଯାଇଥିଲା । ନବଲ ନିଜ ଘରେ ବସି ପଢୁଥିଲା । ଜ୍ଞାନପ୍ରକାଶଙ୍କ ଗାଡ଼ିର ଶବ୍ଦ ଶୁଣିଲା ମାତ୍ରେ ସେ ବାହାରକୁ ଚାଲିଆସିଲା । ଗାଡ଼ିବାଲା ହାତରେ ସବୁ ଜିନିଷପତ୍ର ମଗାଇ ବାରଣ୍ଡାରେ ରଖିଲା । ଗାଡ଼ିବାଲାକୁ ବିଦାକରି

ଜ୍ଞାନପ୍ରକାଶ ନବଲକୁ ପଚାରିଲେ, "ଘରେ ଏତେ ଚୁପ୍‌ଚାପ୍ କ'ଣ ? ତୁ ଏତେ ଉଦାସ କାହିଁକି ?"

ନବଲ କ୍ଷୀଣ କଣ୍ଠରେ କହିଲା, "ଜ୍ଞାନ ଜେଜେ ! ଜେଜେମା ଚାଲିଗଲେ, ଆଜିକୁ ଆଠ ଦିନ ହେଲାଣି ।"

"କ'ଣ କହୁଛୁ ? ଭାଉଜ ଆଉ ନାହାନ୍ତି ! ତାଙ୍କର କ'ଣ ହୋଇଥିଲା କି ?"

"ଆମେ ଚାଲିଯିବା ପରେ ତାଙ୍କର ନିମୋନିଆ ହୋଇଯାଇଥିଲା । ସତେ ଯେମିତି ସେ ଆମ ବାଟକୁ ଅନାଇ ବସିଥିଲେ । ଆମ ପହଞ୍ଚିବା ଦିନ ରାତିରେ ସେ ଚାଲିଗଲେ ।"

ଜ୍ଞାନପ୍ରକାଶ ଘରେ ସବୁ ଜିନିଷପତ୍ର ରଖାଇ ଦେଇ ନବଲ ସଙ୍ଗରେ ଜ୍ୱାଲାପ୍ରସାଦଙ୍କ ଘରକୁ ଗଲେ । ଦେଖିଲେ ଜ୍ୱାଲାପ୍ରସାଦ କମ୍ବଳ ବିଛାଇ ଓ କମ୍ବଳ ଘୋଡ଼ିହୋଇ ଭୂଇଁରେ ଶୋଇଛନ୍ତି, କାରଣ ଦଶକର୍ମ ସେଦିନ ହୋଇ ନଥିଲା । ନିଦରେ ଶୋଇଥିଲେ ବି ତାଙ୍କ ନିଦ ବେଶୀ ଜୋର୍ ହୋଇ ନଥିଲା । ନବଲ ଓ ଜ୍ଞାନଙ୍କର ପାଦଶବ୍ଦ ଶୁଣିବା ମାତ୍ରେ ସେ ଉଠିପଡ଼ି ଜ୍ଞାନପ୍ରକାଶଙ୍କୁ ଦେଖି କହିଲେ, "ଜ୍ଞାନୁ, ବହୁତ ଡେରି କରିଦେଲୁ । ତୋର ଭାଉଜ ଚାଲିଗଲା, ଏସବୁ ସେ ବରଦାସ୍ତ କରିପାରିଲା ନାହିଁ । ଯେତେ କହିଲି, ଯେତେ ବୁଝାଇଲି, ସେ ବୁଝିଲା ନାହିଁ । ମୁଁ ଶେଷରେ ହାର ମାନିଲି ।"

ଜ୍ଞାନପ୍ରକାଶ ଟିକିଏ ଗ୍ଲାଡ଼ ଭୂଇଁରେ ମୂକ ହୋଇ ବସିପଡ଼ିଲେ । ତାଙ୍କ ପାଟିରେ ଆଉ କୌଣସି କଥା ନ ଥିଲା ।

ଜ୍ୱାଲାପ୍ରସାଦ କହିଲେ, "ସିଦ୍ଧେଶ୍ୱରୀ ଆଉ ଗୋଟାଏ ବାହାହେବା ଖବର ଆସି ପହଞ୍ଚିଲା । ସେଇ ଖବରରେ ସେ ବେଶୀ ଟଳିପଡ଼ିଲା । ସେଇଦିନୁ ଯେ ପଡ଼ିରହିଲା, ଆଉ ଉଠିଲା ନାହିଁ ।" ଏହି କଥା କହୁ କହୁ ଜ୍ୱାଲାପ୍ରସାଦଙ୍କ କଣ୍ଠ ରୁଦ୍ଧହୋଇ ଆସିଲା ।

ଜ୍ଞାନପ୍ରକାଶ କିଛି ସମୟ ଚୁପ୍ ରହିବା ପରେ କହିଲେ, "ଭାଇ, ଆପଣ ଧୈର୍ଯ୍ୟ ଧରନ୍ତୁ । ଆପଣ ଧୈର୍ଯ୍ୟ ହରାଇଲେ କାମ ଚଳିବ କିମିତି ?"

ଜ୍ୱାଲାପ୍ରସାଦ ମନର ସମସ୍ତ ଦୁଃଖ ଦବାଇଦେଇ କହିଲେ, "ହଁ ଜ୍ଞାନୁ, ସବୁ ବୁଝିଛି, ଧୈର୍ଯ୍ୟ ତ ରଖିବାକୁ ହେବ । କିନ୍ତୁ ଜୀବନର ସାଥୀ ଚାଲିଗଲା; ଭଗବାନ ତାକୁ ଶାନ୍ତି ଦିଅନ୍ତୁ ।"

ନବଲ ଜ୍ୱାଲାପ୍ରସାଦଙ୍କୁ ଚାହିଁଲା । କେତେ ବେଦନା ଭରିରହିଥିଲା ତାଙ୍କର ସେଇ କଥାରେ ! ଛ'ଷଠି ବର୍ଷର ବୁଢ଼ା, ଚମ ବି ଧୂଡ଼ୁକି ଯାଇଥିଲା । ଜୀବନରେ କେତେ ସୁଖ-ଦୁଃଖ ସେ ଅଙ୍ଗେ ଲିଭାଇଥିଲେ । ଜ୍ୱାଲାପ୍ରସାଦ ପୁଣି କହିଲେ, "ଜ୍ଞାନୁ, ସେ ଯିମିତି ଖରାପ ପରିସ୍ଥିତି ଦେଖିଲା, ସେମିତି ଭାଙ୍ଗିପଡ଼ିଲା । ଖରାପ ପରିସ୍ଥିତି ତ ପୁଣି ଭଲ ହୋଇଯାଏ ! କିନ୍ତୁ ସେ ତାହା ବୁଝିଲା ନାହିଁ ।" ସତେ ଯିମିତି ଜ୍ୱାଲାପ୍ରସାଦଙ୍କର

ଚେତନା ଫେରିଆସିଲା । ସେ କହିଲେ, "ଜଣାପଡ଼ୁଛି, ତୁ ଷ୍ଟେସନରୁ ସିଧା ଆସିଛୁ । ଯା, ଧୋଇଧାଇ ହୋଇ ଲୁଗାପଟା ବଦଳିପକା । ନବଲ, ଜ୍ଞାନୁ କ'ଣ ଖାଇବ; କିଛି ଅଛି ? ନାହିଁ ଯଦି, ତୋ ମା'କୁ ଉଠାଇ କରାଇଦେ ।"

ନବଲ ଉଠୁ ଉଠୁ କହିଲା, "ବିଦ୍ୟା ପୁରି ତିଆରି କରୁଛି । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ଶୁଅନ୍ତୁ । ଚାଲନ୍ତୁ ଜ୍ଞାନ ଜେଜେ ! ପାଣି ଗରମ ହୋଇଗଲାଣି, ଇଚ୍ଛା ହେଲେ ଗାଧୋଇ ପଡ଼ିବେ । ଘଣ୍ଟା ଭିତରେ ଖାଇବା ପାଇଁ ତିଆରି ହୋଇଯିବ ।"

ସକାଳେ ଜ୍ଞାନପ୍ରକାଶ ଉଠିଲା ବେଳକୁ ଜ୍ୱାଲାପ୍ରସାଦ ଘରର ସମସ୍ତଙ୍କୁ ନେଇ ଗଙ୍ଗାସ୍ନାନ ପାଇଁ ଯାଉଥିଲେ; କାରଣ ସେଦିନ ଶୁଦ୍ଧି କ୍ରିୟା ପାଳନ କରାଯାଉଥିଲା । ଜ୍ଞାନପ୍ରକାଶ ବି ଗଙ୍ଗାସ୍ନାନ ପାଇଁ ସେମାନଙ୍କ ସଙ୍ଗରେ ଚାଲିଗଲେ । ସମସ୍ତେ ପ୍ରାୟ ଦୁଇପ୍ରହର ବେଳକୁ ତ୍ରିବେଣୀରୁ ଫେରିଲେ ।

ସନ୍ଧ୍ୟାବେଳେ ଜ୍ୱାଲାପ୍ରସାଦ ବୁଲିବା ପାଇଁ ବାହାରକୁ ଚାଲିଯାଇଥିଲେ । ନବଲ ଓ ଜ୍ଞାନପ୍ରକାଶ ଏକାଠି ବସି ଚା' ପିଉଥିଲେ । ବିଦ୍ୟା ବି ସେଠି ଚୁପ୍‌ଚାପ୍ ଗମ୍ଭୀର ହୋଇ ବସିରହିଥିଲା । ଜ୍ଞାନପ୍ରକାଶ ବିଦ୍ୟାକୁ ଚାହିଁ ଟିକିଏ ହସିଦେଇ କହିଲେ, "ବିଦ୍ୟା, ମୁକ୍ତି ତ ମିଳିଗଲା । ଏବେ ତୋର କାର୍ଯ୍ୟକ୍ରମ କ'ଣ ?"

ବିଦ୍ୟା ମୁହଁରେ ପ୍ରସନ୍ନତା ଦେଖାଦେଲା । ସେ କହିଲା, "ସତେ ଜେଜେ ! ଆପଣ କ'ଣ ଭାବୁଛନ୍ତି ମୋତେ ମୁକ୍ତି ମିଳିଗଲା ?"

"ହଁ ବିଦ୍ୟା, ତୋତେ ମୁକ୍ତି ମିଳିଗଲା । ଅନ୍ତତଃ ସେ ରାକ୍ଷସଗୁଡ଼ାଙ୍କଠାରୁ ତ ରକ୍ଷା ମିଳିଲା ! ଏହି ମୁକ୍ତିରେ ତୋର ଆନନ୍ଦ ହେବା କଥା; କିନ୍ତୁ ତୁ ତ ବଡ଼ ବିଷଣ୍ଣ ଦେଖା-ଯାଉଛୁ । ଏମିତି ହେବା ତ ଠିକ୍ ନୁହେଁ ।"

ବିଦ୍ୟା କାନ୍ଦ କାନ୍ଦ ହୋଇ କହିଲା, "କ'ଣ କହିବି ଜେଜେ, ମୋରି ଦୁଃଖରେ ଜେଜେମା' ମରିଗଲେ ।"

ଜ୍ଞାନପ୍ରକାଶ ହସିଦେଇ କହିଲେ, "କେହି କୌଣସି କାରଣରୁ କେବେ ମରେ ନାହିଁ; ମରିବା ନିଶ୍ଚିତ ବୋଲି ଲୋକେ ମରନ୍ତି । ତୋ ଜେଜେବାପା ମରିବେ, ମୁଁ ବି ମରିବି । ଦିନ ଆସିବ, ତୁ ବି ଚାଲିଯିବୁ । ଯାହା ହୋଇଗଲାଣି, ତାକୁ କେହି ବନ୍ଦ କରି ପାରିବେ ନାହିଁ କିମ୍ବା ଯାହା ହେବାକୁ ଅଛି, ତାକୁ କେହି ରଖିପାରିବେ ନାହିଁ । ବର୍ତ୍ତମାନ ତୁ ମୋତେ କହି, ତୁ କ'ଣ କରିବାକୁ ଚାହୁଁ ? କଂଗ୍ରେସ-କାମ କରିବୁ କି ? ବମ୍ବେରୁ ଫେରିଲାବେଳେ ମୁଁ ଏଇ କଥା ଭାବୁଥିଲି । ତୁ ତ ଲାହୋରରେ ଦେଖିଲୁ, ସ୍ତ୍ରୀଲୋକମାନେ କିପରି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇଛନ୍ତି ।"

ବିଦ୍ୟା କ'ଣ ଟିକିଏ ଚିନ୍ତାକରି ମୁଣ୍ଡ ହଲାଇ କହିଲା, "ନାହିଁ ଜେଜେ, ମୋ ହାତରେ

ସେ କାମ କ୍ଷୋଇପାରିବ ନାହିଁ ।"

"ଏସବୁ ତ ହେବ ନାହିଁ ତୋ ହାତରେ ଆଉ କ'ଣ ହେବ ? ତୋତେ ଭୟ ଛାଡ଼ିବାକୁ ହେବ ।"

ବିଦ୍ୟା ଟିକିଏ ସଙ୍କୁଚିତ ହୋଇ କହିଲା, "ଜେଜେ ! ଅସଲ କଥା ହେଉଛି, ମୁଁ ପୁରୁଷଙ୍କ ମେଳରେ ବସି କାମ କରି ପାରିବ ନାହିଁ । ପୁରୁଷଙ୍କୁ ଦେଖି ମୋତେ ଲଜ୍ଜା ମାଡ଼େ କିମ୍ବା ଭୟ ଲାଗେ, ଏମିତି କଥା ନୁହେଁ । କଥା ହେଉଛି—ମୋତେ ନିଜକୁ ନିଜେ ଡର ମାଡ଼େ । ମୁଁ ବହୁତ କଠୋର ଜୀବନକୁ ସ୍ୱାଗତ କରିନେଇଛି ନା !" ବିଦ୍ୟାର କଣ୍ଠରେ ଅସୀମ କାରୁଣ୍ୟ ଭରିରହିଥିଲା ।

ଜ୍ଞାନପ୍ରକାଶଙ୍କ ହୃଦୟରେ ଏକପ୍ରକାର କୋହ ଉଠିଲା । ସେ ବିଦ୍ୟାକୁ ଚାହିଁ ଦେଖିଲେ କେତେ ଶାନ୍ତ, କେତେ ସୌମ୍ୟ, କେତେ ସାତ୍ତ୍ୱିକ ତା'ର ଅପୂର୍ବ ସୌନ୍ଦର୍ଯ୍ୟ ! କିନ୍ତୁ ବିଧିର କି ବିଡ଼ମ୍ବନା ! ତାକୁ ପୁଣି ବୈଧବ୍ୟର କଠୋର ଜୀବନ ସ୍ୱୀକାର କରିବାକୁ ପଡ଼ିଲା । ଜ୍ଞାନପ୍ରକାଶ କହିଲେ, "ଠିକ୍ କହୁଛୁ ମା ! ଆଚ୍ଛା ଏଠି ସହରରେ 'ନାରୀଶିକ୍ଷା ସଦନ' ନାମରେ ଏକ ବାଳିକା ସ୍କୁଲ ଅଛି । ମୁଁ ତାର ମାନେଜିଙ୍ଗ୍ କମିଟିର୍ ମେମ୍ବର । ସେଠି ଜଣେ ଶିକ୍ଷୟିତ୍ରୀ ଇସ୍ତଫା ଦେଇଛନ୍ତି । ମାର୍ଚ୍ଚ ପହିଲାକୁ ତାଙ୍କ ସ୍ଥାନ ଖାଲି ହେବ । ତୁ ଗୋଟିଏ ଦରଖାସ୍ତ ଲେଖି ଦେ । ସେ କାମ ତୁ କରି ପାରିବୁ ଟି !"

"ହଁ ଜେଜେ, ସେ କାମ ମୁଁ କରିପାରିବ । ଆପଣ ମୋତେ ଶୀଘ୍ର ସେଠି ରଖାଇ ଦିଅନ୍ତୁ । ବେଳେ ବେଳେ ସମୟଟା ବହୁତ କଷ୍ଟକର ମନେ ହେଉଛି । ସେହି କାମରେ ଅନ୍ତତଃ ମନକୁ ଭୁଲେଇ ନେବ ।"

ଛବିଶ ତାରିଖରେ ସାରା ଦେଶରେ ସ୍ୱାଧୀନତା ଦିବସ ପାଳନ କରିବାର ଥିଲା । ଏ ପର୍ଯ୍ୟନ୍ତ କଂଗ୍ରେସ 'ଔପନିବେଶିକ ସ୍ୱାଧୀନତା' ମାଗୁଥିଲା; କିନ୍ତୁ ବର୍ତ୍ତମାନ ପରିସ୍ଥିତି ବଦଳି ଯାଇଥିଲା । ଯଦି ସ୍ୱାଧୀନତା ପାଇଁ ଲଢ଼ିବା କଥା, ତେବେ ପୂର୍ଣ୍ଣ ସ୍ୱାଧୀନତାପାଇଁ ଲଢ଼ିବା ନାହିଁ କାହିଁକି ? କଲିକତାରେ ପ୍ରଥମେ ସ୍ୱାଧୀନତା ପ୍ରସ୍ତାବ ପାସ ହେଲା ଓ ତାପରେ ଲାହୋର କଂଗ୍ରେସ ଏହାକୁ କାର୍ଯ୍ୟାନ୍ୱିତ କରିବାର ଦାୟିତ୍ୱ ସ୍ୱୀକାର କଲା । ସ୍ୱାଧୀନତାର ଘୋଷଣାପତ୍ର ତିଆର ହୋଇଗଲା ଓ ଦେଶର କୋଣେ କୋଣେ ସ୍ୱାଧୀନତା ବ୍ରତ ଧାରଣ କରିବାର କଥା ହେଲା । ଜ୍ଞାନପ୍ରକାଶ ସାରା ଦେଶରେ ଏହି ବାର୍ତ୍ତା ବିତରଣ କରି ସ୍ୱାଧୀନତା ସଂଗଠନ କାର୍ଯ୍ୟରେ ବ୍ୟସ୍ତ ହୋଇପଡ଼ିଲେ । ନବଲ ମଧ୍ୟ ଖୁସିରେ ଜ୍ଞାନପ୍ରକାଶଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କଲା ।

ଯମୁନାଙ୍କର ତେରଦିନ ପାରହୋଇଯିବା ପରେ ଜ୍ୱାଳାପ୍ରସାଦ ଗୀତା ଅଧ୍ୟୟନ ଆରମ୍ଭ

କରିଦେଲେ ଓ ବିଦ୍ୟା ତାଙ୍କୁ ସେହି କାର୍ଯ୍ୟରେ ସାହାଯ୍ୟ କଲା । ନବଲର ଅଧିକାଂଶ ବେଳ ବାହାରେ କଟୁଥିଲା । ଦିନରେ ବିଶ୍ୱବିଦ୍ୟାଳୟର କାମ ସାରି ବାକି ସମୟତକ ସେ କଂଗ୍ରେସ କମିଟି ଅଫିସରେ କଟାଉଥିଲା । ପିଲମାନେ ସ୍କୁଲକୁ ଚାଲିଯାଉଥିଲେ ଓ ରୁକ୍ମଣୀ ଘରକଥା ବୁଝୁଥିଲେ ।

ସେଦିନ ସନ୍ଧ୍ୟାବେଳେ ଡ୍ରଇଂରୁମ୍‌ରେ ବସି ଜ୍ୱାଲାପ୍ରସାଦ ବିଦ୍ୟାଠାରୁ ଗୀତା ଶୁଣୁଥିବା-ବେଳେ ଗୋଟିଏ ଘୋଡ଼ାଗାଡ଼ି ଆସି ଦୁଆରମୁହଁରେ ଅଟକିଲା । ଜ୍ୱାଲାପ୍ରସାଦ କହିଲେ, "ଦେଖିଲୁ ମା, କିଏ ଆସିଲେ ।"

ବିଦ୍ୟା ବାରଣ୍ଡାକୁ ଆସି ଦେଖିଲା, ବିନ୍ଧେଶ୍ୱରୀପ୍ରସାଦ ଘୋଡ଼ାଗାଡ଼ିରୁ ଓହ୍ଲାଇ ବାରଣ୍ଡା ଉପରକୁ ଉଠି ଆସୁଛନ୍ତି । ବିଦ୍ୟା ଶାନ୍ତଭାବରେ କହିଲା, "ଜେଜେ ଡ୍ରଇଂ-ରୁମ୍‌ରେ ଅଛନ୍ତି; ଆସନ୍ତୁ ।"

ବିନ୍ଧେଶ୍ୱରୀପ୍ରସାଦ ବିଦ୍ୟା କଥାରେ କିଛି ଉତ୍ତର ନ ଦେଇ ଏଡ଼େ ମୁହଁ କରି ଡ୍ରଇଂରୁମ ଭିତରକୁ ଗଲେ ।

ଜ୍ୱାଲାପ୍ରସାଦ ଉଠିପଡ଼ି ବିନ୍ଧେଶ୍ୱରୀଙ୍କୁ ସ୍ୱାଗତ କରି କହିଲେ, "ଆସନ୍ତୁ, ଆସନ୍ତୁ ।"

ବିନ୍ଧେଶ୍ୱରୀ ଚୁପ୍‌ଚାପ୍ ଚଉକିରେ ବସିଗଲେ । ଜ୍ୱାଲାପ୍ରସାଦ ବିଦ୍ୟାକୁ କହିଲେ, "ମା ଭିକୁକୁ କହିଦେ, ଚା' ନେଇ ଆସିବ ।"

ବିନ୍ଧେଶ୍ୱରୀପ୍ରସାଦ ବର୍ତ୍ତମାନ ମୁହଁ ଫିଟାଇ କହିଲେ, "ନାହିଁ, କିଛି ଦରକାର ନାହିଁ । ମୁଁ ତ ଜଳଖିଆ ଖାଇକରି ଆସିଛି । ଆପଣଙ୍କ ସଙ୍ଗେ କେତେକ ବିଶେଷ କଥା ଅଛି ବୋଲି ଚାଲିଆସିଲି । ଆପଣ ବିଦ୍ୟାକୁ ବାହାରକୁ ପଠାଇଦିଅନ୍ତୁ ।"

ଜ୍ୱାଲାପ୍ରସାଦ ବିଦ୍ୟାକୁ ଚାହିଁ କହିଲେ, "ଶୁଣିଲୁ ମା, ଟିକିଏ ଘର ଭିତରକୁ ଯା ।"

ବିଦ୍ୟା ଉଠି ଛିଡ଼ାହେଲା, ପୁଣି କ'ଣ ଟିକିଏ ଭାବି ଅଟକିଯାଇ କହିଲା, "ସେ ବୋଧହୁଏ ମୋ ବିଷୟରେ କଥାବାର୍ତ୍ତା କରିବେ । ତେଣୁ ମୋର ଏଠି ରହିବା ନିତାନ୍ତ ଦରକାର । ମୁଁ ଟିକିଏ ଶୁଣେ, ସେ କ'ଣ କହିବାପାଇଁ ଏଠିକୁ ଆସିଛନ୍ତି ।"

ବିନ୍ଧେଶ୍ୱରୀପ୍ରସାଦ କଠୋର ସ୍ୱରରେ କହିଲେ, "ତମ ସଙ୍ଗେ ମୋର କିଛି କାମ ନାହିଁ । ମୁଁ ଜ୍ୱାଲାପ୍ରସାଦଙ୍କ ସଙ୍ଗେ କଥାବାର୍ତ୍ତା କରିବାପାଇଁ ଆସିଛି । ମୁଁ ତମ ମୁହଁ ଦେଖିବାକୁ ଚାହେଁନାହିଁ ।"

ବିଦ୍ୟା ବିଗିଡ଼ି ଯାଇ କହିଲା, "କିନ୍ତୁ ମୋ ବିଷୟରେ ଯେଉଁ ବିଷ ଉଗାଳିବାକୁ ଅଛି, ଏଇଠି ମୋ ସାମନାରେ ଉଗାଳନ୍ତୁ । ସେ ବିଷ ସବୁ ମୁଁ ଗୋଟାଇ ନେବି । ନିଜ ବିଷରେ ଅନ୍ୟ ଲୋକକୁ ମାରିବାକୁ ଚେଷ୍ଟା କରନ୍ତୁ ନାହିଁ । ଆପଣଙ୍କ ବିଷରେ ମୋ ଜେଜମା ତ ମରିସାରିଛନ୍ତି ।"

ବର୍ତ୍ତମାନ ଜ୍ୱାଳାପ୍ରସାଦ ବିନ୍ଧେଶ୍ୱରୀପ୍ରସାଦଙ୍କୁ କହିଲେ, "ମୁଁ ବି ଭାବୁଛି, ବିଦ୍ୟାର ଏଠି ଉପସ୍ଥିତ ରହିବା ଉଚିତ; କାରଣ ଏଥିରେ ତା'ର ଭାଗ୍ୟର, ତା ଜୀବନର ପ୍ରଶ୍ନ ଜଡ଼ିତ ଅଛି ? ତା ଛଡ଼ା ତା'ର ତ ନିଜର ଭଲମନ୍ଦ ବୁଝିବା ବୟସ ହୋଇଗଲାଣି । ମୋର କ'ଣ ଅଛି ? ଭଗବାନ ମୋତେ ଯେକୌଣସି ମୁହୂର୍ତ୍ତରେ ନେଇଗଲେ ଭଲ । ମୁଁ ତ କିଛି ଅମର–ଲଡ଼ୁ ଖାଇକରି ଆସିନାହିଁ ।"

ବିନ୍ଧେଶ୍ୱରୀପ୍ରସାଦ ବ୍ୟଙ୍ଗ କରି କହିଲେ, "ହେଉ ଆପଣଙ୍କର ଯାହା ଇଚ୍ଛା । ତାହେଲେ ସେ ଏ କଥା ବି ଶୁଣୁ । ମୁଁ ଆପଣଙ୍କୁ ଗୋଟିଏ ଚିଠି ଲେଖିଥିଲି ଆଗାମୀ ହପ୍ତାରେ ସିଦ୍ଧେଶ୍ୱରୀର ବାହାଘର ହେବ ।"

"ହଁ, ଏ ବିଷୟରେ ମୁଁ ଆପଣଙ୍କର ଚିଠି ପାଇଛି । ହିନ୍ଦୁ ଆଇନ୍ ଅନୁସାରେ ସିଦ୍ଧେଶ୍ୱରୀ ଯେତେ ଇଚ୍ଛା ସେତେ ଥର ବାହା ହୋଇପାରେ । ସ୍ୱା ଛଡ଼ା ଆପଣଙ୍କର ଆଉ କ'ଣ କହିବାର ଅଛି ?"

"ମୁଁ ପଚାରୁଛି, ଇଏ ଏହି ବାହାଘରରେ ଯୋଗ ଦେବ କି ଓ ବାହାଘର ପରେ ସିଦ୍ଧେଶ୍ୱରୀ ସହିତ ରହିବାପାଇଁ ପ୍ରସ୍ତୁତ ହେବ କି ?"

ଜ୍ୱାଳାପ୍ରସାଦ କିଛି କହିବା ପୂର୍ବରୁ ବିଦ୍ୟା କହିଲା, "ବାହାଘର ଆଗରୁ କ'ଣ ପଛରେ କ'ଣ, ଆପଣମାନଙ୍କ ସଙ୍ଗରେ ରହିବା ନରକରେ ରହିବାଠାରୁ ଆହୁରି ଭୟଙ୍କର ।"

ବିନ୍ଧେଶ୍ୱରୀପ୍ରସାଦ କହିଲେ, "ଆପଣ ଏହି ବଜାରୁ ମାଇକିନିଆ କଥା ଶୁଣୁଛନ୍ତି ? ଆପଣମାନେ ବର୍ତ୍ତମାନ ବୁଝିଥିବେ ଇଏ ଆମ ସଙ୍ଗରେ ରହିବାପାଇଁ ଆଦୌ ହକ୍‌ଦାର ନୁହେଁ । ମୁଁ ଏହି କଥା ଆପଣମାନଙ୍କୁ କହିବାପାଇଁ ଆସିଛି । ବିଶେଷତଃ ଜ୍ଞାନପ୍ରକାଶ ବାବୁଙ୍କୁ କହିବାକୁ ଆସିଛି; କାରଣ ସେ ଜଣେ ବଡ଼ ଆଇନ୍‌ବାଲା ନା !"

ବିଦ୍ୟା ଉତ୍ତର ଦେଲା, "ଆପଣମାନଙ୍କ ପାପଧନରୁ ମୁଁ ପଇସାଟିଏ ମଧ୍ୟ ଚାହେଁ ନାହିଁ । ଏ ବିଷୟରେ ଜେଜେବାପା କିମ୍ବା ଜ୍ଞାନ ଜେଜେଙ୍କ ସହିତ କଥାବାର୍ତ୍ତା କରିବା ଦରକାର ନାହିଁ । ମୁଁ ନିଜେ ମୋ ହାତରେ ଲେଖିଦେଉଛି ।"

ବିନ୍ଧେଶ୍ୱରୀପ୍ରସାଦ ଜ୍ୱାଳାପ୍ରସାଦଙ୍କୁ ଚାହିଁ କହିଲେ, "ଶୁଣିଲେ, ଆପଣ ମୋତେ ଆଉ କିଛି ଦୋଷ ଦେବେ ନାହିଁ । ଆମେ ସ୍ୱାର ଭରଣପୋଷଣ କରିବାକୁ ଚାହୁଁ, ସ୍ୱାକୁ ଘରକୁ ବି ନେବାକୁ ଚାହୁଁ; କିନ୍ତୁ ଏ ନିଜେ ଯିବାପାଇଁ ଚାହୁଁ ନାହିଁ ।"

ଜ୍ୱାଳାପ୍ରସାଦ କହିଲେ, "ସେ ତ କୌଣସି ପ୍ରକାର ତମ ସଙ୍ଗରେ ରହିବ ନାହିଁ ବୋଲି କହିସାରିଲାଣି । ଆଉ କ'ଣ ?"

ବିନ୍ଧେଶ୍ୱରୀପ୍ରସାଦଙ୍କ ହାତରେ ଯେଉଁ ଫାଇଲ୍ ଥିଲା, ସେଥିରୁ ଖଣ୍ଡେ କାଗଜ ବାହାର କରି ସେ କହିଲେ, "ଆମେ ଜାଣିଥିଲୁ ସେ ଏମିତି କହିବ । ତେଣୁ ମୁଁ କାଗଜ ତିଆରି

କରି ଆଣିଥିଲି । ଏଥିରେ ଏବେ ସେ ଦସ୍ତଖତ୍ କରିଦେଉ । ଭବିଷ୍ୟତରେ କଚେରୀରେ ମକଦ୍ଦମା ହେବାପାଇଁ ମୁଁ ଚାହେଁ ନାହିଁ । ସେଥିରେ ଉଭୟ କୁଳର ଅପମାନ ହେବ ।'' ଏକା କହି ସେ ଜ୍ୱାଲପ୍ରସାଦଙ୍କ ହାତକୁ ଖଣ୍ଡେ କାଗଜ ବଢ଼ାଇଦେଲେ ।

ଜ୍ୱାଲପ୍ରସାଦ କାଗଜକୁ ପଢ଼ିସାରି ବିଦ୍ୟାହାତକୁ ବଢ଼ାଇଦେଇ କହିଲେ, ''ହଁ ଠିକ୍ ତ ଅଛି । ନେ ତୁ ପଢ଼ ।''

ବିଦ୍ୟା ପଢ଼ିସାରି କହିଲା, ''ଜେଜେ ! ଏଥିରେ ଟିକେ ପରିବର୍ତ୍ତନ ହେବା ଦରକାର । ଏଥିରେ ଲେଖା ହୋଇଛି ଯେ ମୁଁ ନିଜେ ନିଜେ ସେମାନଙ୍କୁ ଛାଡ଼ି ଆସୁଛି; କିନ୍ତୁ ତା ଜାଗାରେ ମୁଁ ଲେଖିବାକୁ ଚାହେଁ, ଏହି ଲୋକମାନଙ୍କର ଅମାନୁଷିକ ଅତ୍ୟାଚାର ସହି ନ ପାରି ମୁଁ ନିଜେ ଏମାନଙ୍କ ଘର ଛାଡ଼ି ଆସୁଛି ।''

''ନାଁ, ସେକଥା ଲେଖାହୋଇ ପାରିବ ନାହିଁ । ତମ ଦୁର୍ବ୍ୟବହାର ଓ କଳହ ଯୋଗୁଁ ଆମେ ତମକୁ ଘରୁ ବାହାର କରି ଦେଉଛୁ ।''

ବିଦ୍ୟା କର୍କଶ ଭାବରେ କହିଲା, ''ଲେଖିବା ଲୋକ ମୁଁ; ମୁଁ ଯାହା ଠିକ୍ ଭାବିବି, ଲେଖିବି । ତମର ଯଦି ଲେଖିବା କଥା, ମୁଁ ଯାହା କହୁଛି ଲେଖ, ନୋହିଲେ ଏଠୁ ଚାଲିଯା ।''

ଜ୍ୱାଲପ୍ରସାଦ କହିଲେ, ''ଯେ ପର୍ଯ୍ୟନ୍ତ ଆପଣ କାହାକୁ ନ ଦେଖେଇବେ କିମ୍ବା କଚେରୀକୁ ନ ଯିବେ, ସେ ପର୍ଯ୍ୟନ୍ତ କାଗଜଟା ଆପଣଙ୍କ ପାଖରେ ରହିବ । ଏପରି ସ୍ଥଳେ ସେ ଯାହା ଲେଖିବାକୁ ଚାହୁଁଛି, ଆପଣ ଲେଖେଇ ଦେଉନାହାନ୍ତି କାହିଁକି ?''

ବିନ୍ଧେଶ୍ୱରୀପ୍ରସାଦ କ'ଣ ଭାବିବାକୁ ଲାଗିଲେ । ଘଟଣାଟା ଏତେ ଜଟିଳ ହେବ ବୋଲି ସେ ଭାବି ନ ଥିଲେ । ସେ ବର୍ତ୍ତମାନ ଟିକିଏ ନରମ ସ୍ୱରରେ କହିଲେ, ''ଦୁଇ କୁଳର ମାନ-ସମ୍ମାନ ରଖିବା ପାଇଁ ମୁଁ ଏସବୁ କରୁଛି । ତା'ର ଯିମିତି ଇଚ୍ଛା—ସେ ସେମିତି ଲେଖୁ ।''

ବିଦ୍ୟା ସେ କାଗଜରେ ନିଜ ବିଷୟ ଉଠାଇ ଦେଇ ଜ୍ୱାଲପ୍ରସାଦଙ୍କ ହାତରେ କାଗଜ ଦେଇଦେଲା । ଜ୍ୱାଲପ୍ରସାଦ ତାକୁ ପଢ଼ି କହିଲେ, ''ଠିକ୍ ଅଛି । ନିଅନ୍ତୁ ବିନ୍ଧେଶ୍ୱରୀ-ପ୍ରସାଦ ! କମ୍ ଗଣ୍ଡଗୋଳରେ ଏତେ ସହଜରେ ଆପଣଙ୍କର କାମ ହୋଇଗଲା । ବର୍ତ୍ତମାନ ଚା' କପେ ପିଅନ୍ତୁ ।''

ବିନ୍ଧେଶ୍ୱରୀପ୍ରସାଦ ସେ କାଗଜକୁ ଫାଇଲରେ ରଖିଦେଇ କହିଲେ, ''ନାହିଁ, ଏ ଘର ସହିତ ମୋର କୌଣସି ସମ୍ପର୍କ ନାହିଁ ।'' ପୁଣି ବିଦ୍ୟାକୁ ଚାହିଁ ସେ କହିଲେ, ''କିନ୍ତୁ ଏତିକି ମନେ ରଖିଥିବୁ, ହିନ୍ଦୁ ଲ'ରେ ତୋ ପାଇଁ ମୁକ୍ତି ନାହିଁ । ଜୀବନସାରା ତୁ ସିଦ୍ଧେଶ୍ୱରର ସ୍ତ୍ରୀ ହୋଇ ରହିବୁ । ଯଦି ଆମେ କେବେ ତୋ'ର ବଦମାସୀ କିମ୍ବା ବଦ୍‌ଚଲଣି ବିଷୟରେ ଖବର ପାଉ, ତେବେ ତୋତେ ଜେଲ୍‌ରେ ଢୁକେଇଦେବୁ ।''

ବଦ୍ୟା ବନ୍ଦେଶ୍ୱରୀଙ୍କର ଏ କଥା ସହ୍ଯ ନ ପାରି ପାଦରୁ ଚପଲ କାଢ଼ି ତାଙ୍କ ଆଡ଼କୁ ଦାଉଡ଼ଯାଇ କହିଲା, "ସଇତାନ୍ କାହାଁକା ।"

ବନ୍ଦେଶ୍ୱରୀ ଘରୁ ବାହାରି ପଳାଇଲେ ଓ ଜ୍ୱାଲପ୍ରସାଦ ବଦ୍ୟାକୁ ଅଟକାଇ ନେଲେ । କନ୍ତୁ ବଦ୍ୟା ଜ୍ୱାଲପ୍ରସାଦଙ୍କଠାରୁ ହାତ ଛଡ଼ାଇନେଇ ଚପଲ ଧରି ବନ୍ଦେଶ୍ୱରୀପ୍ରସାଦଙ୍କ ପଛରେ ଗୋଡ଼ାଇଲା । ଜ୍ୱାଲପ୍ରସାଦ ବଦ୍ୟା ପଛେ ପଛେ ଧାଇଁଲେ । ଯ୍ୱା ଭିତରେ ବନ୍ଦେଶ୍ୱରୀ ଘୋଡ଼ାଗାଡ଼ିରେ ବସିଯାଇ ଗାଡ଼ିବାଲାକୁ କହିଲେ, "ଶୀଘ୍ର ଚଲ ।"

ଗାଡ଼ି ଚ୍ଳିଗଲା । ବଦ୍ୟା ଅଟକି ଯାଇ କହିଲା, "କାପୁରୁଷ କାହାଁକା !" ଏତକି କହି ସେ କାନ୍ଦି ପକାଇଲା ।

## ସାତ

୧୯୩୦ ମାର୍ଚ୍ଚ ଦୁଇ ତାରିଖରେ ମହାତ୍ମା ଗାନ୍ଧି ଲର୍ଡ଼ ଇର୍‌ଉଇନଙ୍କ ନାମରେ ଗୋଟିଏ ପତ୍ର ପ୍ରକାଶ କଲେ ଓ ସେହି ପତ୍ରଯୋଗୁ ସାରା ଦେଶରେ ଚହଳ ପଡ଼ିଗଲା । ସତ୍ୟାଗ୍ରହ ଆନ୍ଦୋଳନ ପାଇଁ ଏହା ଏକ ଘୋଷଣାପତ୍ର । ବର୍ତ୍ତମାନ ସବୁପ୍ରକାର ପ୍ରଯତ୍ନ ବ୍ୟର୍ଥ ହୋଇଯାଇଥିଲା । ବ୍ରିଟିଶ ସରକାର ସ୍ୱାଧୀନତା ଦେବାପାଇଁ ଆଦୌ ପ୍ରସ୍ତୁତ ନ ଥିଲେ; ସୁତରାଂ ସତ୍ୟାଗ୍ରହ କରିବା ଛଡ଼ା ଗାନ୍ଧିଙ୍କର ଆଉ କୌଣସି ଉପାୟ ନଥିଲା । ସେହି ପତ୍ରରେ ସବୁପ୍ରକାର ସଦ୍‌ଭାବନା ଓ ସାଧୁତା ଥିଲେ ମଧ୍ଯ ସେଥିରେ ଥିଲା ଏକ ଅଟଳ ସଙ୍କଳ୍ପ ।

ନବଲର ପଢ଼ାପଢ଼ି ଖୁବ୍ ଜୋରରେ ଚ୍ଳିଥିଲା; କନ୍ତୁ ସେଦିନ କାହିଁକି ୟୁନିଭରସିଟୀରେ ତା' ମନ ଲାଗିଲା ନାହିଁ । ସେ କଂଗ୍ରେସ କମିଟି ଅଫିସକୁ ଚ୍ଳିଲା । ଜ୍ଞାନପ୍ରକାଶ ଆଲାହାବାଦ ପାଇଁ ସତ୍ୟାଗ୍ରହ ଯୋଜନା ପ୍ରସ୍ତୁତ କରୁଥିଲେ । ସେ ନବଲକୁ ଦେଖିଲାମାତ୍ରେ କହିଲେ, "ନବଲ, ସମୟ ଆସିଗଲା; ଏଥର ଯୁଦ୍ଧ ଆରମ୍ଭ ହୋଇଗଲା ।"

"ହଁ ଜ୍ଞାନ ଜେଜେ, ମୁଁ ତ ସେଇଆ ଦେଖୁଛି । ଆପଣଙ୍କର କାମ କେତେବେଳେ ସରିବ ?"

"ଆଜି ତ ମୋତେ ଏଠି ସାରାଦିନ ଲାଗିଯିବ । ଖାଲି କାମ ଉପରେ କାମ । ମୋର ବିଶ୍ୱାସ, ଛ' ସାତ ବେଳକୁ କାମ ସରିଯିବ । ସନ୍ଧ୍ୟାବେଳେ ଘରେ ଯାଇ ଚା' ପିଇବା ।

ହଁ, ଆଜି ସକାଳେ ନାରୀଶିକ୍ଷା ସଦନର ମିଟିଙ୍ଗ୍ ହୋଇଥିଲା । ମାର୍ଚ୍ଚ ପନ୍ଦର ତାରିଖରୁ ବିଦ୍ୟାକୁ ସେଠାରେ ନିଯୁକ୍ତି ମିଳିଯିବ । ସନ୍ଧ୍ୟାବେଳେ ଗଲେ ସବୁ କଥା କହିବ ।''

''ଆଚ୍ଛା ଜେଜେ, ଆଜି ୟୁନିଭରସିଟୀରେ ମନ ଲାଗିଲା ନାହିଁ, ଘରକୁ ଚାଲିଯାଉଛି ।''

ନବଲ ସେଠାରୁ ଚାଲିଗଲା । ବିଦ୍ୟାକୁ ନିଯୁକ୍ତି ମିଳିଯିବା ଶୁଣି ଭାରି ଖୁସି ହୋଇ ଯାଇଥିଲା । ଯାହାହେଉ ଏବେ ସେ ନିଜ ଗୋଡ଼ରେ ଠିଆହୋଇ ପାରିବ । ବିଦ୍ୟାପାଇଁ ଗୋଟାଏ ବାଟ ଫିଟିଗଲା—ଗୋଟାଏ ବଡ଼ ସମସ୍ୟା ସମାଧାନ ହୋଇଗଲା । ତାକୁ ଏହି ସୁସମ୍ବାଦ ଶୁଣାଇବା ପାଇଁ ସେ ଖୁବ୍ ଶୀଘ୍ର ଯାଇ ଘରେ ପହଞ୍ଚିଲା । ସେତେବେଳେ ବିଦ୍ୟା ଡ୍ରଇଁରୁମ୍‌ରେ ବସି ଜ୍ୱାଲାପ୍ରସାଦଙ୍କୁ ରାମାୟଣ ଶୁଣାଉଥିଲା । ନବଲ ପହଞ୍ଚିଲା ମାତ୍ରେ କହିଲା, ''ବିଦ୍ୟା, ତୋ ପାଇଁ ଗୋଟାଏ ଭଲ ଖବର ଆଣିଛି, ମୋତେ ମିଠାଇ ଖାଇବାକୁ ଦେ । ଜ୍ଞାନ ଜେଜେ କହୁଛନ୍ତି, ନାରୀଶିକ୍ଷା ସଦନରେ ମାର୍ଚ୍ଚ ପନ୍ଦର ତାରିଖରୁ ତୋର ନିଯୁକ୍ତି ହୋଇଯାଉଛି ।''

ବିଦ୍ୟା ଉତ୍ସାହିତ ହୋଇ କହିଲା, ''ସତ କହୁଛ ଭାଇ !'' ତା'ପରେ ସେ ନିଜର ଅତ୍ୟଧିକ ଉତ୍ସାହଯୋଗୁ ସେ ଲଜ୍ଜିତ ହୋଇ ପଡ଼ିଲା । ସେ ଜ୍ୱାଲାପ୍ରସାଦଙ୍କୁ କହିଲା, ''ଜେଜେ, ଏହି ଦୋହାପରେ ବର୍ତ୍ତମାନ ପାଇଁ ରାମାୟଣ ବନ୍ଦ କରିଦେଉଛି ।''

ଜ୍ୱାଲାପ୍ରସାଦ ମୃଦୁକରି ହସି କହିଲେ, ''ହଁ ମା, ବର୍ତ୍ତମାନ ଏଥିରେ ମନ ଲାଗିବ ନାହିଁ । କିନ୍ତୁ ଭଗବାନଙ୍କ ଦୟାରୁ ତୋତେ କାମ ମିଳିଥିବାରୁ ତାଙ୍କ ଗୁଣ ବେଶୀ ଗାଇବା ଦରକାର ।''

ବିଦ୍ୟା ରାମାୟଣ ବନ୍ଦ କରିଦେଇ ନବଲ ଆଡ଼କୁ ଚାହିଁ କହିଲା, ''ହଁ ଭାଇ, ଭଗବାନ ରାମଚନ୍ଦ୍ରଙ୍କର ମୋ ପ୍ରତି ଦୟା ହୋଇଛି । ତାହେଲେ ପନ୍ଦର ତାରିଖରୁ ମୋତେ ସେଠିକି ଯିବାକୁ ପଡ଼ିବ ।''

ନବଲ କିଛି କହିବା ପୂର୍ବରୁ ଜ୍ୱାଲାପ୍ରସାଦ ଏକ ଦୀର୍ଘଶ୍ୱାସ ପକାଇ ମନେ ମନେ କହିଲେ, ''ଘରର ଝିଅ ଘରୁ ବାହାରି ପୁଣି ଚାକିରି କରିବ, ପରର ଗୋଲାମୀ କରିବ ! ଏହି ଦିନ ଦେଖିବା ପାଇଁ ପୁଣି ସ୍ୱର୍ଗରେ ଥିଲି ?''

ନବଲ ଚୁପ୍ ରହିଗଲା; କିନ୍ତୁ ବିଦ୍ୟା ରହି ନପାରି କହିଲା, ''ଜେଜେ, ଗୋଲାମୀରୁ ମଣିଷକୁ କେବେ କ'ଣ ଛୁଟି ମିଳିଛି ? ଘର ଭିତରେ ଜଳିପୋଡ଼ି ରହିବା, ନିଜକୁ କୌଣସିମତେ ଚପାଇ ରଖିବା କ'ଣ କମ୍ ଗୋଲାମୀ ?''

ଜ୍ୱାଲାପ୍ରସାଦ ମୁହଁକୁ ତଳକୁ କରି କହିଲେ, ''ହଁ ମା, ତୁ ବୋଧହୁଏ ଠିକ୍ କହୁଛୁ, ହେଲେ ଘରେ ତ ଗୋଟାଏ ମମତା ଅଛି ?''

ବିଦ୍ୟା ଟିକିଏ ନଠୋର ହୋଇ କହିଲା, ''କି ମମତା ଅଛି ? କାହାପ୍ରତି ମମତା

ଅଛୁ ? ମୋତେ ତ ଜନ୍ମପୋଛୁ ବହୁତ ଘୃଣା ଭିତରେ ରହିବାକୁ ପଡ଼ିଲା । ଯେଉଁ ରାକ୍ଷସମାନେ ମୋ ବାପମା'ଙ୍କ ପରିବାରର ରକ୍ତ ଶୋଷି ନେଇଛନ୍ତି, ସେମାନଙ୍କ ପ୍ରତି ମୋର କେବେ କ'ଣ ମମତା ହୁଅନ୍ତା ?"

ଜ୍ୱାଳାପ୍ରସାଦ କହିଲେ, "ନାହିଁ ମା, ତୁ ବୁଝିପାରିବୁ ନାହିଁ । ଏ ସଂସାରରେ ଏକା ରହିବା ସବୁଠୁ ଭୟଙ୍କର । ଏହି ଏକାକୀ ଜୀବନରୁ ରକ୍ଷା ପାଇବାପାଇଁ ପରିବାରର ସୃଷ୍ଟି ହୋଇଛି ।"

ବିଦ୍ୟା ହସି ଦେଇ କହିଲା, "ଜେଜେ ! ତମେ ଅଛ, ମୋର ଭାଇ ଅଛନ୍ତି, ମା' ଅଛନ୍ତି, ସ୍ୱାମୀ ଛଡ଼ା ସାରା ଦୁନିଆ-ଟା ଅଛି । ଏତେ ବଡ଼ ପରିବାର ଥାଉଁ ଥାଉଁ ମୁଁ ଆଉ କାହା ପାଇଁ ଚିନ୍ତା କରିବି ? କ'ଣ ନବଲ ଭାଇ ! ତମେ ମୋତେ ସଙ୍ଗରେ ରଖିବଟି ? ମୁଁ ତମକୁ ଯେତିକି ଭଲ ପାଉଛି, ଭାଉଜଙ୍କୁ ବି ସେତିକି ଭଲ ପାଇବି । ତମ ପିଲାମାନେ ମୋ ମୁଣ୍ଡରେ କାନ୍ଧରେ ରହିବେ ।"

ନବଲ ନିଜର ଅଶ୍ରୁକୁ ଚପାଇ ରଖି କହିଲା, "ବିଦ୍ୟା, ତୁ ଏସବୁ ଏତେ କ'ଣ ବକୁଛୁ ? ତୁ ମୋର ଶ୍ରେଷ୍ଠ ଭଉଣୀ ହେଲେ ବି ବୁଦ୍ଧି ଓ ସାହସରେ ତୁ ମୋର ନମସ୍ୟା ।"

ନବଲ ଘଣ୍ଟାକୁ ଚାହିଁ ଦେଖିଲା ମାତ୍ର ତିନି ବାଜିଛି । ଘରେ ତାର ମନ ଲାଗୁ ନଥିଲା, ସେ ନିଜ ଅନ୍ତର ଭିତରେ ଏକପ୍ରକାର ବିଚିତ୍ର ଆଲୋଡ଼ନ ଅନୁଭବ କରୁଥିଲା । ସେ ସେହି ଆଲୋଡ଼ନର କାରଣ ବୁଝିପାରୁ ନଥିଲା କିମ୍ବା ତାର କୌଣସି ସ୍ୱରୂପ ଦେଖିପାରୁ ନଥିଲା । ବିଦ୍ୟା ନବଲକୁ କହିଲା, "ଭାଇ, ତମେ ଆଜି କେମିତି ଅନମନା ଜଣା-ପଡ଼ୁଛ । କ'ଣ କଥା କ'ଣ ?"

ନବଲ ହସିଦେଇ କହିଲା, "ମୁଁ ବି ଜାଣି ପାରୁନାହିଁ, ମୋର କାହିଁକି ଆଜି କୌଣସି କଥାରେ ମନ ଲାଗୁନାହିଁ ।"

ବିଦ୍ୟା ଉଠି ଠିଆହୋଇ କହିଲା, "ଉଷା ସଂଗରେ ବହୁତ ଦିନହେଲା ଦେଖା ହୋଇନାହିଁ । ତିନି ଚାରି ଦିନ ହେଲା ଭାବୁଛି ତା' ସଙ୍ଗେ ଯାଇ ଦେଖାକରି ଆସିବି । ଚାଲ ମୋ ସଙ୍ଗରେ ଯିବ, ମନ ପରିବର୍ତ୍ତନ କରି ଆସିବ ।"

ଉଷାର ନାଁ ଶୁଣି ସତେ ଯେମିତି ନବଲ ଚମକି ପଡ଼ିଲା । ଗଲା କେତେ ଦିନ ହେଲା ଉଷାକଥା ତାର ଆଦୌ ମନେ ନଥିଲା । ବିଦ୍ୟାର ପ୍ରସ୍ତାବ ଶୁଣି ହଠାତ୍ ଉଷା ଆଡ଼କୁ ସେ ଆକୃଷ୍ଟ ହୋଇପଡ଼ିଲା । କିନ୍ତୁ ଏହି ଆକର୍ଷଣ ସଙ୍ଗେ ସଙ୍ଗେ ତା ମନରେ ଏକପ୍ରକାର ଭୟ ଓ ଆଶଙ୍କା ମଧ୍ୟ ଦେଖାଦେଇଥିଲା । ବୋଧହୁଏ ଏହି ଭୟ ଓ ଆଶଙ୍କାରୁ ଆତ୍ମରକ୍ଷା କରିବାପାଇଁ ତାର ମନ ଉଷାପ୍ରତି ଏବେ ଉଦାସୀନ ହୋଇ

ପଡ଼ିଥିଲା; ତେଣୁ ବର୍ତ୍ତମାନ ଆକର୍ଷଣ ସଙ୍ଗେ ସଙ୍ଗେ ଆଶଙ୍କା ବି ଦେଖାଦେଇଥିଲା ।

ଭୟ ଓ ଆଶଙ୍କା......ଏମାନଙ୍କୁ ଦୂର କରିବାକୁ ହେବ; ଏମାନଙ୍କ ସଙ୍ଗରେ ଲଢ଼ିବାକୁ ହେବ । ଏମାନଙ୍କଠାରୁ ପଳାଇଲେ ଚଳିବ ନାହିଁ । ନବଲ କହିଲା, "ଆଚ୍ଛା, ତା ହେଲେ ବିଦ୍ୟା ! ମୁଁ ତୋ ସାଙ୍ଗରେ ଯିବି; କିନ୍ତୁ ଦଶପନ୍ଦର ମିନିଟ୍ ଭିତରେ ଶୀଘ୍ର ବାହାର । ଚ' ସାତ ବେଳକୁ ଆମେ ଯେମିତି ସେଠାରୁ ଫେରିଆସିଥିବା । ଜ୍ଞାନ ଜେଜେ କହିଥିଲେ, ସେ ଘରକୁ ଫେରି ଏଇଠି ଚାହା ପିଇବେ । ପୁଣି ତାଙ୍କ ସଙ୍ଗରେ ଅନେକ କଥାବାର୍ତ୍ତା ଅଛି ।"

ବିଦ୍ୟାକୁ ସଙ୍ଗରେ ନେଇ ନବଲ କାମତାନାଥଙ୍କ ଘରେ ପହଞ୍ଚିଲାବେଳକୁ ଚାରି ବାଜିଯାଇଥିଲା ।

ଉଷା କଲେଜରୁ ଫେରିଆସି ଚା' ପିଇବା ପାଇଁ ବ୍ୟବସ୍ଥା କରୁଥିଲା । ସେ ନବଲ ଓ ବିଦ୍ୟା ସଙ୍ଗରେ ବସି ସେଇଠିକି ଚା' ମଗାଇଲା ।

ବିଦ୍ୟା ପଚାରିଲା, "କହ ଉଷାରାଣୀ, ପଢ଼ାପଢ଼ି କେମିତି ଚାଲିଛି ?"

ଉଷା ହସିଦେଇ କହିଲା, "ହିଁ ଭଲ ଚାଲିଛି । କ'ଣ କହିବି, ୟୁରୋପଯାତ୍ରା ଯୋଗୁ ବର୍ଷଟାଏ ମାଟି ହୋଇଗଲା । ସାଙ୍ଗପିଲାମାନେ ସମସ୍ତେ ବି. ଏ. ଫାଇନାଲରେ ପଢ଼ିଲେଣି ଦେଖି ମୋତେ ଭାରି ଲାଜ ମାଡ଼ୁଛି ।"

ନବଲ କହିଲା, "ତମେ ତ ଫେଲ୍ ହୋଇନାହଁ, ଏଥିରେ ଲାଜର କଥା କ'ଣ ଅଛି ? ଆସନ୍ତା ବର୍ଷ ବି. ଏ. କରିନେବ ।"

"ହିଁ, ଆସନ୍ତା ବର୍ଷକୁ ତ ବି. ଏ. କରିବି; କିନ୍ତୁ ମନଟା କେମିତି ଭାରି ଚଞ୍ଚଳ ହୋଇ ଯାଇଛି । କୌଣସି କଥାକୁ ଅପେକ୍ଷା କରିବାକୁ ମନ ହେଉନାହିଁ । ବେଳେବେଳେ ଭାବୁଛି ଏ ପାଠପଢ଼ା ଜଞ୍ଜାଳ ବରଣ କରି କିଛି ଲାଭ ନାହିଁ । ମୋର ବି. ଏ. ପାସ୍ କରିବା ଦରକାର ବା କ'ଣ ? କେଉଁ ଚାକିରି କରୁଛି ଯେ !"

ନବଲ କହିଲା, "ହିଁ, ଚାକିରି ନ କଲେ ବି ବି.ଏ.ଟା ପାସ୍ କରିନିଅ । ଖାଲି ତ ଚାକିରି ପାଇଁ ପାଠପଢ଼ା ହୁଏ ନାହିଁ । ଦୁନିଆର ଆଦର୍ଶ ଖୁବ୍ ଚଞ୍ଚଳ ଚଞ୍ଚଳ ବଦଳି-ଯାଉଛି । ଭବିଷ୍ୟତର ରୂପ କ'ଣ ହେବ କିଏ ଜାଣେ ?"

ଉଷା ଦୀର୍ଘଶ୍ୱାସ ପକାଇ କହିଲା, "ହିଁ ନବଲବାବୁ, ଭବିଷ୍ୟତ କ'ଣ ହେବ କେହି କହିପାରିବେ ନାହିଁ । ଯେତେ ଚେଷ୍ଟା କଲେ ବି ଭବିଷ୍ୟତ କଥା ଜାଣିହେବ ନାହିଁ ।" ତାପରେ ଏହି କଥାକୁ ଶେଷ କରିବା ପାଇଁ ସେ ବିଦ୍ୟାକୁ ଚାହିଁ ପଚାରିଲା, "କହ ବିଦ୍ୟାରାଣୀ, କେମିତି ତମର ଦିନ କଟୁଛି ?"

ବିଦ୍ୟା ହସି ହସି କହିଲା, "ମଜାରେ କଟୁଛି । ଖାଉଛି, ପିଉଛି, ପଢ଼ୁଛି, ଲେଖୁଛି,

ଆଉ ଆଣ୍ଟମରେ ଶୋଇଛୁ; କିନ୍ତୁ ଦେଖୁଛୁ ଏ ମଜା ଆଉ ବେଶୀ ଦିନ ଚଳିବ ନାହିଁ । ଏମିତି ରହି ରହି ବିରକ୍ତ ଲାଗିଲାଣି । ଜୀବନରେ କିଛି କାମ କରିବା ଦରକାର ।''

ଉଷା କହିଲା, ''ହଁ କାମ କରିବାକୁ ଚାହିଁଲେ ତ କାମର ଅଭାବ ନାହିଁ ।''

''ବଞ୍ଚିବା ପାଇଁ ତ କାମ କରିବାକୁ ହେବ । ନାରୀଶିକ୍ଷା ସଦନରେ ମୋତେ ଶିକ୍ଷୟିତ୍ରୀ କାମ ମିଳିଛି । ମାର୍ଚ୍ଚ ପନ୍ଦର ତାରିଖରୁ ମୁଁ ସେଠି କାମ କରିବି ।''

ଉଷା ଚମକିପଡ଼ି କହିଲା, ''କି ଚାକିରି କରିବ ? ଲୋକେ କ'ଣ କହିବେ ? ପୁଣି ତମକୁ କେମିତି ଲାଗିବ ?''

''ମୋତେ ତ ବହୁତ ଭଲ ଲାଗିବ । ମୁଁ ଚେଷ୍ଟା କରି ଯାହାକୁ ପାଇଛି । ମୁଁ ଯେ ନିଜ ଗୋଡ଼ରେ ନିଜେ ଛିଡ଼ା ହୋଇପାରିବି ସେଥିପାଇଁ ମୁଁ ଗର୍ବ ଅନୁଭବ କରୁଛି । କାହା ଉପରେ ମୋର ନିର୍ଭର ନାହିଁ କିମ୍ବା ମୁଁ କାହାର ଆଶ୍ରିତା ନୁହେଁ । ଆଉ ଲୋକେ କ'ଣ କହିବେ ବୋଲି ତମେ ଯାହା ପଚାରିଲ, ସେ ବିଷୟରେ ଚିନ୍ତାକରି ଲାଭ ନାହିଁ । ମୋ ଜୀବନରେ ପୁଣି ଅନ୍ୟ ଲୋକର ପ୍ରଶ୍ନ କ'ଣ ! ଅନ୍ୟ ଲୋକ କିଛି ଦେବେ ନାହିଁ କି ନେବେ ନାହିଁ ।''

ନବଲ ବିଦ୍ୟାର କଥାକୁ ସମର୍ଥନ କରି କହିଲା, ''ବୁଝିଲ ଉଷାରାଣୀ, ଆଉ ଲୋକଙ୍କର ଏ ବିଷୟରେ ଆଲୋଚନା କରିବାକୁ ଏତେ ସମୟ ବା କାହିଁ ? ଯେଉଁମାନେ ବିଦ୍ୟା ବିଷୟରେ କଥା ଉଠାଇବେ ସେମାନେ ନିଶ୍ଚୟ ପୁରୁଣା ଯୁଗର ଲୋକ; କିନ୍ତୁ ସେ ପୁରୁଣା ଯୁଗ ବି ଏବେ ଗଲାଣି । ନୂଆ ଯୁଗର ଲୋକେ ଏ କଥାକୁ ପସନ୍ଦ କରିବେ ଓ ବିଦ୍ୟାକୁ ଆଦର କରିବେ । ସ୍ତ୍ରୀଲୋକର ମଧ୍ୟ ଏକ ସ୍ୱତନ୍ତ୍ର ଅସ୍ତିତ୍ୱ ଅଛି ।''

ନବଲର ଏହି କଥା ଶୁଣି ଉଷା ଇତସ୍ତତଃ ହୋଇଉଠିଲା । କହିଲା, ''ନବଲବାବୁ, ଆପଣ ଠିକ୍ କହୁଛନ୍ତି । ଆପଣଙ୍କର ଏହି ନୂଆ ଦୁନିଆରେ ନାରୀର ଏକ ସ୍ୱତନ୍ତ୍ର ଆସନ ଅଛି । ସ୍ତ୍ରୀ ଘରୁ ବାହାରି ଯାଇ ବାହାରେ ଗୋଲାମୀ କରିବ, ପୁରୁଷଙ୍କ ସଙ୍ଗରେ କାନ୍ଧକୁ କାନ୍ଧ ମିଳାଇ କାମ କରିବ, ଘରର ଓ ବଂଶର ମର୍ଯ୍ୟାଦା ନଷ୍ଟ କରିବ ! ଆପଣଙ୍କର ସେଭଳି ନୂଆ ଦୁନିଆ ଆପଣଙ୍କ ପାଇଁ ଶୁଭଦାୟକ ହେଉ; କିନ୍ତୁ ମୁଁ କହୁଛି ଏହି ଦୁନିଆର ରାସ୍ତା ଠିକ୍ ନୁହେଁ । ଏହା ବେଶୀ ଦିନ ରହିପାରିବ ନାହିଁ । ସ୍ତ୍ରୀ-ପୁରୁଷ, ସବଳ-ଦୁର୍ବଳ, ଧନୀ-ଗରିବ ଇତ୍ୟାଦି ଭେଦଭାବ ଯୁଗ-ଯୁଗ ଧରି ଚାଲିଆସିଛି ଏବଂ ଯୁଗ-ଯୁଗ ଧରି ରହିବ । ଆପଣ ଯେଉଁ ଆଦର୍ଶ କଥା କହୁଛନ୍ତି, ସେସବୁ ଭୁଲ ଆଦର୍ଶ ।''

ନବଲ ଆଶ୍ଚର୍ଯ୍ୟ ହୋଇ ଉଷା ଆଡ଼କୁ ଚାହିଁଲା । ଭାବିଲା ମୁଁ ଯାହାକୁ ଭଲ ପାଏ ଏ କ'ଣ ସେହି ଉଷା ! ଏହି ଉଷାକୁ କ'ଣ ସେ ଜୀବନସାଥୀ କରି ନିଜକୁ ଧନ୍ୟ ମନେ କରିବ ? ଉଷା ଆଜି ଏମିତି କ'ଣ କହୁଛି ? ଏହାର ସମସ୍ତ ଶିକ୍ଷା କ'ଣ ବୃଥା ହୋଇ-

ଯାଇଛ ? ଉଷା ସାରା ୟୁରୋପ ବୁଲି ଆସିଛି, ସ୍ୱତନ୍ତ୍ର ଦେଶ ସବୁ ଦେଖି ଆସିଛି । ସେ ଦେଶକୁ ଯାଇ ଏହାର ଦୃଷ୍ଟିକୋଣ ଆହୁରି ସଙ୍କୁଚିତ ହୋଇଯାଇଛି ! ଉଷାର ଦୃଷ୍ଟିକୋଣକୁ ବଦଳାଇବା ପାଇଁ ନବଲ ଆଉ ଥରେ ଚେଷ୍ଟା କରି କହିଲା, "ତମେ ସବୁ ଇଉରୋପ ଯାଇଥିଲ ? ତମେ ତ ଦେଖିଥିବ ସେଠି ସ୍ତ୍ରୀମାନେ କେମିତି ସ୍ୱାଧୀନ । ତମେ ପୁଣି ଏମିତି କ'ଣ କହୁଛ ?"

ଉଷା ଏକ ବ୍ୟଙ୍ଗଭରା ହସ ହସିଦେଇ କହିଲା, "ହଁ, ମୁଁ ୟୁରୋପ ବୁଲି ଆସିଛି ଏବଂ ସେଠିକା ସ୍ତ୍ରୀଲୋକଙ୍କୁ ମଧ୍ୟ ଦେଖିଛି । ସେଠି କେତେ ସ୍ତ୍ରୀ ଚାକିରି କରନ୍ତି; କିନ୍ତୁ ସେମାନେ ବାଧ୍ୟ ହୋଇ କରନ୍ତି; ଯେମିତି ଆମ ଏଠି ନୀଚ ଜାତିର ସ୍ତ୍ରୀମାନେ କାମ କରନ୍ତି । କିନ୍ତୁ ଯେଉଁମାନେ ଚାକିରି କରିବାକୁ ବାଧ୍ୟ ହୁଅନ୍ତି ନାହିଁ, ସେମାନେ ବଡ଼ ଆରାମରେ ଥା'ନ୍ତି । ଖୁବ୍ ଟଙ୍କା ଧଇସା ଖର୍ଚ୍ଚ କରନ୍ତି, ଚାକରବାକର ରଖନ୍ତି, ବଡ଼ ବଡ଼ ମଟର ଗାଡ଼ି ଓ ବଡ଼ ବଡ଼ ଘର ରଖିଥା'ନ୍ତି । ଥିଏଟର ସିନେମା ସବୁ ଦେଖନ୍ତି । ହୀରା, ମୋତି-ମାଣିକରେ ଲଦି ହୋଇଥାନ୍ତି ଓ ଦାମିକା ପୋଷାକ ମଧ୍ୟ ପିନ୍ଧିଥାନ୍ତି । ସେଠାର ଲୋକେ ସ୍ୱାଧୀନତା ଓ ପରାଧୀନତାର ପ୍ରଶ୍ନ କରନ୍ତି ନାହିଁ । ସେ ତ ପୁଣି ସାନ-ବଡ଼ର ଭେଦ ।" ତା ପରେ ଉଷା ବିଦ୍ୟାକୁ ଚାହିଁ କହିଲା, "କ'ଣ ବିଦ୍ୟାରାଣୀ, ତମେ ଯଦି ନିଜ ଘର ଛାଡ଼ି ନଥାନ୍ତ ତା ହେଲେ ତମେ କ'ଣ ଚାକିରି କରିଥାନ୍ତ ? ଅନ୍ୟ କୌଣସି ଆଶ୍ରା ନ ଥିବାରୁ ତମକୁ ଆଜି ଚାକିରି କରିବାକୁ ପଡ଼ୁଛି ।"

ବିଦ୍ୟା ବିଷୟରେ ଉଷା ଯାହା କହିଲା, ତାହା ଅବଶ୍ୟ ଠିକ୍ । ତଥାପି ବିଦ୍ୟାକୁ ତାହା ଭଲ ଲାଗିଲା ନାହିଁ । ସେ ସେହି କଥାର ପ୍ରତିବାଦ କରି ପାରିବ ନାହିଁ ବୋଲି ଚୁପ୍ ହୋଇ ରହିଗଲା ।

ବିଦ୍ୟାଠାରୁ ଉତ୍ତର ପାଇବା ପାଇଁ ଟିକିଏ ଅପେକ୍ଷା କରି ଉଷା ପୁଣି କହିଲା, "ସ୍ତ୍ରୀ-ସ୍ୱାଧୀନତାର ଅର୍ଥ ନୁହେଁ ଯେ ସେ ଗୋଲାମୀ କରିବା ପାଇଁ ଦୁନିଆସାରା ବୁଲିବ । ସ୍ତ୍ରୀ-ସ୍ୱାଧୀନତାର ପ୍ରକୃତ ଅର୍ଥ ହେଉଛି ସେ ଘରର ଚତୁଃସୀମାରୁ ବାହାରକୁ ଯାଇପାରେ, ଘରର ଜଞ୍ଜାଳରୁ ମୁକ୍ତିଲାଭ କରିପାରେ, ପର୍ଦ୍ଦାରୁ ବାହାରି ପଦାରେ ବୁଲିପାରେ ଓ ସଭା-ସମିତିରେ ଯୋଗଦେଇପାରେ; କିନ୍ତୁ ଏ ପ୍ରକାର ସ୍ୱାଧୀନତା ପାଇଁ ପଇସା ଦରକାର ନବଲ ବାବୁ !"

ଏହି ସମୟରେ ଧୀତାନାଥବାବୁ ଘରୁ ବାହାରି ଆସି ନବଲକୁ ଦେଖି କହିଲେ, "ଆରେ ନବଲ, ତୁମେ ଯେ ! ବହୁତ ଦିନପରେ ଆଜି ଦେଖାଦେଉଛ । ତମେ ତ ଗୋଡ଼ରୁ ମୁଣ୍ଡଯାଏ ଖଦଡ଼ ପିନ୍ଧିଛ, ପୁରା କଂଗ୍ରେସବାଲା ହୋଇଗଲଣି !"

ନବଲ କହିଲା, "ହଁ, ପୋଷାକଦୃଷ୍ଟିରୁ ତ ପୁରା କଂଗ୍ରେସବାଲା ହୋଇଗଲଣି ।

କିନ୍ତୁ ଏ ପର୍ଯ୍ୟନ୍ତ ସକ୍ରିୟ ରାଜନୀତିରେ ମୁଁ ଭାଗ ନେଇନାହିଁ କିମ୍ବା ନେବାପାଇଁ ଇଚ୍ଛା ନାହିଁ ।"

"ହଁ, ସେ ବି ଧନେ ହୋଇଯିବ । ମୁଁ କହୁଛି, ହେଲେ ବି କିଛି କ୍ଷତି ନାହିଁ ।" ତା'ପରେ ସେ ଉଷାକୁ କହିଲେ, "ଗୋସାଇଁଭାଇକୁ କହିଦେବୁ ଜରୁରୀ କାମରେ ମୁଁ କର୍ଣ୍ଣେଲ ରାହାମ୍‌ଙ୍କ ସହିତ ସାକ୍ଷାତ୍ କରିବାକୁ ଯାଉଥିବାରୁ ଗାଡ଼ି ନେଇଯାଉଛି । ମୁଁ ଫେରିବାକୁ ଡେରି ହେଲେ ସେ ଘୋଡ଼ାଗାଡ଼ି ମଗାଇନେବେ ।"

ଉଷା କହିଲା, "ସୀତାଭାଇ, ଆପଣ କାହିଁକି ଘୋଡ଼ାଗାଡ଼ି ନେଇ ଚାଲିଯାଉ ନାହାନ୍ତି ।"

ମୋର ଅନେକ ଜାଗା ଯିବାକୁ ଅଛି । ଘୋଡ଼ାଗାଡ଼ିରେ ଗଲେ ଡେରି ହୋଇ ଯିବ । ଆଚ୍ଛା ହେଉ, ମୁଁ କର୍ଣ୍ଣେଲ ରାହାମଙ୍କ ସଙ୍ଗେ ସାକ୍ଷାତ୍ କରିସାରି ସାଢ଼େ ଛ' ଭିତରେ ଗାଡ଼ି ଫେରାଇ ଦେବି ।" ତା'ପରେ ପୁଣି ସେ ନବଲକୁ କହିଲେ, "ନବଲ ତୁମେ ଯିବ କି ? ମୁଁ ଚୈଥମ ଲାଇନ୍‌ସ ଯାଉଛି । ଯିବ ଯଦି ତମ ଦୁହିଙ୍କୁ ମୁଁ ବାଟରେ ଓହ୍ଲାଇ ଦେବି ।"

ବିଦ୍ୟା ଆଉ କିଛି ସମୟ ରହିବା ପାଇଁ ଚାହୁଁଥିଲା; କିନ୍ତୁ ନବଲ ଉଠି ଛିଡ଼ା ହୋଇ କହିଲା, "ସୀତାନାଥ ଭାଇ, ଯିବା । ଉଠ ବିଦ୍ୟା, ଘରକୁ ଯିବା, ଜ୍ଞାନ ଜେଜେଙ୍କ ଫେରିବା ସମୟ ହୋଇଗଲାଣି ।"

ସୀତାନାଥ ବିଦ୍ୟାକୁ ତାଙ୍କ ଘରଠାରେ ଓହ୍ଲାଇ ଦେଇ ନବଲକୁ କହିଲା, "ଚାଲ ନବଲ ମୋ ସଙ୍ଗରେ ଟିକିଏ ବୁଲି ଆସିବ । ତମ ସଙ୍ଗେ ମୋର ଟିକିଏ କଥା ଅଛି ।"

ନବଲ ଉତ୍ତର ଦେଲା, "ହଉ ଚାଲ, କିନ୍ତୁ ମୋତେ ଶୀଘ୍ର ଫେରିବାକୁ ହେବ ।"

ଚୈଥମ ଲାଇନ୍‌ସରେ ସୀତାନାଥଙ୍କର ମୋଟେ ଦଶ ପନ୍ଦର ମିନିଟର କାମ ଥିଲା । ସେଠାରୁ ଯାଇ ସେମାନେ ସିଭିଲ୍ ଲାଇନରେ ପହଞ୍ଚିଲେ । ଗୋଟାଏ ହୋଟେଲ ସାମ୍ନାରେ ଗାଡ଼ି ରଖିଦେଇ ସୀତାନାଥ ନବଲ ସଙ୍ଗରେ ଓହ୍ଲାଇ ପଡ଼ି ଡ୍ରାଇଭରକୁ କହିଲେ, "ଗାଡ଼ି ନେଇ ଘରକୁ ଚାଲିଯା ।"

ହୋଟେଲରେ ବସି ସୀତାନାଥ ଚା' ମଗାଇଲେ ଓ ପରେ ପରେ ନବଲକୁ ପଚାରିଲେ, "ନବଲ, ତୁମେ ରାଜେନ୍ଦ୍ରକିଶୋରଙ୍କୁ ଦେଖିଛ କି ? ତା' ବିଷୟରେ ତୁମର ମତାମତ କ'ଣ ?"

ନବଲ ଟିକିଏ ଚିନ୍ତା କରି କହିଲା, "ମୁଁ ତାଙ୍କୁ ଭଲକରି ଜାଣେ ନାହିଁ । ମୁଁ ତାଙ୍କୁ କେବଳ ଥରେ ଦୁଇଥର ତମ ଘରଠି ଦେଖିଥିଲି । ତେବେ ବେଶ୍ ଭଲ ଜଣାପଡ଼ନ୍ତି ତ, କାହିଁକି କ'ଣ ହେଲା କି ?"

"ତମେ ଜାଣିଛନା, ସେ ଆଗରୁ ବାହା ହୋଇ ସାରିଛନ୍ତି ?"

ନବଲ ହସିଦେଇ କହିଲା, "ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତାଙ୍କର ବୟସ ବି ତ ଅନେକ ହୋଇଗଲାଣି !"

"ନାହିଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ସେ ବିଲାତ ଯିବା ଆଗରୁ ବାହା ହୋଇ ସାରିଥିଲେ । କଥା ହେଉଛି ଗୌରୀଭାଇ ଉଷାକୁ ତାଙ୍କ ସଙ୍ଗେ ବାହା ଦେବାକୁ ଚାହାନ୍ତି । ମୋର ଧାରଣା ଗୌରୀଭାଇଙ୍କୁ ସେ ନିଜେ ଏ କଥା କହିଛନ୍ତି ।"

ଏ କଥା ଶୁଣି ନବଲକୁ ଆକାଶରୁ ଖସିପଡ଼ିଲା ପରି ଲାଗିଲା । ସେ କହିଲା, "ରାଜେନ୍ଦ୍ର-କିଶୋର ପୁଣି ଦ୍ୱିତୀୟଥର କାହିଁକି ବାହା ହେବା ପାଇଁ ଚାହୁଁଛନ୍ତି ?"

"କାରଣ ତାଙ୍କର ସ୍ତ୍ରୀ ଦେଖିବାକୁ ଅସୁନ୍ଦରୀ, ସେ ପାଠ ପଢ଼ି ନାହିଁ । ସେ ପରଦା ମାନି ଚଳେ ଓ ସେ ମଫସଲର ଗୋଟିଏ ଗରିବ ପରିବାରର ଝିଅ । ଜଣେ ଆଇ. ସି. ଏସ୍. ଅଫିସରଙ୍କର ଖୁବ୍ ସୁନ୍ଦରୀ ଫିଟ୍‌ଫାଟ୍ ଝିଅ ଦରକାର ନା !"

ଦୁହେଁଯାକ କିଛିକାଳ ଚୁପ୍ ରହିବାପରେ ନବଲ କହିଲା, "ଏ ପ୍ରସ୍ତାବରେ ଗୌରୀଭାଇ ନିଶ୍ଚୟ ଭାରି ଖୁସି ହୋଇଥିବେ । କାରଣ ବଡ଼ ଚାକିରୀ, ବଡ଼ ପଦବୀ ପ୍ରତି ତାଙ୍କର ଭାରି ମୋହ ।" ଉଷାର ଏହା ଭିତରେ ଯେଉଁ ପରିବର୍ତ୍ତନ ହୋଇଯାଇଛି ତାହା ନବଲର ଆଖି ଆଗରେ ଭାସିଗଲା । ସେ କହିଲା, "ସୀତାନାଥ ଭାଇ, ତମେ ଉଷାକୁ ରାଜେନ୍ଦ୍ରକିଶୋରଙ୍କ ସଙ୍ଗେ ବାହାଦେଲେ ମୋର କୌଣସି ଆପତ୍ତି ନାହିଁ । ମୁଁ ଯେଉଁ ଅବସ୍ଥାରେ ଅଛି, ସେଥିରେ ଉଷା ସଙ୍ଗେ ବାହା ହେବା କଥା ମୋର ଚିନ୍ତା କରିବା ଉଚିତ ନୁହେଁ ।"

ସୀତାନାଥ କହିଲେ, "କିନ୍ତୁ ମୋର ସେ ବିଷୟରେ ଭାରି ଆପତ୍ତି । ବାପା ଓ ଗୌରୀ ଭାଇଙ୍କ ଛଡ଼ା ସେଠି ବାହା ଦେବାପାଇଁ ଆଉ କାହାର ଇଚ୍ଛା ନାହିଁ ।"

"କିନ୍ତୁ ଉଷା ଏ ବିଷୟରେ କ'ଣ କହୁଛି ?"

"ସେଇଟିକ ତ ଅସୁବିଧା । ସେ କିଛି ନ କହି ଚୁପ୍ ରହିଛି । ଚୁପ୍ ରହିବା ମାନେ ତାର ଇଚ୍ଛା ଅଛି ବୋଲି ବୁଝିବାକୁ ହେବ । ମୁଁ ବର୍ତ୍ତମାନ ଯେଉଁ ଗାଡ଼ି ପଠାଇଲି ତାହା ରାଜେନ୍ଦ୍ରକିଶୋରଙ୍କ ପାଇଁ । ସେ ଆଜି ଆସୁଛନ୍ତି । ଗୌରୀ ଭାଇ ତାଙ୍କୁ ଆଣିବା ପାଇଁ ଷ୍ଟେସନ ଯାଉଛନ୍ତି । ଉଷା ହୁଏତ ତାଙ୍କ ସଙ୍ଗରେ ଯାଇପାରେ ।"

ନବଲର ଆଖିଆଗରେ ସବୁ ଅନ୍ଧାର ଦେଖାଗଲା । ସେ ଛିଡ଼ାହୋଇ କହିଲା, "ସୀତାନାଥ ଭାଇ, ମୋ ଅବସ୍ଥାଟା ତମେ ଯେ ଆଜି ମୋତେ ବୁଝାଇଦେଲ, ସେଥିପାଇଁ ତମକୁ ବହୁତ ଧନ୍ୟବାଦ ।"

ସୀତାନାଥ ନବଲର ହାତ ଧରିପକାଇ କହିଲେ, "ନବଲ, ତୁମେ ବୋଧହୁଏ

ମୋତେ ଭୁଲ୍ ବୁଝୁଛ । ଉଷା ଉପରେ ତମର ଅଧିକାର ଅଛି । ସେ ଅଧିକାର ତମର ଛାଡ଼ିବା ଉଚିତ ନୁହେଁ । ମୁଁ ରାଜେନ୍ଦ୍ରକିଶୋରଙ୍କୁ ପସନ୍ଦ କରୁନାହିଁ । ସେ ଯେତେ ବଡ଼ଲୋକ ହେଉପଛେ, ଗୋଟାଏ ସ୍ତ୍ରୀ ଥାଉ ଥାଉ ଆଉ ଗୋଟାଏ ସ୍ତ୍ରୀ ଯେ ବିଭାହୁଏ, ସେପରି ଲୋକକୁ ମୁଁ ପଶୁତ ବୋଲି ମନେ କରେ ।''

ନବଲ୍ ଉଦାସ କଣ୍ଠରେ ଉତ୍ତର ଦେଲା, ''ସୀତାନାଥ ଭାଇ ! ପ୍ରକୃତରେ କାହାର ଉପରେ କାହାର ଅଧିକାର ନାହିଁ । ଉଷାର ମୋ ଉପରେ ଅଧିକାର ନାହିଁ କିମ୍ବା ମୋର ଉଷା ଉପରେ ଅଧିକାର ନାହିଁ । ମନୁଷ୍ୟର ନିଜ ଉପରେ କେବଳ ଅଧିକାର ଥାଇପାରେ ।''

ସୀତାନାଥଙ୍କ ମୁହଁରେ ଏକପ୍ରକାର ନୈରାଶ୍ୟ ଦେଖାଦେଲା । ସେ କହିଲେ, ''ଯାହା ଦେଖାଯାଉଛି ଆଉ ହେବନାହିଁ । କଥାଟା ଏକପ୍ରକାର ହାତରୁ ବାହାରିଗଲାଣି । ମୁଁ ଜାଣେ, ଏସବୁ ଗୌରୀଭାଇଙ୍କ କାଣ୍ଡ । ପଦମର୍ଯ୍ୟାଦା ଓ ଭୋଗବିଳାସ ପ୍ରତି ତାଙ୍କର ଭାରି ମୋହ । ଅନ୍ୟ ଲୋକର କଷ୍ଟରୁ ଓ ପରିଶ୍ରମରୁ ଲାଭ ଉଠାଇବା ତାଙ୍କର ଇଚ୍ଛା । ମୁଁ ଭାବିଥିଲି, ତମଠାରୁ କିଛି ସାହାଯ୍ୟ ମିଳିବ । ତମେ କିନ୍ତୁ ଏତେ ଆଦର୍ଶବାଦୀ ଯେ କୁତ୍ସିତ ବାସ୍ତବବାଦଠାରୁ ତୁମେ ବହୁତ ଦୂରରେ । ଯାହା ହେଉ, ବାପାଙ୍କ ସଙ୍ଗେ ମୋତେ ଏ ବିଷୟରେ କଥାବାର୍ତ୍ତା କରିବାକୁ ପଡ଼ିବ ।''

ନବଲ ସିଭିଲ୍ ଲାଇନ୍‌ସ୍‌ରୁ ଫେରି ଦେଖିଲା ଜ୍ଞାନପ୍ରକାଶ କଂଗ୍ରେସ କମିଟିରୁ ଫେରି-ଆସି ଡ୍ରଇଁରୁମ୍‌ରେ ବିଶ୍ରାମ କରୁଛନ୍ତି । ଜ୍ୱାଲାପ୍ରସାଦ ଓ ବିଦ୍ୟା ଚଉକିରେ ବସିଛନ୍ତି । ରୁକ୍ମିଣୀ ଦରଜା ପାଖରେ ଠିଆ ହୋଇଛନ୍ତି । ଜ୍ୱାଲାପ୍ରସାଦ କହୁଛନ୍ତି, ''ତୁମେ ଯାହା ଠିକ୍ ଭାବିବ, କିନ୍ତୁ ମୁଁ ଭାବୁଛି ଅଶି ଟଙ୍କାରୁ କମ୍ ହେବ ନାହିଁ । ହଁ, ବିଦ୍ୟାର ଯିବାଆସିବା ପାଇଁ ଗୋଟାଏ ଘୋଡ଼ାଗାଡ଼ି ରଖିବାକୁ ହେବ; ନଚେତ୍ ତାର ଅସୁବିଧା ହେବ ।''

''କେଜେ, ଆମର ଘୋଡ଼ାଗାଡ଼ି କ'ଣ ଦରକାର । ନବଲ ଭାଇ ମାସକୁ ଦଶ ଟଙ୍କାରେ ଗୋଟାଏ ଭଡ଼ା ଘୋଡ଼ାଗାଡ଼ି ଠିକ୍ କରିଦେବେ । ସେ ମୋତେ ସକାଳେ ନେଇ ଯାଇ ସନ୍ଧ୍ୟାବେଳେ ନେଇ ଆସିବ । କ'ଣ କହୁଛନ୍ତି ଜ୍ଞାନ କେଜେ ?''

''ହଁ, ସେଇଆ ଠିକ୍ । ପୁରୁଣା ମଟରଟା ତ ବିକ୍ରୀ ହୋଇଗଲା । ମୁଁ ଭାବୁଛି ଗୋଟାଏ ନୂଆ ଗାଡ଼ି କିଣିବି । ହେଲେ ମୋ କଥାରେ କ'ଣ ଠିକଣା ଅଛି ? ଆନ୍ଦୋଳନ ଆରମ୍ଭ ହେଉଛି, ଜେଲ ଯିବା ଲୋକଙ୍କ ଭିତରେ ମୋ ନାଁ ସବା ଆଗରେ ଅଛି ।''

ଏହି ସମୟରେ ନବଲ ଆସି ପହଞ୍ଚିଲା । ତାର ଚେହେରା ସମ୍ପୂର୍ଣ୍ଣ ମଳିନ ପଡ଼ିଥିଲା । ତାକୁ ଦେଖି ବିଦ୍ୟା ପଚାରିଲା, ''ଭାଇ, କ'ଣ ହୋଇଛି କି ? ତମ ଦେହ ଭଲ ନାହିଁ କି ?''

ନବଲ ଚଉକି ଉପରେ ବସିପଡ଼ି ଆଖି ବନ୍ଦ କରିଦେଇ କହିଲା, "ନାହିଁ ଦେହ ଭଲ ଅଛି, ପାଣି ଗ୍ଲାସେ ମୋତେ ଦେ ।"

ପାଣି ପିଇ ନବଲକୁ ଟିକିଏ ଭଲ ଲାଗିଲା । ଜ୍ଞାନପ୍ରକାଶ ପଚାରିଲେ, "କ'ଣ ହୋଇଛି କି ?"

ନବଲ ଟିକିଏ ଶୁଖିଲା ହସ ହସିଦେଇ କହିଲା, "ନାହିଁ, କିଛି ନାହିଁ ଜ୍ଞାନ କେକେ ! ଅଳ୍ପ ସମୟ ପୂର୍ବରୁ ଗୋଟାଏ ଖରାପ ସ୍ୱପ୍ନ ଦେଖିଲି, ସେଥିରେ ମନଟା ଟିକିଏ ଖରାପ ଲାଗିଲା । କିନ୍ତୁ ସ୍ୱପ୍ନ ଆସିଲା ଯେମିତି, ଗଲା ସେମିତି । ବର୍ତ୍ତମାନ ଆଉ କିଛି ଅସୁବିଧା ନାହିଁ ।"

ଜ୍ୱାଲାପ୍ରସାଦ ପଚାରିଲେ, "ଏହି ଦିନରେ ଚେଇଁ ଥାଉ ଥାଉ କେମିତି ସ୍ୱପ୍ନ ଦେଖିଲୁ ?"

ନବଲ କଥାକୁ ଟାଳିଦେଇ କହିଲା, "ସେମିତି ଅଙ୍କାରେ କହୁଥିଲି ।" ତାପରେ ସେ ଜ୍ଞାନପ୍ରକାଶଙ୍କୁ ଚାହିଁ ପଚାରିଲା, "ଜ୍ଞାନ କେକେ, ଗାନ୍ଧିଙ୍କର ସେହି ଚିଠି ପରେ ପରିସ୍ଥିତି ପୁଣି କେମିତି ଅଛି ?"

"ପରିସ୍ଥିତି ସେମିତି କିଛି ଜଣାପଡ଼ୁ ନାହିଁ । ତେବେ ଗାନ୍ଧିଙ୍କ ଚିଠିର କୌଣସି ପ୍ରଭାବ ପଡ଼ିନାହିଁ । ସତ୍ୟାଗ୍ରହ ନିଶ୍ଚୟ ହେବ । କେତେକ ଜଣାଶୁଣା ସତ୍ୟାଗ୍ରହୀ ଆସି ସାବରମତୀରେ ପହଞ୍ଚିଲେଣି । ମାର୍ଚ୍ଚ ବାର ତାରିଖକୁ ସେମାନେ ଲବଣ ସତ୍ୟାଗ୍ରହ ପାଇଁ ଦାଣ୍ଡୀ ଅଭିମୁଖରେ ଚାଲିଯିବେ । ସାବରମତୀରୁ ଦାଣ୍ଡୀ ଦୁଇଶହ ମାଇଲ ରାସ୍ତା ସେମାନେ ଚାଲି ଚାଲି ଯିବେ ।"

ଏତେବେଳକୁ ନବଲର ମନ ଭିତରର ସମସ୍ତ ଆନ୍ଦୋଳନ ଶେଷ ହୋଇଯାଇଥିଲା । ସେ ପଚାରିଲା, "ଆପଣଙ୍କର ପରା ମହାତ୍ମା ଗାନ୍ଧିଙ୍କ ସତ୍ୟାଗ୍ରହରେ ଯିବାର ଥିଲା ?"

"ହଁ, ମୁଁ ତାଙ୍କୁ ଚିଠି ଲେଖିଥିଲି; ମାତ୍ର ସେ ମନା କରିଦେଲେ । ମୋର ମନେ ହେଉଛି, ଅପ୍ରେଲ ପାଞ୍ଚ ତାରିଖରେ ସେ ଲବଣ ଆଇନ ଭାଙ୍ଗିବେ ଓ ସେହି ଦିନ ସାରା ଭାରତର ବିଭିନ୍ନ ସ୍ଥାନରେ ଲବଣ ଆଇନ ଅମାନ୍ୟ କରାଯିବ । ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି, ଆମ୍ଭେମାନେ ନିଜ ନିଜ ଜାଗାରେ ସତ୍ୟାଗ୍ରହ କରିବୁ ।"

ସମସ୍ତେ କିଛି ସମୟ ଚୁପ୍ ରହିବାପରେ ଜ୍ୱାଲାପ୍ରସାଦ ପଚାରିଲେ, "ଜ୍ଞାନୁ, ତୁ ବି କ'ଣ ସତ୍ୟାଗ୍ରହ କରିବୁ ?"

"ହଁ ଭାଇ, ଆଲ୍ଲାହାବାଦରେ ପ୍ରଥମ ଦିନ ସତ୍ୟାଗ୍ରହରେ ମୋ ନାଁ ଅଛି । ଏଥର ତ ଲଢ଼େଇ ଆରମ୍ଭ ହେଉଛି ଜାଣ ।"

ଜ୍ୱାଲାପ୍ରସାଦ ପଚାରିଲେ, "ସ୍ତା ପରେ ପୁଣି କ'ଣ ହେବ ?"

ଜ୍ଞାନପ୍ରକାଶ ହସିଦେଇ କହିଲେ, "ସ୍ୱୀ ପରେ ସବୁ ଲୋକ ଆଇନ ଅମାନ୍ୟ କରିବା ପାଇଁ ବାହାରି ପଡ଼ିବେ । ଅନ୍ୟାୟର ବିରୋଧ କରିବା ଆମର ଧର୍ମ; କିନ୍ତୁ ଏହି ବିରୋଧ ଅହିଂସ ହେବା ଦରକାର । ଆମର ଏହି ଲଢ଼େଇ ସମ୍ପୂର୍ଣ୍ଣ ନୂତନ ଧରଣର ଲଢ଼େଇ ।"

ଖାଇସାରିବା ପରେ ବିଦ୍ୟା ନବଲକୁ ପଚାରିଲା, "ଭାଇ ସତ କହ, ସୀତାନାଥଙ୍କ ସଙ୍ଗରେ ତମର କ'ଣ କଥାବାର୍ତ୍ତା ହୋଇଥିଲା ? ତୁମେ କାହିଁକି ଏତେ ଉଦ୍‌ବିଗ୍ନ ହୋଇ ଫେରିଥିଲ ?"

ନବଲ କରୁଣ କଣ୍ଠରେ କହିଲା, "ଜୀବନରେ ଆଉ ଏକ ଧକ୍‌କା ଲାଗିଛି, ଆଉ ଏକ ହତାଶା ଆସି ଦେଖାଦେଇଛି । ଉଷା ଏବେ ମୋ' ପାଖରୁ ଦୂରେଇ ଯାଇଛି ।"

ବିଦ୍ୟା କହିଲା, "ଭାଇ, ତମେ ଭୁଲ୍ କହୁଛ । ସେ ତମ ପାଖରୁ ଦୂରେଇ ଯାଇ-ନାହିଁ ଯେ ତମେ ତା' ପାଖରୁ ଦୂରେଇ ଯାଇଛ । ଏଥିରେ ତମେ ହାରିନାହିଁ, ବରଂ ଜିତିଛ ।"

ନବଲ ପାଗଳପରି ହସି ହସି କହିଲା, "ହାରିବା ଜିତିବାର ଅର୍ଥ କ'ଣ ବିଦ୍ୟା କିଏ ଜାଣେ ? ମୁଁ ତ କେବଳ ଏତିକି ଜାଣିଛି ଯେ ମୁଁ ହଜିଛି, ଭାଙ୍ଗିପଡ଼ୁଛି ।"

ବିଦ୍ୟା କଠୋର ଦୃଷ୍ଟିରେ ନବଲକୁ ଚାହିଁ କହିଲା, "ଭାଇ, ତମେ ଭାଙ୍ଗି କରି ମଧ୍ୟ ଗଢ଼ାହେଉଛ, ହଜି କରି ମଧ୍ୟ ନିଜକୁ ଖୋଜି ପାଉଛ । ଏଥିରେ ପୁଣି ଏତେ ଭୟ, ଏତେ ଅବିଶ୍ୱାସ କାହିଁକି ? ଧୈର୍ଯ୍ୟ ଧରି ନିଜକୁ ଦୃଢ଼ ରଖ ।"

ନବଲ ତାର ସାନ ଭଉଣୀକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲା ଓ ତାର ହାତ ଧରି କାନ୍ଦି-ପକାଇ କହିଲା, "ବିଦ୍ୟା, ତୁ ଠିକ୍ କହୁଛୁ । ଯାହା ଅସତ୍ୟ ତାହା ନଷ୍ଟ ହୋଇଯାଇଛି; କିନ୍ତୁ ପ୍ରକୃତ ସତ୍ୟ କ'ଣ ତାହା ଖୋଜିବାକୁ ପଡ଼ିବ ।"

## ଆଠ

ଜ୍ୱାଲାପ୍ରସାଦ ନିଜକୁ ନିଜେ ପଚାରିଲେ, "ଦୁନିଆ ଆସି କେଉଁଠି ହେଲାଣି, ଆଉ କେତେ ବାଟ ଆଗକୁ ଯିବ ?" ଏହି କଥା ଭାବିଲା ବେଳକୁ ଆଖି ତାଙ୍କର ଛଳ ଛଳ ହୋଇ ଉଠୁଥିଲା ଓ କଣ୍ଠ ଅଟକିଯାଉଥିଲା । ରୁକ୍ମଣୀ ମୁହଁକୁ ତଳକୁ କରି ଛିଡ଼ା ହୋଇଥିଲେ । ଜ୍ୱାଲାପ୍ରସାଦ ତାଙ୍କୁ କହିଲେ. "କ'ଣ ମୋ କଥା ଶୁଣୁଛ କି ! ମୋତେ ସେ ଉଲ୍ଲୁ ମୂର୍ଖ

ବୋଲି ମନେ କରୁଛ । ତା'ର ବୁଦ୍ଧି ବଢ଼ିଗଲାଣି, ନା ମୋର ବୁଦ୍ଧି କମିଗଲାଣି, ମୁଁ କିଛି ବୁଝିପାରୁନ ।"

ରୁକ୍ମଣୀ କହିଲେ, "ନବଲ ପରୀକ୍ଷା ଦେଇଥିଲେ ଭଲ ହୋଇଥା'ନ୍ତା । ଆପଣ ତାକୁ ଟିକିଏ ବୁଝାଇ ଦିଅନ୍ତୁ, ଗାଳି ବି ଦିଅନ୍ତୁ ।"

ଜ୍ୱାଳାପ୍ରସାଦ ହତାଶ ହୋଇ କହିଲେ, "କାହାକୁ ଗାଳିଦେବି ? କାହାକୁ ଭଲମନ୍ଦ ବୁଝାଇବି ? ଯେ ମନ୍ଦ କାର୍ଯ୍ୟ କରେ ଲୋକେ ସିନା ତାକୁ ଗାଳି ଦିଅନ୍ତି; କିନ୍ତୁ ସେ ତ ମନ୍ଦ କାମ କରୁନାହିଁ । ଆଜି ସାନ କିଏ, ବଡ଼ କିଏ, ଭଲ କିଏ, ମନ୍ଦ କିଏ କହିବା ସମ୍ଭବ ନୁହେଁ । ତମେ ନିଜେ ଭାବିଲେ ଜାଣିପାରିବ, ଆଗେ ଲୋକେ ଜେଲ୍ ନାଁ ଶୁଣିଲେ ଡରୁଥିଲେ । ଏବେ କିନ୍ତୁ ଜେଲ୍‌କୁ କୃଷ୍ଣ ମନ୍ଦିର ମନେକରି ବହୁତ ବଡ଼ ବଡ଼ ଲୋକ ଜେଲ୍ ଯାଉଛନ୍ତି । ନାହିଁ ବୋହୂ, ମୁଁ ତାକୁ ଭଲ ମନ୍ଦ ବୁଝାଇ ବୁଝାଇ ହାରି ଗଲିଣି ।"

ରୁକ୍ମଣୀ ଆଖିରୁ ଲୁହ ପୋଛୁ ପୋଛୁ କହିଲେ, "ବାପା, ଏସବୁ କ'ଣ ହେଉଛି ? ଆପଣ କୌଣସି ନା କୌଣସି ଉପାୟ ବାହାର କରନ୍ତୁ ।"

ଜ୍ୱାଳାପ୍ରସାଦ ରୁକ୍ମଣୀକୁ କୌଣସି ଉତ୍ତର ନ ଦେଇ ଚୁପ୍ ରହିଲେ; କାରଣ ସେହି ପ୍ରଶ୍ନ ପାଇଁ ତାଙ୍କର ଉତ୍ତର ନଥିଲା । 'ଏସବୁ କ'ଣ ହେଉଛି ।' ଏହି ପ୍ରଶ୍ନ ଜ୍ୱାଳାପ୍ରସାଦଙ୍କ ନିକଟରେ କିଛି ନୂଆ ନଥିଲା । ଜୀବନସାରା ଏହି ପ୍ରଶ୍ନ ତାଙ୍କ ଆଖିଆଗରେ ଥିଲା ଏବଂ ସେଥିପାଇଁ ସେ କୌଣସି ଜବାବ୍ ଦେଇ ପାରିନଥିଲେ । ବାସ୍ତବରେ କୌଣସି ଜିନିଷରେ କାହାର କିଛି ଅଧିକାର ନାହିଁ । କେହି କିଛି କରେ ନାହିଁ ବା କରିପାରେ ନାହିଁ । ସବୁ କଥା ଆପେ ଆପେ ହୋଇଯାଏ ।

ରୁକ୍ମଣୀ ବିଚାରି କିଛି ନ କହି ଜ୍ୱାଳାପ୍ରସାଦଙ୍କ ଉତ୍ତରକୁ ଅପେକ୍ଷା କରି ଛିଡ଼ା ହୋଇଥାନ୍ତି । ନିରୀହ, ନିରାଶ୍ରୟ, ଦୁର୍ବଳ ନାରୀ; ତାଙ୍କର ଆଖି ଆଗରେ ତାଙ୍କର ସବୁ ଲୁଟି ହୋଇ ଯାଉଥିବାର ଦେଖି ବିକଳରେ ଆଶ୍ରା ଖୋଜୁଥା'ନ୍ତି । ସେ ପୁଣି କାନ୍ଦ କାନ୍ଦ ହୋଇ କହିଲେ, "ବାପା ତାକୁ କୌଣସିମତେ ଛାଡ଼ନ୍ତୁ ନାହିଁ । ସେ ଜେଲରେ କିମିତି ରହିବ ? ଜେଲ୍‌ରେ ପରା ଘଣା ପେଲିବାକୁ ଓ ଚୂଲା ଭଣିବାକୁ ପଡ଼େ !"

ଜ୍ୱାଳାପ୍ରସାଦ ଏକ ଦୀର୍ଘଶ୍ୱାସ ପକାଇ କହିଲେ, "ବୋହୂ, ମୁଁ ଘଣା ପେଲିବା କିମ୍ବା ଚୂଲା ଭଣିବା କଥା ଭାବୁନାହିଁ । କିନ୍ତୁ......କିନ୍ତୁ ଜେଲ୍ ଯିବା କଥାଟା ମୋତେ କିମିତି ଭାରି ଅଡ଼ୁଆ ଲାଗୁଛି । କିନ୍ତୁ ଏସବୁ କଥାପାଇଁ ଜାନୁ ଦାୟୀ ।" ଜ୍ୱାଳାପ୍ରସାଦ ପୁଣି କଠୋର କଣ୍ଠରେ କହିଲେ, "ନିଜେ ତ ଭୁଲ୍ ରାସ୍ତାରେ ଯାଇ ନିଜ ଜୀବନକୁ ନଷ୍ଟ କଲା; ଏବେ ପୁଣି ଯୁବକମାନଙ୍କର ଜୀବନ ନଷ୍ଟ କରୁଛି ।"

"ବାପା, ସେ କଥା କାହିଁକି କହୁଛନ୍ତି ? ମନୁଷ୍ୟର ଏଥିରେ ଦୋଷ କ'ଣ ? ଏ ତ ସବୁ ଭଗବାନଙ୍କର କ୍ରୋଧର ଫଳ । ସତେ ଯିମିତ ଭଗବାନ ଆମକୁ ମାଟିରେ ମିଶାଇ ଦେବାପାଇଁ ବଦ୍ଧପରିକର ହୋଇଛନ୍ତି ।" ଏତକ କହି ରୁକ୍ମଣୀ ଲୁହ ପୋଛି ପୋଛି ଚାଲିଗଲେ ।

ନବଲ ଡ୍ରଇଂରୁମ୍‌ରେ ବସି ଜ୍ଞାନପ୍ରକାଶଙ୍କ ସଙ୍ଗରେ କଥାବାର୍ତ୍ତା କରୁଥିଲେ ଓ ବିଦ୍ୟା ସେଇଠି ଛିଡ଼ା ହୋଇଥିଲା । ଜ୍ଞାନପ୍ରକାଶ କହୁଥିଲେ, "ଦେଖ ନବଲ, ମୁଁ ପ୍ରଥମ ଦଳରେ ମୋ ନାଁ ଲେଖାଇଛି; ତୁ ଦ୍ୱିତୀୟ ଦଳରେ ରହିବୁ ।"

ନବଲ ହସି ହସି କହିଲା, "ନାହିଁ ଜ୍ଞାନ ଜେଜେ, ମୁଁ ପ୍ରଥମ ଦଳରେ ଯିବି । ଆପଣଙ୍କୁ ତ ବର୍ତ୍ତମାନ ଏହି ଆନ୍ଦୋଳନକୁ ସଙ୍ଗଠିତ କରିବା ପାଇଁ ଯେମିତି ହେଲେ ଗୋଟିଏ ସପ୍ତାହ ବାହାରେ ରହିବାକୁ ହେବ । କ'ଣ କହୁଛୁ ବିଦ୍ୟା ?"

ବିଦ୍ୟା ନବଲକୁ ସମର୍ଥନ କରି କହିଲା, "ହଁ ଜେଜେ, ଭାଇଙ୍କର ପ୍ରଥମ ଦଳରେ ଯିବା ଉଚିତ ।"

ଜ୍ଞାନପ୍ରକାଶ ହସି ହସି ପଚାରିଲେ, "ଆଉ ବିଦ୍ୟା ! ତୁ କ'ଣ ଲୁଣ ମାରିବାକୁ ଯିବୁନାହିଁ ?"

"ନାହିଁ ଜେଜେ, ମୋତେ ଏ ଜଞ୍ଜାଳରୁ ଦୂରରେ ରଖ । ଜେଲ ଯିବା, ଆନ୍ଦୋଳନ କରିବା ପୁରୁଷଙ୍କ କାମ ।" ପୁଣି ଟିକିଏ ରହିଯାଇ ବିଦ୍ୟା କହିଲା, "ହଁ, ଦରକାର ପଡ଼ିଲେ ମୁଁ ବାହାରକୁ ନ ଯିବି ବୋଲି କିଏ କହିପାରିବ ?"

"ନାହିଁ ବିଦ୍ୟା, ତୋତେ ବାହାରକୁ ଯିବାକୁ ପଡ଼ିବ ନାହିଁ । ମୁଁ ତୋତେ ଥଟ୍ଟାରେ ସିମିତି କହୁଥିଲି ।"

ଏହି ସମୟରେ ଜ୍ୱାଲାପ୍ରସାଦ ଡ୍ରଇଂରୁମ୍‌କୁ ଆସି ବଡ଼ ଗମ୍ଭୀର ଭାବରେ ଛିଡ଼ା ହୋଇଗଲେ । ତାଙ୍କୁ ଦେଖି ସବୁ କଥାବାର୍ତ୍ତା ବନ୍ଦ ହୋଇଗଲା । ସେ ତିନିଜଣଯାକଙ୍କୁ କଟମଟ କରି ଚାହିଁ, ଶେଷରେ ନବଲକୁ କହିଲେ, "ନବଲ, ମୁଁ ଶୁଣୁଛି ପଅରଦିନ ଯେଉଁମାନେ ଲୁଣ ମାରିବାକୁ ଯିବେ ସେମାନଙ୍କ ଭିତରେ କୁଆଡ଼େ ତୋ ନାଁ ଅଛି ? ତାହେଲେ ତୁ କ'ଣ ଲେଖାପଢ଼ା ଛାଡ଼ି ଜେଲଯିବା ପାଇଁ ସ୍ଥିର କରିଛୁ ?"

"ହଁ ଜେଜେ, ମୁଁ ଜୀବନରେ କ'ଣ କରିବି, ସେହି କଥା ବହୁତ ଦିନୁ ଭାବୁଛି । ମୋର ମନେହେଉଛି ମୋ ହାତରେ ଓକିଲାତି ଭଲ ହେବ ନାହିଁ । ଓକିଲାତି ପାଇଁ ମିଛ କହିବା, ଖୋସାମତି କରିବା ନିତାନ୍ତ ଦରକାର; କିନ୍ତୁ ମୋ ହାତରେ ସେସବୁ ହୋଇ ପାରିବ ନାହିଁ । ଓକିଲାତିଠାରୁ ଦୂରରେ ରହିବା ମୋ ପକ୍ଷରେ ଭଲ । ମୁଁ ଯଦି ଓକିଲାତି କରିବି ନାହିଁ, ପରୀକ୍ଷା ଦେଇ ଲାଭ କ'ଣ ?"

ଜ୍ୱାଲାପ୍ରସାଦ କହିଲେ, "ତା ହେଲେ ତୋର ଏଇ ଦୁଇ ବର୍ଷ ବେକାର ଗଲା ?"

"ନାହିଁ ଜେଜେ, ବେକାର ଯିବି କାହିଁକି ? ଏଇ ଦୁଇବର୍ଷରେ ବହୁତ ଦେଖିଛି, ବହୁତ ଶିଖିଛି ଓ ବହୁତ କଥା ବୁଝିଛି । ଆପଣ ତ ଦେଖୁଥିବେ କେତେଲୋକ ପାଠପଢ଼ି ବେକାର ବୁଲୁଛନ୍ତି—ସେମାନଙ୍କୁ ଖାଇବାକୁ ବି ମୁଠାଏ ମିଳୁନାହିଁ । ହଜାର ହଜାର ଲୋକ ବି. ଏ., ଏମ୍. ଏ. ପାଶ୍ କରି ଚାକିରି ପାଇଁ ବୁଲୁଛନ୍ତି; କିନ୍ତୁ ଚାକିରି ମିଳୁନାହିଁ । ମୁଁ ତ ଅନ୍ତତଃ ସେଥିରୁ ରକ୍ଷା ପାଇଯାଇଛି । କ'ଣ ଜ୍ଞାନ ଜେଜେ ! ମୁଁ ଯାହା କହୁଛି ଠିକ୍ ନା ଭୁଲ ?"

ଜ୍ୱାଳାପ୍ରସାଦ ଟିକିଏ ବିରକ୍ତ ହେଲାପରି କହିଲେ, "ଜ୍ଞାନୁ କ'ଣ ତୋ କଥାରେ ଆଉ ହଁ ନକରିବ ? ସେ ତ ବାହା ହୋଇନାହିଁ କି ଜୀବନରେ କିଛି କାମ କରିନାହିଁ । ତୁ ବି ତାରି ଶିକ୍ଷାରେ ପଡ଼ିଛୁ ।"

ଜ୍ଞାନପ୍ରକାଶ ଓଲଟିପଡ଼ି କହିଲେ, "ଭାଇ, ଆଉ ବାହାଘର ହୋଇ କିଏ କ'ଣ କରି ପକାଇଛି କି ? ମୁଁ ତ ଅନ୍ତତଃ ଡରଭୟ ଓ ଚିନ୍ତାରୁ ରକ୍ଷା ପାଇଛି । ଆଉ ଶିକ୍ଷାରେ ପଡ଼ିବା କଥା ଯାହା କହୁଛ, କିଏ କାହା ଶିକ୍ଷାରେ ପଡ଼ିବ କ'ଣ ? ସମସ୍ତେ ନିଜର ଇଚ୍ଛାର ପ୍ରେରଣାରେ କାମ କରନ୍ତି ।"

ବିଦ୍ୟା କହିଲା, "ହଁ ଜେଜେ, ଜ୍ଞାନ ଜେଜେ ଠିକ୍ କହୁଛନ୍ତି । ଗୀତାରେ ବି ସେଇ କଥା ଲେଖା ଅଛି ।"

ଜ୍ୱାଳାପ୍ରସାଦଙ୍କର ମନେହେଲା ସତେ ଯିମିତି ସାରା ଦୁନିଆ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛି । ତାଙ୍କ କଥା ଶୁଣିବା ପାଇଁ କେହି ପ୍ରସ୍ତୁତ ନୁହଁନ୍ତି । ସେ ଘରୁ ବାହାରି ଆସି ବାରଣ୍ଡାରେ ଚୁପ୍‌ଚାପ୍ ପରାସ୍ତ ହେଲାପରି ଠିଆ ହୋଇ ରହିଲେ । ଖରା ଆହୁରି ବାକି ଥିଲା । ଗରମ ପବନ ବି ଟିକେ ଟିକେ ବହୁଥିଲା । ଭିକ୍ଷୁ ଟ୍ରେରେ ଚା' ଆଣି ଡ୍ରଇଂରୁମ୍‌ରେ ପହଞ୍ଚିଲା ଓ ସେହି ଘର ଭିତରୁ କହିଲା, "ଭାଇ, ଚା' ପିଇଦେଇ ବୁଲିବାକୁ ଯିବ । ମୁଁ ସେଇଠିକି ନେଇ ଯାଉଛି । ତମର ଭିତରକୁ ଆସିବା ଦରକାର ନାହିଁ ।"

ଜ୍ୱାଳାପ୍ରସାଦ ଭିକ୍ଷୁକୁ କୌଣସି ଉତ୍ତର ନ ଦେଇ ମୁଣ୍ଡରେ ହାତଦେଇ ଚୁପ୍‌ଚାପ୍ ଭାବୁଥିଲେ, 'ଏ ଦୁନିଆରେ ଏ ସବୁ କ'ଣ ଚାଲିଛି ? କିଛି ତ ବୁଝି ହେଉନାହିଁ । ସବୁଆଡ଼େ ଖାଲି ଖାପଛଡ଼ା ଲାଗୁଛି ।' ଅତୀତର ସବୁ କଥା ଖୁବ୍ ଅସ୍ପଷ୍ଟ ଭାବରେ ଗୋଟି ଗୋଟି ତାଙ୍କର ମନେପଡ଼ିଗଲା । ଶିବଲାଲ, ଗଙ୍ଗାପ୍ରସାଦ, ଯମୁନା ଜଣକ ପରେ ଜଣେ ଚାଲିଗଲେ । ଆଜି ମନେ ହେଉଛି ସତେ ଯେମିତି ସେମାନେ କେବେ ନଥିଲେ । ସେ ବି ନିଜେ ଦିନେ ସିମିତି ଚାଲିଯିବେ । ତାଙ୍କର କୌଣସି ସତ୍ତା ରହିବ ନାହିଁ । ହଁ, ମନୁଷ୍ୟର ସତ୍ତା—ସେ ପୁଣି ଏକ ମାୟା, ଛଳନା, ଏକପ୍ରକାର ଭ୍ରମ ।

ଜ୍ୱାଳାପ୍ରସାଦଙ୍କ ଚିନ୍ତାଧାରା ଚହଲିଗଲା । ଭିକ୍ଷୁ ତାଙ୍କ ଆଗରେ ଚା' କପ୍ ଥୋଇଦେଇ

କହିଲା, "ନିଅ ଭାଇ, ଚା' ପିଅ, କ'ଣ ଭାବୁଛ ?" ତାପରେ ଭିକ୍ଷୁ ତାଙ୍କ ହାତରେ ଚା ପିଆଲା ଧରେଇଦେଇ ତଳେ ଚଟାଣ ଉପରେ ବସିଗଲା ।

ଜ୍ୱାଲାପ୍ରସାଦ ଚାହିଁ ଦେଖିଲେ, ଭିକ୍ଷୁ ଗ୍ଲାସରେ ଚା' ଢାଳି ନିଜେ ପିଉଛି ଓ ଚୁପ୍‌ଚାପ୍ ବଗିଚା ଆଡ଼କୁ ଚାହିଁ ମନେ ମନେ କ'ଣ ଭାବୁଛି । ଜ୍ୱାଲାଙ୍କର ମନେହେଲା ଏ ସଂସାରରେ ଭିକ୍ଷୁ ଏକା ତାଙ୍କର ନିକଟତମ ଆତ୍ମୀୟ ଲୋକ । ସେ ଭିକ୍ଷୁକୁ କହିଲେ, "ଶୁଣିଛୁ ନା, ନବଲ ପଅରଦିନ ଲୁଣ ମାରିବାକୁ ଯାଉଛି ।"

"ହଁ ଭାଇ ଶୁଣିଛି; ହେଲେ ଆମ ପୁଅଟା ଏତେ ମାଠଶାଠ ପଢ଼ି କାହିଁକି ଲୁଣ ମାରିବାକୁ ଯାଉଛି ବୁଝିପାରୁ ନାହିଁ । ଲୁଣ ତ ଲୁଣବାଲ ତିଆରି କରୁଛନ୍ତି । ଯେଉଁଦିନୁ ବିଲାତି ଲୁଣ ଆସିଲାଣି ସେଦିନୁ ତ ଲୁଣ ବ୍ୟବସାୟ ଗଲାଣି । ଲୋକେ ଭୋକରେ ମରୁଛନ୍ତି । ନବଲ ଏବେ ଅଫିସର କାମ ଛାଡ଼ି ଲୁଣ ମାରିବାକୁ ଯାଉଛି, ତମେ ତାକୁ ମନା କରୁନାହଁ କାହିଁକି ?"

ଜ୍ୱାଲାପ୍ରସାଦ କହିଲେ, "ଆରେ ତୁ ବୁଝିନାହୁଁ, ସେ କଣ ଲୁଣ ବ୍ୟବସାୟ କରିବା ପାଇଁ ଯାଉଛି ? ସେ ଜେଲ ଯିବାପାଇଁ ଲୁଣ ଆଇନ ଭାଙ୍ଗିବାକୁ ଯାଉଛି ।"

ଭିକ୍ଷୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ନବଲ ତାହେଲେ ଜେଲ ଯିବ ? ଅରେ ବାପରେ, ଏ ପାଗଳାମି ପୁଣି ତା ମୁଣ୍ଡରେ କେମିତି ଢୁକିଲା ! ତମେ ତାକୁ ମନା କରୁନାହଁ କାହିଁକି ?"

"କ'ଣ କହିବି ଭିକ୍ଷୁ, ସେ କ'ଣ ମୋ କଥା ଶୁଣୁଛି ? ଜାନୁ ବି ତ ଜେଲ ଯିବାପାଇଁ ସଜ ହୋଇ ବସିଛି ।"

ଭିକ୍ଷୁ ଏକ ଦୀର୍ଘଶ୍ୱାସ ପକାଇ କହିଲା, "ତାଙ୍କର ବୁଦ୍ଧି ବି ଏମିତି ଭ୍ରମ ହୋଇଗଲା ! କ'ଣ ହେଲା ସତେ ! ଭଗବାନ ଆମ ପୁଅକୁ ନେଇଗଲେ, ନୋହିଲେ ସେ ଥିଲେ କ'ଣ ନବଲକୁ ଜେଲ ଯିବାକୁ ଛାଡ଼ିଥାନ୍ତା ? ଏହି କଥା କହୁ କହୁ ଭିକ୍ଷୁ କାନ୍ଦିପକାଇଲା ।

ଗଙ୍ଗାପ୍ରସାଦଙ୍କ କଥା ପଡ଼ିଲେ ଭିକ୍ଷୁ ବରାବର କାନ୍ଦେ । ଜ୍ୱାଲାପ୍ରସାଦ କହିଲେ, "ବୁଝିଲୁ ଭିକ୍ଷୁ, ଦୁନିଆରେ କେହି କିଛି କରେ ନାହିଁ ବା କେହି କାହାକୁ ବନ୍ଦ କରି ପାରେନାହିଁ ।" ସତେ ଯିମିତି ଜ୍ୱାଲାପ୍ରସାଦ ନିଜର ମାନସିକ ସଂଘର୍ଷରେ ବ୍ୟସ୍ତହୋଇ ଉଠି ଛିଡ଼ା ହୋଇ ପଡ଼ିଲେ ।

ଭିକ୍ଷୁ ମଧ୍ୟ ଛିଡ଼ା ହୋଇ ପଡ଼ିଲା ଓ ଏକ ଦୀର୍ଘଶ୍ୱାସ ପକାଇ କହିଲା, "ହଁ ଭାଇ, ଠିକ୍ କହୁଛ । ଆମ ପୁଅ ଯେତେବେଳେ ନିଜର ମୃତ୍ୟୁକୁ ନିଜେ ଅଟକାଇ ପାରିଲା ନାହିଁ, ସେ ଅନ୍ୟ ଲୋକଙ୍କୁ ଅଟକାଇ ଥା'ନ୍ତା କେମିତି ?" ଏତିକି କହି ଭିକ୍ଷୁ ମନକଷ୍ଟରେ ଘର ଭିତରକୁ ଚାଲିଗଲା ।

ଜ୍ୱାଲପ୍ରସାଦ ଉଦାସ ମନରେ ବୁଲିବାପାଇଁ ବାହାରିଗଲେ । ମନ ତାଙ୍କର ଖୁବ୍ ଅସ୍ଥିର ହୋଇ ପଡ଼ିଥିଲା ଓ ମନ ଥକିଯିବାରୁ ପାଦ ମଧ୍ୟ ଆପେ ଥକିପଡ଼ିଥିଲା । ଆଜି ସେ ତ୍ରିବେଣୀ ଆଡ଼କୁ ନଯାଇ କଟରା ଆଡ଼କୁ ଗଲେ; ଦେଖିଲେ, ଆନନ୍ଦଭବନ ସମ୍ମୁଖରେ ହଜାର ହଜାର ଲୋକ ଠୁଳହୋଇ 'ଭାରତ-ମାତା କି ଜୟ', 'ମହାତ୍ମା ଗାନ୍ଧି କି ଜୟ', 'ମୋତିଲାଲ କି ଜୟ', 'ଜବାହରଲାଲ ନେହେରୁ କି ଜୟ' ଧ୍ୱନି କରୁଛନ୍ତି । ଗାନ୍ଧି ତାଙ୍କର ସାଥୀମାନଙ୍କ ସହିତ ଦାଣ୍ଡିରେ ପହଞ୍ଚି ସାରିଲେଣି ବୋଲି ସେଦିନ ଖବର କାଗଜରେ ବାହାରି ସାରିଥିଲା । ସେମାନେ ପରଦିନ ଲୁଣ ମାରି ସତ୍ୟାଗ୍ରହ କରିବେ ଓ ସାରା ଦେଶରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଯିବ ।

ସେହି ସତ୍ୟାଗ୍ରହ ଆଲହାବାଦରେ ଆରମ୍ଭ ହେବ ଓ ପ୍ରଥମ ଦିନ ସତ୍ୟାଗ୍ରହରେ ନବଲ ଅଂଶଗ୍ରହଣ କରିବ । ପ୍ରଥମ ଦିନର ସତ୍ୟାଗ୍ରହୀମାନଙ୍କୁ ଗିରଫଦାର କରାଯିବ । ଦିନ ପରେ ଦିନ ଏହିପରି ଗିରଫଦାରି ଚାଲିବ । ତାହେଲେ ଏହି ଆନ୍ଦୋଳନ କ'ଣ ୧୯୨୦-୨୧ ପରି ହେବ; କିନ୍ତୁ ସେହି ଆନ୍ଦୋଳନକୁ କେଡ଼େ ସହଜରେ ଦବାଇ ଦିଆଯାଇଥିଲା । ଏହି ଆନ୍ଦୋଳନକୁ ମଧ୍ୟ ସେହିପରି ଭାବରେ ଦବାଇ ଦିଆଯିବ । ସେଥିପାଇଁ ବ୍ରିଟିଶ୍ ସରକାର ଅଂଶ୍ୱସ୍ତ ହୋଇ ବସିଛନ୍ତି । ଅଫିସରମାନଙ୍କ ଭିତରେ କୌଣସି ଆବେଗ କିମ୍ବା ଉତ୍ତେଜନା ନାହିଁ । ଯେଉଁ ହଜାର ହଜାର ଲୋକ ସତ୍ୟାଗ୍ରହ ଦେଖିବା ପାଇଁ ଗାଁ ଗହଳରୁ ଆସିଥିଲେ, ସେହିମାନଙ୍କ ଉପରେ ଜ୍ୱାଲପ୍ରସାଦଙ୍କ ନଜର ପଡ଼ିଲା । ସେମାନେ ମଧ୍ୟ ଖୁବ୍ ଜୋର୍‌ରେ ଜୟଧ୍ୱନି କରୁଥିଲେ । ସେମାନେ ଯେ ଖାଲି କୌତୂହଳରେ ସେପରି କରୁଥିଲେ ତାହା ନୁହେଁ । ସେମାନେ ଉତ୍ସାହ ଓ ଉଦ୍ଦୀପନା ଭିତରେ କାମ କରିବାପାଇଁ ମଧ୍ୟ ପ୍ରସ୍ତୁତ ଥିଲେ ।

ହଠାତ୍ ଜ୍ୱାଲପ୍ରସାଦଙ୍କ ଚିନ୍ତାଧାରା ବଦଳିଗଲା । ତାଙ୍କୁ ଲାଗିଲା, ସ୍ୱାଧୀନତାର ଡାକ ଭାରତର ଗାଁ ଗହଳରେ ମଧ୍ୟ ପହଞ୍ଚିଯାଇଛି । ଗାଁ ଗହଳର କୋଟି କୋଟି ଲୋକ ନିଶ୍ଚୟ ଏହି ଆନ୍ଦୋଳନରେ ଯୋଗଦେବେ । ତାହାହେଲେ ତ ଏହି ଆନ୍ଦୋଳନକୁ ଦବାଇବା ଏଡ଼େ ସହଜ ହେବନାହିଁ । ହୁଏତ ଏହି ଆନ୍ଦୋଳନକୁ ଦବାଇବା ପାଇଁ ସୈନ୍ୟମାନଙ୍କର ସହାୟତା ନେବାକୁ ପଡ଼ିବ । ତାହେଲେ ସୈନ୍ୟମାନଙ୍କର ଗୁଳିଗୁଳା, ଓ ମେସିନ୍‌ଗନ୍ ଆଗରେ ଏହି ଆନ୍ଦୋଳନ କିପରି ଚାଲିବ ?

ଜ୍ୱାଲପ୍ରସାଦ ଆଉ ଆଗକୁ ନଯାଇ ସେଇଠୁ ଘରକୁ ଫେରିଗଲେ ଓ ଘରେ ପହଞ୍ଚି ଦେଖିଲେ ଜ୍ଞାନପ୍ରକାଶ ଘରଭିତରେ ବସି କ'ଣ ଲେଖୁଛନ୍ତି—କିନ୍ତୁ ନବଲର କୌଣସି ପତ୍ତା ନାହିଁ । ତେଣୁ ସେ ବିଦ୍ୟାକୁ ପଚାରିଲେ, "ନବଲ କୁଆଡ଼େ ଗଲା ?"

"ଏଇ ଅଳ୍ପସମୟ ହେଲା ସେ ବାହାରକୁ ଯାଇଛନ୍ତି । ବୋଧହୁଏ ରାୟବାହାଦୁରଙ୍କ

ଘରକୁ ଯାଇଥିବେ । ସେଇଆଡ଼େ ଯିବେ ବୋଲି କହୁଥିଲେ ।"

ଏ କଥା ଶୁଣି ଜ୍ୱାଳାପ୍ରସାଦଙ୍କ ହତାଶା ଅନ୍ଧକାରରେ ଆଶାର ଏକ ଆଲୋକ ରେଖା ଦେଖାଦେଲା । ସେ ଭାବିଲେ, ନବଲକୁ ଯଦି କେହି ବନ୍ଦୀକରିପାରେ ତାହେଲେ ଉଷା ପ୍ରତି ତା'ର ମନର ଯେଉଁ ମୋହ ସେଇ କେବଳ ବନ୍ଧ କରିପାରିବ । ପ୍ରକୃତରେ କ'ଣ ସେଥିରେ ସେ ଅଟକି ରହିଯିବ ?

ଆଉ ଦୁଇଦିନ ପରେ ନବଲ ଏହି ଆନ୍ଦୋଳନରେ ଝାସଦେବ । ଆନ୍ଦୋଳନର କେତେକ କଥା ତାକୁ ସ୍ପଷ୍ଟ ଦେଖା ଯାଉଥିଲା; କିନ୍ତୁ ଆଉ କେତେକ କଥା ସେ ଆଦୌ କଳ୍ପନା କରି ପାରୁନଥିଲା । ମାତ୍ର ଏହି ଆନ୍ଦୋଳନରେ ଝାସଦେବା ପୂର୍ବରୁ ସେ ଉଷାକୁ ଥରେ ଦେଖି ନେବାକୁ ଚାହୁଁଥିଲା । ଉଷା ତାଠାରୁ ଦୂରେଇଗଲାଣି ଜାଣି ମଧ୍ୟ ସେ ଉଷା ନିକଟରେ ଯାଇ ପହଞ୍ଚିଲା ।

ଉଷା ଘରେ ଗୌରୀନାଥ ଓ ସୀତାନାଥଙ୍କ ଭିତରେ ଏକପ୍ରକାର ଟଣାଓଟରା ଚାଲିଥିଲା; କିନ୍ତୁ ରାୟବାହାଦୁର କାମତାନାଥ କେତେବେଳେ ଏ ପାଖ, କେତେବେଳେ ସେ ପାଖରେ ରହୁଥିଲେ । ଉଷା ବଡ଼ ଭାଇଙ୍କ ପକ୍ଷରେ ଥିବାରୁ ରାୟବାହାଦୁର କାମତାନାଥ ଅଧିକାଂଶ ସମୟ ସେହି ପକ୍ଷରେ ରହୁଥିଲେ ।

ନବଲ ରାୟବାହାଦୁରଙ୍କ ଘରେ ପହଞ୍ଚିଲାବେଳକୁ ସେ ତାଙ୍କ ବୈଠକ ଘରେ ଚୁପ୍‌ଚାପ୍ ଚିନ୍ତିତ ହୋଇ ବସିଥିଲେ । ସେଦିନ ଦ୍ୱିପ୍ରହରେ ତାଙ୍କ ପୁଅ ଦୁହିଙ୍କ ଭିତରେ ଖୁବ୍ କଡ଼ାକଡ଼ି କଥାବାର୍ତ୍ତା ହୋଇ ଯାଇଥିଲା । ନବଲକୁ ଦେଖି ସେ କହିଲେ, "ଆସ ନବଲ, ବହୁତ ଦିନପରେ ଆଜି ଦେଖାହେଲା । ଆଉ ପଢ଼ାପଢ଼ି କିମିତି ଚାଲିଛି ?"

"ହଁ ଖୁବ୍ ଭଲ ଚାଲିଛି ।"

ରାୟବାହାଦୁର କହିଲେ, "ଏଲ୍.ଏଲ୍. ବି. ପରୀକ୍ଷା ଦେଇ ମୁନ୍‌ସିଫ୍ ପରୀକ୍ଷାଟା ଦିଅ । ହାଇକୋର୍ଟ ଚିଫ୍ ଜଷ୍ଟିସ୍‌ଙ୍କ ସଙ୍ଗରେ ମୋର ଭଲ ପରିଚୟ ଅଛି । ତମର ଚାକିରୀ ହୋଇଯିବ ।"

"ଆଜ୍ଞା ହଁ, ଆପଣ ତ ସବୁ କିଛି କରିପାରିବେ; କିନ୍ତୁ ମୋର ମୁନ୍‌ସିଫ୍ ପରୀକ୍ଷା ଦେବାକୁ ଆଦୌ ଇଚ୍ଛା ନାହିଁ ।"

ରାୟବାହାଦୁର କାମତାନାଥ ବିଗିଡ଼ିଯାଇ କହିଲେ, "ଗୌରୀ ଠିକ୍ କହୁଛି । ତମେ ଗୋଟିଏ ନିତାନ୍ତ ଜିଦ୍‌ଖୋର ଲୋକ । ତାହେଲେ ଆଉ କ'ଣ ଓକିଲାତି କରିବ ? ଓକିଲାତି ବ୍ୟବସାୟ ବଡ଼ ଖରାପ । ଗୌରୀନାଥ ସେଥିରେ ପଶି ବଡ଼ ହଇରାଣ ହୋଇଗଲାଣି ।"

ନବଲ ହସିଦେଇ କହିଲା, "ବାପା, ମୁଁ କ'ଣ କରିବ ମୁଁ ନିଜେ ବି ଜାଣେନାହିଁ ।

ମଣିଷ ତ କିଛି କରେ ନାହିଁ । ଯାହା ହେବାର ଥାଏ, ତାହା ଆପେ ଆପେ ହୋଇଯାଏ । କିଏ ଜାଣେ ହୁଏତ ଏହାଠାରୁ ଆହୁରି ଭଲକାମ ବି ମୁଁ କରିପାରେ ।’’

କାମତାନାଥ ଖୁବ୍ ଜୋର୍‌ରେ ହସିଦେଇ କହିଲେ, ‘‘ତା’ହେଲେ ତ ତମେ ଜଣେ ଦାର୍ଶନିକ ହୋଇଗଲଣି ।’’ ତାପରେ ସେ ଉଷାକୁ ଡାକି କହିଲେ, ‘‘ଉଷା, ଦେଖ, ନବଲବାବୁ ଆସିଛନ୍ତି ।’’

ଉଷା ବୋଧହୁଏ ସେତିକିବେଳେ ଡ୍ରଇଂରୁମ୍ ଆଡ଼କୁ ଆସୁଥିଲା । ସେ ଘର ଭିତରେ ପଶିଲାମାତ୍ରେ କହିଲା, ‘‘ଆରେ ଆପଣ ନବଲବାବୁ ! ବହୁତ ଦିନପରେ ଆସିଲେ । ଚାଲନ୍ତୁ ଯିବା, ବାହାରେ ବସିବା । ଏଠି ଭାରି ଗରମ ହେଉଛି । କ’ଣ କହୁଛନ୍ତି ବାପା ?’’

କାମତାନାଥ କହିଲେ, ‘‘ହଁ, ମୁଁ ତ ଏଇଠି ବସିଛି । ତମେ ଯାଇ ସେଇଠି ବସ । ମୋ ସଙ୍ଗରେ ଦେଖାକରିବା ପାଇଁ କେତେ ଲୋକ ବର୍ତ୍ତମାନ ଆସିବେ ।’’

ଉଷା ନବଲକୁ ସଙ୍ଗରେ ନେଇ ବାରଣ୍ଡା ଉପରକୁ ଚାଲିଯାଇ କହିଲା, ‘‘ବସନ୍ତୁ, ଆଜିକାଲି ତ ଖୁବ୍ ପଢ଼ାପଢ଼ି ଚାଲିଥିବ ।’’

ନବଲ ବସୁ ବସୁ କହିଲା, ‘‘ହଁ ଚାଲିଛି—ଚାଲି ନାହିଁ ବି । ଆଜି ପଢ଼ିବାରେ ମନ ଲାଗିଲା ନାହିଁ । ଭାବିଲି ତମ ଆଡ଼େ ଟିକିଏ ବୁଲି ଆସିବି । କେମିତି ଅଛ ? ତମର ପାଠପଢ଼ା କେମିତି ଚାଲିଛି ?’’

‘‘ହଁ ସେମିତି ବେଶୀ ନାହିଁ । ଅସଲ କଥା ହେଉଛି, ମୋର ଆଉ ପଢ଼ିବାରେ ଇଚ୍ଛା ନାହିଁ ।’’ ତା ପରେ ଟିକିଏ ଚୁପ୍ ରହି ସେ ପଚାରିଲା, ‘‘ଶୁଣୁଛି ଆପଣ ଆଜିକାଲି ବେଶୀ ସମୟ କଂଗ୍ରେସ ଅଫିସ୍‌ରେ ରହୁଛନ୍ତି ।’’

ଉଷାର ଏକଥା ଶୁଣି ନବଲକୁ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ଭାବିଲା ଉଷାକୁ ତା’ର ସମସ୍ତ ଗତିବିଧି ଜଣାଅଛି । ତା’ର ଅର୍ଥ ହେଉଛି ରାୟବାହାଦୁର କାମତାନାଥଙ୍କ ଘରେ ଏବେ ମଧ୍ୟ ତା ପ୍ରତି ମମତା ରହିଛି । ତାହାପରେ ସେ କହିଲା, ‘‘ହଁ ତମେ ଯାହା ସବୁ ଶୁଣିଛ, ତାହା ଠିକ୍ । ତମକୁ ଏକଥା କିଏ କହିଲା ?’’

ଉଷା ଉତ୍ତର ଦେଲା, ‘‘ଗୌରୀ ଭାଇ କହୁଥିଲେ । ତାଙ୍କର ଧାରଣା ଆପଣ ଜଣେ କଂଗ୍ରେସ ନେତା ହେବାକୁ ଯାଉଛନ୍ତି ।’’

ନବଲ ଟିକିଏ କୌତୂହଳ ଦେଖାଇ ପଚାରିଲା, ‘‘କଂଗ୍ରେସ ନେତା ହେବା କ’ଣ ଖରାପ ?’’

‘‘ସେ କଥା ମୋତେ ଜଣାନାହିଁ; କିନ୍ତୁ ମୁଁ ଶୁଣିଛି କଂଗ୍ରେସ ନେତା ହେଲେ ଲୋକଙ୍କୁ ଜେଲ୍ ଯିବାକୁ ପଡ଼େ ।’’

ଉଷାର ଆଖିରେ ଆଖି ମିଳାଇ ନବଳ କହିଲା, "ଉଷା, ତମେ ଜାଣ, ମୁଁ କାହିଁକି ଏତେବେଳେ ଆସିଛି ?"

"ହଁ, ମୋ ସଙ୍ଗରେ ସାକ୍ଷାତ୍ କରିବା ପାଇଁ ଆସିଛନ୍ତି । ହୁଏତ କିଛି କହିବା ପାଇଁ ଆସିଛନ୍ତି । ଏଇଯା ନା ଆଉ କ'ଣ ?"

"ହଁ ଦେଖାହେବାକୁ ଆସିଛି । କଥା କହିବାକୁ ଆସିଛି । ଉଷା, ପ୍ରକୃତରେ ମୁଁ ତମକୁ ମୁକ୍ତି ଦେବାକୁ ଆସିଛି ।"

ନବଳର ଏହି କଥା ଶୁଣି ଉଷା ବିଗିଡ଼ିଯାଇ କହିଲା, "ଆପଣ ତ ମୋତେ କିଛି ନ କହି ଆଗରୁ ମୁକ୍ତି ଦେଇ ସାରିଛନ୍ତି । ଏବେ ଆଉ କ'ଣ ? ବର୍ତ୍ତମାନ ସେ କଥା ଉଠାଇବାର ଆଉ କୌଣସି ଆବଶ୍ୟକତା ନାହିଁ । ସତ କହିବାକୁ ଗଲେ ମୁଁ ମୁକ୍ତ ହୋଇ ସାରିଛି ।"

ଉଷା ଯାହା କହିଲା, ସବୁ ସତ । ହେଲେ ଉଷା ମୁହଁରୁ ଏମିତି କଥାଟା ଶୁଣିବାକୁ ନବଳକୁ ଭଲ ଲାଗିଲା ନାହିଁ । ସେ କହିଲା, "ହଁ ଉଷା, ମୁଁ ଜାଣେ ତମେ ମୁକ୍ତ ହୋଇ ସାରିଛ; କିନ୍ତୁ ଏହି ମୁକ୍ତିପରେ ତୁମେ ଯଦି ଆଉ କୌଣସି ଜାଗାରେ ବାନ୍ଧିହୁଅ, ତେବେ ସେ ବନ୍ଧନ ଅତି ଭୟଙ୍କର ଓ ବିଭତ୍ସ ହେବ ।"

ଉଷା କଠୋର କଣ୍ଠରେ କହିଲା, "ଏ ବିଷୟରେ ଆପଣଙ୍କର ମତାମତ କିଏ ଚାହୁଁଛି ? ଆପଣ ବା ଏ ବିଷୟରେ ମତାମତ ଦେବାକୁ କିଏସେ ?"

ନବଳ ହସିଦେଇ କହିଲା, "ହଁ, ମୋର ମତାମତ କେହି ମାଗୁନାହିଁ ସତ୍ୟ; କିନ୍ତୁ ମୋର ବିଶ୍ୱାସ ଏ ବିଷୟରେ ମତାମତ ଦେବାର ଅଧିକାର ମୋର ଏବେ ମଧ୍ୟ ଅଛି ଓ ସବୁଦିନେ ରହିବ । କାରଣ ତମ ସଙ୍ଗରେ ମୋର ଆତ୍ମୀୟତା ବରାବର ରହିଛି । ନିଜ ଲୋକ ଭୁଲ ରାସ୍ତାରେ ଗଲେ ମନରେ କଷ୍ଟ ହୁଏ । ତମେ ତ ନିଶ୍ଚୟ ଜାଣ ଯେ ରାଜେନ୍ଦ୍ର କିଶୋର ଆଗରୁ ବିବାହ ହୋଇ ସାରିଛି ।"

ଏ କଥା ଶୁଣି ଉଷା ଚିଡ଼ିଉଠି କହିଲା, "ଏ ବିଷୟରେ ମୁଁ କାହା ସଙ୍ଗରେ କଥାବାର୍ତ୍ତା ହେବାକୁ ଚାହେଁନାହିଁ । ଏସବୁ ମୋର ବ୍ୟକ୍ତିଗତ କଥା ।"

ନବଳ ଉଠି ଛିଡ଼ାହୋଇ କହିଲା, "ଆମେମାନେ ଚିରକାଳପାଇଁ ଅଲଗା ହୋଇ-ଗଲେ ମଧ୍ୟ ମୁଁ ଯେ ତମକୁ ଏମିତି କହିଲି, ସେଥିପାଇଁ ମୁଁ ଖୁବ ଦୁଃଖିତ । ମୁଁ ତମକୁ କ'ଣ କହିବାକୁ ଆସି କ'ଣ କହିଯାଉଛି—ତାହା ନିଜେ ବି ଜାଣିପାରୁ ନାହିଁ ।"

ଉଷା ବ୍ୟଙ୍ଗଭରା ତୀବ୍ରସ୍ୱରରେ କହିଲା, "ଆପଣ ତ ମୋତେ ମୁକ୍ତି ଦେବାକୁ ଆସିଥିଲେ । ସେହି ମୁକ୍ତି ତ ଦେଇସାରିଛନ୍ତି । ଯା ଛଡ଼ା ଆଉ କିଛି କହିବାକୁ ଅଛି କି ?"

"ହଁ, ପଅରଦିନ ମୁଁ ଲବଣ ସତ୍ୟାଗ୍ରହ କରିବାକୁ ଯାଉଛି । ସେଦିନ ପ୍ରାୟ ଦୁଇପ୍ରହର

ବେଳକୁ ମୁଁ ଜେଲ ଚାଲି ଯାଇଥିବି । ଜେଲ ଯିବା ପୂର୍ବରୁ ତମକୁ ଥରେ ଦେଖି ଓ ମୋର ସମସ୍ତ ଶୁଭ କାମନା ଦେଇ ଯିବାପାଇଁ ଆସିଥିଲି; କିନ୍ତୁ ଏଠାକୁ ଆସି ମୋର ଅନ୍ତରରେ ଯେଉଁ ଢକ୍ରତା ଥିଲା, ତାହାକୁ ପ୍ରକାଶ କରି ମୁଁ ଅସୁବିଧାରେ ପଡ଼ିଯାଇଛି । ସେଥିପାଇଁ ମୋତେ କ୍ଷମା କର ।" ଏତିକି କହି ନବଲ ଚାଲିଯିବାପାଇଁ ବୁଲିପଡ଼ିଲା ।

ଊଷା ଦୌଡ଼ିଯାଇ ନବଲର ହାତ ଧରି ପକାଇ କହିଲା, "କ'ଣ କହିଲେ ? ଆପଣ ଜେଲ ଯିବେ ?" ସେ ନବଲକୁ ଟାଣିଆଣି ଚୌକିରେ ବସାଇଦେଇ କହିଲା, "ନାହିଁ, ଆପଣ ତାହା କରନ୍ତୁ ନାହିଁ । ଜେଲ୍ ଯା'ନ୍ତୁ ନାହିଁ—ମୋର ଏତିକି ଅନୁରୋଧ ରକ୍ଷା କରନ୍ତୁ ।"

"ନାହିଁ ଊଷାରାଣୀ, ମୁଁ ଏ ବିଷୟରେ ଆଗେଇ ଯାଇଛି । ଆଉ ପଛକୁ ଫେରିବା ସମ୍ଭବ ନୁହେଁ । ସେଥିପାଇଁ ମୁଁ ସମସ୍ତ ବ୍ୟବସ୍ଥା କରି ସାରିଛି ।"

"ଆପଣ ମୋତେ ଭୁଲ ବୁଝିଛନ୍ତି । ରାଜେନ୍ଦ୍ର କିଶୋରଙ୍କ ପ୍ରତି ମୋର କୌଣସି ସ୍ନେହ ନାହିଁ ବା ମୋହ ନାହିଁ । ଆପଣ ଜେଲ୍ ଯା'ନ୍ତୁ ନାହିଁ । ଏଲ୍.ଏଲ୍. ବି. ପାସ୍ କରନ୍ତୁ । ମୁଁ ରାଜେନ୍ଦ୍ର କିଶୋରଙ୍କୁ ବିବାହ ହେବି ନାହିଁ ବୋଲି ବାପାଙ୍କୁ ଆଜି କହି ଦେଉଛି । କହନ୍ତୁ, ଆପଣ ଚୁପ୍ ରହିଲେ କାହିଁକି ?"

"ଏସବୁ ବୃଥା କଥା ଊଷା, ମୁଁ ଜୀବନରେ ନିରାଶ ହୋଇ ଜେଲ ଯାଉନାହିଁ । ଜୀବନରେ ଯେଉଁ ପନ୍ଥା ସ୍ଥିର କରିନେଇଛି ଏହାହିଁ ତାହାର ଫଳ । ମୁଁ ବାଛିନେଇଛି ସଂଘର୍ଷ, ଖାଲି ସଂଘର୍ଷ, ଜୀବନସାରା ସଂଘର୍ଷ । ଏହି ସଂଘର୍ଷ ହିଁ ମୋର ଅନ୍ତରର ଆହ୍ୱାନ ଊଷା ! ଏହି ସଂଘର୍ଷରେ ତୁମେ କେବେ ମୋର ସାଥୀ ହୋଇ ପାରିବ ନାହିଁ । ସେଥିପାଇଁ ମୁଁ ଆସିଲାମାତ୍ରେ ତୁମକୁ ମୁକ୍ତି ଦେଇ ଦେଇଥିଲି ।"

ନବଲର କଥା ଶୁଣି ଊଷା ଏକ ଧକ୍କା ଖାଇଲାପରି ଅନୁଭବ କଲା । କହିଲା, "ତାହେଲେ ଆପଣ ମୋ କାରଣରୁ ଜେଲ ଯାଉନାହାନ୍ତି ?"

ନବଲ କହିଲା, "ମୋଟେ ନୁହେଁ । ମୁଁ ନିଜ କାରଣରୁ ଜେଲ ଯାଉଛି । ମୁଁ ନିଜ ଅନ୍ତରର ପ୍ରେରଣାରେ କାର୍ଯ୍ୟକରଣ କରୁଛି ।"

ଊଷା ନିଜ ଉପରେ ନିଜେ ବିରକ୍ତ ହୋଇ ଉଠିଲା । ମନେ ମନେ ଯାହାକୁ ସେ ନିଜର ଗୌରବ ଓ ନିଜର ବିଜୟ ବୋଲି ମନେ କରିଥିଲା, ସେ ସମସ୍ତ ଏବେ ଚୂର୍ଣ୍ଣ ହୋଇଗଲା । ସେ କହିଲା, "ଏବେ ମୁଁ ବୁଝିଲି । ଆପଣ ମୋତେ ପରିହାସ କରିବାପାଇଁ ଆସିଥିଲେ । ମୋ ନିକଟରେ ନିଜର ମହତ୍ତ୍ୱ ଦେଖାଇ ମୋତେ ଅପମାନିତ କରିବାକୁ ଆସିଥିଲେ ।"

ନବଲ ପୁଣି ଛିଡ଼ାହୋଇ କହିଲା, "ନାହିଁ ଊଷା, ମୁଁ ତୁମକୁ ମୋର ସମସ୍ତ

ଶୁଭକାମନା ଦେଇ ତୁମଠାରୁ ବିଦାୟ ନେବାକୁ ଆସିଥିଲି । ହୁଏତ ଆମ୍ଭମାନଙ୍କର ଆଉ କେବେ ଦେଖାହେବ ନାହିଁ ।”

ଉଷା ବିଗିଡ଼ିଯାଇ କହିଲା, “ଆପଣଙ୍କର ସେ ଶୁଭକାମନା ଆପଣ ରଖନ୍ତୁ । ମୋର ସେଗୁଡ଼ାକ ଦରକାର ନାହିଁ । ଜେଲ ଯାଆନ୍ତୁ ଓ ସେଠି କଷ୍ଟ ଭୋଗନ୍ତୁ । ମୋ ବିଷୟରେ ଆପଣଙ୍କର କିଛି ଚିନ୍ତା କରିବା ଦରକାର ନାହିଁ । ମୋତେ ସବୁ ମିଳିଛି ଓ ସବୁକାଳେ ମିଳୁଥିବ । ଆପଣ ଯାହା କରୁଛନ୍ତି ଆପଣ ଯଦି ତାକୁ ଠିକ୍ ମନେକରୁଛନ୍ତି, ମୁଁ ଯାହା କରୁଛି ମୁଁ ବି ତାକୁ ଠିକ୍ ମନେକରୁଛି । ହଉ ଯାଆନ୍ତୁ । ମୁଁ ଆପଣଙ୍କୁ ଘୃଣା କରେ । ଆପଣ ଏଠାରୁ ଚାଲିଯା'ନ୍ତୁ ।”

ଏତିକ କହି ଉଷା କାନ୍ଦି କାନ୍ଦି ଭିତରକୁ ଚାଲିଗଲା ।

ନବଲ କିଛି ସମୟ ଚୁପ୍‌ଚାପ୍ ଛିଡ଼ାହୋଇ ରହିଲା । ତା'ର ଅନ୍ତରରେ ଭାବନାର ଏକ ଘୋର ତୋଫାନ ଉଠିଲା । ସେ ପୁଣି ପ୍ରକୃତିସ୍ଥ ହୋଇ ଦେଖିଲା, କାମତାନାଥ ତା ଆଗରେ ଛିଡ଼ାହୋଇ ପଚାରୁଛନ୍ତି, “କ'ଣ ନବଲ, କ'ଣ ହେଲା ? ତମେ ପଅରଦିନ ଜେଲ ଯାଉଛ ?”

“ହଁ ମୁଁ ପଅରଦିନ ଜେଲ ଯାଉଛି ।” ଏତିକ କହି ନବଲ ସେଠାରୁ ଚାଲିଗଲା ।

ନବଲ ସେଠାରୁ ଚାଲି ଚାଲି ଘରକୁ ଗଲା । ସୁନ୍ଦର ରାତି, ଚାରିଆଡ଼େ ସ୍ନିଗ୍ଧ ଶୀତଳ ଜହ୍ନ ଆଲୁଅ ବିଛୁଡ଼ି ହୋଇ ପଡ଼ିଥିଲା । ବାତାବରଣ କବିତାମୟ ଜଣାପଡ଼ୁଥିଲା । ତା' ପ୍ରାଣର ସମସ୍ତ ଉତ୍ତେଜନା ନଷ୍ଟ ହୋଇ ସେ ଏବେ ଅସୀମ ଶାନ୍ତି ଓ ଶିଥିଳତା ଅନୁଭବ କରୁଥିଲା । ଘରେ ତାକୁ ବିଦ୍ୟା ଅପେକ୍ଷା କରି ବସିଥିଲା । ବିଦ୍ୟା ପଚାରିଲା, “କ'ଣ ସାକ୍ଷାତ୍ କରି ଚାଲିଆସିଲ ?”

“ହଁ ବିଦ୍ୟା, ସାକ୍ଷାତ୍ କରି ଚାଲିଆସିଲି ଓ ଯାହାସବୁ ଥିଲା ତାକୁ ଭଙ୍ଗାରୁଜା କରିଦେଇ ଆସିଲି । ଯେଉଁ ନୂତନ ପଥ ମୁଁ ନିର୍ମାଣ କରିବାକୁ ଯାଉଛି ସେଥିପାଇଁ ମୋତେ ବହୁତ ମୂଲ୍ୟ ଦେବାକୁ ହେଉଛି । ଅତୀତରେ ଯାହାସବୁ ଥିଲା, ତାକୁ ନିର୍ଦ୍ଦୟ ଭାବରେ ଭାଙ୍ଗିବାକୁ ପଡ଼ୁଛି ।”

ବିଦ୍ୟା ହସି ହସି କହିଲା, “ନାହିଁ ଭାଇ, ଅତୀତ ତ ଆପେ ଆପେ ଭାଙ୍ଗିଯାଉଛି, ତାକୁ ରକ୍ଷା କରିବାକୁ ହେଲେ ତମକୁ ନିଜକୁ ନଷ୍ଟ କରିବାକୁ ହେବ । ତେଣୁ ସେ ବିଷୟରେ ଆଉ ଚିନ୍ତା କରି ଲାଭ କ'ଣ ? ଆଚ୍ଛା ଚାଲ, ଆଗେ ଖାଇଦିଅ ।”

ସେଦିନର ରାତି ଥିଲା ନବଲର ସ୍ୱପ୍ନର ରାତି । ଭଲ ମନ୍ଦ ବହୁ ସ୍ୱପ୍ନ ତା' ମନରେ ଥିଲା । ତହିଁ ଆରଦିନ ସକାଳୁ ସେ ଉଠିଲାବେଳକୁ ଡେରି ହୋଇଯାଇଥିଲା । ନ'ଟା

ବେଳେ କଂଗ୍ରେସର ଏକ ସାଧାରଣ ସଭା ହେବାର ଥିଲା । ସେଠାରେ ସତ୍ୟାଗ୍ରହର ଉଦ୍ଦେଶ୍ୟ ଓ ସ୍ୱରୂପ ବୁଝାଇବା ପାଇଁ ସେହି ସଭା ହେଉଥିଲା । ସେଠାକୁ ଯିବାପାଇଁ ଜ୍ଞାନପ୍ରକାଶ ଆଗରୁ ପ୍ରସ୍ତୁତ ହୋଇସାରିଥିଲେ । ତେଣୁ ନବଲ ଖୁବ୍ ଶୀଘ୍ର କାମଦାମ ସାରି ତାଙ୍କ ସହିତ ଯିବାପାଇଁ ବାହାରିପଡ଼ିଲା ।

ସେ ଦୁହେଁ ସଭାସ୍ଥଳରେ ପହଞ୍ଚିଲାବେଳେ ସେଠାରେ ଥିବା ଲୋକମାନେ ଜୟଧ୍ୱନି କରି ସେମାନଙ୍କୁ ସ୍ୱାଗତ କଲେ । ସତ୍ୟାଗ୍ରହ କରିବା ଲୋକେ ଯେଉଁ ମଞ୍ଚ ଉପରେ ବସିଥିଲେ ନବଲ ଯାଇ ସେହି ମଞ୍ଚ ଉପରେ ବସିଲା । ହଜାର ହଜାର ଲୋକ ଦେଶର ସ୍ୱାର୍ଥଲାଗି ଆତ୍ମବଳି ଦେବାପାଇଁ ବସିଥିବା ଏହି ଲୋକମାନଙ୍କୁ ଚାହିଁ ରହିଥିଲେ ।

ନବଲ ନିଜ ପ୍ରାଣରେ ଏକ ନୂତନ ଉତ୍ସାହ ଧୀରେ ଧୀରେ ଜାଗ୍ରତ ହେଉଥିବାର ଅନୁଭବ କଲା । ମଞ୍ଚ ଉପରେ ଚଢ଼ିଲାବେଳେ ତା' ପ୍ରାଣରେ ଯେଉଁ ବ୍ୟଗ୍ରତା ଥିଲା, ତାହା ଆସ୍ତେ ଆସ୍ତେ ଚାଲିଯାଇ ତାହା ସ୍ଥାନରେ ଏକ ପ୍ରକାର ଦୃଢ଼ ଭାବନା ଆସି ଉପସ୍ଥିତ ହେଲା । କିଛି ସମୟ ପରେ ତାକୁ ଲାଗିଲା ସତେ ଯିମିତି ସେ ସମ୍ପୂର୍ଣ୍ଣ ବଦଳି ଯାଇଛି । ସେ ପ୍ରାଣରେ ଅସୀମ ଉଲ୍ଲାସ ଓ ଦୃଢ଼ତା ଅନୁଭବ କଲା ।

ଏହି ସମୟରେ ତା'ର ସମସ୍ତ ସଂସାର ଓଲଟପାଲଟ ହୋଇଗଲା । ସେ ଜ୍ୱାଲାପ୍ରସାଦ ଓ ରୁକ୍ମିଣୀଙ୍କୁ ଭୁଲିବା ସଙ୍ଗେ ସଙ୍ଗେ ନିଜର ଗ୍ରେଟ ଗ୍ରେଟ ଭାଇ ଭଉଣୀଙ୍କୁ ମଧ୍ୟ ଭୁଲିଗଲା । କାମତାନାଥ ଓ ଉଷା ତା'ର ବସ୍ତୁ ଉରେ କୁଆଡ଼େ ହଜିଗଲେ । ସେତିକି ନୁହେଁ, ସେତେବେଳେ ସେ ଜ୍ଞାନପ୍ରକାଶଙ୍କୁ ମଧ୍ୟ ଭୁଲିଗଲା । ସେତେବେଳେ ତା'ର ସମ୍ମୁଖରେ ଥିଲା ଏକ ବିଶାଳ ଜନତା ଏବଂ ତା'ପାଖରେ ଥିଲା ସେମାନଙ୍କର ସମର୍ଥନ, ସଦ୍‌ଭାବନା ଓ ସେମାନଙ୍କର ବିଶ୍ୱାସ ।

ଜ୍ଞାନପ୍ରକାଶ ଓ ନବଲ ସଭାପରେ ଘରକୁ ଫେରି ଆସିଲେ । ଘରକୁ ଫେରି ନବଲ ଏକପ୍ରକାର ଉଦାସ ଅନୁଭବ କଲା । ଦେଖିଲା ଘରେ ସମସ୍ତଙ୍କ ମନରେ ଉଦାସ ଭାବ ଓ ସମସ୍ତେ ପ୍ରାୟ ଦୁଃଖୀ । ଜ୍ୱାଲାପ୍ରସାଦ ଭୋଜନ କରିବାପାଇଁ ସେହିମାନଙ୍କ ଅପେକ୍ଷାରେ ରହିଥିଲେ । ସେମାନେ ଆସିବାରୁ ସମସ୍ତେ ଖାଇବା ପାଇଁ ଏକାଠି ବସିଗଲେ; କିନ୍ତୁ ଜ୍ୱାଲାପ୍ରସାଦ ଏତେ ଚିନ୍ତିତ ହୋଇ ପଡ଼ିଥିଲେ ଯେ, ଖାଇବା ପାଇଁ ତାଙ୍କର ହାତ ଚାଲୁନଥିଲା । ନବଲ ପଚାରିଲା, "ଜେଜେ, ଆପଣ କାହିଁକି ଆଜି ଏତେ ଉଦାସ ଜଣାପଡ଼ୁଛନ୍ତି ?"

ଜ୍ୱାଲାପ୍ରସାଦ ଜବାବ୍ ଦେଲେ, "ନବଲ, ମୋତେ କିଛି ଭଲଲାଗୁନାହିଁ । ଦୁନିଆଟା ସତେ କ'ଣ ହୋଇଗଲା ! ତୁ କାଲି ଜେଲ ଯିବାପାଇଁ ବ୍ୟବସ୍ଥା କରିନେଇଛୁ । ଜାନୁ ବି ଆଉ ଦୁଇ ଚାରିଦିନ ପରେ ଚାଲିଯିବ । ମୁଁ ଏକା ଏକା ପଡ଼ିରହିବି ।"

ବିଦ୍ୟା ଖାଇବାକୁ ଦେଉ ଦେଉ ଟିକିଏ ହସିଦେଇ କହିଲା, "ଆପଣ ଏକା ରହିପିବେ କିମିତି କେଜେ ! ମୁଁ ତ ପୁଣି ଆପଣଙ୍କ ସଙ୍ଗରେ ଅଛି । ନବଲ ଭାଇ କେଉଁଦିନ ଆପଣଙ୍କ ପାଖରେ ଘରେ ରହୁଥିଲେ ଯେ ? ମୁଁ ତ ସବୁଦିନେ ଆପଣଙ୍କୁ ଭାଗବତ ଶୁଣାଉଛି ।"

ବିଦ୍ୟା କଥା ଶୁଣି ଜ୍ଞାନପ୍ରକାଶ ହସିଦେଇ କହିଲେ, "ଠିକ୍ କହିଲୁ ମା, ବିଲକୁଲ୍ ଠିକ୍ । ଭାଇ, ଆପଣ ଏସବୁ ମୋହ ଛାଡ଼ନ୍ତୁ । ନିଜର କର୍ତ୍ତବ୍ୟ କରିବା ପାଇଁ ଆପଣ ହସି ହସି ଆମକୁ ବିଦାୟ ଦିଅନ୍ତୁ । ଆପଣ ଧରିନିଅନ୍ତୁ, ଧର୍ମ ଓ ଭଗବାନ ଆମ ସଙ୍ଗେ ସଙ୍ଗେ ଅଛନ୍ତି ।"

"ହଁ ଜ୍ଞାନୁ, ମୁଁ ଖୁବ୍ ଭଲଭାବରେ ଜାଣେ, ଧର୍ମ ଓ ଭଗବାନ ତମ ସଙ୍ଗରେ ଅଛନ୍ତି । ସେଥିପାଇଁ ମୁଁ ତମକୁ ଅଟକାଇବାକୁ ଚାହେଁନାହିଁ । କିନ୍ତୁ ନିଜ ମନକୁ ମୁଁ କ'ଣ କରିବି ?"

"ମନକୁ ଟିକିଏ ଟାଣ କରନ୍ତୁ ଖୁବ୍ ହେଲେ ଆମକୁ ଛ'ମାସ ଜେଲ ମିଳିବ । ଆମେମାନେ ଅହିଂସା ଯୁଦ୍ଧ କରିବାପାଇଁ ଯାଉଛୁ । ତେଣୁ ଆମର ବିଶେଷ ଅନିଷ୍ଟ ହେବାର ସମ୍ଭାବନା ନାହିଁ ।"

ଜ୍ୱାଳାପ୍ରସାଦ ଏକ ଦୀର୍ଘନିଶ୍ୱାସ ପକାଇ କହିଲେ, "ହଁ ଅନିଷ୍ଟ ହେବାର ସମ୍ଭାବନା ତ ନାହିଁ; କିନ୍ତୁ···କିନ୍ତୁ······ ।"

ଜ୍ଞାନପ୍ରକାଶ ପଚାରିଲେ, "କିନ୍ତୁ କ'ଣ ?"

"ନାହିଁ କିନ୍ତୁ କିଛିନାହିଁ ! ଯା' ନବଲ ! ଯା' ଜ୍ଞାନୁ ! ମନୁଷ୍ୟ ହାତରେ କିଛି ନାହିଁ, ପ୍ରକୃତିରେ କିଛିନାହିଁ । ଚିନ୍ତା କରିବାର ବା କ'ଣ ଅଛି ? ଯାହା ହେବାର କଥା ସେ ତ ହୋଇଯାଇଛି ! ତାକୁ ଆଉ ବନ୍ଦ କରିହେବନାହିଁ ।" ଜ୍ୱାଳାପ୍ରସାଦ ଖାଇସାରି ଉଠିଲା ବେଳକୁ ମନ ତାଙ୍କର ବହୁତ ହାଲୁକା ହୋଇଯାଇଥିଲା । ସାରା ଘରର ଉଦାସ ଭାବ କେଉଁଆଡ଼େ ଉଭାଇଯାଇଥିଲା ।

ଅପ୍ରେଲ ପାଞ୍ଚ ତାରିଖ ସକାଳ ପ୍ରାୟ ସାଢ଼େ ଚାରିଟା ବେଳକୁ ନବଲର ନିଦ ଭାଙ୍ଗିଗଲା । ସେତେବେଳକୁ ଅନ୍ଧାର ପୂରା ଗୁଞ୍ଜି ନଥାଏ । କେବଳ ପୂର୍ବ ଆକାଶ ସାମାନ୍ୟ ଲାଲ ଦେଖାଯାଉଥିଲା । ନବଲ ଉଠି ବସିଲା ଓ ତା ସଙ୍ଗେ ସଙ୍ଗେ ଘରର ସମସ୍ତେ ମଧ୍ୟ ଉଠି ବସିଲେ । ଅପ୍ରେଲ ପାଞ୍ଚ ତାରିଖ ସକାଳେ ଦାଣ୍ଡିଠାରେ ମହାତ୍ମା-ଗାନ୍ଧିଙ୍କର ଲବଣ ଆଇନ୍ ଭାଙ୍ଗିବାର ଥିଲା । ତେଣୁ ଦେଶର ଭିନ୍ନ ଭିନ୍ନ ସ୍ଥାନରେ ସେହି ସମୟରେ ଆଇନ ଅମାନ୍ୟ କରିବାର ବ୍ୟବସ୍ଥା ଥିଲା । ସକାଳ ନ'ଟା ବେଳେ ଏକ ଶୋଭାଯାତ୍ରା କଂଗ୍ରେସ ଅଫିସରୁ ବାହାରି ପ୍ରତ୍ୟେକ ସତ୍ୟାଗ୍ରହୀଙ୍କ ଘରକୁ ଯାଇ

ସେମାନଙ୍କୁ ସ୍ୱାଗତ କରିବା ପାଇଁ ସ୍ଥିର ହୋଇଥିଲା । ତାପରେ ସେହି ଶୋଭାଯାତ୍ରା ସାରା ସହର ପରିକ୍ରମା କରିସାରି ଲବଣ ଆଇନ ଅମାନ୍ୟ କରିବ ।

ପ୍ରାୟ ସାଢ଼େ ଦଶଟା ବେଳେ ଏହି ଶୋଭାଯାତ୍ରା ନବଲ ଘରଠାରେ ପହଞ୍ଚିଲା । ସେଠାରେ ପ୍ରାୟ କୋଡ଼ିଏ ହଜାର ଲୋକ ଜମା ହୋଇଥିଲେ । ନବଲର ଘର ପାଖ ସଡ଼କ ଆଗରେ ଛିଡ଼ାହୋଇ ସେମାନେ ନାନା ପ୍ରକାର ଜୟଧ୍ୱନି କରୁଥିଲେ । ବିଦ୍ୟା ମକାନ୍ର ଉଠି ବଡ଼ ଢଙ୍ଗରେ ଆରତି ଥାଳି ସଜାଇ ରଖିଥିଲା । ଶୋଭାଯାତ୍ରା ଆସି ପହଞ୍ଚିବା ମାତ୍ରେ ବିଦ୍ୟା ନବଲର ବନ୍ଦାପନା କରି ତା ବେକରେ ମାଳା ପିନ୍ଧାଇ ଦେଲା । ରୁକ୍ମିଣୀ ସେଇଠି ଘାଟରେ ଛିଡ଼ାହୋଇଥିଲେ । ବିଦ୍ୟା ତାଙ୍କ ହାତଧରି ଟାଣି ଆଣି କହିଲା, "ମା, ଭାଇଙ୍କୁ ତିଳକ ଲଗାଇ ଦେ । ସେ କୃଷ୍ଣ ମନ୍ଦିରକୁ ଯାଉଛନ୍ତି, ତାଙ୍କୁ ବିଦାୟ ଦେ ।"

ରୁକ୍ମିଣୀଙ୍କର ଦେହ ଗୋଟା ପଣେ ଥରୁଥିଲା ଓ ତାଙ୍କ ଆଖିରେ ଲୁହ ପୂରି ଯାଇଥିଲା । ବିଦ୍ୟା ଜବରଦସ୍ତ ମା'ଙ୍କର ଓଢ଼ଣା କାଢ଼ିଦେଇ କହିଲା, "ଇଏ ସଙ୍କୋଚ ବା ଦୁର୍ବଳତାର ସମୟ ନୁହେଁ ।"

ଶୋଭାଯାତ୍ରାର ସମସ୍ତ ଲୋକ ପାଟିକରି ଉଠିଲେ, "ନବଲକିଶୋର—ଜିନ୍ଦାବାଦ", "ନବଲକିଶୋର କି ଜୟ ।"

ନିଜ ପୁଅର ଜୟ ଜୟକାର ଶୁଣି ଓ ତାଙ୍କୁ ବିଦାୟ ଦେବାପାଇଁ ଅପାର ଜନସମୁଦ୍ର ମାଡ଼ି ଆସୁଥିବାର ଦେଖି ରୁକ୍ମିଣୀ ଏକପ୍ରକାର ଉଲ୍ଲାସ ଅନୁଭବ କଲେ । ତାଙ୍କର ସମସ୍ତ ଅବସାଦ ଆପେ ଆପେ ଚାଲିଗଲା । ସେ ନିଜ ଅଞ୍ଚଳରେ ଅଖି ପୋଛିଦେଇ ପୁଅକୁ କୋଳ କରି ପକାଇଲେ ଓ କମ୍ପିତ ହସ୍ତରେ ପୁଅ ମୁଣ୍ଡରେ ତିଳକ ଦେଇ ନିଜ ହାତରେ ବନ୍ଦାପନା କଲେ ।

ଜ୍ୱାଲାପ୍ରସାଦ ବାରଣ୍ଡାରେ ବସି ଚୁପ୍‌ଚାପ୍ ଏ ସବୁ ଦେଖୁଥିଲେ । ଭିକ୍ଷୁ ତାଙ୍କ ପାଖରେ ଛିଡ଼ା ହୋଇଥିଲା । ନବଲ ଜ୍ୱାଲାପ୍ରସାଦଙ୍କ ପାଖକୁ ଯାଇ ଯେତେବେଳେ ତାଙ୍କ ପାଦ ଛୁଇଁ ନମସ୍କାର କଲା ସେତେବେଳେ ତାଙ୍କ ପାଟିରୁ କେବଳ ଏତିକି ବାହାରିଲା, "ଭଗବାନ ତୋତେ ରକ୍ଷା କରନ୍ତୁ ।"

ନବଲ ଭିକ୍ଷୁକୁ ଚାହିଁ କହିଲା, "ଭିକ୍ଷୁ ଜେଜେ, ନମସ୍କାର, ଜେଜେବାପାଙ୍କ କଥା ବୁଝାବୁଝି କରୁଥିବ ।"

"ଯାଅ ବାବା, ଖୁବ୍ ଭଲରେ ରୁହ ଓ ଖୁବ୍ ଶୀଘ୍ର ଫେରିଆସ ।"

ବର୍ତ୍ତମାନ ନବଲ ଶୋଭାଯାତ୍ରା ଆଡ଼କୁ ଚାଲିଲା ଓ ବିଦ୍ୟା ତା ସଙ୍ଗେ ସଙ୍ଗେ ଯାଇ କହିଲା, "ଚାଲ ଭାଇ, ମୁଁ ତମକୁ କିଛି ଦୂରରେ ଛାଡ଼ିଦେଇ ଆସିବ । ସେଇଠୁ ରାସ୍ତାରୁ

ମୁଁ ସ୍କୁଲକୁ ଚାଲିଯିବି ।'' ଏତିକି କହି ବିଦ୍ୟା ବି ଶୋଭାଯାତ୍ରାରେ ମିଶିଗଲା ।

ଶୋଭାଯାତ୍ରା ଚାଲିଲା । ଘରର ସବୁଲୋକେ ଛିଡ଼ାହୋଇ ଶୋଭାଯାତ୍ରାକୁ ଅନାଇ ରହିଲେ । ଶୋଭାଯାତ୍ରା ପାର୍ ହେବା ପାଇଁ ପ୍ରାୟ ଅଧଘଣ୍ଟାଏ ସମୟ ଲାଗିଲା । ରୁକ୍ମଣୀ ଆଉ ସମ୍ଭାଳି ନପାରି ଭୋ'କରି କାନ୍ଦି ପକାଇଲେ ଓ ନିଜ ଶ୍ରେଷ୍ଠ ପିଲା ଦୁହିଁଙ୍କର ହାତଧରି କାନ୍ଦି କାନ୍ଦି ଘର ଭିତରକୁ ଚାଲିଗଲେ ।

ଜ୍ୱାଲପ୍ରସାଦ ଭିକ୍ଷୁ ସାଙ୍ଗରେ ଫାଟକ ପର୍ଯ୍ୟନ୍ତ ଆସି ଶୋଭାଯାତ୍ରାକୁ ଏକ ଦୃଷ୍ଟିରେ ଚାହିଁ ରହିଲେ । ବର୍ତ୍ତମାନ ଶୋଭାଯାତ୍ରା ତାଙ୍କ ଦୃଷ୍ଟିରୁ ପାରି ହୋଇ ଯାଇଥିଲା ଏବଂ ଚାରିଆଡ଼ ଶୂନ୍‌ଶାନ୍ ହୋଇ ଯାଇଥିଲା । ଜ୍ୱାଲପ୍ରସାଦ ଭିକ୍ଷୁକୁ ଚାହିଁ ପଚାରିଲେ, ''ଭିକ୍ଷୁ, ଏସବୁ କ'ଣ ଚାଲିଛି ?''

''ଭାଇ, ମୁଁ ତ କିଛି ବୁଝିପାରୁନାହିଁ । ନିବିଲ ପିଲାଟାଏ, ନିଜ ଖୁସିରେ ଜେଲ ଯାଉଛି । ବିଦ୍ୟା ଝିଅଟାଏ, ଚାକିରି କରୁଛି । ଭାଇ, ଏ ସବୁ କ'ଣ ହେଉଛି କିଛି ବୁଝି ହେଉନାହିଁ !''

ଜ୍ୱାଲପ୍ରସାଦ ଦୀର୍ଘନିଶ୍ୱାସ ପକାଇ କହିଲେ, ''ହଁ ଭିକ୍ଷୁ, କିଛି ବୁଝି ହେଉନାହିଁ । ମାତ୍ର ପଚିଶଟା ବର୍ଷ ଭିତରେ ଏସବୁ କ'ଣ ହୋଇଗଲା ? ସବୁ ବଦଳିଗଲା—ସମ୍ପୂର୍ଣ୍ଣରୂପେ ବଦଳିଗଲା । ତୁ ବି ବଦଳିଗଲୁ, ମୁଁ ବି ବଦଳିଗଲି । କେତେ ନୂଆ ଲୋକ ଆସିଲେ, କେତେ ପୁରୁଣା ଲୋକ ଚାଲିଗଲେ ।'' ଏହିକଥା କହିଲାବେଳେ ଜ୍ୱାଲପ୍ରସାଦଙ୍କ କଣ୍ଠ ଥରିଉଠୁଥିଲା ।

ଭିକ୍ଷୁ ଜ୍ୱାଲପ୍ରସାଦଙ୍କର ହାତ ଧରିପକାଇ କହିଲା, ''ଚାଲ ଭାଇ, ବିଶ୍ରାମ କର । ଇଏ ସବୁ ଭଗବାନଙ୍କର ଲୀଳା । ଏଥିରେ ଆମର ହାତ କ'ଣ ? ପ୍ରକୃତରେ କିଛି ବୁଝି ହେଉନାହିଁ ।''

''ହଁ ଭିକ୍ଷୁ, ଇଏ ସବୁ କିଛି ବୁଝିହେଉନାହିଁ । ନାନା ପ୍ରକାର ଚିତ୍ର ଆଖି ଆଗକୁ ଆସୁଛି ପୁଣି କେଉଁଆଡ଼େ ଲିଭିଯାଉଛି । ଏସବୁ କାହିଁକି ହେଉଛି ?''

ଏହି ବୃଦ୍ଧ ଦୁଇଜଣ ଯୁଗ ଯୁଗର କଥା ଦେଖିଥିଲେ । ଜୀବନର ବହୁତ ଭଲମନ୍ଦ ବୁଝିଥିଲେ । ବହୁତ କଥା ଅନୁଭବ କରିଥିଲେ । ତଥାପି ଏମାନେ ବର୍ତ୍ତମାନ ସମ୍ପୂର୍ଣ୍ଣ ବିବଶ ଓ ସମ୍ପୂର୍ଣ୍ଣ ନିରୁତ୍ତର ହୋଇ ପଡ଼ିଥିଲେ । ଅଥଚ ଏତିକିବେଳେ ହଜାର ହଜାର, ଲକ୍ଷ ଲକ୍ଷ, କୋଟି କୋଟି ନରନାରୀ ନବୀନ ଆଶା, ନବୀନ ଉତ୍ସାହ ଓ ନବୀନ ଉଲ୍ଲାସରେ ଅନୁପ୍ରାଣିତ ହୋଇ ନୂତନ ଦୁନିଆ ଗଢ଼ିବା ପାଇଁ ଆଗେଇ ଚାଲିଥିଲେ ।

□□□